

ଲିଓ ଟଲ୍‌ଷ୍ଟୟ

# ଯୁଦ୍ଧ ଓ ଶାନ୍ତି

# ଯୁଦ୍ଧ ଓ ଶାନ୍ତି

## ଦ୍ୱିତୀୟ ଖଣ୍ଡ

ଲେଖକ

**ଲିଓ ଟଲଷ୍ଟୟ**

ଅନୁବାଦକ

**ଶ୍ରୀ ଗୋପୀନାଥ ମହାନ୍ତି**

ପ୍ରକାଶକ



ଓଡ଼ିଶା ଷ୍ଟୁଡେଣ୍ଟସ୍ ଷ୍ଟୋର

# ଯୁଦ୍ଧ ଓ ଶାନ୍ତି

ପ୍ରକାଶିକା :
ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
କଟକ-୭୫୩୦୦୨
ପ୍ରଥମ ସଂସ୍କରଣ : ୧୯୮୫
ପ୍ରଚ୍ଛଦ :
ଅସୀତ ମୁଖାର୍ଜୀ
ମୁଦ୍ରଣ :
ସ୍ୱର୍ଣ୍ଣପ୍ରଭା ପ୍ରିଣ୍ଟର୍ସ
ଡଗରପଡା, କଟକ-୨
ମୂଲ୍ୟ—ସାଧା ଟ ୩୫-୦୦
ବନ୍ଧାଇ ଟ ୪୦-୦୦

# WAR & PEACE

*Written by* :
**Lev Tolstoy**
*Translated by* :
**Sri Gopinath Mohanty**
*Printer* :
**Swarnaprava Printers**
Dagarpara, Cuttack-2
*First Edition* : 1985
*Published on behalf of*
**Sahitya Academy**
New Delhi
**Cuttack Students' Store**
Cuttack-2
*Price*
**Popular Rs 35/-**
**Deluxe Rs 40/-**

# ସୂଚୀ



———

# ଯୁଦ୍ଧ ଓ ଶାନ୍ତି | ଚତୁର୍ଥ ଭାଗ

ନିକୋଲେ ରୋଷ୍ଟଭ ସୈନ୍ୟବାହିନୀରୁ ଫେରି ମସ୍କୋରେ ପହଞ୍ଚିଲା ପରେ ତାର ପରିବାର ତାକୁ ସ୍ୱାଗତ କଲେ ବୀରପୁରୁଷ ବୋଲି, ପୁଅମାନଙ୍କ ଭିତରେ ସୁନା ପୁଅ ବୋଲି 'ନିକୋଲେଙ୍କା', 'ନିକୋଲେଙ୍କା' ବୋଲି ଗେହ୍ଲା ଆଦରର ସୀମା ରହିଲା ନାହିଁ । ବନ୍ଧୁ ବାନ୍ଧବମାନେ ତାକୁ ସ୍ୱାଗତ କଲେ, ସେ ଘରର ଭଲ ଭଦ୍ର ଶିଷ୍ଟ ପିଲାଟିଏ ବୋଲି । ତାର ଚିହ୍ନାଲୋକେ ତାକୁ ସ୍ୱାଗତକଲେ ସେ ଘୋଡ଼ସବାର ସୈନ୍ୟଦଳର ଏକ ରୂପବନ୍ତ ଦଳପତି ବୋଲି, ସେ ଖୁବ୍ ଭଲ ନାଚୁଥିଲା ଓ ମସ୍କୋ ସହର ଭିତରେ ଝିଅମାନଙ୍କ ବିବାହର ସମ୍ବନ୍ଧପାଇଁ ପାତ୍ର ହିସାବରେ ଜଣେ ଅତି ଚମତ୍କାର ପାତ୍ର ବୋଲି । ସେ ନାଚ ଭୋଜିକୁ ଗଲା ଓ ଆପଣାର ଇଚ୍ଛା ନ ଥିଲା ପରି ଭାବ ଦେଖାଇ ସ୍ତ୍ରୀଲୋକମାନଙ୍କ ଦଳରେ ବି ଯୋଗ ଦେଲା । ଘୋଡ଼ା-ଦଉଡ଼କୁ ଯିବା, ଇଂରେଜମାନଙ୍କ କ୍ଲବକୁ ଯିବା, ଡେନିସଭ ସଙ୍ଗରେ ମଦଫୁର୍ତ୍ତିରେ ମାତିବା, ତା ପଛେ ପଛେ ଘୂରିବୁଲା, ସେ ସବୁ ତ ଅଲଗା କଥା, ଘୋଡ଼ସବାର ସୈନ୍ୟଦଳର ଜଣେ ତରୁଣ କର୍ମଚାରୀ ପକ୍ଷରେ ସେସବୁ ଠିକ୍, ସବୁ ଶୋଭାପାଏ ବୋଲି ଲୋକେ ଧରିନେଲେ ।

ମାର୍ଚ୍ଚ ମାସର ଆରମ୍ଭରେ ବୁଢ଼ା କାଉଣ୍ଟ ଇଲିଆ ଆନ୍ଦ୍ରେଇଭିଚ୍ ରୋଷ୍ଟଭ ଇଂରେଜମାନଙ୍କ କ୍ଲବ୍ ଘରେ ଗୋଟିଏ ଭୋଜିର ବନ୍ଦୋବସ୍ତ କରିବାରେ ଲାଗି ପଡ଼ିଥିଲେ । ପ୍ରିନ୍ସ ବାଗ୍ରାତିଅନଙ୍କୁ ସମ୍ମାନ ଜଣାଇବାକୁ ସେ ଭୋଜିର ଆୟୋଜନ ।

କାଉଣ୍ଟ ତାଙ୍କ ଦେହରେ ଗୋଟାଏ ଗାଉନ୍ ଗଳାଇ ସେହି ବଡ଼ ବଖରାଟାଯାକ ଏକର ସେକର ହେଉଥାନ୍ତି । ସେ କ୍ଲବର ମ୍ୟାନେଜରଙ୍କ ସଙ୍ଗେ ଦେଖା କରୁଥାନ୍ତି । ମ୍ୟାନେଜର ଥା'ନ୍ତି ବିଖ୍ୟାତ ଫିଓକ୍ଟିସ୍ତା । କାଉଣ୍ଟ ମହାସୁଆର (ପ୍ରଧାନ ସୁପକାର) ସଙ୍ଗେ ଦେଖା କରୁଥା'ନ୍ତି । ପ୍ରିନ୍ସ ବାଗ୍ରାତିଅନ୍ ଖାଇବାକୁ ଆସିବେ, ସେଥିପାଇଁ କେଉଁ ଜନିଷର କି ତରକାରୀ ହେବ, କାଉଣ୍ଟ ଆସ୍ପାରାଗସ ନାଡ଼, କଞ୍ଚା କାକୁଡ଼ି, କୋଳ, ବାର୍ହା ମାଂସ, ମାଛ, ସବୁ ବିଷୟରେ ଗୋଟି ଗୋଟି କରି ମ୍ୟାନେଜରଙ୍କୁ ଓ ମହାସୁଆରଙ୍କୁ ବିଶଦ ଦେଉଥା'ନ୍ତି । କ୍ଲବ୍ ତାଙ୍କ ଉପରେ ଭାର ଦେଇଥାଏ ଯେ ବାଗ୍ରାତିଅନଙ୍କୁ ଯେଉଁ ଭୋଜି ଦିଆଯିବ ତାର ଆୟୋଜନ ବ୍ୟବସ୍ଥା ସେ ବୁଝିବେ । ତାର କାରଣ, ବଡ଼ ଆକାରରେ ଭୂରି ଭୋଜନର ବ୍ୟବସ୍ଥା କରିବା ବିଷୟରେ ତାଙ୍କ ପରି ଏଭଳି ଜଣେ ବିଚକ୍ଷଣ ଲୋକ ପାଇବା କଷ୍ଟ ଥିଲା । ତା ଛଡ଼ା, ଆହୁରି ବେଶି କଷ୍ଟକର ଥିଲା, ଏଭଳି ଜଣକୁ ପାଇବା, ଯେ କି ଏଡ଼େବଡ଼ ଭୋଜିର ଆୟୋଜନ କରିବାକୁ ପଇସା ନଅଣ୍ଟ ହେଲେ ନିଜ ହାତରୁ କାଢ଼ି ପଇସା ଦେଇ ତାକୁ ତୁଲେଇବେ । ସେ ଯାହା କହୁଥା'ନ୍ତି, ମ୍ୟାନେଜର ଓ ମହାସୁଆର ସେ କଥା ଶୁଣି ଖୁସି ହେଲାପରି ମୁହଁ କରୁଥା'ନ୍ତି; କାରଣ ସେମାନେ ଜାଣିଥାନ୍ତି ଯେ ଯେଉଁ ଗୋଟାଏ ଭୋଜିରେ ହଜାର ହଜାର ଟଙ୍କା ଖର୍ଚ୍ଚ ହେବ, ତାହା ତାଙ୍କ ଛଡ଼ା ଆଉ କାହା ଜରିଆରେ ହେଲେ ସେମାନଙ୍କୁ ଏତେ ଅଧିକ ଲାଭ ମିଳି ପାରିବ ନାହିଁ ।

"ଦେଖ, ଭୁଲିବ ନାହିଁଟି", ସେ କହିଲେ, "ମଇଦା ଭିତରେ ପାଉଁରୁଟି ଗୁଣ୍ଡ ଓ ମାଂସ ପୂର ଦେଇ ଯେତେବେଳେ ପୋଡ଼ପିଠା ହେବ ତା ଭିତରେ ସ୍କ୍ୟାଲପ୍ ଏକ ବହୁମୂଲ୍ୟ ଶାମୁକାର ମାଂସ (ଯେପରି ଚିଲିକାର କସୁରା) ଦେବଟି । ସ୍କ୍ୟାଲପ୍ ଦରକାର ।

ମହାସୁଆର ପଚାରିଲା – "ମଝିରେ ପରଷା ହେବ ପରା, ବରଫ ସାଙ୍ଗରେ । କେତେ ଡଜନଟା ଲେଖାଁ କସୁରା ଦିଆଯିବ ।"

"ଡଜନଟାରୁ କମ୍ ହେଲେ ଚଳିବନାହିଁ ମହାସୁଆରେ···ହଉ, ଗୋଟାଏ ପକା" ସେ ଆଙ୍ଗୁଠି ବଙ୍କାଇ କହିଲେ ।

"ହଜୁର କ'ଣ ହୁକୁମ ଦେଉଛନ୍ତି ସେ ବଡ଼ ବଡ଼ ଷ୍ଟର୍ଜନ ମାଛ-ଗୁଡ଼ାକ କଣିବା ।"

"ହଁ, ତା ନ ହେଲେ ଚଳିବ ନାହିଁ । ବେପାରୀ ଦାମ୍ ନ କମେଇଲେ ବି ଆମେ କଣିବା । ଆଃ ! ଭଗବାନ ରକ୍ଷା କରନ୍ତୁ, ମୁଁ ପର ସବୁ ପାସୋରି ଦେଉଛି, ଖାଇ ବସିଲେ ଫେର ଆଉ ଗୋଟାଏ ଜିନିଷ ଲଗାଇବାକୁ ପଡ଼ିବ ଯେ । ଯାଃ ! ସବୁ ବିଗିଡ଼ିଗଲା ।" ସେ ଆପଣା ମୁଣ୍ଡକୁ ଚିପିଧରିଲେ, କହିଲେ, "ଫୁଲ ଆଣିବା କଥା କିଏ ବୁଝୁଛି । ହେ, ମିଟେଙ୍କା –" ଗୁମାସ୍ତା ମିଟେଙ୍କା ତାଙ୍କ ଡାକ ଶୁଣି ଆସି ପହଞ୍ଚିଲା । କାଉଣ୍ଟ କହିଲେ, "ଯା ବାପ ଘୋଡ଼ା ଚଢ଼ି ଧାଇଁଯା । ଯା ମୋ ପଦ୍ମସ୍କଭନ ଜମିଦାରୀକୁ" (ମସ୍କୋ ଉପାନ୍ତରେ ସେଇଟା କାଉଣ୍ଟଙ୍କ ଜାଗା) "ସେଠି ମାକ୍ସିମକା ମାଳି ଅଛି, ତାକୁ କହିବୁ ବେଠିଆ ଲଗେଇଦେଇ ବଗିଚ୍ଚ ଘର ଭିତରୁ ଗଛ କୁଣ୍ଡଗୁଡ଼ାକ ଘେନିଆସିବ । ବଗିଚ୍ଚ ଘରେ ଯାହା ଗଛ ସଜା ହୋଇଛି, ସବୁ ଉଠେଇ ଆଣିବ । ତାକୁ ପଶମ କନାରେ ଗୁଡ଼େଇ ଆଣିଥିବ । ଶୁକ୍ରବାର ସୁଦ୍ଧା ମୋର ଏଠି ଦି'ଶ କୁଣ୍ଡ ଦରକାର, କହିବୁ ।"

ଏତିକିବେଳେ ଆନ୍ନା ମିହାଲଭ୍ନା ନିଃଶବ୍ଦରେ ସେ ଘର ଭିତରକୁ ଆସିଲେ । ତାଙ୍କ ମୁହଁରେ ଖ୍ରୀଷ୍ଟିୟାନ ଧର୍ମାବଲମ୍ବୀ ଲୋକର ବିନୟଭଙ୍ଗୀ ଫୁଟି ଉଠୁଥିଲା । ତା ସଙ୍ଗେ ମିଶି ରହିଥିଲା ଆଉ ଗୋଟିଏ ଭାବ, ବୟସ୍କ ବୁଦ୍ଧିଥିବା ଲୋକ କାର୍ଯ୍ୟବ୍ୟସ୍ତ ଥିଲାବେଳେ ତା ମୁହଁରେ ଯେଉଁ ଉଦ୍‌ବିଗ୍ନତା ଫୁଟିଉଠେ ସେହିପରି । ତାଙ୍କ ମୁହଁରୁ ସେଭଳି ଭାବ ଆଦୌ ଘୁଞ୍ଚୁ ନ ଥାଏ । କାଉଣ୍ଟ ଦେହରେ ଗାଉନ୍‌ଟାଏ ପିନ୍ଧିଥିଲାବେଳେ ଆନ୍ନା ମିହାଲଭ୍ନା ତାଙ୍କୁ ସବୁଦିନେ ଦେଖନ୍ତି ; ତଥାପି ତାଙ୍କୁ ବଡ଼ ଅପ୍ରସ୍ତୁତ ଲାଗିଲା । ସେ ସେଭଳି ବେଶରେ ଅଛନ୍ତି ବୋଲି ଆନ୍ନା ମିହାଲଭ୍ନାଙ୍କ ପାଖରେ କ୍ଷମା ମାଗିଲେ ।

ଆନ୍ନା ମିହାଲଭ୍ନା ବିନୀତ ଭାବରେ ଆଖି ବୁଜିଦେଇ କହିଲେ, "ଯେଥିପାଇଁ ଚିନ୍ତା ନାହିଁ କାଉଣ୍ଟ ।" ପୁଣି କହିଲେ, "ମୁଁ ଯାଉଛି ଟିକିଏ

ବେଜୁହବଙ୍କ ଘରକୁ । ବେଜୁହବଙ୍କ ପୁଅ ଆସି ପହଞ୍ଚିଛନ୍ତି, ତାଙ୍କ ବଗିଚ୍ଛରୁ ଆମେ ଯାହା ଖୋଜିବା ତା ନେଇ ଆସିବା । ମୋର ସ୍ୱ ଝିଙ୍କାଏ ତାଙ୍କ ସଙ୍ଗରେ କାମ ଥିଲା । ବୋରସ୍‌ର ଖଣ୍ଡିଏ ଚିଠି ସେ ମୋ ପାଖକୁ ପଠାଇ ଦେଇଛନ୍ତି । ଭଗବାନଙ୍କ ଦୟା, ବୋରସ୍ ବର୍ତ୍ତମାନ କର୍ମଚାରୀଟିଏ ହେଲାଣି ।" ଆନ୍ନା ମିହାଇଲଭ୍ନା ତାଙ୍କର ଗୋଟିଏ କାମ କରିବେ ବୋଲି ବାହାରିଛନ୍ତି ଶୁଣି କାଉଣ୍ଟ ଭାରି ଖୁସି ହେଲେ । ସଙ୍ଗେ ସଙ୍ଗେ ଆଦେଶ ଦେଲେ ଯେ ତାଙ୍କୁ ନେବାପାଇଁ ଗାଡ଼ିଟା ଅଣାହେଉ ।

"ବେଜୁହବଙ୍କୁ କହିବେ ସେ ଆସିବେ । ନିମନ୍ତ୍ରିତ ତାଲିକାରେ ମୁଁ ତାଙ୍କ ନାଁ ଲେଖିଦେବି । ସେ ତାଙ୍କ ସଙ୍ଗରେ ତାଙ୍କ ସ୍ତ୍ରୀଙ୍କୁ ଆଣିଛନ୍ତି ନା ?"

ଆନ୍ନା ମିହାଇଲଭ୍ନା ଆଖିକି କପାଳକୁ ଟେକିଦେଲେ, ତାଙ୍କ ମୁହଁରେ ଦୁଃଖର ଭାବ ପ୍ରକାଶ ପାଇଲା ।

କହିଲେ, "ଆଃ, କଣ ଆଉ କହିବି ଆଜ୍ଞା, ତାଙ୍କର ଭାରି ଦୁଃଖ । ଆମେ ଯାହା ସବୁ ଶୁଣୁଛୁ, ସେ ସବୁ ଯଦି ସତ ହୋଇଥିବ ତ ଭାରି ଭୟଙ୍କର କଥା । ତାଙ୍କ ମୁହଁରେ ଖୁସି ହେଲାବେଳେ ଏକଥା କ'ଣ ଆମେ କେବେ କଳ୍ପନା କରିଥିଲୁଁ । ଆଉ ସେ ବେଜୁହବ ଟୋକାଟି ଏଡ଼େ ଉଦାରମନା, ମଣିଷ ନୁହେଁ ତ, ସାକ୍ଷାତ୍ ଦେବତା ପରି । ହଁ, ତାଙ୍କ ପ୍ରତି ମୋର ଅନ୍ତର ଭିତରୁ ସହାନୁଭୂତି ଆସୁଛି, ତାଙ୍କୁ ଆଶ୍ୱାସ ଦେବାକୁ ମୋ ଦେଇ ଯାହା ହୋଇପାରିବ, ତା ମୁଁ କରିବି ।"

"କାହିଁକି ? କ'ଣ ହେଲା ।"

ସେ ରହସ୍ୟ ପ୍ରକାଶ କଲାପରି ଫୁସଫୁସ କରି କହିଲେ, "ସେଇ ଡୋଲୋହଭଟା, ମାରିଆ ଇଭାନଭ୍ନାଙ୍କ ପୁଅ, ବେଜୁହବଙ୍କ ଭାର୍ଯ୍ୟା ସଙ୍ଗରେ ଲଟପଟ ହୋଇ ତାଙ୍କୁ ସତ୍ୟାନାଶ କରିଦେଲା । ଦେଖ, ବେଜୁହବ ତାଙ୍କୁ ଲୋକଙ୍କ ସଙ୍ଗେ ଚିହ୍ନା କରାଇ ଦେଲେ, ପିଟର୍ସବର୍ଗ ସହରରେ ତାଙ୍କ ନିଜ ଘରେ ଆଣି ରଖିଲେ, ଅଇଚ୍ଛା କଥା ଦେଖ ! ବେଜୁହବଙ୍କ ସ୍ତ୍ରୀ ଏଠିକି

ଆସିଛି, ଆଉ ସେହି ଅନ୍ଲଜ୍ଞୁକଟା ବି ତା ପଛରେ ଗୋଡ଼େଇ ଗୋଡ଼େଇ ଆସିଛି ।

ଆନ୍ନା ମିହାଲଭ୍ନା ପିଏରେ ପ୍ରତି ସହାନୁଭୂତି ଜଣାଇବାକୁ ଇଚ୍ଛା କରୁଥିଲେ; କିନ୍ତୁ ସେ ନିଜ ଅଜାଣତରେ କଥାଗୁଡ଼ାକ ଯେପରି ଭାବେ ଉଚ୍ଚାରଣ କରୁଥିଲେ ଓ ଯେମିତି ଅଧା ମୁରୁକି ହସୁଥିଲେ, ସେ ଯାହା କହୁଥିଲେ ତହିଁରୁ ଜଣା ପଡ଼ୁଥାଏ ଯେପରି କି ସେ ଯେଉଁ ଡୋଲୋହଭକୁ ଅନ୍ଲଜ୍ଞୁକଟାଏ ବୋଲି କହିଲେ ତାହାରି ପ୍ରତି ତାଙ୍କର ସହାନୁଭୂତି । କହିଲେ, "ଲୋକେ କହୁଛନ୍ତି ବିଚରା ପିଏରେ କୁଆଡ଼େ ଏ ଦୁର୍ଦ୍ଦଶାରେ ଭାଙ୍ଗିପଡ଼ୁଛି ।"

"ହଉ ଯାହା ହୋଇଥାଉ, ତାକୁ କହିବେ ସେ କ୍ଲବକୁ ଆସୁ । ମନଟା ବଦଳି ଯିବ । ଭାରି ବଢ଼ିଆ ଭୋଜଟାଏ ହବ ଯେ ।"

ମାର୍ଚ୍ଚ ତିନି ତାରିଖ ଦିନ ଇଂଲିଶ୍ କ୍ଲବଘରର ସବୁ ବଖରା ମଣିଷଙ୍କ ପାଟି ଗୁଣ୍ଡରେ ପୂରି ଉଠୁଥାଏ । ଟେବୁଲର ପ୍ରାୟ ମଝାମଝି ନିକୋଲି ରୋସ୍ତଭ ଡେନିସଭ୍ ଓ ନୂଆ ହୋଇ ଚାରି ଚିହ୍ନା ହୋଇଥିବା ଡୋଲୋହଭ୍ ସଙ୍ଗରେ ଏକାଠି ବସିଥିଲା । ଡୋଲୋହଭ୍ ଓ ନିକୋଲି ରୋସ୍ତଭଙ୍କର ମୁହାଁମୁହିଁ ହୋଇ ପିଏରେ ବସିଥିଲା । ସେ ସବୁଥର ଯେପରି ଖାଏ ପିଏ ସେମିତି ବହୁତଗୁଡ଼ାଏ ଖାଇଲା, ବହୁତ ମଦ ପିଇଲା; କିନ୍ତୁ ଯେଉଁମାନେ ତାକୁ ଚିହ୍ନିଥିଲେ, ସେମାନେ ଲକ୍ଷ୍ୟ କରୁଥିଲେ ଯେ ସେଦିନ ତାର ଗୋଟାଏ ଜ'ଣ ଭାରି ପରିବର୍ତ୍ତନ ହୋଇଛି । ଭୋକ ଲାଗିଥାଏ, ସେ ଯଦି ପାଟି ନ ଫିଟାଇ ଚୁପ୍ ଚାପ୍ ହୋଇ ବସିଥାଏ, ବେଳେ ବେଳେ ଆଖି ଯୋଡ଼ିକ ମିଞ୍ଜି ମିଞ୍ଜି କରୁଥାଏ । ବେଳେ ବେଳେ ଆଖି ଘୂରେଇଥାଏ । ଚାରିଆଡ଼କୁ ଅନାଉଥାଏ, ନ ହେଲେ ସମ୍ପୂର୍ଣ୍ଣ ଅନ୍ୟମନସ୍କ ହୋଇ ପରି କୌଣସି ଗୋଟାଏ ଜିନିଷକୁ ଚାହିଁ ରହିଥାଏ, ଆଙ୍ଗୁଠିରେ ନାକଦଣ୍ଡାକୁ ଘଷୁଥାଏ । ତା ମୁହଁ ଶୁଖିଯାଇଥାଏ, ବିଷଣ୍ଣ ଦିଶୁଥାଏ । କିଏ କଣ କହୁଛି, କେଉଁଠି କଣ ହେଉଛି ସେଗୁଡ଼ା ସତେ କି ସେ ଦେଖୁ ନଥାଏ କି ଶୁଣୁ ନ ଥାଏ । ଲାଗୁଥାଏ ଯେପରିକି ସେ କଣ ଗୋଟାଏ ନିର୍ଦ୍ଦିଷ୍ଟ କଥା

ଭାବିଲାଣି, ଯେଉଁଠା ଭାବିଲା ମାନେ ତାକୁ ଯନ୍ତ୍ରଣା ବି ହେଉଛି, ମନ ଓଲଟ ପାଲଟ ହୋଇଯାଉଛି ।

ଡୋଲୋହଭ୍‌ର ତା ସ୍ତ୍ରୀ ସହିତ ଘନିଷ୍ଠ ସମ୍ପର୍କ ବିଷୟରେ ମସ୍କୋରେ ତା ମାଉସୀ ଝିଅ ଭଉଣୀ ପ୍ରିନ୍‌ସେସ୍ ନାନା ଇଙ୍ଗିତ କରିଥିଲେ । ସେଦିନ ସକାଳେ ସେ ଖଣ୍ଡେ ବେନାମି ଚିଠି ପାଇଥିଲା । ବେନାମି ଚିଠିରେ ଯେପରି ଅଶ୍ଳୀଳ ଥଟ୍ଟା କରାଯାଇ ଲେଖାହୋଇଥାଏ, ସେଥିରେ ସେପରି ଲେଖା ହୋଇଥିଲା ଯେ ତା ଚଷମାରେ ବୋଧହୁଏ ଆଉ ଭଲ ଦିଶୁନାହିଁ କି କ'ଣ, ଆଉ ତା ନିଜ ଛଡ଼ା ଆଉ କାହାରି ପାଖେ ଡୋଲୋହଭ୍ ଓ ତା ସ୍ତ୍ରୀର ସମ୍ପର୍କଟା ଅଛପା ନୁହେଁ । ଯେଉଁ ସମସ୍ୟାଟା ତା ମନକୁ ଘାଣ୍ଟି ଚକଟି ପକାଉଥାଏ, ଏତିକରୁ ସେ ସମସ୍ୟାର ଉତ୍ପତ୍ତି । ପିଏରେ ପ୍ରିନ୍‌ସେସ୍‌ଙ୍କ ଇଙ୍ଗିତରେ କି ସେ ବେନାମି ଚିଠିରେ ସମ୍ପୂର୍ଣ୍ଣ ବିଶ୍ୱାସ କରିପାରୁ ନ ଥାଏ; କିନ୍ତୁ ହେଲେ ତ ଡୋଲୋହଭ୍ ତାର ମୁହଁ ସାମ୍ନାରେ ବସିଛି, ତାକୁ ଅନାଇଁବାକୁ ତାକୁ ଡର ମାଡ଼ୁଥାଏ । ଯେତେଥର ତାର ଚାହାଣି ଡୋଲୋହଭ୍‌ର ସୁନ୍ଦର ଅଥଚ ଉଦ୍ଧତ ଚାହାଣି ସଙ୍ଗେ ଭେଟାଭେଟି ହୁଏ, ସେତେଥର ତାକୁ ଲାଗୁଥାଏ ଯେ ତାର ଅନ୍ତର ଭିତରୁ କିଛି ଗୋଟାଏ ବୀଭତ୍ସତା ଭୟଙ୍କର ହୋଇ ଉପରକୁ ଠେଲି ଆସିବାକୁ ଚେଷ୍ଟା କରୁଛି । ସେ ତରତର ହୋଇ ମୁହଁ ବୁଲାଇ ନିଏ । ଧୁଁ କୁ ଧୁଏଁ ତାର ସ୍ତ୍ରୀର ଅଜ୍ଞାତ ଜୀବନ କାହାଣୀ ଓ ଡୋଲୋହଭ୍ ପ୍ରତି ତାର ବ୍ୟବହାର ପିଏରେର ମନେ ପଡ଼ିଯାଏ । ପିଏରେକୁ ପରିଷ୍କାର ଜଣା-ପଡ଼ୁଥାଏ ଯେ ସେ ଚିଠିରେ ଯାହା ଲେଖାହୋଇଥିଲା, ତା ସତ ବି ହୋଇପାରେ; ଯଦି ସେ ତାର ଭାରିଯା କଥା ହୋଇଥିବ, ଅନ୍ତତଃ ଲୋକଙ୍କ ଆଖିକି ସେ ସତପରି ଲାଗିପାରେ । ତାର ଧୁଏଁ ଧୁଏଁ ମନେ ପଡ଼ିଗଲା ଯେ ଡୋଲୋହଭ୍ ତାର ପୁରୁଣା ବନ୍ଧୁ ଫେରିପାଇଛି, ସେ ପିଟର୍ସବର୍ଗକୁ ଫେରିଆସି ତାକୁ ଦେଖାକରିବାକୁ ଚାଲି ଆସିଥିଲା, ସେ ଦୁହେଁ ଅତୀତରେ ଯେଉଁଭଳି ଏକାଠି ଉଚ୍ଛୃଙ୍ଖଳ ଜୀବନ କଟାଉଥିଲେ, ତାର ସୁବିଧା ନେଇ ଡୋଲୋହଭ୍ ସିଧା ତା ଘରକୁ ଚାଲି ଆସିଥିଲା, ପିଏରେ ତାକୁ ରହିବାକୁ ଜାଗା ଦେଇଥିଲା, ଟଙ୍କା ବି ଉଧାର ଦେଲା । ପିଏରେ ମନେ

ପକାଇଲା କପରି ଏଲେନ୍ ହସି ହସି ଡୋଲୋହଭ୍ ତାଙ୍କ ଘରେ ନ ରହୁ ବୋଲି ଆପତ୍ତି କରିଥିଲା, କେମିତି ଡୋଲୋହଭ୍ ତା ଆଗରେ ତା ସ୍ତ୍ରୀର ରୂପକୁ ପ୍ରଶଂସାକରି ବ୍ୟଙ୍ଗ କରିଥିଲା, ଆଉ କେମିତି ସେମାନେ ପିଟର୍ସବର୍ଗରୁ ମସ୍କୋ ଆସିବା ପର୍ଯ୍ୟନ୍ତ ଡୋଲୋହଭ୍ କେବେହେଲେ ସେମାନଙ୍କ ସାଙ୍ଗ ଛାଡ଼ି ନ ଥିଲା ।

ପିଏରେ ଭାବିଲା, "ସତେ ତ, ତା ଚେହେରା ଭାରି ସୁନ୍ଦର । ମୁଁ ତାକୁ ଚିହ୍ନିଛି । ମୁଁ ତାର ଉପକାର କରିବାକୁ ଯାଇ ପରିଶ୍ରମ କରିଛି, ତା ସଙ୍ଗେ ବନ୍ଧୁତା କରିଛି, ତାକୁ ସାହାଯ୍ୟ କରିଛି । ସେ ଯେପରି ଲୋକ, ଅନ୍ତତଃ ସେହି କାରଣରୁ ତ, ମୋ ନାଁରେ ଅପକୀର୍ତ୍ତି ରଟାଇ ମତେ ଲୋକହସା କରାଇବା ପାଇଁ ତାର ବେଶି ଲୋଭ ହେବ । ଏକଥା ଯଦି ସତ ହୋଇଥାଏ, ତେବେ ମୋର ଅପକାର କରିବାକୁ ତାର କେଡ଼େ ଆଗ୍ରହ ବଳି ପଡ଼ିବ ସେ କଥା ତ ମୁଁ ବୁଝିପାରୁଛି; କିନ୍ତୁ ସତ ହୋଇଥିଲେ ସିନା ! ଏହା ସତ ବୋଲି ତ ମୁଁ ବିଶ୍ୱାସ କରିପାରିବି ନାହିଁ । ବିଶ୍ୱାସ କରିବାକୁ ମୋର ଅଧିକାର ବି ନାହିଁ ।"

ଡୋଲୋହଭ୍ ନିଷ୍ଠୁର ହେଲାବେଳେ ତା ମୁହଁ କେମିତି ଦିଶେ ସେ କଥା ବି ପିଏରେ ମନେ ପକାଇଲା, ସେହି ଯେତେବେଳେ ସେଥର ପୁଲିସ୍ କର୍ମଚାରୀ ଜଣକୁ ଭାଲୁ ପିଠିରେ ବାନ୍ଧିଦେଇ ଡୋଲହଭ୍ ତାକୁ ପାଣିରେ ପକାଇ ଦେଲା, ଆଉଥରେ ଯେପରି ସେ ଗୋଟାଏ ଲୋକକୁ ତା ସଙ୍ଗରେ ଲଢ଼ିବାକୁ ଡାକଦେଲା; ଅଥଚ ଲୋକଟା କୌଣସି ପ୍ରକାରେ ତାର କିଛି ଅନିଷ୍ଟ କରିନଥିଲା କି ତାକୁ ଚିଡ଼େଇ ନଥିଲା । ଆଉଥରେ କେମିତି ସେ ଗୋଟିଏ ସ୍ଲେଜ୍‌ଗାଡ଼ିର ଚାଳକର ଘୋଡ଼ାକୁ ପଛଆଡ଼ୁ ପିସ୍ତଲ୍‌ରେ ଗୁଳିମାରି ମାରି ପକାଇଲା । ସେ ମନେପକାଇଲା ଡୋଲୋହଭ୍ ଯେତେବେଳେ ତା ଆଡ଼କୁ ଅନାଉଁଥାଏ, ତା ମୁହଁରେ ସେହି କ୍ରୂରଭଙ୍ଗୀ ଫୁଟି ଉଠୁଥାଏ ।

ପିଏରେ ଭାବୁଥାଏ "ହଁ ଲୋକଟା ଦ୍ୱନ୍ଦ୍ୱଯୁଦ୍ଧ ଲଢ଼ିବାକୁ ରହିଛିଟାଏ । ତା ପକ୍ଷରେ ଗୋଟାଏ ମଣିଷକୁ ପ୍ରାଣରୁ ମାରିଦେବା କିଛି ନୁହେଁ । ସେ

ଭାବୁଥିବ ସମସ୍ତେ ତାକୁ ଡରନ୍ତି । ସେ କଥା ଭାବି ତାକୁ ବୋଧହୁଏ ଭଲ ଲାଗୁଥିବ । ମତେ ବି ଭାବିବାକୁ ପଡ଼ିବ ଯେ ମୁଁ ତାକୁ ଡରୁଛି । ପ୍ରକୃତରେ ବି ମୋର ତାକୁ ଡର ।” ପିଏରେ ଭାବୁ ଭାବୁ ପୁଣି ତାକୁ ଲାଗିଲା ତା ଅନ୍ତର ଭିତରୁ କଣ ଗୋଟାଏ ଭୟଙ୍କର ବୀଭତ୍ସ ଚିନ୍ତା ଉପରକୁ ଉଠିଆସୁଛି । ଡୋଲହଭ୍, ଡେନସଭ୍ ଓ ରୋସ୍ତଭ୍ ତାର ମୁହାଁ ମୁହିଁ ବସି ଭାରି ଫୂର୍ତ୍ତି କରୁଥାନ୍ତି । ରୋସ୍ତଭ୍ ମନ ଆନନ୍ଦରେ ତାର ଦୁଇ ବନ୍ଧୁଙ୍କ ସଙ୍ଗେ କଥା ଗପୁଥାଏ, ତହିଁରୁ ଜଣେ ତ ଏକ ଅଶ୍ୱାରୋହୀ ସୈନ୍ୟବାହିନୀର ଜଣେ ପ୍ରସିଦ୍ଧ କର୍ମଗୃହୀ, ଆଉ ଜଣକ ଏକ ଅତି ଚରିତ୍ରହୀନ ଭୟଙ୍କର ଦ୍ୱନ୍ଦ୍ୱ-ଯୋଦ୍ଧା, ଆଉ ସେ ମଝିରେ ମଝିରେ ପିଏରେ ଆଡ଼କୁ ବ୍ୟଙ୍ଗ ଚାହାଣିରେ ଅନାଇଁ ଦେଉଥାଏ । ପିଏରେର ଚେହେରାଟା ସେଦିନର ଭୋଜରେ ସମସ୍ତଙ୍କ ନଜରରେ ପଡ଼ୁଥାଏ । ଏକ ପ୍ରକାଣ୍ଡ ଶରୀର, ଅନ୍ୟମନସ୍କ ରହି ଆଉ କଣ ଭାବୁଥିଲା ପରି ହାବଭାବ । ରୋସ୍ତଭ୍ ପିଏରେ ପ୍ରତି ଅପ୍ରସନ୍ନ ଥାଏ । ସେହି ତରୁଣ ଘୋଡ଼ସବାର ସୈନିକର ଦୃଷ୍ଟିରେ ପିଏରେ ଯେ ଜଣେ ଅସାମରିକ ଧନୀବ୍ୟକ୍ତି, ଆଉ ଏକ ପରମାସୁନ୍ଦରୀ ସ୍ତ୍ରୀର ସ୍ୱାମୀ, ତାର ଏ ପରିଚୟ ଆଦୌ ରୋସ୍ତଭର ମନକୁ ସୁଖକର ଲାଗୁନଥିଲା । ବରଂ ରୋସ୍ତଭ୍‌ର ଆଖିରେ ସେ ଯେପରିକି ଗୋଟିଏ ବୁଢ଼ୀ ପରି । ଏ ହେଲା ପ୍ରଥମ କଥା । ଦ୍ୱିତୀୟରେ, ପିଏରେ ଅନ୍ୟମନସ୍କ ରହି କି ଭାବନାରେ ବୁଡ଼ି ରହିବା ଅବସ୍ଥାରେ ରୋସ୍ତଭକୁ ଚିହ୍ନି ପାରି ନ ଥିଲା କି ରୋସ୍ତଭ୍ ତାକୁ ନମସ୍କାର ଜଣାଇଲାବେଳେ ପିଏରେ ପ୍ରତିନମସ୍କାର ବି କରି ନଥିଲା । ସେମାନେ ଯେତେବେଳେ ସମ୍ରାଟଙ୍କ ଶୁଭକାମନା କରି ମଦ ପିଇବେ ବୋଲି ଠିଆ ହୋଇପଡ଼ିଲେ, ପିଏରେ ତାର ଭାବନାରେ ବୁଡ଼ି ରହି ଠିଆ ହେଲାନାହିଁ କି ଗିଲାସ ଧରିଲା ନାହିଁ ।

ରୋସ୍ତଭ୍ ତା ଆଡ଼କୁ ରାଗଜରଜର ଉତ୍ତେଜିତ ଚାହାଣିରେ ଅନାଇଁ ଗର୍ଜନକଲା, “ଆପଣ ଏ କଣ କରୁଛନ୍ତି ? ଆପଣଙ୍କୁ ଶୁଭୁ ନାହିଁକି ? ଆମର ସମ୍ରାଟଙ୍କ ଦୀର୍ଘଜୀବନ ଓ ପୂର୍ଣ୍ଣ ସ୍ୱାସ୍ଥ୍ୟ କାମନା କରିବା ଆସନ୍ତୁ ।”

ପିଏରେ ଦୀର୍ଘଶ୍ୱାସ ପକାଇଲା, କଥା ମାନିଲା, ଠିଆହୋଇ-ପଡ଼ିଲା । ଗିଲାସକୁ 'ପାଟିରେ ଲଗାଇ ପିଇ ଶେଷକଲା । ସମସ୍ତେ

ବସିପଡ଼ିବାପାଇଁ ଅପେକ୍ଷା କଲା । ତାପରେ ବସିପଡ଼ି ମନଖୋଲା ହସ ହସି ରେସ୍ତଭ୍ ଆଡ଼କୁ ବୁଲିପଡ଼ି କହିଲା, "ଆରେ, ମୁଁ ଆପଣଙ୍କୁ ଚିହ୍ନି ପାରିଲି ନାହିଁ ।" କିନ୍ତୁ ରେସ୍ତେଭ୍ ତା କଥା ଶୁଣିଲା ବି ନାହିଁ । ସେ ପାଟି କରୁଥାଏ "ଜୟ ।"

ଡୋଲୋହଭ୍ ରେସ୍ତହଭ୍‌କୁ କହିଲା, "ପୂର୍ବ ପରିଚୟଟା ପୁଣି ଯୋଡ଼ୁନା—"

ରେସ୍ତଭ୍ କହିଲା, "ଗରଜ ପଡ଼ିଛି । ସେଇଟା ଗୋଟାଏ ଅପଦାର୍ଥ ।"

ଡେନିସଭ୍ କହିଲା, "ଆରେ ବାବୁ, ସୁନ୍ଦରୀ ସ୍ତ୍ରୀମାନଙ୍କ ସ୍ୱାମୀମାନଙ୍କ ପ୍ରତି ମିଠା ବ୍ୟବହାର କରିବା ଦରକାର ।"

ପିଏରେ ସେମାନଙ୍କ କଥା ଶୁଣିପାରିଲା ନାହିଁ; କିନ୍ତୁ ସେ ଜାଣିପାରୁଥାଏ ସେମାନେ ତାହାରି କଥା ପକାଇଛନ୍ତି । ସେ ନାଲି ପଡ଼ିଯାଇ ମୁହଁ ବୁଲାଇଦେଲା ।

ଡୋଲୋହଭ୍ କହିଲା, 'ବେଶ୍ ଏଥର ଆମେ ସୁନ୍ଦରୀ ସ୍ତ୍ରୀମାନଙ୍କ ଶୁଭକାମନା କରି ମଦ ପିଇବା"—ତାର ମୁହଁ ଗମ୍ଭୀର ଦିଶୁଥାଏ; କିନ୍ତୁ ଓଠକଣରେ ହସ ଛପି ରହିଥାଏ । ସେ ପିଏରେ ଆଡ଼କୁ ବୁଲି ପଡ଼ିଲା କହିଲା, "ସୁନ୍ଦରୀ ସ୍ତ୍ରୀମାନଙ୍କ ଶୁଭକାମନା କରିବା ଆସ ପ୍ରେଟ୍ରୁସା । ପିଏରେ ତାଙ୍କନାଁ ଆଉ ତାଙ୍କ ପ୍ରେମିକମାନଙ୍କର ।"

ପିଏରେ ଡୋଲହଭ୍‌ର ମୁହଁକୁ ଚାହିଁଲାନାହିଁ କି ତା କଥାର କିଛି ଉତ୍ତର ଦେଲାନାହିଁ । ସେ ଆଖି ତଳକୁ କରି ମଦ ଶୋଷିଲା । କୁତୁଜଭଙ୍କ ସଙ୍ଗୀତର ସ୍ୱରଲିପି କାଗଜ ଧରି ବପରଣି ବାଣ୍ଟୁଥାଏ । ପିଏରେ ଜଣେ ସମ୍ମାନିତ ଅତିଥି ବୋଲି ତାହା ପାଖରେ ସେଥିରୁ ଖଣ୍ଡିଏ ଥୋଇଦେଲା । ପିଏରେ ତାକୁ ନେଇଥାନ୍ତା, କିନ୍ତୁ ଡୋଲୋହଭ ଆଗ ବୁଲିପଡ଼ି ନଇଁପଡ଼ି ତା ହାତରୁ ତାକୁ ଓଟାରିନେଇ ପଢ଼ିବାକୁ ଲାଗିଲା । ପିଏରେ ଡୋଲୋହଭ ଆଡ଼କୁ ଅନାଇଲା । ପୁଣି ଆଖି ନୁଆଁଇଲା ।

ସେହି ସ୍ଲେଜରେ ବସିଥିଲାଯାକେ ଅତି ଭୟଙ୍କର ଆଉ ସାଭତ୍ର ହୋଇ ଯେଉଁ ଏକ ଭାବ ତାକୁ ଯନ୍ତ୍ରଣା ଦେଉଥିଲା, ହଠାତ୍ ସେ ତାକୁ ଅଭିଭୂତ କରି ପକାଇଲା । ସେ ଟେବୁଲ ଉପରେ ଉହୁଙ୍କେଇ ଅଜାଡ଼ି ଦେଲା ତାର ପ୍ରକାଣ୍ଡ ଦେହକୁ । ଗର୍ଜନ କଲା, "ଖବର୍ଦ୍ଦାର, ସେଇଟା ନେବାକୁ ଏଡ଼େ ସାହସ ଦେଖାଅ ନାହିଁ ।"

ତାର ପାଟି ଶୁଣି, ପୁଣି କାହା ଉପରକୁ ଗର୍ଜୁଛି ତାକୁ ଦେଖି ନେସ୍‌ଭିଚ୍‌ସ୍କି ଓ ତାଙ୍କ ଡାହାଣପାଖେ ବସିଥିବା ଆଉ ଜଣେ ଡରତର ହୋଇ ଆତଙ୍କରେ ପିଏରେ ଆଡ଼କୁ ବୁଲି ପଡ଼ିଲେ ।

ଆତଙ୍କିତ ସ୍ୱରରେ ଫୁସ୍‌ଫୁସ୍ ହୋଇ କଥା ଶୁଭିଲା "ଚୁପ ହଉନ୍ତୁ, ଚୁପ ହଉନ୍ତୁ, ଏ କଣ କରୁଛନ୍ତି !"

ଡୋଲହଭ୍ ତାର ପରିଷ୍କାର ଖୁସି ଖୁସି ନିଷ୍ଠୁର ଆଖି ଟେକି ପିଏରେକୁ ଅନାଇଲା, ମୁହଁରେ ସେହି ମୃଦୁକ ହସ । ଯତେ ଯେପରି ତା ହସ କହୁଥାଏ "ଭଲହେଲା, ଏଇଆ ତ ମୁଁ ଖୋଜୁଥିଲି ।"

ଡୋଲୋହଭ ପରିଷ୍କାର ସ୍ୱରରେ କହିଲା, "ମୁଁ ଏଇଟା ଆଉ ଛାଡ଼ିବି ନାହିଁ ।" ପିଏରେ କଳାକାଠ ପଡ଼ିଯାଇଥାଏ, ତାର ଓଠ ଥରୁଥାଏ । ସେ କାଗଜଟା ଛଡ଼େଇନେଲା । ସେ କହିଲା, "ତୁ, ତୁଟା ବଦମାସ୍ । ମୋ ସଙ୍ଗେ ଦ୍ୱନ୍ଦ୍ୱ ଯୁଦ୍ଧ ଲଢ଼ିବାକୁ ମୁଁ ତତେ ଆହ୍ୱାନ କଲି ।"

ସେ ଚୌକିକୁ ପଛକୁ ଠେଲିଦେଇ ଟେବୁଲ ପାଖରୁ ଉଠି ଆସିଲା । ସେ ଯେମିତି ଏଇଆ କହି ଉଠିପଡ଼ିଲା, ସଙ୍ଗେ ସଙ୍ଗେ ସେ ଅନୁଭବ କଲା ଯେ ଗଲା ଚବିଶି ଘଣ୍ଟାଯାକ ତା ମନରେ ଯେ ଆନ୍ଦୋଳନ ଚାଲିଥିଲା, ତା ସ୍ତ୍ରୀ ଦୋଷୀ କି ଦୋଷୀ ନୁହେଁ ବୋଲି, ହଁ ଦୋଷୀ ବୋଲି ସେ ପ୍ରଶ୍ନର ଉତ୍ତର ମିଳିଗଲା । ସେ ଉତ୍ତର ଚୂଡ଼ାନ୍ତ, ଆଉ ସେଥିରେ ବିବାଦ ନ ଥିଲା । ତା ସ୍ତ୍ରୀ ପ୍ରତି ତାର ଘୃଣା ଆସିଲା, ଚିରଦିନ ସକାଶେ ତାଠୁଁ ସେ ଛିଣ୍ଡିଗଲା । ଡେନସଭ୍ ରେସ୍ତଭକୁ ବାରମ୍ବାର ଅନୁରୋଧ କଲା ଯେ ଏ ଦ୍ୱନ୍ଦ୍ୱ ଲଢ଼େଇ ଘଟନା ସଙ୍ଗରେ ସେ ମୋଟେ ସମ୍ପୃକ୍ତ ହେବା

ଉଚିତ ନୁହେଁ, କିନ୍ତୁ ରୋଷ୍ଟଭ ଡୋଲୋହଭର ସହପକ୍ଷ ହେବାକୁ କଥା ଦେଇଦେଲ । ନେସ୍‌ଭିସ୍କି ପିଏରେର ସହପକ୍ଷ ହୋଇଥାନ୍ତି । ଖିଆପିଆ ସରିଲାପରେ ରୋଷ୍ଟଭ ତାଙ୍କ ସଙ୍ଗେ କଥାଭାଷା ହେଲ ଯେ ଦ୍ୱନ୍ଦ୍ୱଯୁଦ୍ଧ ଲାଗି କି କି ବନ୍ଦୋବସ୍ତ କରିବାକୁ ପଡ଼ିବ । ପିଏରେ ଘରକୁ ଚାଲି ଯାଇଥାଏ; କିନ୍ତୁ ବହୁତ ରାତିଯାକେ ରୋଷ୍ଟଭ ଡେନିସଭ ଓ ଡୋଲୋହଭ କ୍ଲବରେ ଥିଲେ, ଜିପ୍‌ସୀ ଜାତିର ଗାଇଲବାଲାମାନେ ଓ ଅନ୍ୟ ଗାୟକମାନେ ଗୀତ ବୋଲୁଥାନ୍ତି· ସେମାନେ ଶୁଣୁଥାନ୍ତି ।

କ୍ଲବ ଘର ପାହାଚରେ ରୋଷ୍ଟଭଠାରୁ ବିଦାହେଲାବେଳେ ଡୋଲୋହଭ ତାକୁ କହିଲ, "ହଉ, ନମସ୍କାର, କାଲି ସୋକୋଲନିକରେ ଦେଖା ହେବା ।"

ରୋଷ୍ଟଭ ପଚାରିଲା ନିରୁଦ୍‌ବିଗ୍ନ ଲାଗୁଛି ତ ?"

ଡୋଲହଭ ଅଟକି ଠିଆହେଲା ।

କହିଲ "ଋଇଥା, ଦ୍ୱନ୍ଦ୍ୱ ଯୁଦ୍ଧରେ କେମିତି ଜିତିବାକୁ ହୁଏ ମୁଁ ଦି'ପଦ କଥାରେ ସେ ଗୁପ୍ତ ରହସ୍ୟ ତମକୁ ବୁଝାଇ ଦେଉଛି । ଦ୍ୱନ୍ଦ୍ୱ ଯୁଦ୍ଧ ଲଢ଼ିବ ବୋଲି ତୁମେ ଯଦି ତୁମର ସମ୍ପତ୍ତିବାଡ଼ି କାହାକୁ ଦେବ, ସେ ବିଷୟରେ ଉଇଲ କରିଦେବ, କି ବାପା ବୋଉଙ୍କ ପାଖକୁ ଲମ୍ବା ଲମ୍ବା ଚିଠି ଲେଖିବ, କି ଯଦି ଭାବିବ ଯେ ତୁମେ ଦ୍ୱନ୍ଦ୍ୱ ଯୁଦ୍ଧରେ ମରି-ଯାଇପାର, ତେବେ ତେମେ ମୂର୍ଖ, ତେମେ ନିଶ୍ଚୟ ମରିବ ; କିନ୍ତୁ ତୁମେ ଯଦି ମନ ଦୃଢ଼ କରିବ ଯେ ଆର ପକ୍ଷକୁ ତୁମେ ନିଶ୍ଚୟ ମାରିଧକାଇବ, ଯେତେ ଚଞ୍ଚଳ ପାରିବ ସେତେ ଚଞ୍ଚଳ ତାର ଜୀବନ ନେବ, ଆଉ ନିଶ୍ଚିତ ଭାବେ ତାକୁ ଅବଶ୍ୟ ତୁମେ ମାରି ପକାଇବ, ତେବେ ସବୁ ଠିକ୍ ହୋଇ ଯିବ । କୋସ୍ତ୍ରୋମାର ବୋଲି ଜଣେ ଲୋକ ଥିଲା ଯେ ସେ ଭାଲୁ ମାରୁଥିଲା । ସେ ମତେ କହୁଥିଲ, "ଭାଲୁକୁ ନ ଡରେ କିଏ ? କିନ୍ତୁ ଆସୁ ଗୋଟାଏ ଭାଲୁ, ତମ ହାବୁଡ଼େ ପଡ଼ୁ, ତମର ସବୁ ଭୟ ଉଭେଇ ଯିବ । ତେମେ ସେତେବେଳେ ଖାଲି ଏତିକି ଭାବିବ ଯେ ଏଇଟା ପଳାଇ ନ ଯାଆନ୍ତା କି ! ବେଶ୍, ମତେ ବି ଅବିକଳ ସେମିତି ଲାଗୁଛି । ହଉ, ନମସ୍କାର ।"

ତହିଁଆର ଦିନ ସକାଳୁ ଆଠଟାବେଳେ ପିଏରେ ଓ ନେସ୍‌ଭିଟସ୍କି ଯାଇ ସଲକନଙ୍କ ଜଙ୍ଗଲରେ ଖୋଲା ଜାଗାରେ ପହଞ୍ଚିଲାବେଳକୁ ଡୋଲହଭ, ଡେନସଭ ଆଉ ସେମାନେ ସେଠି ପହଞ୍ଚି ସାରିଥାନ୍ତି । ପିଏରେର ଭାବ ଏହିପରି ଥାଏ, ଯେପରିକି ସେ ଚିନ୍ତାରେ ମଗ୍ନ, ଯେପରିକି ଉପସ୍ଥିତ ବିଷୟ ସଙ୍ଗରେ ତାର କିଛି ସମ୍ପର୍କ ନାହିଁ । ତା ମୁହଁ ଶୁଖିଲା ସେମିତା ହୋଇ ହଳଦିଆ ଦିଶୁଥାଏ । ସେ ଅନ୍ୟମନସ୍କ ହୋଇ ଯ୍ୟାଡ଼ୁକୁ ସ୍ୟାଡ଼ୁକୁ ଅନାଇଲା । ଆଖି ମିଞ୍ଜି ମିଞ୍ଜି କଲା, ଯେପରିକି ଆଖି ଝଲସା ଖରାରେ ତା ଆଖି ମିଞ୍ଜି ମିଞ୍ଜି ହୋଇଯାଉଛି । ଯୋଡ଼ିଏ କଥା ଭାବି ଭାବି ସେ ଚିନ୍ତାରେ ବୁଡ଼ି ରହିଥାଏ । ଗୋଟାଏ ତ ତା ସ୍ତ୍ରୀର ଦୋଷ କଥାଟା, ରାତିଯାକ ଅନିଦ୍ରା ହୋଇ ଭାବି ଭାବି ତାର ଆଉ ସେ ବିଷୟରେ ଟିକିଏ ବୋଲି ସନ୍ଦେହ ନଥାଏ । ଆଉ କଥାଟା ହେଉଛି, ଡୋଲୋହଭର ନିର୍ଦ୍ଦୋଷପଣ । ପିଏରେ ଭାବୁଥାଏ ଯେ ଯେଉଁ ଡୋଲୋହଭ ଲୋକଟା ତାର କିଛି ନୁହେଁ, ସେ ଲୋକର ମର୍ଯ୍ୟାଦା ଜଗି ରଖିବାକୁ ସେ କୌଣସିମତେ ବାଧ୍ୟ ନୁହେଁ । ପିଏରେ ପୁଣି ଭାବିଲା, "ତା ପରିବର୍ତ୍ତେ ମୁଁ ସେ ଅବସ୍ଥାରେ ଥିଲେ ମୁଁ ବି ହୁଏତ ସେଇଆ କରିଥାନ୍ତି । ତେବେ ଏ ଦ୍ୱନ୍ଦ୍ୱ ଯୁଦ୍ଧ କାହିଁକି ? ଏ ହତ୍ୟା କାହିଁକି ? ହୁଏତ ମୁଁ ତା ଜୀବନ ନେବି, ନହେଲେ ତା ବନ୍ଧୁକର ଗୁଳି ମୋ ମୁଣ୍ଡରେ କି କହୁଣିରେ କି ଆଣ୍ଠୁରେ ଆସି ବାଜିବ ।" ତା ମନର ଏକାଗ୍ର କାମନା ସେତେବେଳେ ଥାଏ ଏଠୁ ପଳାଇଯାଆନ୍ତି, ଦଉଡ଼ି ପଳାନ୍ତି । କେଉଁଠି ହେଲେ ଯାଇ ପଶିଯାଆନ୍ତି କି"—କିନ୍ତୁ ଯେଉଁ ମୁହୂର୍ତ୍ତରେ ତା ମନରେ ଏସବୁ ଭାବନା ଚାଲିଥାଏ, ଠିକ୍ ସେତିକିବେଳେ ସେ ବୁଲିପଡ଼େ, ତା ମୁହଁରେ ଦିଶୁଥାଏ ଏକ ଧୀର ଶାନ୍ତ ଅସମ୍ପୃକ୍ତ ଭଙ୍ଗୀ, ଯାହାକୁ ଦେଖିଲେ ତା ପ୍ରତି ସହପକ୍ଷମାନଙ୍କର ମନରେ ସମ୍ଭ୍ରମ ଆସେ । ସେ ବୁଲି ପଡ଼ି ପଚାରେ, "ଚଞ୍ଚଳ ଆରମ୍ଭ ହେବନା ?" ନ ହେଲେ, "ଆମେ ପ୍ରସ୍ତୁତ ହେଲୁଣି ତ ?

ସବୁ ପ୍ରସ୍ତୁତ ହେଲା । ଦୁଇ ପକ୍ଷର ସୀମା ଚିହ୍ନଟ କରିବା ପାଇଁ ତଳେ ବରଫ ଉପରେ ଖଣ୍ଡାମାନ ପୋତାହେଲା । ପିସ୍ତଲରେ ଗୁଳି ପଶିଲା ।

ଯେତେବେଳେ ନେସ୍‌ଭିଚସ୍କି ପିଏରେ ପାଖକୁ ଯାଇ କହିଲେ, କାଉଣ୍ଟ, ଆପଣ ମତେ ଆପଣଙ୍କ ସହପକ୍ଷ ହେବାକୁ ବାଛି ଯେଉଁ ସମ୍ମାନ ଦେଇଛନ୍ତି ଓ ମୋ ଉପରେ ଯେଉଁ ବିଶ୍ୱାସ ରଖିଛନ୍ତି, ସେଥିଲାଗି ଏଇ ଗୁରୁତ୍ୱପୂର୍ଣ୍ଣ ମୂହୂର୍ତ୍ତରେ, ଏଇ ଅତି ଗୁରୁତ୍ୱପୂର୍ଣ୍ଣ ମୂହୂର୍ତ୍ତରେ ମୁଁ ଯଦି ଆପଣଙ୍କ ଆଗରେ ପୂର୍ଣ୍ଣ ସତ୍ୟକୁ ପ୍ରକାଶ ନ କରିବି, ତେବେ ମୁଁ ନିଜକୁ ସେହି ସମ୍ମାନ ଓ ବିଶ୍ୱାସର ଯୋଗ୍ୟ ବୋଲି ଭାବିପାରିବି ନାହିଁ । ମୋ ବିବେଚନାରେ ଏ କଳି ପାଇଁ ଯଥେଷ୍ଟ କାରଣ ନାହିଁ । ଏ ଅହେତୁକ, ଏଥିଲାଗି ରକ୍ତପାତ କରିବା ଅଯଥାର୍ଥ ।···ଆପଣ ଠିକ୍ କରି ନାହାନ୍ତି । ଆପଣଙ୍କର ଠିକ୍ ହୋଇନାହିଁ, ଆପଣ ହଠାତ୍ ରାଗିଗଲେ···"

ପିଏରେ କହିଲା "ହଁ, ସେକଥା ସତ, ସେଇଟା ନିହାତି ମୂର୍ଖାମି", "ତାହେଲେ ଅନୁମତି ଦିଅନ୍ତୁ ଯେ ଯାହା ଘଟିଯାଇଛି, ସେଥିପାଇଁ ଆପଣ ଦୁଃଖ ପ୍ରକାଶ କରୁଛନ୍ତି ବୋଲି ମୁଁ ଜଣାଇଦେବି । ମୋର ପୂର୍ଣ୍ଣ ବିଶ୍ୱାସ ଯେ ଆମର ପ୍ରତିପକ୍ଷମାନେ ଆପଣଙ୍କ କ୍ଷମାପ୍ରାର୍ଥନା ଗ୍ରହଣ କରିବାକୁ ସ୍ୱୀକୃତ ହେବେ" ନେସ୍‌ଭିସ୍କି କହିଲେ (ଅନ୍ୟ ଯେତେଲୋକ ସେ ଦ୍ୱନ୍ଦ୍ୱଯୁଦ୍ଧରେ ସାହାଯ୍ୟ କରୁଥିଲେ, ସେମାନେ ଯେପରି ଭାବୁଥିଲେ ଓ ସେଭଳି ସ୍ଥଳେ ଯେତେଲୋକ ଥାଆନ୍ତି, ସେମାନେ ଯେପରି ଭାବନ୍ତି ନେସ୍‌ଭିଚସ୍କି ବି ସେହିପରି ଭାବି ନିଜର ବିଶ୍ୱାସ ଜନ୍ମାଇ ପାରୁନଥିଲେ ଯେ ଗୋଟାଏ କଳିଆରୁ ଶେଷରେ ସତକୁ ସତ ଗୋଟାଏ ଦ୍ୱନ୍ଦ୍ୱଯୁଦ୍ଧ ହେବ) । ସେ ପୁଣି କହିଲେ, "ଆପଣ ଜାଣନ୍ତି କାଉଣ୍ଟ, ଯାହା ଥରେ ହେଲେ ଆଉ ତାକୁ ଲେଉଟାଇ ଅଣା ହୋଇପାରିବ ନାହିଁ । ଅବସ୍ଥାକୁ ସେତେ ସଙ୍କଟ ନ ନେଇ ଆପଣା ଭୁଲ୍ ସ୍ୱୀକାର କରିବା ଯଥେଷ୍ଟ ଅଧିକ ବଡ଼ପଣ । କୌଣସି ପକ୍ଷରୁ ଅପର ପକ୍ଷକୁ ସେତେ ଅଧିକ ଅପମାନ ଦିଆ ହୋଇନାହିଁ । ମତେ ଅନୁମତି ଦିଅନ୍ତୁ ମୁ କହିଦିଏଁ ଯେ······"

ପିଏରେ କହିଲା "ନା, ଆପଣ ଏ କ'ଣ କହୁଛନ୍ତି ?"

"କିଛି ଦରକାର ନାହିଁ ।" ସେ ପୁଣି କହିଲା, "ହେଲା ? ପ୍ରସ୍ତୁତ ତ ? ମତେ ଖାଲି କହି ଦିଅନ୍ତୁ କେଉଁ ଜାଗାକୁ ମୁଁ ଯିବି, ଆଉ କେମିତି ଯିବି ।" ସେ ହସି ହସି କଥା କହିଲା । ତା ହସ ଅସ୍ୱାଭାବିକ ପ୍ରକାରେ

ଶାନ୍ତ ଦିଶୁଥିଲା । ସେ ଗୋଟାଏ ପିସ୍ତଲ ଉଠେଇ ନେଲା, ଆଉ ପଗ୍ଭରି ବୁଝିନିଲା ଯେ କେମିତି ସେ ପିସ୍ତଲକୁ ଫୁଟେଇବାକୁ ହେବ । ତା ଆଗରୁ ତା ଜୀବନରେ କେବେ ସେ ପିସ୍ତଲ ଧରିନଥିଲା, କିନ୍ତୁ ଏ କଥା ସେ ସ୍ୱୀକାର କରିବାକୁ ଗ୍ଭହିଁଲା ନାହିଁ । ସେ ଫେର୍ କହିଲା,"ହଁ ହଁ ସତେ ତ, ମୁଁ ଭୁଲି ଯାଇଥିଲି ।"

ଜଣା ପଡ଼ୁଥାଏ ସେପଟେ ଡେନିସଭ୍ ବି ମିଳାମିଶା ପାଇଁ ଚେଷ୍ଟା କରୁଥାଏ । ଡୋଲୋହଭ୍ ତାକୁ କହୁଥାଏ —

"କ୍ଷମା ଫମା ମୁଁ ମାଗିବିନାହିଁ । ଆଦୌ ନୁହେଁ ।" ଡୋଲୋହଭ୍ ମଧ୍ୟ ନିର୍ଦ୍ଦିଷ୍ଟ ଜାଗାରେ ଯାଇ ଠିଆହେଲା ।

ଯେଉଁ ଜାଗା ଦ୍ୱନ୍ଦ୍ୱ ଯୁଦ୍ଧ ପାଇଁ ବଛା ହୋଇଥିଲା, ରାସ୍ତା ଉପରେ ଯେଉଁଠି ସେମାନେ ସେମାନଙ୍କ ସ୍ଲେଜ୍ ଗାଡ଼ିମାନ ଥୋଇଦେଇ ଆସିଥିଲେ ସେଠି ସେ ଜମା ଅଶୀ ପାହୁଣ୍ଡ ଦୂରରେ ପାଇନ୍ ବଣ ଭିତରେ ସେ ଜାଗା ଗୋଟିଏ ସାନ ଖୋଲା ଜାଗା । ତଳେ ବରଫ ପଡ଼ିଥିଲା ଯେ ଗତ କେତେ ଦିନର ଉଷୁମ ପାଗରେ ବରଫର ତଳ ତରଳି ଆସୁଥିଲା । ପ୍ରତିଦ୍ୱନ୍ଦ୍ୱୀ ଦୁହେଁ ପରସ୍ପରଠୁଁ ଗ୍ଭଳିଶ କଦମ ଅନ୍ତରରେ ରହିଲେ, ସଫା ଅରାକର ଦୁଇ ମୁଣ୍ଡ ପାଖେ । ସହପକ୍ଷମାନେ ସେ ଦୁହିଁଙ୍କ ଦୂରତା ମାପିବାକୁ ଗଲାବେଳେ ଯେଉଁଠୁ ଯାଇଥିଲେ, ସେଠୁ ଯେ ନେସ୍‌ଭିତ୍‌ସ୍କି ଓ ଡେନିସଭଙ୍କ ଖଣ୍ଡା ଦୁଇଟି ଯେଉଁଠି ପୋତା ହୋଇଥିଲା, ସେପର୍ଯ୍ୟନ୍ତ ସେହି ବହଳ ଓଦା ବରଫ ଉପରେ ସେମାନଙ୍କ ପାଦ ଚିହ୍ନ ରହିଗଲା । ଖଣ୍ଡା ଯୋଡ଼ିକ ଦୁଇପକ୍ଷର ସୀମା ଧଡ଼ି ଦେଖାଇବା ପାଇଁ ପରସ୍ପରଠୁ ଦଶ ପାହୁଣ୍ଡ ଦୂରରେ ପୋତା ହୋଇଥିଲା । କୁହୁଡ଼ି ରହିଥାଏ, ବରଫ ତଳେ ତଳେ ତରଳିବା ଲାଗି ରହିଥାଏ । କୁହୁଡ଼ି ଯୋଗୁଁ ବି ଗ୍ଭଳିଶି ପାହୁଣ୍ଡ ଦୂରରେ କିଛି ଦିଶୁନଥାଏ । ତିନି ମିନିଟ୍‌ରେ ସବୁ ପ୍ରସ୍ତୁତ ହୋଇଗଲା । ତଥାପି କାମ ଆରମ୍ଭ ହେଲା ନାହିଁ । କେହି ପାଟି ଫିଟାଉନଥାନ୍ତି ।

ଡୋଲୋହଭ କହିଲା, "ହଉ, ଏଥର ଆରମ୍ଭ କରାଯାଉ ।" ସେମିତି ମୁରୁକି ମୁରୁକି ହସି ପିଏରେ କହିଲା "ନିଶ୍ଚୟ ।"

ସେହି ବାତାବରଣରେ ଯେପରି କ ଶଙ୍କା ପୂରି ରହିଥାଏ । ଜଣା ପଡ଼ୁଥାଏ ଯେ ଯେଉଁ ଘଟଣାଟା ଏତେ ତୁଚ୍ଛ କାରଣରୁ ଆରମ୍ଭ ହୋଇ-ଥିଲା, ସେ ଘଟଣାକୁ ଆଉ କୌଣସି ମତେ ପଛକୁ ଫେରାଇ ହେବନାହିଁ । ଲାଗୁଥାଏ ଯେ ମଣିଷଙ୍କ ଇଚ୍ଛା ଉପରେ ନିର୍ଭର ନ କରି ଘଟନା ତା ସୁଖେ ଆଗକୁ ଆଗକୁ ମାଡ଼ି ଚାଲିଛି, ତା ବାଟେ ବାଟେ ସେ ଯିବ ହିଁ । ଆଗ ଡେନିସଭ୍ ମଝିର ସନ୍ଧିସ୍ଥ ଚାଲି ଆସି କହିଲା,

'ଦ୍ୱନ୍ଦ୍ୱ ଯୁଦ୍ଧ ବନ୍ଦ କରିବାକୁ ଯେତେ ଯେତେ ପ୍ରସ୍ତାବ ଦିଆଗଲା ଦୁଇ ପ୍ରତିପକ୍ଷ ତହିଁରୁ କୌଣସିଟିରେ ତ ରାଜି ହୋଇପାରିଲେ ନାହିଁ । ତେବେ ଏଥର ଦ୍ୱନ୍ଦ୍ୱଯୁଦ୍ଧ ଆରମ୍ଭ କରିଦେଲେ ଭଲ ହେବନାହିଁ ? ଏଥର ଦିହେଁ ପିସ୍ତଲ ଧରନ୍ତୁ, ମୁଁ 'ତିନି' ବୋଲି କହିଦେଲେ ଦିହେଁ ପରସ୍ପର ଆଡ଼କୁ ଆଗେଇ ଯିବେ ।

ଏପରି କହିଦେଇ ଡେନିସଭ ସେହି ସନ୍ଧିଗାର ପାଖକୁ ଚାଲି ଯାଉ ଯାଉ ରାଗରେ ଗର୍ଜିଲା ।

"ଏକ ! ଦୁଇ ! ତିନି !"

ଦିହେଁ ମଡ଼ାବାଟରେ ଆଗକୁ ଆଗକୁ ଚାଲିଲେ, ପରସ୍ପରର ପାଖ ପାଖ ହେଲେ । କ୍ରମେ କୁହୁଡ଼ି ଭିତରେ ସେମାନେ ପରସ୍ପରକୁ ନେଇ ପାରିଲେ । ଦ୍ୱନ୍ଦ୍ୱ ଯୁଦ୍ଧର ନିୟମ ଏଭଳି ଯେ ଦୁଇ ପ୍ରତିପକ୍ଷ ମଝିର ସୀମା ପାରି ଆଡ଼କୁ ଯେତେବେଳେ ମାଡ଼ିଯିବେ, ସେତେବେଳେ ଜଣେ ଆଉ ଜଣକ ଉପରକୁ ଗୁଳି ମାରିବାକୁ ଉଭୟଙ୍କର ଅଧିକାର ଅଛି ।

ଡୋଲୋହଭ ଧୀରେ ଧୀରେ ଦେଖୁଥାଏ, ହାତରେ ଧରିଥିବା ପିସ୍ତଲକୁ ଟେକୁ ବି ନଥାଏ । ପରିଷ୍କାର ଚକ୍ ଚକ୍ ଆଖିରେ ସେ ତାର ପ୍ରତିପକ୍ଷର ମୁହଁକୁ ଅନାଉଁଥାଏ । ସବୁବେଳେ ତା ମୁହଁ ଯେମିତି ଅଳ୍ପ ହସିଲାପରି ଦିଶେ ସେତେବେଳେ ବି ସେମିତି ଦିଶୁଥାଏ ।

ପିଏରେ ଭାବିଲା, "ତା ହେଲେ, ତାକୁ ଯେତେବେଳେ ଗୁଳି କରିବାକୁ ମୋ ମନ ହେବ ମୁଁ ସେତେବେଳେ ତାକୁ ଗୁଳି ମାରି ପାରିବି ।" 'ତିନି" ଶବ୍ଦଟି ଯେମିତି ତା କାନରେ ପଡ଼ିଲା, ସେମିତି

ସେ ତରତର ପାହୁଣ୍ଡ ପକାଇ ଆଗକୁ ମାଡ଼ିଗଲା । ସେ ଅମଡ଼ା ବାଟରେ ଚାଲୁଥାଏ ମଡ଼ାବାଟରେ ନୁହେଁ, ସେ ଯେଉଁ ବାଟରେ ଆଗେଇ ଗଲା ସେ ବାଟ ଉପରେ ଯେଉଁ ବରଫ ପଡ଼ିଥାଏ, ତା ଉପରେ ଆଉ କାହାରି ପାଦ ପଡ଼ି ନ ଥାଏ । ସେ ପିସ୍ତଲଟାକୁ ଡାହାଣ ହାତରେ ଧରିଥାଏ । ହାତକୁ ପୂରା ଲମ୍ବେଇ ଦେଉଥାଏ, ସତେ ଯେପରି ତାର ଆଶଙ୍କା କାଳେ ସେଇ ପିସ୍ତଲ ଫୁଟିଲେ ସେ ନିଜେ ମରିଯିବ । ସେ ବାଁ ହାତକୁ ପିଠି ପଛଆଡ଼େ ରଖିଥାଏ, ଯେମିତି ସେ ଭାବୁଛି ଯେ ଦୁଇ ହାତରେ ସେ ଡାହାଣ ହାତକୁ ଟିକିଏ ଦେବ, ଅଥଚ ସେ ଜାଣିଥାଏ ଯେ ସେପରି କରିବା ଦ୍ୱନ୍ଦ୍ୱ ଯୁଦ୍ଧର ନିୟମରେ ହେବ । ସେ ଛ' ପାହୁଣ୍ଡ ଆଗେଇଗଲା, ବାଟକୁ ଛାଡ଼ି ଦେଇ ବରଫ ଉପରେ ପାଦ ଥୋଇଲା, ସେଥିରୁ ପିଏରେ ତା ପାଦତଳକୁ ଘୁରି ଆଡ଼କୁ ଅନାଇଲା । ଖୁବ ତରତରରେ ସେ ଡୋଲୋହଭକୁ ଅନାଇଦେଇ ତା ଆଙ୍ଗୁଠିକୁ ଆଗକୁ ବଢ଼ାଇଲା । ପିସ୍ତଲ ଫୁଟାଇବାକୁ ଯେମିତି ଆଙ୍ଗୁଠି ଚିପିବାକୁ ପଡ଼େ ବୋଲି ତାକୁ ଦେଖାଇ ଦିଆ ହୋଇଥିଲା ସେମିତି, ସେ ପିସ୍ତଲଟା ଫୁଟେଇଲା ।

ଗୁଳି କଲେ ଏଡ଼େ ଜୋରରେ ଶବ୍ଦ ହେବ ବୋଲି ସେ ଭାବି ନଥିଲା । ଶବ୍ଦ ଶୁଣି ଚମକି ପଡ଼ିଲା । ତାପରେ ତା ନିଜ ମନର ଏ ଅବସ୍ଥା କଥା ଭାବି ପକାଇ ହସିଲା । ଖୁଣ୍ଟ ପରି ଠିଆ ହୋଇ ରହିଲା । କୁହୁଡ଼ି ଘୋଟିଥାଏ ବୋଲି ଗୁଳି ଫୁଟିବାର ଧୂଆଁ ଆହୁରି ବହଳହୋଇ ଘୋଟି ଥାଏ । ତେଣୁ ପ୍ରଥମେ ସେ ଆଗରେ କଣ ହେଉଛି, ତାହା ଦେଖି ପାରିଲା ନାହିଁ; କିନ୍ତୁ ତା ପ୍ରତିପକ୍ଷ ବି ତାକୁ ଲାଖି କରି ଗୁଳି ମାରିବ । ଗୁଳିଟା ଶବ୍ଦ ହେବ, ଏପରି ଯାହା ସେ ଆଶଙ୍କା କରୁଥିଲା, ତାହା ଶୁଭିଲା ନାହିଁ । ଡୋଲୋହଭ ତରତର ହୋଇ ତା ଆଡ଼କୁ ଚାଲି ଚାଲି ମାଡ଼ି ଆସୁଛି, ଏହି ଶବ୍ଦ ସେ ଶୁଣିଲା । ତାପରେ ଧୂଆଁ ଭିତରେ ଡୋଲୋହଭର ଆକୃତି ବି ଦେଖିପାରିଲା । ଗୋଟାଏ ହାତରେ ଡୋଲୋହଭ ତା ବାଁ କରକୁ ଚିପି ଧରିଥାଏ । ଆଉ ହାତ ଝୁଲି ପଡ଼ିଥାଏ, ସେହି ଅବସ୍ଥାରେ ସେ ପିସ୍ତଲଟାକୁ ମୁଠେଇ ଧରିଥାଏ । ତା ମୁହଁ ଶେଥା ପଡ଼ିଥାଏ । ରୋସ୍ତଭ ଧାଇଁ ଆସି ତାକୁ କଣ କହିବାରୁ ଡୋଲୋହଭ ଦାନ୍ତ ଚିପି ଚିପି

କହିଲା 'ନା ନା, କାମ ସରିନାହିଁ, କହିଦେଇ ସୀମା ଉପରେ ପୋତା ହୋଇଥିବା ଖଣ୍ଡା ଆଡ଼କୁ ଡୋଲୋହଭ ଟଳି ଟଳି କେତେ ପାହୁଣ୍ଡ ଆଗେଇ ଆସି ଖଣ୍ଡା ଆଖ ପାଖରେ ଯେଉଁ ବରଫ ଜମା ହୋଇଥାଏ, ସେ ତାର ଉପରେ ଟଳି ପଡ଼ିଲେ । ତା ବାଁ ହାତ ଯେଉଁ ହାତରେ ସେ ତା ଦେହର ବାଁ କଡ଼କୁ ଚପି ଧରିଥାଏ, ସେ ବାଁ ହାତ ରକ୍ତରେ ଜୁଡ଼ୁବୁଡ଼ୁ ହୋଇଥାଏ । ସେ ରକ୍ତକୁ ତାର କୋଟ୍ ଉପରେ ବୋଳି ଦେଲା ଓ ସେ ତା ଉପରେ ଆଉଜି ପଡ଼ିଲା । ତା ମୁହଁ ଶେତା ଦିଶୁଥାଏ, ଭ୍ରୂକୁଟୀ କୁଟିଳ ଦିଶୁଥାଏ, ଥରୁଥାଏ ।

"ଚାଲି ଆସ୍, ଡୋଲୋହଭ କହିବାକୁ ଚାହୁଁଥାଏ, କିନ୍ତୁ ଚ୍ —କହି ଅଟକିଗଲା· କଥା କହି ପାରୁ ନ ଥାଏ । ବଡ଼ କଷ୍ଟରେ କହିଲା ଚାଲି ଆସ । ପିଏରେ କାନ୍ଦ ଚପାଇଲା । କଇଁ କଇଁ·କାନ୍ଦ ଅଟକାଇ ପାରିଲା ନାହିଁ । ଡୋଲୋହଭ ପାଖକୁ ଧାଇଁଗଲା । ସେ ତ ସୀମା ଡେଇଁ ଆର ପାଖକୁ ଚାଲି ଯାଉଥାନ୍ତା; କିନ୍ତୁ ଡୋଲୋହଭ ପାଟି କଲା, ସୀମା ପାଖେ ଥା ।

ଡୋଲୋହଭ ଜାଣି ଚାହୁଁଛି—ପିଏରେ ତା ଧରି ପାରିଲା । ସୀମା ପାଖରେ ଠିଆ ହୋଇ ରହିଲା । ଦିହିଙ୍କ ଭିତରେ ମାତ୍ର ଦଶ ପାହୁଣ୍ଡ ଦୂରତା । ଡୋଲୋହଭ ମୁଣ୍ଡକୁ ତଳକୁ ମାଡ଼ିଲା । ଖୁବ୍ ଭୋକ ହେଲେ ଲୋଭରେ ଯେମିତି ମଣିଷ ଖାଦ୍ୟକୁ କାମୁଡ଼େ, ସେମିତି ବରଫକୁ କାମୁଡ଼ିଲା, ପୁଣି ମୁଣ୍ଡ ଟେକିଲା । ବସିପଡ଼ିଲା, ଠିଆ ହେବାକୁ ଚେଷ୍ଟା କଲା, ପୁଣି ବସିପଡ଼ିଲା । କେଉଁ ବାଗରେ ବସିଲେ ସେ ସ୍ଥିର ହୋଇ ରହି ପାରିବ ଟଳଟଳ ହେବନାହିଁ, ସେଇଆ ଖୋଜିବାକୁ ଚେଷ୍ଟା କରୁଥାଏ । ସେ ପାଟିରେ କଳେ ବରଫ ପୂରେଇଲା । ତାକୁ ଚୁଟୁମିଲା, ତା ଓଠ ଥରୁଥାଏ; ତଥାପି ସେ ମୁରୁକି ମୁରୁକି ହସୁଥାଏ । ତାର ଦେହରୁ ବଳ ଦୂରହିଁ ହୋଇ ସରି ଯାଉଛି । କେମିତି ତାକୁ ଠିକହେବ ସେଥିପାଇଁ ସେ ପ୍ରାଣପଣେ ଚେଷ୍ଟା କରୁଛି । ତା ନିଜ ଭିତରେ ଏଇ ଯେଉଁ ଟଣାଟଣି, ସେଥିଯୋଗୁଁ ତା ଆଖି ଜକଜକ ହେଉଥାଏ । ସେ ପିସ୍ତଲ ଟେକି ପିଏରେ ଆଡ଼କୁ ମୋହିଁଲା । ଲାଖ କଲା ।

ନେସ୍‌ଭିତ୍‌ସ୍କି ପିଏରେଙ୍କୁ ପାଟି କରି କହିଲେ, "କରପଟିଆ ହୋଇ ରହନ୍ତୁ, ତାଙ୍କ ପିସ୍ତଲର ମୁହଁ ଆଡ଼କୁ ନିଜକୁ ଖୋଲାଖୋଲି ସିଧାସଳଖ ଦେଖାଇ ରହନ୍ତୁ ନାହିଁ ।'

ଡୋଲୋହଭ୍ ପିଏରେର ଶତ୍ରୁ ପକ୍ଷ ହେଲେ ବି ସମ୍ଭାଳି ପାରିଲା ନାହିଁ, ପାଟି କଲା, "ପିସ୍ତଲ ଆଗରେ ମୁହାଁ ମୁହିଁ ଠିଆ ହୁଅନ୍ତୁ ନାହିଁ ।'

କିନ୍ତୁ ପିଏରେ ଠିଆ ହୋଇ ରହିଥାଏ । ଡୋଲୋହଭ ପ୍ରତି ତାର ଯେଉଁ ସହାନୁଭୂତି ଆସୁଥାଏ, ନିଜ ଉପରେ ଯେଉଁ ଗ୍ଲାନି ଅସୁଥାଏ, ସେଥିଯୋଗୁଁ ସେ ଶାନ୍ତ ମଧୁରଭାବେ ମୁ ଚୁକି ମୁ ଚୁକି ହସୁଥାଏ, ତାର ହାତ ଗୋଡ଼ ନିରାଶ୍ରୟ ଭାବରେ ଫଡ଼କି ରହିଥାଏ, ତାର ଓସାର ଛାତି ସିଧା ସଳଖେ ଡୋଲୋହଭ୍ ମୁହଁ ଆଡ଼କୁ ରହିଁ ରହିଥାଏ, ସେ ଶୋକ ସନ୍ତାପିତ ଦୃଷ୍ଟିରେ ଡୋଲୋହଭ ଆଡ଼କୁ ଅନାଇଁଥାଏ ।

ଡେନିସଭ୍, ରୋସ୍ତଭ୍ ନେସ୍‌ଭିତ୍‌ସ୍କି ଏ ଦୃଶ୍ୟ ଦେଖି ପିଏରେର କି ଅବସ୍ଥା ହେବାକୁ ଯାଉଛି ଭାବି ଆଖି ବୁଜି ପକାଇଲେ, ସେତିକିବେଳେ ଗୋଟାଏ ଗୁଳି ଫୁଟିବା ଶବ୍ଦ ହେଲା ଓ ସଙ୍ଗେ ସଙ୍ଗେ ଡୋଲୋହଭର କ୍ଷୁବ୍ଧ କ୍ରୁଦ୍ଧ ଚିତ୍କାର ଶୁଭିଲା ।

"ମୋ ଲକ୍ଷ ଫିଟିଗଲା ।" ସେ ନିରାଶ୍ରୟ ଭାବରେ ମୁହଁମାଡ଼ି ବରଫ ଉପରେ ଲମ୍ବିଗଲା ।

ପିଏରେର ମୁଣ୍ଡ ଭିତରେ ସେତେବେଳେ ଅସହ୍ୟ ଦୁଃଖର ଯନ୍ତ୍ରଣା, ସେ ଦି ହାତରେ ମୁଣ୍ଡକୁ ଚପି ଧରି ବୁଲି ପଡ଼ିଲା, ଜଙ୍ଗଲ ଭିତରକୁ ପଶିଗଲା । ବଡ଼ ପାଟିରେ କ'ଣ ସବୁ ଶବ୍ଦ କହୁଥାଏ । "ସବୁ ମୂର୍ଖତା, ମୂର୍ଖତା । ମୂର୍ଖ ନିର୍ବୋଧ ମୃତ୍ୟୁ ।" ମୁହଁ ଭ୍ରୂକୁଟି କରି ପାଗଳ ପରି ବାରମ୍ବାର ଏମିତି କହି ଲାଗିଥାଏ । ନେସ୍‌ଭିତ୍‌ସ୍କି ତାକୁ ବେକିଦେଇ ସଙ୍ଗରେ ଘେନି ଘରକୁ ଚାଲିଗଲେ ।

ଗୁଳିମାଡ଼ ବସିଥିବା ଡୋଲୋହଭକୁ ରୋସ୍ତଭ୍ ଓ ଡେନିସଭ୍ ସେ ଜାଗାରୁ ଉଠାଇ ନେଇ ଚାଲିଗଲେ । ବରଫ ଉପରେ ଯେଉଁ 'ସ୍ଲେଜ୍' ଗାଡ଼ିରେ ଲୋକେ ଯାଆନ୍ତି, ସେହି ସ୍ଲେଜ୍ ଗାଡ଼ିରେ ଡୋଲୋହଭକୁ

ଶୁଆଇ ଦିଆ ହୋଇଥାଏ । ସେ ଆଖି ବୁଜି ପଡ଼ିଥାଏ, ଏକଦମ୍ ଚୁପ୍‌ଚାପ୍ । ତାଙ୍କୁ ସେମାନେ ଯାହା ଯାହା ପଚାରୁଥା'ନ୍ତି ସେ ପଦେ ବି ଉତ୍ତର ଦେଉ ନ ଥାଏ; କିନ୍ତୁ ସେମାନେ ଯେମିତି ମସ୍କୋ ସହର ଭିତରେ ପଶିଲେ, ତାର ହଠାତ୍ ହୋସ୍ ଫେରିଆସିଲା, ନିଜେ ଖୁବ୍ ଚେଷ୍ଟା କରି ମୁଣ୍ଡ ଟେକିଲା ଓ ତା ପାଖରେ ବସିଥିବା ରୋଷ୍ଟଭ୍‌ର ହାତକୁ ସେ ଧରି ପକାଇଲା । ଡୋଲୋହଭର ମୁହଁରେ ଅପ୍ରତ୍ୟାଶିତ ଭାବେ ଯେଉଁ କରୁଣ କୋମଳ ଭାବଭଙ୍ଗୀ ଫୁଟିଉଠିଲା, ତାକୁ ନେଇ ରୋଷ୍ଟଭ ଆଶ୍ଚର୍ଯ୍ୟ ହୋଇଗଲା ।

"କେମିତି ଲାଗୁଛି ?" ରୋଷ୍ଟଭ୍ ପଚାରିଲା ।

"ଭାରି ଖରାପ । ସେକଥା ଛାଡ଼ି, "ଡୋଲୋହଭ୍ କହିଲା । ତା ସ୍ୱର ଭାଙ୍ଗି ଯାଉଥାଏ, କହିଲା, 'ଆମେ ଅଇଲୁ କୋଉଠି ? ମୁଁ ଜାଣିଛି ଯେ, ମସ୍କୋ ହେଲାଣି । ମୋ କଥା ଭାବୁନାହିଁ, ତା କଥା ଭାବୁଛି । ବିଚାରୀ ମାଇପିଟିକୁ ମୁଁ ମାରିପକାଇଲି ! ମାରିପକାଇଲି ! ମୋର ଏ ଦଶା ଶୁଣିଲେ ସେ ଆଉ ବଞ୍ଚିବ ନାହିଁ । ଏ ଧକ୍‌କା ସହିପାରିବ ନାହିଁ ।"

"କାହା କଥା କହୁଚ ?"

"ମୋ ବୋଉ କଥା । ସେଇ ମୋର ଧନ, ମୋ ସୁନା, ମୋ ଦେବତା, ମୋର ସବୁ ।" କହିଦେଇ ରୋଷ୍ଟଭ୍‌ର ହାତ ପାପୁଲିକୁ ଚିପି ଦେଇ ଡୋଲୋହଭ ପିଲାଙ୍କ ପରି ଭେଁ ଭେଁ କାନ୍ଦିଲା । ଟିକିଏ ଥଣ୍ଡା ପଡ଼ିଲାରୁ ସେ ରୋଷ୍ଟଭ୍‌କୁ ବୁଝେଇଲେ ଯେ, ସେ ତା ବୋଉ ସଙ୍ଗେ ରହେ, ଆଉ ଯଦି ତା ବୋଉ ଦେଖିବ ଯେ ସେ ମରୁଛି, ତା ବୋଉ ସେ ଦୁଃଖ ସେ ଧକ୍‌କା ସହିପାରିବ ନାହିଁ, ଭାଙ୍ଗି ପଡ଼ିବ । ଆଗ ଯାଇ ତା ମା' ମନକୁ ପ୍ରସ୍ତୁତ କରି ରଖିବାଲାଗି ସେ ରୋଷ୍ଟଭ୍‌କୁ ନେହୁରା ହେଲା ।

ତାର ସେ ଆଶା ପୂରଣ କରିବ ବୋଲି ରୋଷ୍ଟଭ୍ ଗାଡ଼ିରେ ବସି ଚାଲିଗଲା । ଏଇ ଡୋଲୋହଭ, ଯେ ଗୁଣ୍ଡା, ଦ୍ୱନ୍ଦ୍ୱଯୁଦ୍ଧରେ ଅପରାଜିତ ଏଇ ପ୍ରସିଦ୍ଧ ଡୋଲୋହଭ୍,—ସେଇ ଲୋକଟା ଯେ ମସ୍କୋ ସହରରେ ତା ମା ସଙ୍ଗରେ ଓ ତାର ଗୋଟିଏ କୁବ୍‌ଜା ଭଉଣୀ ସଙ୍ଗରେ ରହେ ଓ ପୁଅ ହିସାବରେ, ଭାଇ ହିସାବରେ ସେ ଏତେ ସ୍ନେହୀ, ଏତେ କୋମଳମନା— ଏଇ କଥା ଭାବି ଭାବି ରୋଷ୍ଟଭ୍ ଆଶ୍ଚର୍ଯ୍ୟ ହୋଇଗଲେ ।

ଯେଉଁଦିନ ଡୋଲୋହଭ ସଙ୍ଗେ ପିଏରେର ଦ୍ୱନ୍ଦ୍ୱଯୁଦ୍ଧ ଘଟିଥିଲା, ତହିଁ ଆରଦିନ ସକାଳେ ପିଏରେର ଚାକର ତାପାଇଁ କଫି ନେଇ ତା ପଢ଼ା ଘରକୁ ଗଲା. ଦେଖିଲା ଯେ, ପିଏରେ ଗୋଟାଏ ବସିବା ଆସନ ଉପରେ ଲମ୍ବହୋଇ ଶୋଇପଡ଼ିଛି, ତା ହାତରେ ତଥାପି ଥାଏ ଗୋଟାଏ ଖୋଲା ପଡ଼ିଥିବା ବହି ।

ତାର ନିଦ ଭାଙ୍ଗିଗଲା । ଉଠିପଡ଼ି ବହୁତ ବେଳଯାଏ ସେ ଚାରିଆଡ଼କୁ ଅନାଇଲା ଜାଣିପାରୁ ନ ଥାଏ ଯେ ସେ କେଉଁଠି ଅଛି ।

"ହଜୁରଙ୍କ ପାଖକୁ ଆସିବେ ବୋଲି କାଉଣ୍ଟେସ୍ ମତେ ପଚାରି ବୁଝିଆସିବାକୁ ପଠେଇଛନ୍ତି"—ଭୃତ୍ୟଟି କହିଲା ।

କିନ୍ତୁ ସ୍ୟାର କି ଉତ୍ତର କହି ପଠାଇବ ବୋଲି ପିଏରେ ସ୍ଥିର କରିବା ପୂର୍ବରୁ କାଉଣ୍ଟେସ୍ ନିଜେ ଆସି ପହଞ୍ଚିଗଲେ । ତାଙ୍କର ଗଣ୍ଡ ଅଚଞ୍ଚଳ, ସେ ମର୍ଯ୍ୟାଦାପୂର୍ଣ୍ଣ ଢଙ୍ଗରେ ଚାଲୁଥାନ୍ତି । ସେ ଯେଉଁ ପୋଷାକ ପିନ୍ଧିଥାନ୍ତି, ସେଇଟି ଧଳା ସାଟିନ୍ କନାର ଗାଉନ୍, ତହିଁରେ ରୂପାରେ ଜରିକାମ (ଏମ୍ବ୍ରଏଡରି) ହୋଇଥାଏ । ତାଙ୍କ ମୁଣ୍ଡବାଳ ଯୋଡ଼ିଏ ଗୋଲ ଗୋଲ ମୁଣ୍ଡୁଳା ପରି ବନ୍ଧା ହୋଇ ତାଙ୍କର ସୁନ୍ଦର ମୁଣ୍ଡ ଉପରେ ମୁକୁଟ ପରି ଶୋଭା ପାଉଥାଏ । ତାଙ୍କ ଭ୍ରୂ ଟିକିଏ ଡିମା ଡିମା, ଶଙ୍ଖମଲମଲ ପଥରର ବର୍ଣ୍ଣ; କିନ୍ତୁ ତହିଁରେ କୁଞ୍ଚ ପଡ଼ିଯାଇଥାଏ, ଜଣାଯାଉଥାଏ ସେ ରାଗିଛନ୍ତି । ତାଙ୍କର ସ୍ୱଭାବସୁଲଭ ଆତ୍ମସଂଯମ ଓ ଆତ୍ମସ୍ଥତାର ସେ ବ୍ୟତିକ୍ରମ ନ ଘଟାଇ ଅପେକ୍ଷା କଲେ ଯେ ଭୃତ୍ୟ ଚାଲିଗଲେ ସେ ସେହି ଦ୍ୱନ୍ଦ୍ୱଯୁଦ୍ଧ କଥା ପଚାରି ବୁଝିବେ । ସେକଥା ସେ ଜାଣିଥାନ୍ତି ଓ ସେଇଆ ଆଲୋଚନା କରିବାକୁ ସେ ଆସିଥାନ୍ତି । ଭୃତ୍ୟ କଫି ଆଣି ଥୋଇଦେଲା, ସେଦନ୍ତୁ ବାହାରିଗଲା, ସେ ଯିବ ବୋଲି ସେ ଅପେକ୍ଷା କରିଥାନ୍ତି । ପିଏରେ ତା ଚଷମା ବାଟେ ଡରି ଡରି ତାଙ୍କ ଆଡ଼କୁ ଅନାଉଥାଏ । ଠେକୁଆ ଶିକାରବେଳେ ଯେମିତି ଠେକୁଆଟିଏ ଚାରିଆଡ଼େ କୁକୁରଙ୍କ ଘେର ଭିତରେ ପଡ଼ିଗଲେ କାନ ଯୋଡ଼ିକୁ ପାରିଦେଇ ତାର ଶତ୍ରୁ ସେ କୁକୁରମାନଙ୍କୁ ଚାହିଁଥାଏ, ସେହିପରି ସେ ବହି

ପଡ଼ିବାକୁ ଲାଗିଲା, କିନ୍ତୁ କିଛି କହିଲା ନାହିଁ; କିନ୍ତୁ ସେ ବୁଝୁଥା'ନ୍ତି ଯେ ସେଭଳି ବୃଥା ଚିନ୍ତା ଅପେକ୍ଷା କରିବାରେ କିଛି ମାନେ ନାହିଁ; ତା ସମ୍ଭବ ବି ନୁହେଁ । ସେ ପୁଣି କାଉଂଟେସ୍ ଏଲେନ୍‌ଙ୍କ ଆଡ଼କୁ ଡରି ଡରି ଚଟ୍‌କରି ଚାହିଁଦେଲା । ସେ ବସିଲେ ତ ନାହିଁ, ଠିଆ ହୋଇଥାନ୍ତି, ମୁରୁକି ହସି ତା ଆଡ଼କୁ ଚାହିଁଲେ । ସେ ହସରେ ଥିଲା ତା ପ୍ରତି ତୁଚ୍ଛତାସୂଚକ ଓ ଅବଜ୍ଞା ଭାବ । ଅପେକ୍ଷା କରିଥାନ୍ତି, ଭୃତ୍ୟଟା ସେ ଘରୁ ଚାଲିଯାଇ ସାରୁ ।

"ପୁଣି କି କାଣ୍ଡ କଲ ?" ସେ ପଚାରିଲେ, କଣ୍ଠସ୍ୱର ଖୁବ୍ କଠୋର, "ଏସବୁ କ'ଣ ଶୁଣାଯାଉଛି ?"

"ମୁଁ କଲି ? ମୁଁ ? କ'ଣ ?" ପିଏରେ କହିଲା ।

"ଅଇଚ୍ଛା ଭାରି ବୀରତ୍ୱ ଦେଖାହେଉଚି ପରା ? ମତେ ଚାହାଁ କହ. ଏ ଦ୍ୱନ୍ଦ୍ୱଯୁଦ୍ଧ ମାନେ କ'ଣ ? ଏଥିରୁ କଣ ପାଇବ ଭାବ ତୁମେ ଏ କାଣ୍ଡ କଲ ? ମୋ ପ୍ରଶ୍ନର ଉତ୍ତର ଦିଅ ।"

ପିଏରେ ସୋଫା ଉପରେ ଦୁମ୍‌ଦାମ୍ କରି କରି ଲେଉଟାଇଲା, କହିବ ବୋଲି ପାଟି ଆଁ କଲା; କିନ୍ତୁ କିଛି କହିଲା ନାହିଁ ।

"ତୁମେ କିଛି ନ କହିଲେ ମୁଁ କହୁଛି ଶୁଣ । ତୁମକୁ ଯେ ଯାହା କହିଲା ତୁମେ ସବୁକଥା ବିଶ୍ୱାସ କର । କିଏ ଗୋଟାଏ ତୁମକୁ କହିଛି, – ଏଲେନ୍ ଠୋ ଠୋ ହସିଲା, – "କହିଚି ସେ ଡୋଲୋହଭ୍ କୁଆଡ଼େ ମୋ ପ୍ରେମିକ ନାଗରମଣି" । ଏଲେନ୍ ଫରାସି ଭାଷାରେ କଥା କହୁଥାଏ, 'ପ୍ରେମିକ' ବୋଲି ଫରାସିରେ 'ଆମାନ' ବୋଲି ଅସଭ୍ୟ ଶବ୍ଦ କହିବାକୁ ଡ଼ରିଲା ନାହିଁ । ଆଉ ତୁମେ ସେଇଆ ବିଶ୍ୱାସ କଲ; କିନ୍ତୁ ଯେଉଁ କାଣ୍ଡ କଲ ତୁମେ କ'ଣ ପ୍ରମାଣ କରିପକାଇଲ ? ଏ ଦ୍ୱନ୍ଦ୍ୱଯୁଦ୍ଧ ଲଢ଼ି ତୁମେ ପ୍ରମାଣ କଲ କ'ଣ ? ଏଇଆ ଯେ ତୁମେ ଗୋଟାଏ ନିର୍ବୋଧ ମୂର୍ଖ ! ହେଲେ ସେକଥା ତ ସମସ୍ତେ ଆଗରୁ ଜାଣିଥିଲେ ! ଯା ଫଳ କଣ ହେଲା ? ଯା ଫଳରେ ମସ୍କୋ ସହରସାକ ସମସ୍ତଙ୍କ ଆଗରେ ମୁଁ ଲୋକହସା ହେଲି । ସମସ୍ତେ ଜାଣିଲେ ଯେ ମଦପିଇ ମାତାଲ୍ ହୋଇ ତୁମେ ଜଣେ ଲୋକକୁ ତୁମ ସଙ୍ଗେ ଦ୍ୱନ୍ଦ୍ୱଯୁଦ୍ଧ ଲଢ଼ିବାକୁ ଆହ୍ୱାନ କଲ; କାରଣ ନିଶା

ଭୋଜରେ ତୁମେ ବିନା କାରଣରେ ଧରିନେଲ ସେ ତୁମ ସ୍ତ୍ରୀର ପ୍ରଣୟୀ; ତୁମର ଈର୍ଷା ହେଲା । ଏଲେନ୍ ରାଗିଯାଇ ଆହୁରି ବଡ଼ ପାଟିକଲା, କହିଲା, "ଆଜି ସେ ଲୋକଟା କି ତମଠୁଁ ସବୁ ବିଷୟରେ ସହସ୍ରଗୁଣେ ଭଲ !"

"ହୁଁ ! ହୁଁ !" ପିଏରେ ଗର୍ଜନ ଛାଡ଼ିଲା, ତା ମୁହଁ କୁଞ୍ଚ କୁଞ୍ଚ ହୋଇଗଲା, ସେ ତା ଘରଣୀ ମୁହଁକୁ ଚାହିଁଲା କି ନାହିଁ ।

"ଆଚ୍ଛା କହ, କେମିତି ତୁମେ ଧରିନେଲ ଯେ ସେ ମୋର ପ୍ରେମିକ ? ତା ସଙ୍ଗରେ ଥିଲେ ମତେ ଖୁସି ଲାଗେ ସେଇଥିପାଇଁ ? ତୁମେ ଯଦି ତାଠୁଁ ଅଧିକ ବୁଦ୍ଧିଆ ହୋଇଥାନ୍ତ, ମେଳାପୀ ହୋଇଥାନ୍ତ, ତା'ହେଲେ ତା ସଙ୍ଗ ଅପେକ୍ଷା ତୁମ ସଙ୍ଗ ମତେ ଭଲ ଲାଗିଥାନ୍ତା ।"

ପିଏରେ ଧାଗଡ଼ା ପାଟିରେ କହିଲା, "ତମକୁ ଅନୁରୋଧ, ମତେ କିଛି କହ ନାହିଁ ।"

"କାହିଁକି କହିବି ନାହିଁ ? ମୋ ମନକୁ ଯାହା ଆସିବ ତା କହିବି । ମୁଁ କହୁଚି ଶୁଣ ! ମୁଁ ବୋଲି ସିନା, ଆଉ କେଉଁ ମାଇକିନିଆ ହୋଇ ଥା'ନ୍ତା, ଯାହାର ତୁମ ପରି ସ୍ୱାମୀ ଥା'ନ୍ତା, ସେ ଆଜି ଗୋଟାଏ ପ୍ରେମିକ ନାଗର ନିଶ୍ଚୟ କରିଥା'ନ୍ତା; କିନ୍ତୁ ମୁଁ ତା କରିନାହିଁ ।"

ପିଏରେ କ'ଣ କହିବି କହିବି ହେଉଥିଲା, ବଡ଼ ଅସ୍ୱାଭାବିକ ଚାହାଣିରେ ତା ସ୍ତ୍ରୀର ମୁହଁକୁ ଅନାଇଲା । ସେ ଚାହାଣିର ଅର୍ଥ ଏଲେନ୍ ବୁଝି ପାରିଲା ନାହିଁ । ପିଏରେ ପୁଣି ଶୋଇ ରହିଲା । ସେତେବେଳେ ତା ଶରୀରରେ ସେ ଯନ୍ତ୍ରଣା ଅନୁଭବ କରୁଥାଏ ଯେମିତି ତା ଛାତି ଉପରେ କ'ଣ ଓଜନ ଲଦା ହୋଇଛି । ତାକୁ ଶ୍ୱାସରୋଧ ଲାଗୁଛି । ତାକୁ ଲାଗୁଥିଲା ଯେ, ଏ ଯାତନାରୁ ରକ୍ଷା ପାଇବାକୁ ତାକୁ ଗୋଟାଏ କ'ଣ କରିବାକୁ ପଡ଼ିବ; କିନ୍ତୁ କଣ ସେଇଟା, ତା ଭାବିଲାବେଳକୁ ଲାଗୁଥାଏ ସେଇଟା ଅତି ଭୟଙ୍କର କାମ, ଅତି ଭୟାନକ ।

ସେ ବସିକି ବସିଲା ସ୍ୱରରେ କହିଲା, "ଆମେ ସମ୍ପର୍କ ଛିଣ୍ଡେଇ ଦେଇ ଅଲଗା ଅଲଗା ହୋଇଯିବା ।"

ଏଲେନ୍ କହିଲା "ଭଲ ତ ! ମତେ ଯଦି ସମ୍ପତ୍ତି ଦେବ, ଖୁବ୍ ଦାମୀ ସମ୍ପତ୍ତି, ତେବେ ଆମେ ଛଡ଼ାଛଡ଼ି ହେବାରେ ମୋର ଆପତ୍ତି ନାହିଁ । ଘୁଡ଼ପଣ ! ମତେ ଡରେଇବ ବୋଲି ଘୁଡ଼ପଣ ନାଁ ଧରୁଚ, ନୁହେଁ ?"

ପିଏରେ ଖଟ ଉପରୁ ଉଠିପଡ଼ି ଟଳିଟଳି ତା ଆଡ଼କୁ ଧାଇଁ-ଗଲା । "ତତେ ଜୀବନରୁ ମାରଦେବ" ସେ ରଡ଼ିଲା । ଗୋଟାଏ ଟେବୁଲ ଉପରେ ଓଜନ ଶିଙ୍ଗ ମଲମଲ ପଥର ଖଣ୍ଡେ ଗୃହକଣିଆ ହୋଇ ଥୁଆ ହୋଇଥିଲା, ପିଏରେ ସେଇଟାକୁ ଟେକନେଲା, ତା ଦେହରେ ଏତେ ବଳ ଅଛି ସେ ଜାଣି ନ ଥିଲା । ତାକୁ ଧରି ଏଲେନ୍ ଆଡ଼କୁ ଧାଇଁଯାଇ ସେଇଟାକୁ ଏଲେନ୍ ଆଡ଼କୁ ଉଞ୍ଚେଇ ସେ ହଲେଇଲା ।

ଏଲେନ୍‌ର ମୁହଁ ଭୟଙ୍କର ଦିଶୁଥାଏ। ସେ ଚିଁହିରେଇ ଉଠିଲା, ପିଏରେ ପାଖରୁ ଧାଇଁ ପଳେଇଲା । ପିଏରେଠି ତା ବାପାଙ୍କ ସ୍ୱଭାବ ଦେଖାଦେଲା । ରାଗିଲେ କେମିତି ବେପରୁଆ ଲାଗେ, କେମିତି ନିଶା ଧରେ, ସେଇଆ ସେ ଅନୁଭବ କଲା । ସେ ସେହି ଶିଙ୍ଗ ମଲମଲ ପଥରଟାକୁ ଏତେ ଜୋରରେ ତଳେ ପିଟିଦେଲା ଯେ ସେଇଟା ଖଣ୍ଡ ଖଣ୍ଡ ହୋଇଗଲା । ଦି ହାତ ଟେକି ଏଲେନ୍ ଆଡ଼କୁ ଧାଇଁଯାଇ ଗର୍ଜନ କଲା, "ଯା ଭାଗ୍" ତାର ସେ ରଡ଼ି ଘରଯାକ ଗୃହଆଡ଼େ ଶୁଭିଲା, ଲୋକେ ଶୁଣି ଭୟରେ ଥରିଲେ । ସେହି ମୁହୂର୍ତ୍ତରେ ଏଲେନ୍ ଯଦି ସେ ବଖରାରୁ ନ ପଳାଇ ଥା'ନ୍ତା, ତେବେ ପିଏରେ ତାକୁ କ'ଣ କରିଥା'ନ୍ତା ଭଗବାନ୍ ଜାଣନ୍ତି ।

ସପ୍ତାହେ ପରେ ପିଏରେ ତାର ସମ୍ପତ୍ତି ବଡ଼ ଭାଗକ, "ଗ୍ରେଟ୍ ଋସିଆ" ଅଞ୍ଚଳରେ ତାର ସବୁ ଜମି ଜମିଦାରୀରୁ ମିଳୁଥିବା ଆୟ—ତା ସ୍ତ୍ରୀ ନାଁରେ କରିଦେଲା, ମସ୍କୋ ଛାଡ଼ି ଏକୁଟିଆ ପିଟର୍ସବର୍ଗ ସହରକୁ ଚାଲିଗଲା ।

ଡୋଲୋହଭ ଓ ପିଏରେ ବେଜୁହଭ ଯେଉଁ ଦ୍ୱନ୍ଦ୍ୱ ଯୁଦ୍ଧ ଲଢ଼ିଲେ ତହିଁରେ ନିକୋଲେ ରୋଷ୍ଟଭର ବି ତ ହାତ ଥିଲା; କିନ୍ତୁ ତା ବାପା ବୁଢ଼ା କାଉଣ୍ଟଙ୍କ ଚେଷ୍ଟାରେ ତା କଥା ଛପିଗଲା । ନିକୋଲେ ଭାବିଥିଲା ସେହି ଦ୍ୱନ୍ଦ୍ୱ ଯୁଦ୍ଧ ସମ୍ପର୍କରେ ତାର ଭୂମିକା ଯୋଗୁଁ ସୈନ୍ୟବାହିନୀରେ ତାକୁ

ଅଫିସର ପଦରୁ ସାଧାରଣ ସୈନିକ ସ୍ତରକୁ ଖସାଇ ଦିଆଯିବ; କିନ୍ତୁ ସେପରି ହେବା ପରିବର୍ତ୍ତେ ତାକୁ ମସ୍କୋର ଲାଟଙ୍କ ଆଡ୍‌ଜୁଟାଣ୍ଟ ପଦରେ ନିଯୁକ୍ତ କରାଗଲା । ଏ ନିଯୁକ୍ତି ଯୋଗୁଁ ସେ ଆଉ ଗାଁକୁ ଯାଇ ପାରିଲା ନାହିଁ । ଗ୍ରୀଷ୍ମ (ବସନ୍ତ) ଋତୁରେ ତା ପରିବାରର ସମସ୍ତେ ଗାଁକୁ ଗଲେ, ସେ ତା ନୂଆ ନିଯୁକ୍ତିର ଦାୟିତ୍ୱ ତୁଲାଇବାକୁ ସମୁଦାୟ ଗ୍ରୀଷ୍ମ (ବସନ୍ତ) ଋତୁଟାଯାକ ମସ୍କୋରେ ରହିଲା । ଡୋଲୋହଭ ଯେ ଦ୍ୱନ୍ଦ୍ୱ ଯୁଦ୍ଧରେ ଆହତ ହୋଇଥିଲା—ସେ କ୍ରମେ ଆରୋଗ୍ୟ ହେଲା ଓ ସେ ଚିକିତ୍ସିତ ହୋଇ ସୁସ୍ଥ ହେବା ସମୟ ଭିତରେ ବିଶେଷ କରି ନିକୋଲେ ରୋଷ୍ଟଭ ତାର ପ୍ରିୟ ବନ୍ଧୁ ହୋଇ ରହିଲା ।

"ଲମ୍ବା ପାହାଡ଼" ସେହି ସ୍ଥାନର ନାଁ ଯେଉଁଠି ମଫସଲ ଭିତରେ ପ୍ରିନ୍‌ସ ଆନ୍ଦ୍ରେଙ୍କ ବାପା ଓ ଭଉଣୀ ରହୁଥିଲେ । ଅଷ୍ଟରଲିଜ୍ ଯୁଦ୍ଧରେ ରୁଷ ପକ୍ଷ ହାରିଗଲେ, ଯେଉଁମାନେ ସେ ଯୁଦ୍ଧରେ ନିଖୋଜ ହେଲେ ସେମାନଙ୍କ ଭିତରେ ପ୍ରିନ୍‌ସ ଆନ୍ଦ୍ରେ ବି ଜଣେ, ଏ ଖବର 'ଲମ୍ବା ପାହାଡ଼'ରେ ପହଞ୍ଚିବାର ଦୁଇ ମାସ ହୋଇଯାଇଥାଏ । ରୁଷ୍ ଦେଶର ବୈଦେଶିକ ସଂସ୍ଥାବାଟେ ବହୁତ ଅନୁସନ୍ଧାନ ସରିଥାଏ, ସେ ସଂସ୍ଥା ଜରିଆରେ ବହୁତ ଚିଠି ପଠା ହୋଇଥାଏ; କିନ୍ତୁ ତାଙ୍କ ଶବ ମିଳି ନ ଥାଏ କି ତାଙ୍କର କିଛି ପତ୍ତା ମିଳି ନ ଥାଏ । ଯୁଦ୍ଧ ବିଜେତା ଫରାସୀ-ପକ୍ଷ ବିଜିତ ରୁଷ ପକ୍ଷର ଯେଉଁମାନଙ୍କୁ ବନ୍ଦୀ କରି ଥାଆନ୍ତି, ତାଙ୍କ ଭିତରେ ବି ପ୍ରିନ୍‌ସ ଆନ୍ଦ୍ରେ ନ ଥାନ୍ତି । ଏପରି ସମ୍ଭାବନା ବି ଥାଏ ଯେ ହୁଏତ ଦେଶର କେହି ଲୋକ ଆହତ ଅବସ୍ଥାରେ ତାଙ୍କୁ ଯୁଦ୍ଧଭୂମିରୁ ଉଠାଇ ନେଇଛନ୍ତି ଓ ସେ ଅଚିହ୍ନା ଲୋକଙ୍କ ମେଳରେ ସେ ଏବେ ବି ପଡ଼ି ରହିଛନ୍ତି, ଆରୋଗ୍ୟ ହେଉଛନ୍ତି ବା ମରୁଛନ୍ତି । ସମସ୍ତେ ଅଚିହ୍ନା, ସେ ଏକୁଟିଆ ସେ ନିଜର ପରିଚୟ ବି ଦେଇପାରୁନାହାନ୍ତି । ଏହି ସମ୍ଭାବନା ଯୋଗୁଁ ତାଙ୍କ ବାପା ଆଉ ତାଙ୍କ ଭଉଣୀ ଗୋଟିଏ ଆଶାରେ ରହିଲେ ଓ ଆହୁରି ବେଶୀ ମନ ଦୁଃଖ କଲେ । ବୁଢ଼ା ପ୍ରିନ୍‌ସ ବଲକନ୍‌ସକି ଖବର କାଗଜ ପଢ଼ି ଅଷ୍ଟରଲିଜ୍‌ରେ ପରାଜୟ କଥା ଜାଣିଲେ; କିନ୍ତୁ ଖବର କାଗଜରେ ଯାହା ପଢ଼ିଲେ ତାହା ସବୁଥର ପରି ଅତି ଅଳ୍ପ

ସମ୍ବାଦ ଓ ଅସ୍ପଷ୍ଟ ସମ୍ବାଦ । ସେଥିରେ ସଂକ୍ଷେପରେ ଥିଲା ଯେ କେତୋଟି ଚମତ୍କାର ବିଜୟ ହାସଲ କରିବା ପରେ ପଛଘୁଞ୍ଚା ଦେବାକୁ ରୁଷପକ୍ଷ ବାଧ୍ୟ ହୋଇଥିଲେ ଓ ଖୁବ୍ ସୁସଂଯତଭାବେ ଯୁଦ୍ଧଭୂମିରୁ ପଳାଇ ଯାଇଥିଲେ । ଏହି ସରକାରୀ ସମ୍ବାଦ ପଢ଼ି ବୁଢ଼ା ପ୍ରିନ୍ସ ବୁଝିଲେ ଯେ, ରୁଷ ସେନା ସେ ଯୁଦ୍ଧରେ ହାରିଛନ୍ତି । ଏ ସମ୍ବାଦ ପଢ଼ିବାର ସପ୍ତାହେ ପରେ ସେନାପତି କୁତୁଜଭ ପ୍ରିନ୍ସ ବଲକନସ୍କିଙ୍କୁ ଲେଖିଥିବା ଚିଠି ମିଳିଲା । ସେ ଯୁଦ୍ଧରେ ପ୍ରିନ୍ସ ଆନ୍ଦ୍ରେ କିପରି ବୀରତ୍ୱ ଦେଖାଇଥିଲେ, କୁତୁଜଭ ତାଙ୍କ ବାପାଙ୍କ ପାଖକୁ ସେହି କଥା ଲେଖିଥିଲେ ।

କୁତୁଜଭ ଲେଖିଥିଲେ —

"ମୁଁ ସ୍ୱଚକ୍ଷୁରେ ଦେଖିଛି କିପରି ଆପଣଙ୍କର ବୀରପୁତ୍ର ଯୁଦ୍ଧ କରୁ କରୁ ଯୁଦ୍ଧଭୂମିରେ ନିପତିତ ହେଲେ । ତାଙ୍କର ପତନ ପ୍ରମାଣ କଲା ଯେ, ସେ ଯୋଗ୍ୟ ପିତାଙ୍କର ଉପଯୁକ୍ତ ପୁତ୍ର ଓ ନିଜ ମାତୃଭୂମିର ଉପଯୁକ୍ତ ବୀର ସନ୍ତାନ । ସେତେବେଳେ ସେ ହାତରେ ଆମର ରାଷ୍ଟ୍ରୀୟ ପତାକା ଧରିଥା'ନ୍ତି ଓ ନିଜ ରେଜିମେଣ୍ଟ୍‌ର ଅଗ୍ରରେ ଥାଇ ସୈନ୍ୟ ପରିଚାଳନା କରୁଥାଆନ୍ତି । ମୁଁ ଅତ୍ୟନ୍ତ ଦୁଃଖିତ ଓ ସମଗ୍ର ରୁଷବାହିନୀ ଅତ୍ୟନ୍ତ ବ୍ୟଥିତ ଯେ, ସେ ଜୀବିତ କି ମୃତ ତାହା ଏପର୍ଯ୍ୟନ୍ତ ନିର୍ଦ୍ଧାରିତ ହୋଇ-ପାରିଲା ନାହିଁ । ମୁଁ ନିଜକୁ ଓ ଆପଣମାନଙ୍କୁ ଏହି ଆଶାରେ ଆଶ୍ୱାସ ଦେଉଛି ଯେ ଆପଣଙ୍କ ପୁତ୍ର ଜୀବିତ ଅଛନ୍ତି, ନଚେତ୍ ବା ସନ୍ଧି ହେଲାବେଳେ ସନ୍ଧି ପତାକା ତଳେ ଯୁଦ୍ଧଭୂମିରେ ପଡ଼ିଥିବା ସୈନିକମାନଙ୍କର ଯେଉଁ ତାଲିକା ପ୍ରଦତ୍ତ ହେଲା, ସେ ତାଲିକାରେ ତାଙ୍କର ନାମ ଥାଆନ୍ତା ।

ବୃଦ୍ଧ ପ୍ରିନ୍ସ ବଲକନସ୍କିଙ୍କ ସଞ୍ଜ ବୁଲେ, — ସେତେବେଳେ ସଞ୍ଜଘଡ଼ି ଗଡ଼ି ଯାଇଥାଏ, ନିଜ ପଢ଼ା ଘରେ ଯେତେବେଳେ ଏକୁଟିଆ ଥିଲେ, ସେତେବେଳେ ସେ ଚିଠିଟି ପାଇଲେ । ତହିଁ ଆରଦିନ ସକାଳେ ସବୁଦିନ ପରି ସେ ପ୍ରାତଃ ଭ୍ରମଣରେ ବାହାରିଲେ; କିନ୍ତୁ ଯେତେଜଣଙ୍କ ସାଙ୍ଗେ ଦେଖାହେଲା, ଯଥା-ସ୍ଥାନୀୟ ଡେଲିପ୍ (ମ୍ୟାଜିଷ୍ଟ୍ରେଟ) ମାଳୀ ଓ ଗୃହ ଶିଳ୍ପୀ, ସେମାନଙ୍କୁ ସେ ପାଟି ଫିଟେଇଲେ ନାହିଁ । ତାଙ୍କ ମୁହଁରୁ ଜଣା ପଡ଼ୁଥାଏ, ସେ ଖୁବ୍ କ୍ରୁଦ୍ଧ । ଯେତେବେଳେ ତାଙ୍କ ଝିଅ ପ୍ରିନ୍ସେସ୍

ମେରିଆ ସବୁଦିନ ପରି ନିର୍ଦ୍ଧାରିତ ସମୟରେ ତାଙ୍କ ପାଖରେ ପହଞ୍ଚିଲେ, ସେ ତାଙ୍କ ଆଡ଼କୁ ଅନାଇଲେ ନାହିଁ । ସେ ଠିଆହୋଇ ଲେଥ୍ ମେସିନକୁ ଚଳାଉ ଥାଆନ୍ତି । "ଓ ! ପ୍ରିନ୍‌ସେସ୍ ମେରିଆ !" ସେ ହଠାତ୍ କହିଲେ । ତାଙ୍କ ସ୍ୱର ଅସ୍ୱାଭାବିକ ଶୁଭୁଥାଏ । ସେ ମେସିନ୍ ଛାଡ଼ିଦେଲେ, ଏତେଜୋରରେ ମୋଡ଼ିଦେଇ ଛାଡ଼ିଦେଲେ ଯେ, ତା ଚକ ଥରେ ପୂରା ଘୂରିଗଲା । ତା'ପରେ ଚକ ସ୍ଥିର ହେଲାପରେ କେଁ କନା ଶବ୍ଦ ହେଲା । ସେଇ ଶବ୍ଦକୁ ପ୍ରିନ୍‌ସେସ ମେରିଆ ପୁଣି ଥରେ ମନେ ପକାଇଲେ । କାରଣ ତା'ପରେ ଯାହାହେଲା, ତା ସହିତ ସେ କେଁ ଶବ୍ଦ ଜଡ଼ିତ ।"

ପ୍ରିନ୍‌ସେସ୍ ମେରିଆ ତାଙ୍କ ବାପାଙ୍କ ପାଖକୁ ଗଲେ । ବାପାଙ୍କ ମୁହଁକୁ ଚାହିଁଦେଲାମାତ୍ରେ ହଠାତ୍ ତାଙ୍କର କଣ ହୋଇଗଲା, ଆଖିକୁ ଭଲ କରି ଦିଶିଲା ନାହିଁ । ତାଙ୍କ ବାପାଙ୍କ ମୁହଁ ବିଷଣ୍ଣ ଦିଶୁନଥାଏ କି ମନ ଭାଙ୍ଗି ପଡ଼ିଥିବା ଲୋକର ମୁହଁ ପରି ଦିଶୁନଥାଏ; କିନ୍ତୁ ଦିଶୁଥାଏ ପ୍ରତିହିଂସା-ପରାୟଣ, ମନରେ ଅସ୍ୱାଭାବିକ ସଂଘର୍ଷ ଲାଗିଥିଲା ଭଳି । ବାପାଙ୍କ ମୁହଁକୁ ଦେଖି ମେରିଆଙ୍କୁ ଲାଗିଲା ଯେ ଗୋଟାଏ କିଛି ଭୟଙ୍କର ବିପଦ ତାଙ୍କ ଉପରେ ପଡ଼ିବାକୁ ଯାଉଛି । ତାଙ୍କ ମୁଣ୍ଡଉପରେ ଝୁଲୁଛି, ପଡ଼ିବ । ତାଙ୍କୁ ଭାଙ୍ଗିଚୁରି ଗୁଣ୍ଡ କରିଦେବ । ସେ ବିପଦ ସେହିଭଳି ଦୁର୍ଘଟଣା ଯେପରି ତାଙ୍କ ଜୀବନରେ କେବେ ଆସିନାହିଁ । ସେତେବଡ଼ ଦୁର୍ଘଟଣା ତାଙ୍କୁ ପୂର୍ବେ ପଡ଼ିନାହିଁ । ସେ ଦୁର୍ଘଟଣା ଘଟିଗଲେ ଆଉ ତାକୁ ଘୁଞ୍ଚାଇ ହେବ ନାହିଁ । ତାର ନିରାକରଣ ନାହିଁ, ପ୍ରତିକାର ନାହିଁ । ସେ ଦୁର୍ଘଟଣା କୌଣସି ଅତି ପ୍ରିୟଜନର ମୃତ୍ୟୁ ।

"ବାପା, ଆନ୍ଦ୍ରେ !"—ପ୍ରିନ୍‌ସେସ୍ ମେରିଆ କହିଲେ । କୁରୂପା ସେ, ତାଙ୍କ ମୁଦ୍ରା ଅଘଟଣା । ଏଇ ଦୁଇପଦ ସେ ଏଭଳି ଦୁଃଖରେ ଆତ୍ମବିସ୍ମୃତ ହୋଇ ଉଚ୍ଚାରଣ କଲେ ଓ ସେ ଦୁଃଖରେ ଏଭଳି ଅବ୍ୟକ୍ତ ସୌନ୍ଦର୍ଯ୍ୟ ଥିଲା ଯେ, ତାଙ୍କ ବାପା ତାଙ୍କ ଆଖିକୁ ଅନାଇଁ ପାରିଲେ ନାହିଁ, କାନ୍ଦ ପକାଇ ମୁହଁ ବୁଲାଇଦେଇ ଘୁଞ୍ଚିଗଲେ ।

ପିନ୍‌ସ ବଲକନ୍‌ସ୍କି ତୀବ୍ର ସ୍ୱରରେ ଚିତ୍କାର କଲେ, "ମୋ ପାଖକୁ ଖବର ଆସିଛି । କୁତୁଜଭ ଲେଖିଛନ୍ତି ଯେ, ଯେଉଁମାନେ ଶତ୍ରୁ ହାତରେ ବନ୍ଦୀ ହେଲେ, କି ଯେଉଁମାନେ ମଲେ, ସେମାନଙ୍କ ତାଲିକାରେ ତା ନାଁ ନାହିଁ । "ମରିଗଲା !" ସେ ଏତେ ଜୋର୍‌ରେ ପାଟିକଲେ ଯେ, ଲାଗୁଥାଏ ଯେପରି କି ସେହି ପାଟିରେ ସେ ତାଙ୍କ ଝିଅକୁ ଠେଲି ତଡ଼ିଦେବାକୁ ଚାହାନ୍ତି ।

ପ୍ରିନ୍‌ସେସ୍ ମେରିଆ ଅଚେତ୍ ହେଲେ ନାହିଁ, ବେହୋସ୍ ହେଲେ ନାହିଁ । ସେ କଥା ଶୁଣିଲା ଭଳି ଦିଶୁଥାନ୍ତି; କିନ୍ତୁ ଯେମିତି ବାପାଙ୍କଠୁଁ ଏତିକି ଶୁଣିଲେ, ତାଙ୍କ ମୁହଁର ଚେହେରା ବଦଳିଗଲା । ତାଙ୍କର ସୁନ୍ଦର ଚକ୍‌ଚକ୍ ଆଖିରେ କେଉଁ ମନୋଭାବର ତେଜ ଫୁଟି ଉଠିଲା । ତାଙ୍କ ଅନ୍ତର ଯେଉଁ ଭକ୍ତି ଦୁଃଖରେ ପୂରିଯାଇଥାଏ, ତାକୁ ନଷ୍ଟବତ୍ ପରି ବୁଡ଼ାଇ ପକାଇ କିଣ ଏକ ପ୍ରକାର ଉନ୍ନତତର ଆନନ୍ଦ ଭଳି ଭାବ ତାଙ୍କ ଉପରେ ମାଡ଼ିଗଲା । ଆଉ ତାଙ୍କ ବାପାଙ୍କ ପ୍ରତି ତାଙ୍କର ଭୟ ରହିଲାନାହିଁ, ସବୁଦିନର ସେ ଭୟକୁ ସେ ଭୁଲିଗଲେ । ସେ ତାଙ୍କ ବାପାଙ୍କ ପାଖକୁ ଚାଲିଗଲେ, ତାଙ୍କ ହାତକୁ ଧରି ପକାଇଲେ, ତାଙ୍କ ନିଜ ଆଡ଼କୁ ଓଟାରି ଆଣିଲେ । ତାଙ୍କର ଧୂଡ଼ୁକା, ଶୁଖିଲା ସରୁ ହୋଇଯାଇଥିବା ବେକକୁ କୁଣ୍ଢାଇ ପକାଇଲେ ।

ମେରିଆ କହିଲେ, "ବାପା, ମତେ ଛାଡ଼ି ଚାଲି ଯାଅନାହିଁ, ଆସ, ଆମେ ଦୁହେଁ ଏକାଠି କାନ୍ଦିବା ।"

ବୁଢ଼ା ପ୍ରିନ୍‌ସ ଚିତ୍କାର କରୁଥାନ୍ତି, "ପାଜି ବଦ୍‌ମାସ୍‌ଗୁଡ଼ାକ, ସଇତାନ୍‌ଗୁଡ଼ାକ !" ଝିଅ ଆଡ଼ୁ ମୁହଁ ବୁଲେଇ ନେଇ ସେ ରଡ଼ୁଥାନ୍ତି, "ସୈନ୍ୟବାହିନୀଟାକୁ ଧ୍ୱଂସ କରେଇଦେଲେ, ସୈନ୍ୟମାନଙ୍କୁ ବୃଥାରେ ମରେଇଦେଲେ ! କାହିଁକି ? କ'ଣ ପାଇଁ ? ଯା ଲିଜାକୁ ଖବର ଦେ ।"

ପ୍ରିନ୍‌ସେସ୍ ମେରିଆ ତାଙ୍କ ବାପାଙ୍କ ପାଖରେ ଗୋଟାଏ ଆରାମ୍ ଚୌକିରେ ନିଃସହାୟ ଭାବେ ଭାଙ୍ଗିପଡ଼ି ଲେଟିଗଲେ, କାନ୍ଦିଲେ । ତାଙ୍କ

ଆଖି ଆଗରେ ସେହି ବେଳ ନାଚି ଯାଉଥାଏ, ଯେତେବେଳେ ତାଙ୍କ ଭାଇ ତାଙ୍କଠୁଁ ଓ ଲିଜାଠୁଁ ବିଦା ହୋଇ ଯୁଦ୍ଧକୁ ଗଲେ । ତାଙ୍କ ଭାଇଙ୍କ ମୁହଁ କେଡ଼େ ସ୍ନେହ କୋମଳ ଦିଶୁଥାଏ, ଅଥଚ ସେ ମୁହଁରେ ଥାଏ ବେପରୁଆ ଗର୍ବର ଠାଣି । ତାଙ୍କୁ ଦିଶିଯାଉଥାଏ, ଯେତେବେଳେ ଆନ୍ଦ୍ରେ ଯୀଶୁଖ୍ରୀଷ୍ଟଙ୍କ ମୂର୍ତ୍ତି ଥିବା ପଦକଟିକୁ ପିନ୍ଧିଲେ, ତାଙ୍କ ମୁହଁ ସ୍ନେହରେ ଛଳ ଛଳ ଦିଶୁଥାଏ, ପୁଣି ସେ ମୁହଁରେ ଥାଏ ଉପହାସର ଭଙ୍ଗୀ । ମେରିଆ ଭାବିଲେ, "ବର୍ତ୍ତମାନ ତାଙ୍କର ବିଶ୍ୱାସ ଆସିଲା କି ? ସେ ମୂର୍ତ୍ତିକୁ ସେ ଯେତେବେଳେ ଅବିଶ୍ୱାସ କରୁଥିଲେ, ସେଥିସକାଶେ ସେ ଅନୁତାପ କଲେ କି ନାହିଁ ? ସେ ବର୍ତ୍ତମାନ କେଉଁଠି ? ଚିର ଶାନ୍ତି ଚିର ପୁଣ୍ୟର ରାଜ୍ୟରେ ଅଛନ୍ତି ? କାନ୍ଦି କାନ୍ଦି ବାପାଙ୍କୁ ମେରିଆ ପଚାରିଲେ, "ବାପା, କଣ କେମିତି ହେଲା ମତେ କହ ।"

"ଯା ଚାଲି ଯା, ପଳା,—" ବୁଢ଼ା ପ୍ରିନ୍‌ସ ବଲ୍‌କନ୍‌ସ୍କି ପାଟି କଲେ । "ଗୋଟାଏ ଯୁଦ୍ଧରେ ଆମପକ୍ଷ ହାରିଗଲେ ଓ ସେହି ପରାଜୟରେ ସେ ବି ମରିଗଲା । କେମିତି ଲଢ଼େଇ କଲେ ଆମ ସେନାଧ୍ୟକ୍ଷମାନେ ? ନା ଆମର ଶ୍ରେଷ୍ଠ ଯୋଦ୍ଧାମାନଙ୍କୁ ଓ ଆମ ଋଷ ଦେଶର ଗୌରବକୁ ଧ୍ୱଂସ-ଆଡ଼କୁ ମୋହିଁଦେଲେ, ଏଇଆ କଲେ ! ଯା, ଲିଜାକୁ ଖବର ଦେ । ମୁଁ ବି ଯିବ ଯେ—"

ଯେତେବେଳେ ପ୍ରିନ୍‌ସେସ୍ ମେରିଆ ତାଙ୍କ ବାପାଙ୍କ ପାଖରୁ ଚାଲିଆସିଲେ, ସେତେବେଳେ ତାଙ୍କ ଭାଉଜ, ସାନ ପ୍ରିନ୍‌ସେସ୍ ବସି କାମ କରୁଥାନ୍ତି, ଅନାଇଁ ଦେଲେ । ପେଟରେ ଛୁଆଥିଲେ ସ୍ତ୍ରୀଲୋକମାନେ ଯେଉଁ ତୃପ୍ତି ଆନନ୍ଦର ଚାହାଣିରେ ଅନାନ୍ତି, ତାଙ୍କ ଚାହାଣୀ ସେହିପରି ଥିଲା । ଜଣାପଡ଼ୁଥାଏ ଯେ ତାଙ୍କ ଦୃଷ୍ଟି ପ୍ରିନ୍‌ସେସ୍ ମେରିଆଙ୍କ ଉପରେ ପଡ଼ୁନ ଥାଏ, ନିଜ ଭିତରକୁ ଭେଦି ଯାଉଥାଏ । ସେଇମିତି ଯେଉଁଠି କଣ ଆନନ୍ଦକର ରହସ୍ୟ ନିଜ ଭିତରେ କେଉଁଠି ସଂଘଟିତ ହେଉଛି ।

ସେ ବସି ଫ୍ରେମରେ ଚଢ଼ା ହୋଇଥିବା କନା ଉପରେ ସରୁ ଛୁଞ୍ଚିକାମ କରୁଥିଲେ । ସେଠୁ ଉଠିଯାଇ କହିଲେ, 'ମେଶ୍ୱ—ତୁମ ହାତ ବଢ଼ାଅ ।" ସେ ନଣନ୍ଦର ହାତକୁ ଧରି ନେଇ ନିଜ ଅଣ୍ଟା

ଉଳେ ଲଗାଇଦେଲେ । ତାଙ୍କ ଆଖି ହସୁଥାଏ । ସେଠି ଆନନ୍ଦକର ପ୍ରତ୍ୟାଶା ଫୁଟି ଉଠିଥାଏ । ପାହାନ୍ତାର କାକର ପଡ଼ିଥିବା ପରି ହଣେ ତାଙ୍କ ଉପର ଓଠ, ଟେକ ହୋଇ ରହିଥାଏ, ପିଲାଏ ଖୁବ୍ ଖୁସି ହେଲେ ଯେମିତି ହଣେ ସେମିତି ।

ପ୍ରିନ୍‌ସେସ୍ ମେରି ଭାଉଜ ଆଗରେ ଆଣ୍ଠୁ ମାଡ଼ି ବସିଲେ ଓ ତାଙ୍କ ପିନ୍ଧା ପୋଷାକର କୁଞ୍ଚରେ ମୁହଁ ମାଡ଼ିଦେଲେ ।

"ବାରି ପାରିଲ ?" ତାଙ୍କ କୁନି ଭାଉଜ କହୁଥାନ୍ତି, "ଜଣା ପଡ଼ୁଛି ଯେ ? ମତେ ଏମିତି ଆଶ୍ଚର୍ଯ୍ୟ ଲାଗୁଛି ! ଆଉ, ଜାଣିଛନା ମେରି ! ସେ ଜନ୍ମ ହେଲେ ନା ? ମୁଁ ପରା ତାଙ୍କୁ ଭାରି ଭଲ ପାଇବି ।" ନଣନ୍ଦ ଆଡ଼କୁ ଖୁବ୍ ଖୁସିରେ ହକ୍ ହକ୍ ଆଖିରେ ସେ ଅନାଇଥା'ନ୍ତି ।

ପ୍ରିନ୍‌ସେସ୍ ମେରିଆ ମୁହଁ ଟେକ ପାରିଲେ ନାହିଁ । କାନ୍ଦୁଥାନ୍ତି ।

"କଣ ହେଲା ମେରି ?"

"କିଛି ନାହିଁ । .... ଖାଲି ମୋ ମନରେ ଭାରି ଦୁଃଖ ହେଉଛି । ଆଣ୍ଡ୍ରେ ... ଆଣ୍ଡ୍ରେ ଲାଗି ।" ମେରି ଭାଉଜର ଲୁଗା କୁଞ୍ଚରେ ଲୁହ ପୋଛିଦେଲେ ।

ସେଦିନ ସକାଳଯାକ ଅନେକ ଥର ପ୍ରିନ୍‌ସେସ୍ ମେରିଆ ଚେଷ୍ଟା କଲେ କେମିତି ଦୁଃସମ୍ବାଦଟା ଦେବା ପୂର୍ବରୁ ସେଥିଲାଗି ତାଙ୍କ ଭାଉଜଙ୍କ ମନକୁ ସେ ପ୍ରସ୍ତୁତ କରିବେ; କିନ୍ତୁ ପ୍ରତିଥର ସେ ଖାଲି କାନ୍ଦିଲେ । ତାଙ୍କର କୁନିଭାଉଜ ବୁଝିପାରୁ ନ ଥାନ୍ତି ଯେ କାହିଁକି ସେ ଏତେ କାନ୍ଦୁଛନ୍ତି । କିନ୍ତୁ ତାଙ୍କ କାନ୍ଦଣା ଦେଖି ପ୍ରିନ୍‌ସେସ୍ ଅଭିଭୂତ ହୋଇ ପଡୁଥାନ୍ତି । ସ୍ୱଭାବତଃ କୁନି ପ୍ରିନସେସଙ୍କର ବିଦ୍ୟା ଟିକିଏ କମ । ସେ ଭୁଲ୍ ଶିଖାଉ ନ ଥାନ୍ତି । କିନ୍ତୁ ବ୍ୟସ୍ତ ହୋଇ ଚାରିଆଡ଼େ ଅନାଉ ଥାଆନ୍ତି, ଯେପରି କି ସେ କଣ ଖୋଜୁଛନ୍ତି । ଦିନର ଭୋଜନ ପୂର୍ବରୁ ତାଙ୍କର ବୁଢ଼ାଶ୍ୱଶୁର ତାଙ୍କର ବଖୁରିକୁ ଆସିଲେ । ଶ୍ୱଶୁରଙ୍କୁ ସେ'ତ ସବୁବେଳେ ଡରନ୍ତି, ପୁଣି ସେତେବେଳେ ଶ୍ୱଶୁରଙ୍କ ମୁହଁର ଭାବରେ ବଡ଼

ଅସ୍ଥିରତା ଥାଏ ଓ ମୁହଁର ଭଙ୍ଗୀରେ ପ୍ରଶଂସାପରାୟଣତା ଥାଏ । ତାଙ୍କ ଶ୍ୱଶୁର ସେ ଘରେ ପଶି କିଛି ନ କହି ଚାଲିଗଲେ । କୁନି ପ୍ରିନସେସ ନଣନ୍ଦଙ୍କ ଆଡ଼କୁ ସେହିପରି ଏକ ଦୃଷ୍ଟିରେ ଅନାଇ ଥାଆନ୍ତି, ଯେଉଁ ଦୃଷ୍ଟି ନିଜ ଅନ୍ତର ଭିତରକୁ ହିଁ ପଡ଼ିଥାଏ ଓ ଯାହା କେବଳ ଗର୍ଭବତୀ ସ୍ତ୍ରୀଙ୍କଠାରେ ହିଁ ଦେଖାଯାଏ । ହଠାତ୍ ସେ କାନ୍ଦି ପକାଇଲେ । କହିଲେ—"ତମ ଭାଇଙ୍କଠୁ କିଛି ଖବର ପାଇଛ ?

"ନା, ଏତେ ଶୀଘ୍ର ତ ଖବର ଆସିବ ନାହିଁ । କିନ୍ତୁ ବାପାଙ୍କୁ ଅସ୍ୱସ୍ତି ଲାଗୁଛି ଓ ମୋତେ ଡର ମାଡ଼ୁଛି ।"

"ତାହାହେଲେ ତୁମେ କିଛି ଶୁଣିନା ?" ପ୍ରିନ୍‌ସେସ୍ ମେରିଆ ତାଙ୍କର ଚକ୍‌ଚକ୍ ଆଖିରେ କଟମଟ କରି ଭାଉଜଙ୍କୁ ଅନାଇଁ କହିଲେ, "କିଛି ନାହିଁ ।" ସେ ମନେ ମନେ ଠିକଣା କରିଦେଇ ଥାଆନ୍ତି ଯେ, ଭାଉଜଙ୍କୁ କିଛି କହିବେ ନାହିଁ । ତାଙ୍କ ବାପାଙ୍କୁ ମଧ୍ୟ ମନାଇ ସାରି ଥାଆନ୍ତି ଯେ, ଭାଉଜଙ୍କ ପିଲା ଜନ୍ମ ହେବା ପୂର୍ବରୁ ଏ ଭୟଙ୍କର ସମ୍ବାଦ ଜଣାଇ ଦିଆଯିବ ନାହିଁ । ପିଲା ଜନ୍ମ ହେବାର ବେଶୀ ଦିନ ବି ନ ଥାଏ । ପ୍ରିନ୍‌ସେସ୍ ମେରିଆ ଓ ବୁଢ଼ା ପ୍ରିନ୍‌ସ ଉଭୟେ ନିଜ ନିଜ ବାଗରେ ନିଜର ଶୋକକୁ ସହି ଲୁଚାଇ ରଖିଲେ । ବୁଢ଼ା ପ୍ରିନ୍‌ସ ଆଉ ଆଶା ରଖିବାକୁ ଅମଙ୍ଗ ହେଲେ । ସେ ମନରେ ନିଶ୍ଚିତ କଲେ ଯେ ପ୍ରିନ୍‌ସ ଆନ୍ଦ୍ରେ ମରି-ଯାଇଛନ୍ତି । ତାଙ୍କ ପୁଅର ଖବର ସଂଗ୍ରହ କରିବାକୁ ଅଷ୍ଟ୍ରିୟା ଦେଶକୁ ସେ ଅବଶ୍ୟ ଗୋଟିଏ କିରାଣୀକୁ ପଠାଇଲେ । କିନ୍ତୁ ଏଣେ ମସ୍କୋ ସହରରେ ବରାଦ ଦେଇଦେଲେ ଯେ ତାଙ୍କ ପୁଅପାଇଁ ଗୋଟିଏ ସ୍ମୃତି ସ୍ତମ୍ଭ ତିଆରି ହେବ ଓ ତାଙ୍କର ଉଦ୍ଦେଶ୍ୟ ଥିଲା ଯେ ସ୍ମୃତି ସ୍ତମ୍ଭଟି ତାଙ୍କ ବଗିଚାରେ ଠିଆ କରାଯିବ । ସେ ସମସ୍ତଙ୍କୁ କହିଲେ ଯେ, ତାଙ୍କର ପୁଅ ନିହତ ହୋଇଛନ୍ତି । ସେ ଅଭ୍ୟସ୍ତ ଭାବରେ ଜୀବନଯାପନ କରିବାକୁ ଚେଷ୍ଟାକଲେ; କିନ୍ତୁ ତାଙ୍କର ବଳ ଭାଙ୍ଗି ପଡ଼ୁଥାଏ । ସେ ପୂର୍ବ ଅପେକ୍ଷା କମ୍ ଚାଲିଲେ, କମ ଖାଇଲେ ଓ କମ ଶୋଇଲେ ଏବଂ ଦିନୁଦିନ ଅଧିକରୁ ଅଧିକ ଦୁର୍ବଳ ହୋଇଗଲେ । ପ୍ରିନସେସ ମେରିଆ କିନ୍ତୁ ଆଶା ରଖିଥାଆନ୍ତି ଯେ ତାଙ୍କ ଭାଇ ବଞ୍ଚିଛି । ଜୀଅନ୍ତା ଲୋକପାଇଁ ଯେମିତି ଠାକୁରଙ୍କ ପାଖେ ଜଣାଣ

କରାଯାଏ, ସେମିତି ସେ ଭଗବାନଙ୍କ ପାଖରେ ଭାଇପାଇଁ ପ୍ରାର୍ଥନା କରୁଥାଆନ୍ତି । ସେ ପ୍ରତି ମୁହୂର୍ତ୍ତରେ ଭାବୁଥାଆନ୍ତି ଯେ ଭାଇ ଫେରି ଆସୁଛନ୍ତି ବୋଲି ସେ ଖବର ପାଇବେ ।

ସେ ଦିନ ମାର୍ଚ୍ଚ ମାସ ୧୯ ତାରିଖର ସକାଳ । ଘରେ ସକାଳର ଜଳଖିଆ ସରିଥାଏ । କୁନି ପ୍ରିନସେସ ଲିଜା କୌଣସି କାରଣ ନ ଜାଣିଲେ ସୁଦ୍ଧା ତାଙ୍କ ମୁହଁ ହସ ଆଉ ଆଗପରି ନ ଥିଲା । ସେ ଘରକୁ ଯେଉଁ ବିଷାଦ ଗ୍ରାସ କରିଥିଲା,—ସେହି ଦାରୁଣ ଦୁଃସମ୍ବାଦ ମିଳିଲା ବେଳଠୁଁ, ଯହିଁରେ ହସ, କଣ୍ଠସ୍ୱର, ଗତିବିଧି ସବୁଥିରେ ଶୋକର ଛାପ ପଡ଼ି ଯାଇଥାଏ—କୁନି ପ୍ରିନସେସଙ୍କ ହସରେ ବି ଛାଏଁ ଛାଏଁ ସେହି ସାମୂହିକ ଶୋକର ପ୍ରଭାବ ପଡ଼ିଯାଇଥାଏ ।

ନଣନ୍ଦଙ୍କୁ ସେ କହିଲେ, "ଶୁଣ, ସୁନାଟି ପରି, ମତେ ଲାଗୁଛି ଆଜି ସକାଳର ଜଳଖିଆ ମୋ ଦେହରେ ଗଲାନାହିଁ ।" ପ୍ରିନସେସ ମେରିଆ ଭାଉଜ ପାଖକୁ ହସ ହସ ହୋଇ ଧାଇଁଗଲେ ।

"ତୁମ ଦେହ କଣ ବିଗିଡ଼ିଗଲା, ମୋ ସୁନା, ମୋ ଧନ," ପ୍ରିନସେସ ମେରିଆ ତାଙ୍କ ଭାଉଜକୁ କହିଲେ, ଯେ କଣ ? ତୁମେ ଆଜି ଭାରି ଶୁଖିଲା ଦିଶୁଛ !"

ସେଠି ଗୋଟିଏ ଚାକରାଣୀ ଥିଲା । ସେ କହିଲା, "ମେରିଆ ! ବୋଗଡ଼ାନୋଭାଙ୍କୁ ଡକେଇ ପଠେଇଲେ ଭଲହୁଅନ୍ତା ମଣିମା" ! ମେରିଆ ବୋଗଡ଼ାନୋଭା ଜଣେ ସହରୀ ଧାଈ, ସେ 'ଲ୍ଡ୍ରାପାହାଡ଼'ରେ ପନ୍ଦର ଦିନ ହେଲା ଥାନ୍ତି ।

"ଠିକ କହିଲ," ପ୍ରିନସେସ ମେରିଆ କହିଲେ, "ଯାଙ୍କର ଯେଉଁ ବେଦନା ସେଇଆ ବୋଧହୁଏ । ମୁଁ ଯାଏଁ ଧାଈକୁ ଡାକି ଆଣେ । "ସେ ଘରୁ ବାହାରି ଯାଉ ଯାଉ ଭାଉଜଙ୍କୁ କୋଳକରି କହିଲେ, "ଦମ୍ଭ ଧରିଥା, ସୁନାଟି ପରି, ସାହସ ଦେଖା ?"

କୁନି ପ୍ରିନ୍‌ସେସ୍ ଶୁଖିଲା ତ ଦିଶୁଥିଲେ, ଏକଥା ଶୁଣି ସମ୍ମୁଖରେ ଥିବା ଅନିବାର୍ଯ୍ୟ ବେଦନା କଥା ଭାବି ତାଙ୍କ ମୁହଁ ଛୋଟ ପିଲା ମୁହଁପରି

ଓଠରେ ଗ୍ଲାନିଆ ହସିଲା । ସେ କହିଲେ, "ନାହିଁ ନାହିଁ ନାହିଁ, ସେମିତି କହନା । ବରଂ କହ ଅଜୀର୍ଣ୍ଣ ହୋଇ ମୋ ପେଟକୁ କାଟୁଛି ।" କୁନି ପ୍ରିନ୍‌ସେସ୍ ହାତ ଘୁଞ୍ଚି ଘୁଞ୍ଚି କାନ୍ଦୁଥାନ୍ତି, ଶ୍ରେଷ୍ଠ ପିଲାଙ୍କ ମନରେ ଦୁଃଖ ହେଲେ ଯେମିତି ହୁଅନ୍ତି ସେମିତି ।

ମେରିଆ ବୋଗ୍‌ଡ଼ାନୋଭ୍ନା ଧାଈଙ୍କ ଡାକିବାକୁ ପ୍ରିନସେସ ମେରୀ ଧାଇଁଗଲେ. ପଛରୁ ଶୁଭୁଥାଏ, "ହେ ଭଗବାନ୍ ! ହେ ଭଗବାନ୍ ?" ଧାଈ ସେଠିକି ଆସୁଥାନ୍ତି, ଅଧା ବାଟରେ ହୋଇଥାନ୍ତି ।

ତାଙ୍କର ଧଳା ସାନ ସାନ ମାଉଁସିଆ ହାତପାପୁଲି ଯୋଡ଼ିକୁ ଧାଈ ନିଶ୍ଚିନ୍ତ ମନରେ ରଗଡ଼ୁଥାନ୍ତି । ପ୍ରିନସେସ ମେରୀ ଭୟରେ ବଡ଼ ବଡ଼ ଆଖିକରି ଧାଈ ମୁହଁକୁ ଅନାଇଁ କହିଲେ ।

"ମେରିଆ ବୋଗଡ଼ାନୋଭ୍ନା, ମତେ ଲାଗୁଛି ଭାଉଜଙ୍କର ପ୍ରସବ ବେଦନା ଆରମ୍ଭ ହେଲାଣି ।"

ଧାଈ ଆଦୌ ତରତର ହୋଇ ଚାଲିଲେ ନାହିଁ, କହିଲେ, "ଭଲ ତ, ଭଗବାନଙ୍କ ଦୟା ସେ । ଆପଣମାନେ ଅଳ୍ପବୟସୀ ଝିଅପିଲା । ଆପଣମାନେ ସେସବୁ କଥା ଜାଣିବା ଦରକାର ନାହିଁ ।"

"କିନ୍ତୁ ମସ୍କୋ ପଠାଇଛୁ ଡାକ୍ତର ଏ ପର୍ଯ୍ୟନ୍ତ ଆସି ପହଞ୍ଚିଲେ ନାହିଁ ଯେ ।" ପ୍ରିନ୍‌ସେସ କହିଲେ । (ତାଙ୍କ ଭାଇ ଆନ୍ଦ୍ରେ ଓ ଭାଉଜ ଲିଜା ଦହେଁ ଚାହିଁଥିଲେ ଯେ ପ୍ରସବବେଳେ ମସ୍କୋରୁ ଡାକ୍ତର ଅଣା-ହେବ । ସେହି ଅନୁସାରେ ଡାକ୍ତର ଡାକିବାକୁ ଲୋକ ଯାଇଥିଲା, ଯେ କୌଣସି ମୁହୂର୍ତ୍ତରେ ଡାକ୍ତର ପହଞ୍ଚିଯିବେ ବୋଲି ସେମାନେ ଅପେକ୍ଷା କରିଥାନ୍ତି ।)

"କିଛି ଚିନ୍ତା କରନ୍ତୁନାହିଁ ପ୍ରିନ୍‌ସେସ", ଧାଈ ମେରିଆ ବୋଗଡ଼ାନୋଭ୍ନା କହିଲେ, "ଡାକ୍ତର ନ ଆସିଲେ ବି ସବୁ ସୁରୁଖୁରୁରେ ହୋଇଯିବ ।"

ପାଞ୍ଚ ମିନଟ୍ ପରେ ପ୍ରିନ୍‌ସେସ୍ ମେରିଆ ନିଜ ରହିବା ବଖରାରେ ଥାଇ ଶବ୍ଦ ଶୁଣିଲେ ଯେ ବାହାରେ କଣ ଓଜନିଆ ଜିନିଷଟାଏ ବୁହା ହୋଇ ଯାଉଛି । ସେ ଉଙ୍କି ମାରି ଦେଖିଲେ ଯେ ଚାକରମାନେ ଗୋଟାଏ ଚମତ୍କାର ସୋଫାକୁ ବୋହି ତାଙ୍କ ଭାଉଜଙ୍କ ଶୋଇବା ଘରକୁ ନେଇ ଯାଉଛନ୍ତି । ସୋଫାଟା ତାଙ୍କ ଭାଇ ଆନ୍ଦ୍ରେଙ୍କ ପଢ଼ା ଘରେ ଥୁଆ ହୋଇଥିଲା । ଚାକର-ମାନଙ୍କ ମୁହଁ ଚୁପ୍‌ଚାପ୍, ଥମ୍‌ଥମ୍, ଗମ୍ଭୀର ।

ପ୍ରିନ୍‌ସେସ୍ ମେରିଆ ଏକୁଟିଆ ନିଜ ବଖୁରିରେ ବସି ରହିଥାନ୍ତି, ଘରେ କେଉଁଠି ଶବ୍ଦ ଶୁଭୁଥାଏ ତାକୁ ଶୁଣୁଥାନ୍ତି । ପିଣ୍ଡାବାଟେ କେହି ଗଲେ କବାଟ ଖୋଲୁଥାଆନ୍ତି ଓ ପିଣ୍ଡାରେ କଣ ହେଉଛି ଦେଖୁଥାନ୍ତି । ଥିରି ଥିରି ପାଦ ପକାଇ କେତେଜଣ ସ୍ତ୍ରୀଲୋକ ସେବାଟେ ଯା, ଆସ କଲେ । ସେମାନେ ପ୍ରିନସେସ ମେରିଆ ଆଡ଼କୁ ଚାହିଁଦେଉଥାନ୍ତି ଓ ଚାଲିଯାଉଥାନ୍ତି । କାହାରିକୁ କିଛି ପଚାରିବାକୁ ତାଙ୍କର ସାହସ ହେଉ ନଥାଏ । ସେ ନିଜ ବଖୁରିକୁ ଲେଉଟି ଗଲେ, କବାଟ କିଳିଲେ, ଆରାମଚୌକିରେ ସ୍ଥିର ହୋଇ ବସିଲେ, କେତେବେଳେ ବା ପ୍ରାର୍ଥନା ବହି ଧରୁଥାନ୍ତି, କେତେ-ବେଳେ ଠାକୁରଙ୍କ ପାଖରେ ଆଣ୍ଠୁମାଡ଼ି ବସୁଥାନ୍ତି । ସେ ଦେଖିଲେ ଯେ, ଯେତେ ପ୍ରାର୍ଥନା କଲେବି ତାଙ୍କ ଉଦବେଗ ଶାନ୍ତ ହେଉନାହିଁ । ଏଥିପାଇଁ ସେ ଖୁବ୍ ଦୁଃଖିତ ହେଲେ । ହଠାତ୍ ତାଙ୍କ ଘର କବାଟ ଆସ୍ତେ ଖୋଲିଗଲା ଓ ସେ ଦେଖିଲେ ଯେ ତାଙ୍କ ବୁଢ଼ି ଧାଈମା ପ୍ରାସକୋଭିଆ ସାଭିସ୍ନା ମୁଣ୍ଡରେ ରୁମାଲ୍‌ଟିଏ ବାନ୍ଧି ଏରୁଣ୍ଡି ଉପରେ ଠିଆ ହୋଇଛନ୍ତି । ବୁଢ଼ା ପ୍ରିନସ ମନା କରିବାରୁ ବୁଢ଼ୀ ଧାଈମା କ୍ୱଚିତ୍ ମେରିଆଙ୍କ ବଖୁରିକୁ ଆସନ୍ତି । "ତୁମ ପାଖେ ଟିକେ ବସିବାକୁ ଆସିଲି ଝିଅ" ଧାଈମା କହିଲେ, "ଆନ୍ଦ୍ରେ ବାହାଘର ବେଳେ ଯେଉଁସବୁ ମହମବତି ଅଣାହୋଇଥିଲା ମୁଁ ତାକୁ ଆଣିଛି, ଠାକୁରଙ୍କ ପାଖେ ଲଗାଇବି", ସେ ଦୀର୍ଘ ନିଃଶ୍ୱାସ ପକାଇଲେ ।

"କେଡ଼େ ଭଲ କଲ ଧାଈମା !" "ଈଶ୍ୱର ପରମ ଦୟାଳୁ, ମୋ ମା ! ମୋ ସୁନା !" ଧାଈଟି ମହମବତିଗୁଡ଼ିକ ଠାକୁରଙ୍କ ଆଗେ ଲଗାଇ ଥୋଇଦେଲେ ଓ ମୋଜା ସିଳି ଦୁଆରମୁହଁ ପାଖରେ ବସି ରହିଲେ ।

ପ୍ରିନ୍‌ସେସ ମେରିଆ ଗୋଟିଏ ବହି ଧରି ପଢ଼ିବାକୁ ଲାଗିଲେ । ସେତେବେଳେ କାହା ପାଦଶବ୍ଦ ଶୁଭୁଥାଏ କି କାହା ପାଟି ଶୁଭୁଥାଏ ପ୍ରିନସେସ ଓ ଧାଈ ପରସ୍ପରକୁ ଅନାଉଁଥା'ନ୍ତି । ଜଣଙ୍କ ମୁହଁରେ ଉଦବେଗ ପ୍ରଶ୍ନ, ଅନ୍ୟ ଜଣଙ୍କ ମୁହଁରେ ନିର୍ଭର ଆଶ୍ୱାସ । ସେତେବେଳେ ପ୍ରିନ୍‌ସେସ ମେରିଆଙ୍କର ଯାହା ଅନୁଭୂତି ହେଉଥାଏ ସେ ଘରେ ସେତେବେଳେ ସମସ୍ତଙ୍କର ସେହି ଅନୁଭୂତି । ଗୋଟିଏ ଅନ୍ଧବିଶ୍ୱାସ ଥାଏ, ଯେ କୌଣସି ସ୍ତ୍ରୀଲୋକର ପ୍ରସବବେଦନା ହେଲେ ସେକଥା ଯେତେ କମ୍ ଜାଣି ହୁଏ । ସ୍ତ୍ରୀ ଲୋକର ପ୍ରସବବେଦନା ମଧ୍ୟ ସେତିକି ଅଳ୍ପ ହେବ । ତେଣୁ ପ୍ରତ୍ୟେକେ ଦେଖାଇ ହେଉଥାନ୍ତି ଯେ ସେ ବିଷୟରେ ସେ କିଛି ଜାଣନ୍ତି ନାହିଁ । କେହି ସେ ବିଷୟରେ ପାଟି ଫିଟାଉ ନଥାନ୍ତି । ସେ ଘରେ ଯେଉଁ ଅଭ୍ୟସ୍ତ ମର୍ଯ୍ୟାଦା ଓ ସମ୍ଭ୍ରମ ରାଜତ୍ୱ କରୁଥାଏ ତାହା ଅବ୍ୟାହତ ରହିଥାଏ । କିନ୍ତୁ ତଥାପି ଜଣାପଡ଼ୁଥାଏ ଯେ ମନରେ ଉଦବେଗ ଅଛି, ଲୋକଙ୍କ ହୃଦୟ କୋମଳ ହୋଇଯାଇଛି ଓ ଲୋକେ ଭାବୁଛନ୍ତି ଯେ ଗୋଟାଏ ଅଜଣା ରହସ୍ୟ, ବିରାଟ ରହସ୍ୟ, ସେ ମୂହୂର୍ତ୍ତରେ ସେ ଘରେ ଘଟିଯାଉଛି । ଚାକରାଣୀମାନେ ଯେଉଁ ବଡ଼ ବଖରାରେ ବସିଥାନ୍ତି ସେ ଘରୁ ହସର ଶବ୍ଦ ଶୁଭୁନଥାଏ । ବୈଠକଖାନାରେ ଯେତେ ଲୋକ ଥାନ୍ତି ସମସ୍ତେ ଚୁପ ହୋଇ ବସିଥାନ୍ତି ଓ ସତର୍କ ହୋଇଥା'ନ୍ତି । ଯେଉଁଠି ଚାକରମାନଙ୍କ ଘର ସେଠି ଆଲୁଅ ଓ ମଶାଲ ଜଳୁଥାଏ, କେହି ଶୋଇ ନଥାନ୍ତି । ବୁଢ଼ା ପ୍ରିନସ ତାଙ୍କ ଶୋଇବା ଘରେ ଥାନ୍ତି ଓ ଶବ୍ଦ ନକରି ଗୋଟିଏ ଜାଗାରେ ବୁଲୁଥାନ୍ତି । ମେରିଆ ଖବର କଣ ତା ବୁଝି ଆସିବାକୁ ଚାକର ଟିହନ୍‌କୁ ସେ ବୋଗ୍‌ଡ଼ାନୋଭାଙ୍କ ପାଖକୁ ପଠାଇଲେ ।

ଧାଈ ମେରିଆ ବୋଗଡ଼ାନୋଭା ଟିହନ୍‌ଙ୍କ ଆଡ଼କୁ ତାତ୍ପର୍ଯ୍ୟପୂର୍ଣ୍ଣ ଦୃଷ୍ଟିରେ ଅନାଇଁଲେ । କହିଲେ ପ୍ରିନସଙ୍କୁ କହିଦିଅ ଯେ ଗର୍ଭବେଦନା ଆରମ୍ଭ ହୋଇଛି । ଟିହନ୍ ଯାଇ ପ୍ରିନସଙ୍କୁ ସେହି ଖବର ଦେଲା ।

"ଖୁବ ଭଲକଥା" ପ୍ରିନ୍‌ସ କହିଲେ । ପ୍ରିନସ ତାଙ୍କ ପଢ଼ାଘର ବଖରାର କବାଟ ବନ୍ଦ କଲେ ଓ ତାପରେ ଟିହନ ପଢ଼ାଘରୁ ଆଉ କୌଣସି ଶବ୍ଦ ଶୁଣିଲା ନାହିଁ । ଅଳ୍ପ ସମୟ ପରେ ଟିହନ ପଢ଼ାଘରେ

ପଶିଲା । ସତେ ଯେମିତି ଜଳୁଥିବା ମହମବତୀମାନଙ୍କୁ ସେ ଡେକିବାକୁ ପଶିଛି ସେହିପରି ଭାବ ଦେଖାଇଲା । ସେ ଦେଖିଲା ଯେ ପ୍ରିନ୍‌ସ ଖଟରେ ଶୋଇଛନ୍ତି । ତାଙ୍କ ମୁହଁ ଆଶଙ୍କାରେ ଉଦବିଗ୍ନ । ଟିହନ ତାଙ୍କ ପାଖକୁ ଗଲା, ମୁଣ୍ଡ ହଲେଇଲା ଓ କିଛି ନ କହି ତାଙ୍କ କାନରେ ଚୁମ୍ବନ କଲା । ସେ କାହିଁକି ଆସିଥିଲା ନକହି କି ମହମବତୀମାନଙ୍କୁ ନ'ଛୁଇଁ ସେ ଥରହୋଇ ବାହାରି ଚାଲିଗଲା । ଏ ସଂସାରରେ ଯେଉଁଟା ସବୁଠୁ ଗମ୍ଭୀରତମରହସ୍ୟ ସେତେବେଳେ ସେ ଘରେ ସେଇଆ ସମ୍ପାଦିତ ହେଉଥିଲା । ସଞ୍ଜଗଲା ରାତି ହେଲା । କେହି ଶୋଇଲେ ନାହିଁ । ସମସ୍ତିଙ୍କ ମନରେ ଉଦବେଗ, ସମସ୍ତିଙ୍କ ହୃଦୟ କୋମଳ, ଆଗରୁ ଆହୁରି ବଳା ବଳା ।

ମାର୍ଚ୍ଚ ମାସର ସେହିଭଳି ରାତିଟିଏ ଥିଲା ସେ ଯେତେବେଳେ ଶୀତ ଋତୁ ଆହୁରି ଥରେ ନିଜ ଆଧିପତ୍ୟ ଫେରିପାଇଥାଏ ଓ ବେପରୁଆହୋଇ ହିଂସ୍ରକହୋଇ ତାର ଶେଷ ବରଫକୁ ପୃଥିବୀ ଉପରକୁ ଫୋପାଡ଼େ । ଜର୍ମାନ ଡାକ୍ତର ଯେ କୌଣସି ମୁହୂର୍ତ୍ତରେ ଆସି ପହଞ୍ଚିବେ ବୋଲି ଆଶା କରାଯାଉଥାଏ । ତାଙ୍କୁ ତୁରନ୍ତ ଧେନି ଆସିବା ସକାଶେ ଗାଡ଼ିରେ ଯୋଚିବାକୁ ବାଟକୁ ଆହୁରି ନୂଆ ଘୋଡ଼ା ପଠା ହୋଇଥାନ୍ତି । ବାଟରେ ଯେଉଁଠି ଯେଉଁଠି ଖାଲ ଖମା ଅଛି, ଅସୁବିଧା ସ୍ଥାନ ଅଛି ସେସବୁ ବାରି କେମିତି ସେ ଠିକଣା ବାଟରେ ଆସିବେ ସେଥିପାଇଁ ବରଫ ଉପରେ ତାଙ୍କୁ ବାଟ ଦେଖାଇବାକୁ ଦୋଛକି ଜାଗାକୁ ଘୋଡ଼ାରେ ଚଢ଼ି ଲଣ୍ଠନ ଧେନି ଲୋକ ପଠାହୋଇ ଯାଇଥାନ୍ତି ।

ପ୍ରିନସେସ୍ ମେରିଆ ବହୁତ ବେଳୁ ବହି ଥୋଇ ଦେଇ ଚୁପ ଚୁପ ବସିଥାନ୍ତି । ତାଙ୍କ ବୁଢ଼ୀ ଧାଇମାର ଚମ ଲୋସ୍କୋସ୍ ମୁହଁଉପରେ ତାଙ୍କର ଉଜ୍ଜଳ ଦୃଷ୍ଟି ଲାଖି ରହିଥାଏ । (ସେ ମୁହଁରଟିଖିନିଖି ଦୃଶ୍ୟ ବହୁକାଳୁ ତାଙ୍କର ଅତି ପରିଚିତ) । ସେ ଦେଖୁଥାନ୍ତି କେମିତି ଧାଇମା ମୁଣ୍ଡରେ ଯେଉଁ ରୁମାଲ ବାନ୍ଧିଛି । ତା ବାହାରକୁ ତା ମୁଣ୍ଡର କେତୋଏ ଧଳା ବାଳ ବାହାରି ପଡ଼ି ରହିଛି । ସେ ଦେଖୁଥାନ୍ତି ଧାଇମାର ଚିବୁକ ତଳେ ଲୋସ୍କୋସ୍ ଚମ କେମିତି ମୁଣି ପରି ଓହଳିଛି !

ବୁଢ଼ୀ ଧାଇମା ହାତରେ ତା ମୋଜା ଯୋଡ଼ିକ ଧରିଥାଏ, ଧୀର ସ୍ୱରରେ ଗପି ଯାଉଥାଏ, ନିଜେ କଣ ଗପୁଛି ତା ଅର୍ଥବା କଣ ସେସବୁ ସେ ବୁଝୁ ନଥାଏ । ସେ କହୁଥାଏ କେମିତି ପ୍ରିନସେସ ମେରିଆଙ୍କ ମୃତା ମା' କଶିନୟୂଭ ଗାଁରେ ପିଲା ଜନ୍ମ କଲେ, ଧାଈଟିଏ ବି ତାଙ୍କ ପାଖରେ ନଥିଲା । ପ୍ରସବ କାର୍ଯ୍ୟ ଚଳାଇଥିଲା ମୋଲ୍‌ଡାଭିଆ ପ୍ରଦେଶର ଗୋଟିଏ ଚଷା ଘରର ସ୍ତ୍ରୀ ଲୋକଟିଏ ।

ଧାଈମା' କହିଲା, "ଭଗବାନ ମଙ୍ଗଳମୟ । ଡାକ୍ତର କେବେ ଲୋଡ଼ା ପଡ଼ନ୍ତି ନାହିଁ ।"

ହଠାତ୍ ଦମକାଏ ପବନ ଗୋଟାଏ ଝରକା ଫ୍ରେମଉପରେ ପିଟିହେଲା । (ପ୍ରତି ଝରକାରେ ଯୋଡ଼ାଏ ଯୋଡ଼ାଏ ଫ୍ରେମ ଲାଗେ, କିନ୍ତୁ ଯେତେବେଳେ ଭରତିଆ ଚଢ଼େଇ ମାନଙ୍କର ଆସିବାବେଳେ ସେ ତବେଳେ ପ୍ରତି ଝରକାରୁ ପ୍ରିନସେସ ମେରିଆଙ୍କ ଆଦେଶରେ ଯାଉଁଳା ଫ୍ରେମ କାଢ଼ି ନିଆହୋଇ ପଟିକିଆ ଫ୍ରେମ ଲଗାହୋଇଥିଲା ।) ଝରକାର ଗୋଟାଏ ବୋଲ୍‌ଟ ଭଲ କରି ଲାଗି ନଥିଲା । ପବନରେ ଝରକା ପିଟିଗଲା । ମୋଟା ଝରକା ପର୍ଦ୍ଦା ଫଡ଼ ଫଡ଼ ହେଲା । ବରଫ ଲଗା ପବନ ପଶି ଘର ଭିତରେ ମହମ୍‌ବତୀଗୁଡ଼ିକୁ ନିଭାଇ ଦେଲା । ପ୍ରିନ୍‌ସେସ ମେରିଆ ଥରିଉଠିଲେ । ତାଙ୍କ ଧାଈମା ତା ମୋଜାକୁ ଥୋଇଦେଇ ଝରକା ପାଖକୁ ଗଲା । ପଦାକୁ ମୁଣ୍ଡ ଗଳେଇ ଝରକାର ଖୋଲା ଫ୍ରେମଟାକୁ ଧରିବାକୁ ଚେଷ୍ଟାକଲା । ଥଣ୍ଡା ପବନରେ ତା ମୁଣ୍ଡରେ ରୁମାଲ୍‌ର କାନ ଓ ତାର କେରି କେରି ଧଳା ବାଳ ଫଡ଼ ଫଡ଼ ହେଲା ।

"ପ୍ରିନ୍‌ସେସ ମୋ ସୁନା" ସେ କହିଲା, ଝରକା ଫ୍ରେମକୁ ଧରିଥାଏ ବନ୍ଦକରୁନଥାଏ । "କିଏ ଜଣେ ଘୋଡ଼ାଗାଡ଼ିରେ ବସି ହତାର ସଡ଼କ ବାଟେ ଘର ଆଡକୁ ଆସୁଛି । ସଙ୍ଗରେ ଲଣ୍ଠଣ ଅଛି । ସେ ନିଶ୍ଚୟ ଡାକ୍ତର" ।

"ହେ ଭଗବାନ ତମେ କେଡ଼େ ଦୟାଳୁ, ପ୍ରିନ୍‌ସେସ୍ ମେରିଆ କହିଲେ" ।

"ସେ ତ ରୁଷ ଭାଷା ବୁଝନ୍ତି ନାହିଁ ମତେ ତାଙ୍କ ପାଖକୁ ଯିବାକୁ ପଡ଼ିବ ।"

ପ୍ରିନ୍‌ସେସ୍ ମେରିଆ ଗୋଟିଏ ଶାଲ ଘୋଡ଼ି ହୋଇ ପଡ଼ିଲେ ଓ ଆଗନ୍ତୁକଙ୍କୁ ଭେଟିବାକୁ ଧାଇଁ ଗଲେ । ପାଖ ଘରୁ ଭିତରେ ପଶିଗଲା ସେ ଗୋଟିଏ ଝରକା ବାଟେ ଦେଖିଲେ ଯେ ବାଟ ମୁହଁରେ ଗୋଟିଏ ଗାଡ଼ି ଥୁଆହୋଇଛି ଓ ଲଣ୍ଠନ ଗୁଡ଼ାଏ ଅଛି । ସେ ପାହାଚରେ ଚଢ଼ିଲେ । ଗୋଟିଏ ମହମ୍‌ବତି ପବନରେ ଫଡ଼ ଫଡ଼ ହେଉଥାଏ । ଫିଲିପ୍ ବୋଲି ଯେଉଁ ଗୃହକର୍ମୀଟି ଥାଏ ସେ ଡର ଡର ଅନାଉ ଥାଏ ଓ ପାହାଚର ପ୍ରଥମ ଲ୍ୟାଣ୍ଡିଙ୍ଗ୍ ତଳେ ଠିଆ ହୋଇଥାଏ । ହାତରେ ଗୋଟିଏ ମହମ୍‌ବତି ଧରିଥାଏ । ପାହାଚର ଆଉ ଟିକିଏ ତଳେ ଯେଉଁଠି ପାହାଚ ମୋଡ଼ି ନେଇଛି ସେଠି ଶୁଭୁଥାଏ ମୋଟା ଓଭର ସୁ ଜୋତାର ମର୍ ମର୍ ଓ ପ୍ରିନ୍‌ସେସ୍ ମେରିଆଙ୍କର ଅତି ପରିଚିତ ଗୋଟିଏ କଣ୍ଠସ୍ୱର କଣ କହୁଥାଏ । ସେ ସ୍ୱର କହିଲା, "ଈଶ୍ୱରଙ୍କୁ ଧନ୍ୟବାଦ । ଆଉ, ବାପା ?"

"ସେ ଶୋଇବାକୁ ଗଲେଣି," ଖାନ୍‌ସାମା ଡେମିଆନ୍ ତଳେ ଥାଇ ଉତ୍ତର ଦେଲା ।

ତା ପରେ ଆଗନ୍ତୁକ ଆଉ କଣ କହିବାର ଶୁଭିଲା । ଡେମିଆନ୍ ବ କଣ ଉତ୍ତର ଦେଲା ଓ ମୋଟା ଓଭରସୁ ପିନ୍ଧିଥିବା ପାଦ ଶବ୍ଦ ତର ତର ହୋଇ ସିଡ଼ି ପାହାଚ ଉପରକୁ ଉଠିବା ଶବ୍ଦ ଶୁଭିଲା । ସିଡ଼ିର ସେ ପାହାଚ ସବୁ ଦିଶୁ ନଥାଏ ।

ପ୍ରିନ୍‌ସେସ୍ ମେରିଆ ଭାବିଲେ "ଇଏ ତ" ଆନ୍ଦ୍ରେ । ନା ତା ସମ୍ଭବ ନୁହେଁ । ତାହାହେଲେ ତ ଅସମ୍ଭବ ସମ୍ଭବ ହେଲା କହିବା ?"

ସେ ଯେତେବେଳେ ଏପରି ଭାବୁଥିଲେ ସେତେବେଳେ ଯେଉଁ ଜାଗାରେ ଗୃହକର୍ମୀ ମହମ୍‌ବତି ଧରି ଠିଆ ହୋଇଥିଲା । ସେଇ ପ୍ରିନ୍‌ସ ଆନ୍ଦ୍ରେଙ୍କର ମୁହଁ ଓ ଦେହ ଦିଶିଲା । ସେ ଗୋଟିଏ ମଶୁ ଲୋମର କୋଟ

ପିନ୍ଧିଥାଆନ୍ତି । କୋଟ୍‌ର ଚଉଡ଼ା କଲରର ଉପରେ ବରଫ ଲାଗିଥାଏ । ଯଦି ସେ ପ୍ରିନ୍‌ସ ଆନ୍ଦ୍ରେ, କିନ୍ତୁ ଶୁଖି ଯାଇଥାଆନ୍ତି । ସରୁ ହୋଇଯାଇଥାଆନ୍ତି, ତାଙ୍କ ମୁହଁରେ ଗୋଟେ ବିଚିତ୍ର ଭାବ । ସେପରି ଆଗେ ଦିଶୁ ନଥିଲା । ଆଶ୍ଚର୍ଯ୍ୟ ପ୍ରକାର ଉଦବିଗ୍ନ ଓ କୋମଳ ଭାବ ସେ ମୁହଁରେ ଦିଶୁଥିଲା ସେ ସିଡ଼ି ପାହାଚ ବାଟେ ଚଢ଼ି ଗଲେ ଓ ଭଉଣୀକୁ କୁଣ୍ଢାଇ ପକାଇଲେ ।

ପଚାରିଲେ "ତାହେଲେ ତମେ ମୋ ଚିଠି ପାଇନ ?" ସେ ଉତ୍ତରକୁ ଅପେକ୍ଷା କଲେ ନାହିଁ କି ଉତ୍ତର ପାଇନଥାନ୍ତେ କାରଣ ପ୍ରିନସେସ କଥା କହି ପାରୁନଥାନ୍ତି । ପ୍ରିନ୍‌ସ ଆନ୍ଦ୍ରେ ବୁଲି ପଡ଼ିଲେ । ତାଙ୍କ ପଛରେ ଡ଼ାକ୍ତର ଥିଲେ । (ବାଟରେ ଠାଏ ଦୁହିଁଙ୍କର ଦେଖା ହୋଇଥିଲା) ସେ ପୁଣି ତରତର ହୋଇ ଉପର ମହଲାକୁ ଧାଇଁଗଲେ ଓ ଭଉଣୀକୁ କୁଣ୍ଢାଇ ପକାଇଲେ ।

"ଏଡ଼େ ଆଶ୍ଚର୍ଯ୍ୟ ଭାଗ୍ୟ !" ସେ କହିଲେ । "ମେରିଆ !" ତାପରେ ତାଙ୍କର ରୁମର କୋଟ୍ ଓ ଓଭର୍‌ସୁ (ବରଫ ଦେଶରେ ଜୋତା ଉପରେ ଯାହାକୁ ପିନ୍ଧନ୍ତି । ତରତର କରି ଓହ୍ଲାଇଦେଇ ସେ ତାଙ୍କ ସ୍ତ୍ରୀ ରହୁଥିବା ବଖରା ଆଡ଼କୁ ଧାଇଁଗଲେ ।

ରାତିରେ ଶୋଇଲାବେଳେ ଯେଉଁ ଟୋପି ପିନ୍ଧି ସେ ଦେଶରେ ଶୁଅନ୍ତି, ଲୁଇ ପ୍ରିନସେସ ସେଇ ଟୋପି ପିନ୍ଧିଥିଲେ, ବିଛଣାରେ ତକିଆ ଉପରେ ପଡ଼ି ରହିଥିଲେ । (ଅଳ୍ପକ୍ଷଣ ଲାଗି ତାଙ୍କର ପ୍ରସବ ବେଦନା ଅଟକି ଯାଇଥାଏ) ତାଙ୍କ ଗାଲ ଫୁଲିଯାଇଥାଏ, ତହିଁରୁ ଝାଳ ବୋହୁଥାଏ; ତାଙ୍କ ମୁଣ୍ଡବାଳ ମୋଡ଼ି ମୋଡ଼ି କୁଞ୍ଚ କୁଞ୍ଚ ହୋଇ ଗାଲ ଉପରେ ପଡ଼ିଥାଏ । ତାଙ୍କର ଟିକି ପାଟିଟି, ସେହି ନରମ ଉପର ଓଠ ସମେତ, -- ଖୋଲା ପଡ଼ିଥାଏ । ସେ ଖୁସିରେ ମୁରୁକି ମୁରୁକି ହସୁଥାନ୍ତି । ପ୍ରିନ୍‌ସ ଆନ୍ଦ୍ରେ ସେ ବଖରା ଭିତରକୁ ଗଲେ । ଲୁଇ ପ୍ରିନସେସ ଯେଉଁ ଖଟରେ ଶୋଇଥାନ୍ତି, ସେହି ଖଟର ଗୋଡ଼ପାଖେ ତାଙ୍କ ଆଡ଼କୁ ମୁହଁ କରି ଠିଆହୋଇ ରହିଲେ । ପ୍ରିନ୍‌ସେସ୍ ଆଖି ଉଜ୍ଜ୍ୱଳ ଚକଚକ୍ ଦିଶୁଥାଏ । ଶିଶୁ ସୁଲଭ ଭୟରେ ଓ ଉତ୍ତେଜନାରେ ସେ ଆଖି ଗୁଡ଼ିକ ରହିଥାଏ, ଏବେ ସେ ଆଖିର ଦୃଷ୍ଟି ପ୍ରିନ୍‌ସ ଆନ୍ଦ୍ରେଙ୍କ ଉପରେ ଭରା ଦେଲା, କିନ୍ତୁ ତା ଭଙ୍ଗୀ ବଦଳିଲା

ନାହିଁ । ସେ ଦୃଷ୍ଟିର ଭଙ୍ଗୀ ସତେକି କହୁଥାଏ, "ମୁଁ ତୁମ ସମସ୍ତଙ୍କୁ ଭଲପାଏଁ, ମୁଁ ତ କାହାର କିଛି ଅନିଷ୍ଟ କରିନାହିଁ । ତେବେ ମୁଁ କାହିଁକି ଏ କଷ୍ଟ ଭୋଗୁଛି ? ମତେ ସାହାଯ୍ୟ କର ।" ସେ ତାଙ୍କ ସ୍ୱାମୀଙ୍କୁ ଦେଖିଲେ, କିନ୍ତୁ ବର୍ତ୍ତମାନ ଯେ ତାଙ୍କ ସ୍ୱାମୀ ଆସି ତାଙ୍କ ଆଗରେ ଠିଆ ହୋଇଛନ୍ତି । ସେ ଏହାର ତାତ୍ପର୍ଯ୍ୟ ବୁଝିପାରିଲେ ନାହିଁ । ପ୍ରିନ୍‌ସ ଆନ୍ଦ୍ରେ ଖଟ କରରେ ବୁଲିପଡ଼ି ଯାଇ ତାଙ୍କ କପୋଳରେ ଚୁମ୍ବନ କଲେ ।

ପୂର୍ବେ ଯେପରି କେବେହେଲେ ତାଙ୍କୁ ସେଭଳି କହୁ ନଥିଲେ. ସେହିପରି ଶବ୍ଦଟିଏ ପ୍ରିନ ସ ଆନ୍ଦ୍ରେ କହିଲେ, "ମୋ ଧନ !" କହିଲେ "ଭଗବାନ ଦୟା କରିବେ ।" କୁନ ପ୍ରିନ ସେସ ତାଙ୍କ ମୁହଁକୁ ପ୍ରଶ୍ନିକ ଭଙ୍ଗୀରେ ଚାହିଁ ରହିଲେ, ସେ ଦୃଷ୍ଟିଭଙ୍ଗୀରେ ଶିଶୁ ସୁଲଭ ତିରସ୍କାର ବି ଥିଲା । ସେ ଦୃଷ୍ଟି ସତେଅବା କହୁଥାଏ, "ମୁଁ ଆଶା କରିଥିଲି ତୁମଠୁଁ ସାହାଯ୍ୟ ମିଳିବ । କିଛି ସାହାଯ୍ୟ କଲ ନାହିଁ ! ତୁମେ ବି !"

ତାଙ୍କ ସ୍ୱାମୀ ଯେ ଆସି ପହଞ୍ଚିଛନ୍ତି ଏଥିପାଇଁ ମୋଟେ ସେ ଆଶ୍ଚର୍ଯ୍ୟ ହେଲେ ନାହିଁ । ସେ ଯୁଦ୍ଧକୁ ଯାଇଥିଲେ ଫେରି ଆସିଛନ୍ତି, ଆସି ପହଞ୍ଚିଛନ୍ତି — ଏହାର ତାତ୍ପର୍ଯ୍ୟ ବି କୁନ ପ୍ରିନ ସେସ ବୁଝି ପାରିଲେ ନାହିଁ । ସେ ଯେପରି କଷ୍ଟ ପାଉଥାନ୍ତି, ସେ କଷ୍ଟ ସହିତ ସ୍ୱାମୀ ଲେଉଟି ଆସିବାର ସମ୍ବନ୍ଧ ନଥାଏ, ସେ କଷ୍ଟ କିପରି ଉପଶମ ହେବ ତା' ସହିତ ବି ତାର ସମ୍ବନ୍ଧ ନଥାଏ । ପୁଣି ପ୍ରସବ ବେଦନା ଆରମ୍ଭ ହେଲା ଓ ସେଘରୁ ବାହାରିଯାନ୍ତୁ ବୋଲି ଧାଈ ମେରିଆ ବୋଗ୍‌ଡାନୋଭ୍ନା ପ୍ରିନ୍‌ସ ଆନ୍ଦ୍ରେଙ୍କୁ କହିଲେ । ଡାକ୍ତର ସେ ଘରେ ପଶିଲେ, ପ୍ରିନ୍‌ସ ଆନ୍ଦ୍ରେ ସେଘରୁ ବାହାରି ଆସିଲେ, ପ୍ରିନ୍‌ସେସ୍ ମେରିଆଙ୍କୁ ଦେଖି ତାଙ୍କ ପାଖକୁ ପୁଣି ଗଲେ । ସେ ଦୁହେଁ ଫୁସ୍‌ଫୁସ୍ ହୋଇ କଥାଭାଷା ହେଲେ, କିନ୍ତୁ ପ୍ରତି ମୁହୂର୍ତ୍ତରେ କଥା ଅଟକି ଯାଉଥାଏ, ସେମାନେ କାନେଇ ଥାନ୍ତି, ଅପେକ୍ଷା କରିଥାନ୍ତି ।

ପ୍ରିନ୍ ସେସ ମେରିଆ କହିଲେ, "ଯାଅ. ମୁନାଟି ପରି ।" ପ୍ରିନ୍‌ସ ଆନ୍ଦ୍ରେ ପୁଣି ତାଙ୍କ ସ୍ତ୍ରୀଙ୍କ ପାଖକୁ ଗଲେ, ପାଖ ବଖୁରିରେ ବସିପଡ଼ି ଅପେକ୍ଷା କଲେ । ସେ ଘରୁ ଗୋଟିଏ ସ୍ତ୍ରୀଲୋକ ପଦାକୁ ଦୌଡ଼ି ଆସିଲା,

ତା ମୁହଁରେ ଗୁଜୁରିଆ । ସେ ପ୍ରିନ୍‌ସ ଆନ୍ଦ୍ରେଙ୍କୁ ଦେଖି ଅଡୁଆରେ ପଡ଼ିଗଲା । ପ୍ରିନ୍‌ସ ଆନ୍ଦ୍ରେ ହାତରେ ମୁହଁ ଲୁଚେଇ ଦେଲେ ଓ କିଛି ବେଳ ସେହିପରି ବସି ରହିଲେ । ପାଖ ଘରୁ ଆଉ ଚିତ୍କାର ଶୁଭୁଥାଏ । କରୁଣ ନିଃସହାୟ ଚିତ୍କାର, କୌଣସି ଜନ୍ତୁର ବୋବାଳି ପରି । ପ୍ରିନ୍‌ସ ଆନ୍ଦ୍ରେ ଉଠି ପଡ଼ିଲେ, ସେ ଘର କବାଟ ପାଖକୁ ଗଲେ, କବାଟ ଖୋଲି-ଥାନ୍ତେ, କିନ୍ତୁ ଭିତରୁ କିଏ ଜଣେ କବାଟକୁ ଠେଲି ଧରିଛି ।

ଭିତରୁ କାହାର ଭୀତ କଣ୍ଠସ୍ୱର ଶୁଭିଲା, "ଭିତରକୁ ଆସିବା ମନା, ଆମି ପାରିବେ ନାହିଁ, ଆସନ୍ତୁ ନାହିଁ ।" ପ୍ରିନ୍‌ସ ଆନ୍ଦ୍ରେ ଫେରିଗଲେ, ପାଖ ବଖରାରେ ଏକର ସେକର ବୁଲିଲେ । ଚିତ୍କାର ବନ୍ଦ ହେବା, କେତେ ସେକେଣ୍ଡ ବିତିଲା । ତାପରେ ସେପାଖ ବଖରାରୁ ଗୋଟାଏ ଭୟଙ୍କର ଚିତ୍କାର ଶୁଭିଲା । ପ୍ରିନ୍‌ସ ଆନ୍ଦ୍ରେ ଭାବିଲେ, "ଏ ଚିତ୍କାର ମୋର ସ୍ତ୍ରୀର ନୁହେଁ । ସେ କ'ଣ ଏମିତି ଚିତ୍କାର କରିପାରନ୍ତା ? ପ୍ରିନ୍‌ସ ଆନ୍ଦ୍ରେ କବାଟ ପାଖକୁ ଧାଇଁଗଲେ । ଚିତ୍କାର ବନ୍ଦ ହେଲା । ତାଙ୍କୁ ଗୋଟିଏ ଶିଶୁର କାନ୍ଦଣା ଶୁଭିଲା ।

ସେ ଶବ୍ଦ ଶୁଣିବା ମାତ୍ରକେ ପ୍ରିନ୍‌ସ ଆନ୍ଦ୍ରେ ଭାବିଲେ, "ସେ ବଖରାକୁ ଗୋଟାଏ କଅଁଳା ପିଲାକୁ କାହିଁକି ନିଆଯାଇଛି ? ଗୋଟାଏ ଶିଶୁ ତ ! କାହା ପୁଅ ? କିଏ ସେ ? ନା ଶିଶୁଟି ଜନ୍ମ ପ୍ରସବ ହେଲା ?"

ହଠାତ୍ ଯେମିତି ସେ ଶିଶୁର କାନ୍ଦଣାରେ ସବୁ ଆନନ୍ଦର ତାତ୍ପର୍ଯ୍ୟ ବୁଝିପାରିଲେ ସେମିତି ତାଙ୍କ କଣ୍ଠ ବାଷ୍ପରୁଦ୍ଧ ହୋଇଗଲା, ଝରକା କାଠ ଉପରେ ଦୁଇ କହୁଣୀ ଭରାଦେଇ ସେ ପିଲାଙ୍କ ପରି ଭେଁ ଭେଁ କାନ୍ଦିଲେ । ପାଖ ଘରର କବାଟ ଖୋଲିଗଲା । ସେଘରୁ ଡାକ୍ତର ପଦାକୁ ବାହାରି ଆସିଲେ । ସେ କୋଟ ପିନ୍ଧି ନଥାନ୍ତି, ତାଙ୍କ ଦୁଇ ହାତରେ କାମିଜକୁ କହୁଣୀଯାକେ ଟେକି ଦେଇଥାନ୍ତି । ତାଙ୍କ ମୁହଁ ଶୁଖି ଯାଇଥାଏ, ତାଙ୍କ ତଳପାଟି ଥରୁଥାଏ. ପ୍ରିନ୍‌ସ ଆନ୍ଦ୍ରେ ତାଙ୍କୁ କଥା କହିଲେ କିନ୍ତୁ ଡାକ୍ତର ବିହ୍ୱଳ ଦୃଷ୍ଟିରେ ତାଙ୍କ ମୁହଁକୁ ଅନାଇଲେ ଓ କିଛି ନ କହି ଚାଲିଗଲେ । ଘର ଭିତରୁ ଗୋଟିଏ ସ୍ତ୍ରୀଲୋକ ପଦାକୁ ଦଉଡ଼ିଆସିଲା

କିନ୍ତୁ ଯେମିତି ପ୍ରିନ୍‌ସ ଆନ୍ଦ୍ରେଙ୍କୁ ଦେଖିପକାଇଲା । ସେମିତି ଘର ଦୁଆର-ମୁହଁରେ ଅବ୍ୟବସ୍ଥିତ ହୋଇ ଅଟକି ଠିଆ ହେଲା । ପ୍ରିନ୍‌ସ ଆନ୍ଦ୍ରେ ତାଙ୍କ ଘରଣୀଙ୍କ ବଖୁରୀରେ ପଶିଲେ । ତାଙ୍କ ଘରଣୀ ମରି ଶୋଇଥାଆନ୍ତି । ମାତ୍ର ପାଞ୍ଚ ମିନିଟ ପୂର୍ବରୁ ସେ ଯେଉଁ ଜାଗାରେ ଯେପରି ଶୋଇଥିଲେ ଏବେବି ସେହିପରି ତାଙ୍କ ଆଖି ନିଷ୍ପଳ ଦିଶୁଥାଏ, ଗାଲ ଶେଥା ପଡ଼ି-ଯାଇଥାଏ, ସେହି ସୁନ୍ଦର ପିଲାଳିଆ ମୁହଁରେ ଯେଉଁଠି ଉପର ଓଠରେ ଖୁବ୍ ସରୁ କଳା ଲୋମଗୁଡ଼ିଏ ଥାଏ, ସେ ମୁହଁରେ ତଥାପି ସେହି ଭଙ୍ଗୀ ରହିଥାଏ, ଯେଉଁ ଭଙ୍ଗୀ କଥା କହୁଥାଏ—

"ମୁଁ ତୁମ ସମସ୍ତଙ୍କୁ ଭଲପାଏ, ମୁଁ କାହାର କିଛି ଅନିଷ୍ଟ କରିନାହିଁ, କିନ୍ତୁ ତୁମେ ମୋର ଇୟେ କଣ କଲ ?" ସେ ମଲାମୁହଁ ଅତି କରୁଣ, ଅତି ଲୋଭନୀୟ ଦିଶୁଥାଏ । ଘରର ଗୋଟିଏ କୋଣରେ ମେଣ୍ଢିଆ ବୋଗଡ଼ାନୋଭଙ୍କ ହାତରେ ଲାଲ ଓ ଖୁବ ଗ୍ଲେଟ ହୋଇ କଣ ଗୋଟିଏ ଥାଏ, ସେ ପଦାର୍ଥଟି କାନ୍ଦୁଥାଏ, ପାଟି କରୁଥାଏ ଓ ମେଣ୍ଢିଆ ବୋଗଡ଼ାନୋଭଙ୍କ ହାତ ଶେଥା ଦିଶୁଥାଏ, ଥରୁଥାଏ ।

ଦି' ଘଣ୍ଟା ପରେ ନିଶବ୍ଦ ପଦକ୍ଷେପରେ ପ୍ରିନସ ଆନ୍ଦ୍ରେ ତାଙ୍କ ବାପାଙ୍କ ବଖୁରୀକୁ ଗଲେ, ସେତେବେଳକୁ ବୁଢ଼ା ସବୁକଥା ଜାଣି ସାରି-ଥାଆନ୍ତି । କବାଟ ଯେମିତି ଫିଟିଲା ସେମିତି ତାଙ୍କର ହାଡ଼ୁଆ ବାହୁ ଯୋଡ଼ିକ ଷଣ୍ଢ଼ୁଆସି ପରି ତାଙ୍କର ପୁଅର ବେକକୁ ଭିଡ଼ି ଧରିଲା ଓ ପଦେ ବି କଥା ନକହି ସେ କଇଁ କଇଁ ହୋଇ ପିଲାଙ୍କ ପରି କାନ୍ଦିଲେ ।

ତିନିଦିନ ପରେ କୁନ ପ୍ରିନସେସଙ୍କୁ କବର ଦିଆଗଲା ଓ ସ୍ତ୍ରୀଙ୍କଠୁ ଶେଷ ବିଦାୟ ନେବାପାଇଁ ପ୍ରିନସ ଆନ୍ଦ୍ରେ କବରର ପାହାଚକୁ ଗଲେ । କବର ଭିତରେ ଥାଇବି କୁନ ପ୍ରିନସେସ୍‌ଙ୍କ ମୁହଁ ସେହିପରି ଦିଶୁଥାଏ । କେବଳ ଆଖି ବନ୍ଦ ଥାଏ । ସେ ମୁହଁ ସତେକି ସେତେବେଳେ ବି କହୁଥାଏ—"ଆଃ ! ତୁମେ ମୋର ୟେ କଣ କଲ ?" ପ୍ରିନ୍‌ସ ଆନ୍ଦ୍ରେଙ୍କୁ ଲାଗିଲା ଯେମିତି ତାଙ୍କର ପ୍ରାଣ ଭିତରୁ ଖଣ୍ଡେ କିଏ ଛିଣ୍ଡେଇ ନେଉଛି ଓ ଯେପରି ସେ ଏଭଳି ଗୋଟିଏ ଅପରାଧରେ ଦୋଷୀ ଯେଉଁ ଅପରାଧ ସେ

ନଜେ କେବେ ନବକରଣ କରପାରବେ ନାହିଁ କ ଭୁଲପାରବେ ନାହିଁ । ସେ କାନ୍ଦ ପାରଲେ ନାହିଁ । ବୁଢ଼ା ପ୍ରିନ୍‌ସ ମଧ୍ୟ ଗଲେ । ଯାଇ ମୃତ ଶରୀରର ମହମ୍ ପର ଦଶୁଥିବା ହାତରେ ଚୁମ୍ବନ କଲେ । ଆଉ ହାତ ଉପରେ ସେ ହାତଟି ଛକ ପଡ଼ଥାଏ ଓ ତାଙ୍କୁ ବ ସେ ମୁହଁଟି କହୁଥାଏ "ତୁମେ ମୋର ଯେ କଣ କଲ ? କାହିଁକି କଲ ?" ସେ ମୁହଁ ଉପରେ ଆଖି ପଡ଼ନ୍ତିବାରୁ ବୁଢ଼ା ବଗରେ ସେଠୁ ଚାଲିଆସିଲେ ।

ଆଉ ପାଞ୍ଚଦନ ପରେ ଶିଶୁ ପ୍ରିନ୍‌ସର ନାଁ ଦଆଗଲା । ନାଁ ରହିଲା "ନକୋଲେ ଆନ୍ଦ୍ରେଇଚ୍" ପିଲାକୁ ଗୁଡ଼େଇ ଥିବା କନାପଟାକୁ ଧାଈ ତାର ଚବୁକଯାକେ ଟେକ ଧରଥାଏ । ଆଉ ପୁରୋହିତ ଗୋଟେ ହଂସ ପର ଧର ପିଲାଟିର ଚମ୍ପ କୁଞ୍ଚ କୁଞ୍ଚ ହାତ ଓ ଗୋଡ଼ ଉପରେ ମନ୍ତ୍ରସ ପାଣି ଲଗାଉ ଥାଆନ୍ତି । ସେ ଅନୁଷ୍ଠାନରେ ପିଲାର ଧରମବାପା ହେଲେ ତାର ଅଜା । ସେ ପିଲାଟିକୁ ଧରଥାଆନ୍ତି । ଡରୁଥାଆନ୍ତି ଓ ଥରୁଥାଆନ୍ତି କାଳେ ପିଲାଟି ହାତରୁ ଖସିପଡ଼ବ । ତାକୁ ଧର ସେ ଗୋଟିଏ ଅତ ପୁରୁଣା ଟିଣ ତଆର ପାଣି କୁଣ୍ଡ ପାଖକୁ ନେଲେ, ଯହିଁରେ ମନ୍ତ୍ରସ ପାଣି ଥାଏ । ସେ ସେଠି ତାକୁ ପ୍ରିନ୍‌ସେସ୍ ମେରଆଙ୍କ ହାତକୁ ବଢ଼ାଇ ଦେଲେ । ପ୍ରିନ୍‌ସେସ୍ ମେରଆ ସେ ଅନୁଷ୍ଠାନରେ ପିଲାଟିର ଧରମ ମା' ହେଲେ । ଅନୁଷ୍ଠାନ କେତେବେଳେ ସରବ ଭାବ ଭାବ ପ୍ରିନ୍‌ସ ଆନ୍ଦ୍ରେ ପାଖ ବଖୁରୀରେ ବସି-ଥାଆନ୍ତି । ତାଙ୍କ ଡର ମାଡ଼ୁଥାଏ କାଳେ ପିଲାଟି ଧାଈ ହାତରୁ ଖସି-ପଡ଼ବ ଓ ପାଣିକୁଣ୍ଡରେ ବୁଡ଼ ମରବ । ଯେତେବେଳେ ଧାଈ ପିଲାଟିକୁ ପାଣିକୁଣ୍ଡରୁ ପଦାକୁ ନେଇ ଆସିଲା, ପ୍ରିନସ ଆନ୍ଦ୍ରେ ଖୁବ୍ ଖୁସି ହୋଇ ପିଲାକୁ ଦେଖିଲେ । ଧାଈ ତାଙ୍କୁ କହିଲା ଯେ ପିଲା ମୁଣ୍ଡରୁ ଟିକିଏ ବାଳ ନେଇ ମହମରେ ମିଶାଇ ତାକୁ ପାଣିକୁଣ୍ଡରେ ପକାଇ ଦଆଯାଇଥିଲା । ସେ ବାଳ ବୁଡ଼ଲା ନାହିଁ, ଭାସିଲା ଏହା ଗୋଟିଏ ଶୁଭ ସଙ୍କେତ । ପ୍ରିନ୍‌ସ ଆନ୍ଦ୍ରେ ଏକଥା ଶୁଣି ଖୁସି ହୋଇ ମୁଣ୍ଡ ହଲାଇଲେ ।

## ଯୁଦ୍ଧ ଓ ଶାନ୍ତି | ପ୍ରଥମ ଭାଗ

୧୮୦୯ ସାଲର ବସନ୍ତଋତୁରେ ପ୍ରିନ୍ସ ଆନ୍ଦ୍ରେ ତାଙ୍କର ରାଇଜାନ୍‌ରେ ଥିବା ଜମିଦାରୀଗୁଡ଼ିକ ପରିଦର୍ଶନ କରିବାକୁ ଗଲେ । ରାଇଜାନ୍‌ର ସେ ଜମିଦାରୀ ସମ୍ପତ୍ତି ତାଙ୍କ ପୁଅର । ତାଙ୍କ ପୁଅ ପକ୍ଷରୁ ସେ ଜମିଦାରୀଗୁଡ଼ିକର ମାର୍ଫତ୍‌ଦାର୍‌ ଟ୍ରଷ୍ଟି ।

ବସନ୍ତଋତୁରେ ଖରା ଦେହକୁ ଉଷ୍ମ ଓ ସୁଖକର ଲାଗୁଥାଏ । ପ୍ରିନ୍ସ ଆନ୍ଦ୍ରେ ଗାଡ଼ିରେ ବସିଥାନ୍ତି, ଦେଖୁଥାନ୍ତି ନୂଆ ନୂଆ ଘାସ ଗଜୁରୁଛି । ବାର୍ଚ ଗଛରେ ନୂଆ କରି ପତ୍ର ହୋଇଛି । ଉଜ୍ଜ୍ୱଳ ନେଳି ଆକାଶରେ ନୂଆ କରି ବସନ୍ତଋତୁର ବଉଦ ଭାସି ଭାସି ଚାଲିଛି । ସେ କୌଣସି କଥା ଭାବୁନଥାନ୍ତି. କିନ୍ତୁ ଚାରିଆଡ଼େ ଚାହୁଁଥାନ୍ତି । ତାଙ୍କୁ ଉସତ ଲାଗୁଥାଏ । ମନଥାଏ ଚିନ୍ତାଶୂନ୍ୟ ।

କାଦୁଆ ଗାଁ ବାଟରେ ତାଙ୍କ ଗାଡ଼ି ଚାଲିଥାଏ । ଚାଲିଥାଏ ଶସ୍ୟ ଅମଳ ହେବାର ଖଳାମାନଙ୍କ କରେ କରେ । ସ୍ଥାନେ ସ୍ଥାନେ ଫସଲ ଶାଗୁଆ ଦିଶୁଥାଏ । କେତେବେଳେ ପାହାଡ଼ ଗଡ଼ାଣିରେ ଗଲାବେଳେ ବାଟ କଡ଼ରେ ପୋଲ ପାଖେ କିଛି ବରଫ ବି ଥାଏ, ତରଳି ବୋହି-ଯାଉଥାଏ । କେତେବେଳେ ପାହାଡ଼ ଉଠାଣିରେ ଚଢ଼ିଲା ବେଳେ କାଦୁଆ ରାସ୍ତା ବର୍ଷାରେ ଖୋଲ ହୋଇ ଯାଇଥାଏ । ବାଟରେ କେଉଁ କ୍ଷେତରୁ ଫସଲ କଟାହୋଇ ଖାଲି ଖୁଣ୍ଟି ଠିଆ ହୋଇଥାଏ । ସ୍ଥାନେ ସ୍ଥାନେ ଖୋଲ ଏଠସେଠି ଶାଗୁଆ ଦିଶୁଥାଏ । ତାପରେ ସେମାନଙ୍କ ଗାଡ଼ି

ଗୋଟିଏ ବାର୍ଚ୍ ଗଛର ଜଙ୍ଗଲ ଭିତରେ ପଶିଲା । ସଡ଼କର ଦୁ'ପଟରେ ଜଙ୍ଗଲ । ଜଙ୍ଗଲ ଭିତରେ ଗରମ ଲାଗୁଥାଏ । ଦେହରେ ପବନ ବାଜୁନଥାଏ । ବାର୍ଚ୍ ଗଛଗୁଡ଼ିକ ଅଠାଳିଆ ଶାଗୁଆ ପତ୍ରରେ ପୂର୍ଣ୍ଣ ହୋଇଥାଏ । ଟିକିଏ ବି ହଲ୍‌ଚଲ୍ ହେଉନଥାଏ । ସେ ଗଛତଳେ ବସନ୍ତଋତୁର ଫୁଲ ଓ ପ୍ରଥମ ଘାସ ପୂର୍ବ ବର୍ଷର ଝଡ଼ା ପତ୍ରକୁ ଟେକିଦେଇ ଉଙ୍କି ମାରୁଥାଏ । ଏଠିସେଠି ସାନ ସାନ 'ଫାର୍' ଗଛ ମୁଣ୍ଡ ଟେକିଥାନ୍ତି, ମନେ ପକେଇ ଦଉଥାନ୍ତି ଶୀତଋତୁକୁ, ଯେତେବେଳେ ଗୁଳ୍ମଆଦି ଅପରିବର୍ତ୍ତିତ କଠୋର ଶାଗୁଆ ବର୍ଣ୍ଣ ହୋଇ ଦିଶେ ।

ବାଟରେ ଗଲାବେଳେ ପ୍ରିନ୍ସ ଆନ୍ଦ୍ରେ ତାଙ୍କର ସମୁଦାୟ ଜୀବନ ବିଷୟରେ ପୁଣି ଯେପରି ନୂଆ କରି ଭାବିଲେ । ଭାବି ଭାବି ସେ ଏହି ଆଶାହୀନ ଶାନ୍ତ ସିଦ୍ଧାନ୍ତରେ ପହଞ୍ଚିଲେ ଯେ, ତାଙ୍କ ପକ୍ଷରେ ପୁଣି ନୂଆ କରି ଆଉ କିଛି କରିବାର ନାହିଁ । ତାଙ୍କୁ ତାଙ୍କ ଜୀବନ ବିତାଇବାକୁ ପଡ଼ିବ । ଯଦି କାହାରି କିଛି ଅନିଷ୍ଟ ନକଲେ, କୌଣସି ଜିନିଷକୁ ନ ଡରିଲେ ମନରେ କିଛି କାମନା ନ ରହିଲା—ତେବେ ତାଙ୍କ ପକ୍ଷରେ ତାହାହିଁ ଯଥେଷ୍ଟ ସନ୍ତୋଷ ।

ନିଜ ପୁଅର ରାଇଜାନ୍ ଜମିଦାରୀମାନଙ୍କ ଟ୍ରଷ୍ଟି (ମାର୍ଫତ୍‌ଦାର୍) ହିସାବରେ ପ୍ରିନ୍ସ ଆନ୍ଦ୍ରେଙ୍କ ଦରକାର ପଡ଼ିଲା ଯେ ସେ ସେହି ଜିଲ୍ଲାର ଜିଲ୍ଲାପାଳ (ମାର୍ଶାଲ୍)ଙ୍କ ସଙ୍ଗେ ସାକ୍ଷାତ କରିବେ । ଜିଲ୍ଲାପାଳ ଥିଲେ କାଉଣ୍ଟ ଇଲିଆ ଆନ୍ଦ୍ରେଇଭିଚ୍ ରୋସ୍ତୋଭ୍ । ମେ' ମାସ ମଝାମଝି ପ୍ରିନ୍ସ ଆନ୍ଦ୍ରେ ତାଙ୍କ ସଙ୍ଗେ ଦେଖା କରିବାକୁ ଗଲେ ।

ସେତେବେଳକୁ ବସନ୍ତଋତୁର ସେହି ସମୟ ଯେତେବେଳେ ସବୁଠୁ ବେଶି ଖରା । ଜଙ୍ଗଲରେ ଗଛମାନଙ୍କରେ ପତ୍ର ଭର୍ତ୍ତି ହୋଇଥାଏ । ଗୁଳ୍ମଆଦି ଧୂଳି ଉଡ଼ୁଥାଏ । ଏତେ ଗରମ ଲାଗୁଥାଏ ଯେ କେଉଁଠି ପାଣି ଦେଖିଲେ ଗାଧୋଇବାକୁ ମନ ହୁଏ ।

ଓଟ୍ରାଡ୍ନୋ ବୋଲି ଯେଉଁ ଗାଁ ସେଇଠି ରୋସ୍ତୋଭ୍ ପରିବାରର ଘର । ଘରକୁ ଯିବା ସଡ଼କର ଦୁଇପାଖରେ ଦୁଇଧାଡ଼ି ବଡ଼ ବଡ଼ ଗଛ ।

ସେହି ସଡ଼କରେ ଗାଡ଼ିରେ ବସି ଯାଉ ଯାଉ ନିଜ କାମ ବିଷୟରେ ଜିଲ୍ଲାପାଳଙ୍କୁ କି କି ପ୍ରଶ୍ନ ପଚାରିବେ ପ୍ରିନ୍ସ ଆନ୍ଦ୍ରେ ସେଇଆ ଭାବି ଭାବି ଚିନ୍ତାମଗ୍ନ ଥାଆନ୍ତି । ମନ ଦବି ଯାଇଥାଏ । ଡାହାଣ ପଟେ ଗଛ ଜଙ୍ଗଲ ଆଡ଼ରେ ଝିଅ ପିଲାଙ୍କର ହସଖୁସିଆ ପାଟି ଶୁଭିଲା । ସେ ଚାହିଁ ଦେଖିଲେ ଯେ ଆଗରେ ଦଳେ ଝିଅ ଦୌଡ଼ି ଦୌଡ଼ି ସଡ଼କ ଉପରେ ଏପାଖରୁ ସେପାଖକୁ ଗଲେ । ସବା ଆଗରେ ତାଙ୍କ ଘୋଡ଼ାଗାଡ଼ି ଆଡ଼କୁ ଯେଉଁ ଝିଅଟି ଧାଇଁ ଆସିଲା ତା ମୁଣ୍ଡବାଳ କଳା, ସେ ଭାରି ସରୁଆ, ଆଶ୍ଚର୍ଯ୍ୟ ପ୍ରକାରେ ସରୁ; ତା ଆଖିଡୋଳା କଳା କଳା, ସେ ହଳଦିଆ ସୂତା ଗାଉନ୍ଟିଏ ପିନ୍ଧିଥାଏ । ସେ ମୁଣ୍ଡରେ ଗୋଟିଏ ଧଳା ରୁମାଲ୍ ଗୁଡ଼େଇ-ଥାଏ, ରୁମାଲ ତଳୁ ଥୋଡ଼ାଏ ଅଲଗା ବାଳ ଓହଳିଥାଏ । ଝିଅଟି ପାଟିକରି କଣ କହୁଥାଏ, କିନ୍ତୁ ଜଣେ ଅଚିହ୍ନା ଲୋକକୁ ଦେଖିଲାକ୍ଷଣି ତାଙ୍କ ଆଡ଼କୁ ନ ଅନାଇଁ ସେ ହସି ହସି ଦୌଡ଼ିଯାଇ ଯେଉଁପଟୁ ଆସିଥିଲା ସେଇପଟକୁ ଚାଲିଗଲା ।

କେଉଁ ଅଜଣା କାରଣରୁ ପ୍ରିନ୍ସ ଆନ୍ଦ୍ରେଙ୍କ ମନରେ ହଠାତ୍ ଦୁଃଖ ହେଲା, ତାଙ୍କ ଚିତ୍ତ କାତର ହେଲା । ପାଗ ଏଡ଼େ ସୁନ୍ଦର, ଚମତ୍କାର, ଖରା ଏଡ଼େ ଉଜ୍ଜ୍ୱଳ; ତାଙ୍କ ଚାରିଆଡ଼ ଏତେ ଆନନ୍ଦମୟ, ଅଥଚ ସେହି ତନ୍ୱୀ ସୁନ୍ଦରୀ ଝିଅଟି ତାଙ୍କ ଅସ୍ତିତ୍ୱ ବିଷୟରେ କିଛି ଜାଣିଲା ନାହିଁ ଜାଣିବାକୁ ମନବି କଲାନାହିଁ ଓ ନିଜ ଜୀବନ ଯେମିତି ସୁଖୀ ଓ ସନ୍ତୁଷ୍ଟ ହୋଇ ରହିଲା,—ଏଥିରେ ସନ୍ଦେହ ନାହିଁ ଯେ ଝିଅଟି ନିର୍ବୋଧ,—କିନ୍ତୁ ସେ ସୁଖୀ, ହସ ଖୁସିରେ ପରିପୂର୍ଣ୍ଣ ଓ ପ୍ରିନ୍ସ ଆନ୍ଦ୍ରେଙ୍କ ସଙ୍ଗେ ନିଃସମ୍ପର୍କିତା, ସେ ଏଡ଼େ ଖୁସି କାହିଁକି ? କଣ ସେ ଭାବୁଛି ? ସୈନ୍ୟ ବିଭାଗର ନିୟମକାନୁନ୍ କଥା, କେବେ ନୁହେଁ । ରାଇଜାନ ର କୃଷିମାନେ ଯେଉଁମାନେ ଜମି ପାଇଁ ଖଜଣା ଦିଅନ୍ତି, ତାଙ୍କ ସଂଗଠନ କଥା, କେବେ ନୁହେଁ । ପ୍ରିନ୍ସ ଆନ୍ଦ୍ରେ ନ ଭାବି ରହିପାରିଲେ ନାହିଁ,—"ସେ ଝିଅଟି ତା ମନେ ମନେ କଣ ଭାବୁଛି ? କାହିଁକି ସେ ଏଡ଼େ ଖୁସି ହେଉଛି ?"

ସେ ଦିନଟା ତାଙ୍କର ରେସ୍ତଭ୍ ଘରେ ନିରାନନ୍ଦ କ୍ଳାନ୍ତିକର ହୋଇ କଟିଗଲା । ସେଘରେ ଗୋଟିଏ ଶିଶୁକୁ ନାଁ ଦେବା ଦିନ ପାଳେଇ ଆସୁଥାଏ, ତେଣୁ ବହୁତ କୁଣିଆଁ ମେଳ ଆସିଥାନ୍ତି, ଘର ଭର୍ତ୍ତି । ବୁଢ଼ା କାଉଣ୍ଟ, ତାଙ୍କର ବୁଢ଼ୀ ସ୍ତ୍ରୀ, କୁଣିଆଙ୍କ ଭିତରେ ଯେଉଁମାନେ ବିଶେଷ ସମ୍ମାନାସ୍ପଦ ସମସ୍ତେ ତାଙ୍କର ଆଦର ଯତ୍ନ କଲେ । ଘରେ ଯେଉଁମାନେ ଯୁବା ଯୁବତୀ ସେମାନଙ୍କ ଭିତରେ ଥାଏ ନାତାଶା, ସେ ବାରମ୍ବାର ହସୁଥାଏ, ସବୁ-ବେଳେ ହସଖୁସି । ପ୍ରିନ୍‌ସ ଆନ୍ଦ୍ରେ ତାକୁ ବାରମ୍ବାର ଚାହୁଁଥାନ୍ତି ଓ ପ୍ରତିଥର ନିଜକୁ ନିଜେ ମନେ ମନେ ପଚାରୁଥାନ୍ତି । "ନାତାଶା ତା ମନରେ କଣ ଭାବୁଛି ? କି ବିଷୟ ଲାଗି ସେ ଏତେ ଖୁସି ?"

ସଞ୍ଜ ବୁଡ଼ିଲା । ନୂଆ ଜାଗାରେ ପ୍ରିନ୍‌ସ ଆନ୍ଦ୍ରେଙ୍କୁ ଖୁବ୍ ଏକୁଟିଆ ଲାଗୁଥାଏ । ରାତିରେ ବହୁତ ବେଳଯାଏ ପ୍ରିନ୍‌ସ ଆନ୍ଦ୍ରେଙ୍କ ଆଖିକୁ ନିଦ ଆସିଲା ନାହିଁ । ସେ କିଛି ସମୟ ବହି ପଢ଼ିଲେ, ମହମବତୀ ନିଭାଇ-ଦେଲେ, ପରେ ପୁଣି ତାକୁ ଲଗାଇଲେ । ଘରର ଝରକା ସବୁ ଭିତରପଟୁ ବନ୍ଦ କରି ଦିଆ ହୋଇଥାଏ । ଘର ଭିତର ଗରମ ଲାଗୁଥାଏ । ସେଇ ନିର୍ବୋଧ ବୁଢ଼ା (ମନେ ମନେ ସେ କହୁଥାନ୍ତି କାଉଣ୍ଟ ରୋସ୍ତଭ୍) ଯେ ତାଙ୍କୁ ଅକାରଣରେ ଅଟକାଇ ଦେଇଛନ୍ତି ତାଙ୍କଉପରେ ସେ ଚିଡ଼ି ଉଠୁଥାନ୍ତି ଓ ଅଟକି ରହିଛନ୍ତି ବୋଲି ନିଜ ଉପରେ ବିରକ୍ତ ହେଉଥାନ୍ତି । କାଉଣ୍ଟ ରୋସ୍ତଭ୍ ତାଙ୍କୁ କହିଥାନ୍ତି ଯେ ଆବଶ୍ୟକ ଦଲିଲ୍ ପତ୍ର ସହରରୁ ତାଙ୍କ ପାଖକୁ ଆସିନାହିଁ ।

ପ୍ରିନ୍‌ସ ଆନ୍ଦ୍ରେ ଉଠିପଡ଼ିଲେ ଓ ଝରକା ଖୋଲିଦେବେ ବୋଲି ଝରକା ପାଖକୁ ଗଲେ । ସେ ଯେମିତି ଝରକାର ଶଟର୍ ଖୋଲିଦେଲେ, ସତେ ଯେମିତି ଜହ୍ନ ଆଲୁଅ କେତେବେଳୁ ଘର ଭିତରେ ପଶିବ ବୋଲି ଅପେକ୍ଷା କରି ରହିଥିଲା, ସେମିତି ଘର ଭିତରେ ପଶିଗଲା । ସେ ଝରକାଟା ଖୋଲିଦେଲେ । ରାତି ଦିଶିଲା, ଜହ୍ନ ଆଲୁଅରେ ଝଲଝଲ, ସଜ ଓ ନିଥର, ଶାନ୍ତ । ଝରକା ସେପାଖେ ଠିଆ ହୋଇଥାଏ ଧାଡ଼ିଏ ପୋଲାର୍ଡ଼ ଗଛ, ତାର ଗୋଟିଏ ପାଖ କଳା ଦିଶୁଥାଏ, ଆରପାଖ ରୁପେଲି ଧଳା । ଗଛତଳେ ଓଦାଳିଆ କି କି ବୁଦା ଗଛଗୁଡ଼ିଏ, ତାର ପତ୍ର ଉପରେ,

କାଣ୍ଡ ଉପରେ ସ୍ଥାନେ ସ୍ଥାନେ ରୁପେଲି ଜହ୍ନଆଲୁଅ ଝଲମଲ ହେଉଥାଏ ।
ଖଣ୍ଡେ ଦୂରରେ କଳା କଳା ଗଛ ସେପାଖେ କେଉଁ ଘରର ଛାତ ଦିଶୁଥାଏ, କାକର ପଡ଼ି ଜକ ଜକ ଦିଶୁଥାଏ । ଡାହାଣପଟେ ଗୋଟିଏ ବଡ଼ ଗଛ ଦିଶୁଥାଏ, ସେଥିରେ ବହୁତ ପତ୍ର, ଗଛର କାଣ୍ଡ ଓ ଡାଳ ଖୁବ୍ ଉଜ୍ଜ୍ୱଳ ଧଳା ଦିଶୁଥାଏ । ସେ ଗଛ ଉପରେ ଦିଶୁଥାଏ ଜହ୍ନ, ପ୍ରାୟ ପୂର୍ଣ୍ଣ ଜହ୍ନ, ବସନ୍ତ ଋତୁର ଆକାଶ, ପରିଷ୍କାର, ତାରାଶୂନ୍ୟ । ପ୍ରିନ୍ସ ଆନ୍ଦ୍ରେ ଝରକାଉପରେ ଦୁଇ କହୁଣୀ ଭରାଦେଲେ, ତାଙ୍କ ଦୃଷ୍ଟି ଭରା ଦେଲା ସେହି ଆକାଶ ଉପରେ ।

ସେ ଘରର ତିନି ମହଲାରେ ଥାଏ ତାଙ୍କ ବଖୁରା । ତା ଉପରେ ଚାରି ମହଲାରେ ତାଙ୍କ ବଖରାର ମୁଣ୍ଡଉପର ବଖରାରେ ଲୋକ ଥା'ନ୍ତି, ଚେଇଁଥାନ୍ତି । ଝିଅପିଲାଙ୍କ କଥାଭାଷା ତାଙ୍କ କାନରେ ବାଜିଲା ।

"ଏଇ ଥରକମ –"ଗୋଟିଏ ଝିଅର ସ୍ୱର ଶୁଭିଲା ; ସେ କାହା ସ୍ୱର ତା ପ୍ରିନ୍ସ ଆନ୍ଦ୍ରେ ଜାଣି ପାରିଲେ ।

ଆର ସ୍ୱର ପଚାରିଲା, "କିନ୍ତୁ ଶୋଇବାକୁ ଆସିବ କେତେ-ବେଳେ ?" "ମୁଁ ଯିବ ନାହିଁ । ମତେ ନିଦ ମାଡୁନାହିଁ, ଯାଇ କଣ ହେବ ? ଆସ, ଏଇ ଥରକ ଶେଷ –"

ଯୋଡ଼ାଏ ମାଇପି କଣ୍ଠ ଏକା ଗୀତରେ ଶେଷ ରାଗିଣୀ ଗାଇଲେ ।
"ଆଃ, ଏତ ଚମତ୍କାର ! ହେଲା, ଏଥର ଶୋଇପଡ଼, ଆଉ ନାହିଁ ।" ପ୍ରଥମ ସ୍ୱର ଝରକା ପାଖକୁ ଚାଲି ଆସି କହିଲା, "ମୁଁ ଶୋଇ ପାରିବି ନାହିଁ, ତୁମେ ଶୁଅ । ସେ ନିଶ୍ଚୟ ଝରକା ବାହାରକୁ ମୁଣ୍ଡ ଓହଳାଇ ଦେଇଥିଲା । କାରଣ ପ୍ରିନସ ଆନ୍ଦ୍ରେ ତା ଲୁଗାପଟାର ଖସ୍ ଖସ୍ ଶବ୍ଦ ଶୁଣି ପାରୁଥାନ୍ତି, ତା ନିଶ୍ୱାସ ଶବ୍ଦ ବି । ଚାରିଆଡ଼ ନିସ୍ତବ୍ଧ ଥାଏ, ପଥର ପରି ଚୁପ୍‌ଚାପ୍ । ସେମିତି ଜହ୍ନ, ତାର ଆଲୁଅ ଓ ସେ ଆଲୁଅ ଉହାଡ଼ରେ ଛାଇ । ହଲଚଲ ହେବାକୁ ବି ପ୍ରିନ୍ସ ଆନ୍ଦ୍ରେଙ୍କର ସାହସ ହେଲା ନାହିଁ, ଉଦ୍ଦେଶ୍ୟ ନଥାଇ ସୁଦ୍ଧା ସେ ସେଠି ଅଛନ୍ତି, କାଳେ ଏକଥା ଜଣା ପଡ଼ି ଯିବ ସେଇଥିପାଇଁ ।

ପୁଣି ପ୍ରଥମ ସ୍ୱର କହିବାର ଶୁଭିଲା, "ସୋନିଆ ! ସୋନିଆ ! ଆରେ ତୁମେ ଶୋଇ ପାରୁଛ କେମିତି ମ ? ଓଃ ! କେଡ଼େ ଚମତ୍କାର ଦିଶୁଛି ! କେଡ଼େ ଚମତ୍କାର ! ଉଠିପଡ଼ ସୋନିଆ", ସେ ସ୍ୱରରେ ସତେ କି ଲୁହ ମିଶି ଯାଉଥାଏ, କହିଲା "ଜାଣିଛ ସୋନିଆ, ଏମିତି ରାତିଟିଏ ସୃଷ୍ଟି ପରଠୁ କେବେ, କେବେହେଲେ ଆସିନାହିଁ ।"

ସୋନିଆ ନିଜ ଅନିଚ୍ଛା ସତ୍ତ୍ୱେ କଣ ଗୋଟାଏ ଜବାବ ଦେଲା । ପ୍ରଥମ ସ୍ୱର କହିଲା—

"ନା, କେମିତିଆ ଜହ୍ନ ପଡ଼ୁଛି ଦେଖ...ଓଃ, କେଡ଼େ ସୁନ୍ଦର ଦିଶୁଛି ! ଏଠିକି ଆସ ଭଲା । ମୋ ସୁନା, ମୋ ଧନ, ଚାଲିଆସ ଏଠିକି । ଦିଶିଲା ନା ?

ଜଣେ ଖାଲି ଏମିତି ଗୋଇଠି ଉପରେ ଭର ଦେଇ ବସିବ—ଦେଖୁଛ, ଏମିତି । ଆଉ ଦି' ଆଣ୍ଠୁକୁ ହାତରେ ଟାଣି କରି ଭିଡ଼ି ଧରିବ । ସେଇଠୁ ଗୋଟେ ଡିଆଁ ମାରିବ ଯେ ଉଡ଼ି ପଳେଇବ...ଏମିତି... ଦେଖୁଥା" ।

"ହେ ! ହୁସିଆର ! ପଡ଼ିଯିବ !"

ତାପରେ ଦୁହେଁ ଧରାପରା ଲଗାଇବାର ଶବ୍ଦ ଶୁଭିଲା ଓ ସୋନିଆର ବିରକ୍ତ ସ୍ୱର ଶୁଭିଲା ।

"ଆଚ୍ଛା କଥା ! ରାତି ଗୋଟାଏ ବାଜିଗଲାଣି ଯେ !"

"ଯାଃ ! ତୁମେ ମୋର ସବୁ ବିଗାଡ଼ି ଦେବ । ହଉ ଯାଅ, ଶୁଅ ଯାଅ ।"

ପୁଣି ସବୁ ଚୁପଚାପ । କିନ୍ତୁ ପ୍ରିନ୍‌ସ ଆନ୍ଦ୍ରେ ବୁଝି ପାରୁଥାନ୍ତି ଯେ, ସେ ଝିଅଟି ସେ ଜାଗାରେ ବସିଛି । ବେଳେବେଳେ ତାର ଲୁଗାପଟାର ଖସ୍ ଖସ୍ ଶୁଭୁଥାଏ । ବେଳେବେଳେ ତାର ଗୋଟାଏ ଗୋଟାଏ ଦୀର୍ଘଶ୍ୱାସ ଶୁଭୁଥାଏ ।

ହଠାତ୍ ସେ ପାଟିକଲା —"ହେ ଭଗବାନ ! ଯା ମାନେ କଣ ? ହଉ ଯାଏଁ ଶୁଏଁ, ଯଦି ନହାଁତ ଶୋଇବାକୁ ପଡ଼ିବ ।" ଝିଅଟି ଧଡ଼୍ କରି ଝରକା ବନ୍ଦ କରିଦେଲା ।

ପ୍ରିନ୍‌ସ ଆନ୍ଦ୍ରେ ତାର କଥା ଶୁଣୁଥିଲେ, କାହିଁକି କେଜାଣି ସେ ଆଶା କରୁଥିଲେ ଓ ଡରୁଥିଲେ କାଳେ ସେ ତାଙ୍କ ବିଷୟରେ କିଛି କହିବ । ତାର କଥା ଶୁଣି ସେ ଭାବିଲେ—

"ମୋ ଅସ୍ତିତ୍ୱ ସହିତ କିଛି ସମ୍ପର୍କ ହିଁ ନାହିଁ ।"

ପୁଣି ଭାବିଲେ, "ପୁଣି ସେହି ଝିଅ ! ସତେ ଯେମିତି ଜାଣିଶୁଣି !" ସଙ୍ଗେ ସଙ୍ଗେ ତାଙ୍କ ଅନ୍ତର ଭିତରେ ସମ୍ପୂର୍ଣ୍ଣ ଅପ୍ରତ୍ୟାଶିତ ନାନା ଯୁବକ ସୁଲଭ ଆଶା ଓ ଧାରଣା ଏକାଠି ଗୋଳା ଗୋଳି ହୋଇ ଉଠି ପଡ଼ିଲା । ସେ ସବୁ ଏପରି ଯେ ତାହା ତାଙ୍କର ସମଗ୍ର ଅଭ୍ୟସ୍ତ ଜୀବନ ଧାରାର ପ୍ରତିକୂଳ, ତେଣୁ ସେ ଚଞ୍ଚଳ ଯାଇ ଶୋଇ ପଡ଼ିଲେ । ନିଜ ମନର ସେତେବେଳେ ଅବସ୍ଥା କଣ ତାକୁ ପରିଷ୍କାର କରି ଦେଖିବାକୁ ତାଙ୍କଠାରେ ସାମର୍ଥ୍ୟ ନଥାଏ ।

ତହିଁଆରଦିନ ପ୍ରିନ୍‌ସ ଆନ୍ଦ୍ରେ ବୁଢ଼ା କାଉଣ୍ଟଙ୍କ ଠାରୁ ବିଦାୟ ନେଇ ନିଜ ଘର ମୁହାଁ ଚାଲିଲେ । କାଉଣ୍ଟଙ୍କ ଘର ଭଦ୍ରମହିଳାମାନେ ତାଙ୍କ ପାଖକୁ ଆସିବା ଲାଗି ସେ ଆଉ ଅପେକ୍ଷା କଲେ ନାହିଁ ।

ଘରବାହୁଡ଼ା ବେଳେ ପ୍ରିନ୍‌ସ ଆନ୍ଦ୍ରେ ଗାଡ଼ିରେ ବସି ଯେତେ-ବେଳେ ସେ ବାର୍ଚ ଜଙ୍ଗଲ ଭିତରେ ଯାଉଥାନ୍ତି, ସେତେବେଳେ ଜୁନ ମାସର ଆରମ୍ଭ । ଛଅ ସପ୍ତାହ ପୂର୍ବେ ଗାଡ଼ିର ଘଣ୍ଟି ଶବ୍ଦ ଜଙ୍ଗଲ ଭିତରେ ଯେତେ ଦୂରକୁ ଶୁଭୁଥିଲା ଆଉ ସେତେ ବାଟ ଯାଉ ନଥିଲା, କାରଣ, ଜଙ୍ଗଲର ଚାରିଆଡ଼ ପୂର୍ଣ୍ଣ ଗହଳ ସବୁଜ ବଣ । ଜଙ୍ଗଲ ଯାକ ଏଠି ସେଠି ହୋଇ ଯେଉଁ ଗଜା ଫାର୍ ଗଛ ଠିଆ ହୋଇଥାଏ ଜଙ୍ଗଲର ନିଖୁଣ ପରିବ୍ୟାପ୍ତ ସୌନ୍ଦର୍ଯ୍ୟ ସଙ୍ଗରେ ସେ ସବୁ ମିଶିଯାଇଥାଏ । ସେ ଦୃଶ୍ୟକୁ ଖଣ୍ଡିତ କରୁନଥାଏ । ଫାର୍ ଗଛଗୁଡ଼ିକରେ ଚଢ଼େଇ ପରପରି କୋମଳ ଓ ଛୁଞ୍ଚପରି ମୁନିଆ ଶାଗୁଆ ଶାଗୁଆ ପତ୍ରଭରି ହୋଇଥାଏ ।

ଦିନଯାକ ଗରମ ଲାଗୁଥାଏ । ଗୋଟିଏ ତୋଫାନର ସୂଚନା ମାତ୍ର ଦିଶୁଥାଏ । କିନ୍ତୁ ଖଣ୍ଡିଏ ଛୋଟିଆ ବାଦଲ ଧୂଳିଆ ରାସ୍ତା ଉପରେ ଓ ରସ ଭର୍ତ୍ତି ପତ୍ରମାନଙ୍କ ଉପରେ ପାଣି ଛିଞ୍ଚିଦେଇ ଯାଇଥାଏ । ତାଙ୍କ ବାଁ ପଟେ ଜଙ୍ଗଲରେ ଛାଇ ପଡ଼ିଥାଏ, ସେଠି ଜଙ୍ଗଲ କଳା ଦିଶୁଥାଏ । ତାଙ୍କର ଡ଼ାହାଣ ପଟେ ପାଣି ବୁନ୍ଦାରେ ଜକଜକ ହୋଇ ଜଙ୍ଗଲ ଖରାରେ ଝଟକୁଥାଏ ଓ ତା ଉପରେ ପବନ କ୍ଷୀଣ ଢେଉ ଉଠାଉ ଥାଏ । ସବୁଠିଁ ଫୁଲ ଫୁଟିଥାଏ । ବୁଲ୍ ବୁଲ୍ ଚଢ଼େଇମାନେ ବୋବାଉଥାନ୍ତି ଖେଳି ବୁଲୁଥାନ୍ତି, କେତେବେଳେ ପାଖରେ, କେତେବେଳେ ଅବା ଦୂରରେ ।

ହଠାତ୍ ପ୍ରିନ୍ସ ଆନ୍ଦ୍ରେଙ୍କ ମନରେ ଅକାରଣରେ ବସନ୍ତ ଋତୁ ସୁଲଭ ଆନନ୍ଦର ଧାରଣା ଖେଳିଗଲା, ଲାଗିଲା ଯେପରି ପୁଣି ସବୁ ନୂଆ ହୋଇ ଯାଉଛି । ତାଙ୍କ ଜୀବନର ସର୍ବଶ୍ରେଷ୍ଠ ମୂହୂର୍ତ୍ତଗୁଡ଼ିକ ଏକାଠି ହୋଇ ତାଙ୍କର ସ୍ମୃତିରେ ଭାସି ଉଠିଲା ! ଏକା ସଙ୍ଗରେ ତାଙ୍କ ମନରେ ଆସିଲା ଅଷ୍ଟରଲିଜ୍‌ର ଯୁଦ୍ଧକ୍ଷେତ୍ର । ଯେଉଁଠି ଆକାଶ ଅତି ଉନ୍ନତ ଦିଶୁଥାଏ, ପୁଣି ତାଙ୍କ ମୃତା ସ୍ତ୍ରୀର ଅଭିଯୋଗକାରୀ ମୁହଁଟି ଓ ସେହି ଝିଅ ଯେ ସେଇ ରାତିର ସୌନ୍ଦର୍ଯ୍ୟରେ ବିହ୍ଵଳ ହୋଇଥିଲା, ଆଉ ସେହି ଜହ୍ନରାତି ଓ ଜହ୍ନ ।

"ନା ଏକତିରିଶି ବର୍ଷ ବୟସରେ ଜୀବନ ସରିଯାଏ ନାହିଁ । ହଠାତ୍ ପ୍ରିନ୍ସ ଆନ୍ଦ୍ରେ ଚୂଡ଼ାନ୍ତ ନିଷ୍ପତ୍ତି କଲେ । ଭାବିଲେ, "ମୋ ଭିତରେ କଣ ଅଛି ତାହା ଏକା ମୁଁ ଜାଣିଲେ ଯଥେଷ୍ଟ ହେବ ନାହିଁ । ପ୍ରତ୍ୟେକ ତାହା ଜାଣିବା ଦରକାର । ପିଏରେ ଜାଣିବା ଦରକାର । ଯେଉଁ ଝିଅଟି ଆକାଶକୁ ଉଡ଼ିଯିବାକୁ ଚାହୁଁଥିଲା, ସେ ବି ଜାଣିବା ଦରକାର । ପ୍ରତ୍ୟେକ ମତେ ଚିହ୍ନିବା ଦରକାର ଯେପରିକି ମୋର ଜୀବନ ଖାଲି ମୋ ଲାଗି ଖର୍ଚ୍ଚ ନହୁଏ । ମୋ ଜୀବନଠାରୁ ଅସଂପୃକ୍ତ ହୋଇ ଏତେ ଦୂରରେ ସେମାନେ ସମସ୍ତେ ରହିବା ଉଚିତ ନୁହେଁ । ମୋ ଜୀବନ ସେମାନଙ୍କ ପ୍ରତ୍ୟେକଙ୍କଠାରେ ପ୍ରତିଫଳିତ ହେବା ଦରକାର । ମୋ ଜୀବନରେ ମୋ ସହିତ ସେମାନେ ବି ଭାଗୀଦାର ହେବା ଦରକାର ।"

ସେହି ଯାତ୍ରାରୁ ଫେରି, ଘରେ ପହଞ୍ଚି ପ୍ରିନ୍‌ସ ଆନ୍ଦ୍ରେ ନିଷ୍ପତ୍ତି କଲେ ଯେ ଶିଶିର ଋତୁରେ ସେ ପିଟର୍ସବର୍ଗ ସହରକୁ ଚାଲିଯିବେ ।

୧୮୦୮ ସାଲ ଆରମ୍ଭ ବେଳକୁ ପିଏରେ ତାର ଜମିଦାରିମାନ ପରିଦର୍ଶନ କରିସାରି ପିଟର୍ସବର୍ଗ ସହରକୁ ଫେରି ଆସିଥାଏ । ତାର ଜୀବନ ତାର ଅଭ୍ୟସ୍ତ ଗତାନୁଗତିକ ଧାରାରେ ଚାଲିଥାଏ—ସେହି ଏକା-ପ୍ରକାର ପ୍ରଲୋଭନ। ଆଳସ୍ୟ ଓ ବିଶୃଙ୍ଖଳତା ତାକୁ କବଳିତ କରୁଥାଏ । ଭଲ ଭୋଜନ ପ୍ରତି ତାର ଆସକ୍ତି ଥାଏ, ଟାଣୁଆ ମଦ ପ୍ରତି ତାର ଆସକ୍ତି ଥାଏ । ସେ ବୁଝୁଥାଏ ଯେ ଏ ପ୍ରଲୋଭନର ଶୀକାର ହେବା ଅନୈତିକ ଓ ଲଜ୍ଜାକର, କିନ୍ତୁ ସେ ଚଳପ୍ରଚଳ ହେଉଥାଏ ଅବିବାହିତ ଯୁବକମାନଙ୍କ ସଙ୍ଗରେ, ସେହି ଦଳରେ ଥିଲେ ଯେଉଁସବୁ ପ୍ରଲୋଭନ ଆସେ ସେ ତାକୁ କାଟିପାରୁ ନଥାଏ ।

ଏହିପରି ସମୟରେ ସେ ତା ସ୍ତ୍ରୀଠାରୁ ଖଣ୍ଡିଏ ଚିଠି ପାଇଲା । ତା ସ୍ତ୍ରୀ ତହିଁରେ ତାକୁ ଅନୁନୟ କରିଥାଏ ସେ ଶୀଘ୍ର ତା ପାଖକୁ ଯାଉ । ସେ ଲେଖିଥାଏ ଯେ, ପିଏରେ ଯୋଗୁଁ ସେ କେତେ ଦୁଃଖରେ ଦିନ କାଟୁଛି, କେମିତି ତାର ଇଚ୍ଛା ହେଉଛି ସେ ଆଜୀବନ ପିଏରେର ଅନୁରକ୍ତା ସେବାକାରିଣୀ ହୋଇ ରହିଥିବ । ସେ ଲେଖିଥାଏ ଯେ ଆଉ ଦିନେ ଦି ଦିନରେ ସେ ବିଦେଶରୁ ପିଟର୍ସବର୍ଗକୁ ଫେରି ଆସିବ ।

ଏହାଛଡ଼ା ତା ଶାଶୁ, ପ୍ରିନ୍‌ସ ଭସିଲଙ୍କ ସ୍ତ୍ରୀ ବହୁତ ଅନୁନୟ ବିନୟ କରି ତାକୁ କହି ପଠାଇଥିଲେ ସେ, ଅଳ୍ପ କେତେ ମିନିଟ ପାଇଁ ହେଉ ପଛେ, ସେ ତାଙ୍କ ପାଖକୁ ଆସୁ, ଗୋଟିଏ ଅତି ଜରୁରି ବିଷୟରେ କଥାଭାଷା ହେବାର ଅଛି ।

ପିଏରେ ଦେଖିଲା ଯେ ତା ବିରୁଦ୍ଧରେ ଘୋର ଷଡ଼ଯନ୍ତ୍ର ଚାଲିଛି, ସେମାନେ ବସିଛନ୍ତି ତାକୁ ପୁଣି ତା ସ୍ତ୍ରୀ ସଙ୍ଗେ ମିଳାମିଶା କରାଇ ଦେବେ । ସେତେବେଳେ ତାର ଯେଉଁ ମାନସିକ ଅବସ୍ଥା ତହିଁରେ ଏ ପ୍ରସ୍ତାବ ତାକୁ ଅରୁଚିକର ଲାଗିଲା ନାହିଁ । ତା ଆଖିରେ କୌଣସି କଥା ଗୁରୁତ୍ୱପୂର୍ଣ୍ଣ ଦିଶୁ ନଥିଲା । ଜୀବନରେ କୌଣସି ବିଷୟର କିଛି ହେଲେ ତାତ୍ପର୍ଯ୍ୟ ଅଛି

ପିଏରେ ଏପରି କେବେ ଭାବୁ ନଥିଲା । ତାକୁ ନୈରାଶ୍ୟ ଘୋଟିଥାଏ, ତାହାର ପ୍ରଭାବରେ ନିଜର ସ୍ୱାଧୀନତା ବା ସ୍ତ୍ରୀକୁ ଶାସ୍ତି ଦେଇ ନିଜର ମନସ୍କାମନା ପୂରଣ ଏ ଉଭୟ ଥିଲା ତା ଆଖିରେ ତୁଚ୍ଛ, ତାତ୍ପର୍ଯ୍ୟହୀନ ।

"କେହି ଠିକ ନୁହେଁ, କେହି କିଛି ଦୋଷ କରେ ନାହିଁ, ତେଣୁ ମୋ ସ୍ତ୍ରୀର ବି କିଛି ଦୋଷ ନାହିଁ" ସେ ଭାବିଲା ତା ସ୍ତ୍ରୀ ସଙ୍ଗେ ମିଳାମିଶା ହେବାକୁ ସେ ଯେ ହଠାତ୍ ହଁ କଲା ନାହିଁ, ତାହା କେବଳ ଏଇଥି ପାଇଁ ଯେ ସେ ଯେପରିଭାବେ ନୈରାଶ୍ୟରେ ବୁଡ଼ି ରହିଥିଲା ତହିଁରେ କୌଣସି ପ୍ରକାର କର୍ମପନ୍ଥା ଅବଲମ୍ବନ କରିବାକୁ ସେ ଅସମର୍ଥ ଥିଲା । ତା ସ୍ତ୍ରୀ ଯଦି ସେତେବେଳେ ତା ପାଖରେ ଆସି ପହଞ୍ଚିଥାନ୍ତା, ସେ କେବେ ତାକୁ ତଡ଼ିପାରି ନଥାନ୍ତା । ସେ ତା ସ୍ତ୍ରୀ ସଙ୍ଗରେ ଏକାଠି ରହିବ କି ଅବା ଅଲଗା ରହିବ — ଏଥିରେ ତାର କିଛି ଯାଏ କି ଆସେ ?

ପିଏରେ ତା ଡ଼ାଇରିରେ ଏଇଆ ଲେଖିଲା —

"ପିଟର୍ସବର୍ଗ । ନଭେମ୍ବର ୨୩ । ମୋ ସ୍ତ୍ରୀ ସଙ୍ଗେ ମୋର ବର୍ତ୍ତମାନ ମିଳାମିଶା ହୋଇଯାଇଛି । ମୋ ଶାଶୁ କାନ୍ଦି କାନ୍ଦି ମୋ ପାଖକୁ ଆସିଲେ, କହିଲେ "ଏଲେନ୍ ଏଠିକି ଆସିଛି" । ତା କଥା ଶୁଣିବାକୁ ସେ ମତେ ବହୁତ ଅନୁନୟ କରୁଛି । ସେ ନିର୍ଦ୍ଦୋଷ, ମୁଁ ତାକୁ ଛାଡ଼ି ଦେଲି ବୋଲି ସେ ଦୁଃଖରେ ଭାଙ୍ଗି ପଡ଼ିଛି । ସେ ଆହୁରି ବହୁତ କଥା କହିଲେ । ମୁଁ ବୁଝିପାରିଲି ଯେ ଥରେ ଯଦି ତା ସଙ୍ଗେ ଦେଖା କରିବାକୁ ମୁଁ ମୋ ନିଜକୁ ଛାଡ଼ିଦେବି ତାହାଲେ ସେ ଯାହା ଚାହିଁବ ତା ନକରିବାକୁ ମୁଁ ମନା କରିପାରିବି ନାହିଁ । ମୋ ମନ ଅନିଶ୍ଚିତତାରେ ଆଚ୍ଛନ୍ନ ରହିଲା । ମତେ ଜଣା ପଡ଼ିଲା ନାହିଁ କାହା ପାଖରୁ ମୁଁ ସାହାଯ୍ୟ ଓ ପରାମର୍ଶ ନେବି । ମୁଁ ମୋ ଶୋଇବା ବଖରାକୁ ଚାଲିଗଲି, ଶେଷରେ ସିଦ୍ଧାନ୍ତ କଲି ଯେ ପ୍ରାର୍ଥୀ, ଅନୁନୟ ବିନୟ କରୁଛି, ତାକୁ ଫେରାଇ ଦେବାଟା ଠିକ ହେବ ନାହିଁ । ମୋର କର୍ତ୍ତବ୍ୟ ସମସ୍ତଙ୍କ ସାହାଯ୍ୟ କରିବାକୁ ହାତ ବଢ଼ାଇ ଦେବା, ବିଶେଷତଃ ସେହି ଜଣକୁ । ଘନିଷ୍ଠଭାବେ ମୋ ସହିତ ସମ୍ପୃକ୍ତ । ମୋ ଦୁଃଖ କଷ୍ଟର ବୋଝ ମତେହିଁ ମୁଣ୍ଡେଇବାକୁ ପଡ଼ିବ । କିନ୍ତୁ ଔଚିତ୍ୟ ଦୃଷ୍ଟିରୁ ମୁଁ ଯଦି ତାକୁ କ୍ଷମା କରେ ତାହେଲେ ତା ସଙ୍ଗେ

ମୋର ପୁନର୍ମିଳନର ଉଦ୍ଦେଶ୍ୟ କେବଳ ଆଧ୍ୟାତ୍ମିକ ହିଁ ହେବ । ମୁଁ ଏଇଆ ନିଷ୍ପତ୍ତି କଲି । ମୁଁ ମୋ ସ୍ତ୍ରୀକୁ କହିଲି ମୁଁ ତାର ଯାହା କିଛି କ୍ଷତି କରିସାରିଛି ତାକୁ ସବୁ କ୍ଷମା କରୁ ବୋଲି ମୁଁ ତାକୁ ଅନୁନୟ କରୁଛି ଓ ଏଭଳି କିଛି ଦୋଷ ଯେ କରିନାହିଁ ଯେଉଁଥି ପାଇଁ ମୁଁ ତାକୁ କ୍ଷମା କରିବ । ତାକୁ ଯେ ଏ କଥା ମୁଁ କହିଲି ତେଣୁ ମୋ ମନରେ ଖୁବ୍ ଆନନ୍ଦ ହେଲା । ସେ କେବେ ନ ଜାଣୁ ଭଗବାନ ସେଇଆ କରନ୍ତୁ,—ସେ ପୁଣି ତା ମୁହଁ ଦେଖିଲି ବୋଲି ମୋ ମନରେ କେଡ଼େ ଯାତନା ହେଲା । ଏଇ ପ୍ରକାଣ୍ଡ ପ୍ରସାଦରେ ଉପର ମହଲାରେ ବଖରାମାନଙ୍କରେ ମୁଁ ବସବାସ କରୁଛି । ଜୀବନକୁ ଆଉଥରେ ନୂଆ କରି ଆରମ୍ଭ କରୁଛି—, ଏହି ସୁଖକର ଅନୁଭୂତି ମୋର ହେଉଛି ବୋଲି ମୁଁ ଜାଣି ପାରୁଛି ।

ସବୁବେଳେ ଯେପରି ହୋଇଥାଏ ସେତେବେଳେ ବି ସେହିପରି ହୋଇଥିଲା ଯେ ଯେଉଁ ଉଚ୍ଚ ଶ୍ରେଣୀର ଲୋକେ ରାଜସଭାରେ ଏକାଠି ହେଉଥିଲେ କି ବଲ୍ ନାଚ ଉତ୍ସବମାନଙ୍କରେ ଏକାଠି ହେଉଥିଲେ ସେମାନଙ୍କ ଭିତରେ ବିଭିନ୍ନ ଦଳ ଥିଲା । ପ୍ରତିଦଳ ପ୍ରକାର ଭିନେ । ସେତେବେଳେ ତହିଁ ଭିତରୁ ସବୁଠୁ ବଡ଼ଥିଲା 'ଫରାସି ଦଳ' । ରୁଷ ରାଷ୍ଟ୍ର ନେପୋଲିଅନଙ୍କ ବନ୍ଧୁ ହୋଇ ରହୁ ଏହା ଥିଲା ସେ ଦଳର ମତ । କାଉଣ୍ଟ ରୁମିୟାନ୍ତସେଭ ଓ କଲେନକୋର୍ଟ ଏ ଦୁହେଁ ସେହି ଦଳରେ ଥିଲେ । ଏଲେନ ପିଟର୍ସବର୍ଗ ସହରରେ ନିଜ ସ୍ୱାମୀ ଘରେ ଦମ୍ଭ ହୋଇ ରହିବା ସଙ୍ଗେ ସଙ୍ଗେ ଏହି ଦଳରେ ନିଜ ପାଇଁ ଗୋଟିଏ ପ୍ରଧାନ ଆସ୍ଥାନ କରି ନେଲା । ରୁଷରେ ଫରାସୀ ଦୂତାବାସର ସଭ୍ୟମାନେ ଓ ସେହି ରାଜନୈତିକ ଦଳର ଆହୁରି ଅନେକ ବ୍ୟକ୍ତି ଯେଉଁମାନେ ନିଜ ସୌଜନ୍ୟ ଓ ବିଦ୍ୟାବୁଦ୍ଧି ପାଇଁ ବିଖ୍ୟାତ ଥିଲେ ସେମାନେ ତା ଘରକୁ ଆସିବାକୁ ଲାଗିଲେ ଓ ସେମାନଙ୍କୁ ସେ ସମାଦାର କଲା ।

ଯେତେବେଳେ ସମ୍ରାଟମାନେ ଏକାଠି ହୋଇ ମନ୍ତ୍ରଣା କରୁଥିଲେ ସେତେବେଳେ ଏର୍ଫିଟ୍ ସହରକୁ ଏଲେନ ଯାଇଥିଲା ଓ ୟୁରୋପ ମହାଦେଶରେ ଯେତେ ପ୍ରସିଦ୍ଧ ଲୋକେ ନେପୋଲିଅନଙ୍କ ସମର୍ଥକ ଦଳରେ ଥିଲେ ସେ ସମସ୍ତଙ୍କ ସଙ୍ଗେ ଏଲେନ ଘନିଷ୍ଠ ସମ୍ପର୍କ ପାତିଥିଲା ।

ଏପର୍ଯ୍ୟନ୍ତ ସହରରେ ସେ ଅଦ୍ଭୁତ କୃତକାର୍ଯ୍ୟ ଲାଭ କରିଥିଲା । ନେପୋଲିଅନ ତାକୁ ଥିଏଟରରେ ଦେଇଥିଲେ ଓ ସେ କିଏ ବୋଲି ପଚ୍ଛିର ବୁଝିଥିଲେ । ସେ ତାର ସୌନ୍ଦର୍ଯ୍ୟ ଦେଖି ପ୍ରଶଂସା କରିଥିଲେ । ଜଣେ ସୁନ୍ଦରୀ ସ୍ତ୍ରୀ ନାରୀ ସ୍ୱଭାବରେ ସେ ଯେଉଁଠି, ଯେଉଁଠି ବିଜୟ ହାସଲ କଲା ସେଥିରେ ପିଏରେ ଆଦୌ ଆଶ୍ଚର୍ଯ୍ୟ ହେଲା ନାହିଁ । କାରଣ ବର୍ଷ ପରେ ବର୍ଷ ଯେତକ ଯାଉଥାଏ ସେତକ ସେ ଆହୁରି ଆହୁରି ସୁନ୍ଦର ହଉଥାଏ । କିନ୍ତୁ ସେ ଏଥିପାଇଁ ଆଶ୍ଚର୍ଯ୍ୟ ହେଲା ଯେ, ଗତ ଦୁଇ ବର୍ଷ ମଧ୍ୟରେ ତାର ସ୍ତ୍ରୀ ଲୋକଙ୍କଠୁ ଏହି ମନ୍ତବ୍ୟ ପାଇବାକୁ ସମର୍ଥ ହୋଇ ପାରିଛି ଯେ--

"ସେ ଜଣେ ଚମତ୍କାର ଭଦ୍ର ମହିଳା, ଦେଖିବାକୁ ଯେତକ ସୁନ୍ଦର ତାଙ୍କ କଥାଭାଷା ସେତକ ବୁଦ୍ଧିଦୀପ୍ତ ।" କେହି ଜଣେ ଯଦି କାଉଣ୍ଟେସ୍ ବେଜହୋଭ (ଏଲେନ)ଙ୍କୁ ଭେଟି ତାଙ୍କ ଦ୍ୱାରା ଅଭ୍ୟର୍ଥିତ ହୋଇଛି ତ ଲୋକେ ଭାବୁଥିଲେ ଯେ ସେ ଲୋକ ଧୀମାନ ବୋଲି ପ୍ରମାଣ ପତ୍ର ପାଇ ସାରିଛି । ଏଲେନ ଘରେ ବୈଠକ ବସିଥିଲାବେଳେ ଯୁବକମାନେ ଲିଖିତ ନିବନ୍ଧ ପଢ଼ୁଥିଲେ, ଯେପରି କଲେ ସେହି ଘରେ ସେମାନେ କିଛି କହି ପାରିବେ । ଦୂତାବାସର ସେକ୍ରେଟେରୀମାନେ ଏପରିକି ରାଷ୍ଟ୍ରଦୂତ ମାନେ ଏଲେନଙ୍କୁ ବିଶ୍ୱାସରେ କେତେ ଗୂଢ଼ ତଥ୍ୟ ବି କହି ଦେଉଥିଲେ । ତେଣୁ ଏଲେନ ଏକ ପ୍ରକାର କ୍ଷମତାଶାଳୀନୀ ହୋଇ ଉଠିଥିଲା । ପିଏରେ ଜାଣିଥିଲା ଯେ, ଏଲେନର ବୁଦ୍ଧିଶୁଦ୍ଧି ନଥିଲା । ତେଣୁ ତା ବୈଠକରେ ଭୋଜି ସଭାରେ ଯେତେବେଳେ ରାଜନୀତି, କବିତା ଓ ଦର୍ଶନଶାସ୍ତ୍ରର ଆଲୋଚନା ପଡ଼ୁଥିଲା ପିଏରେ ସେସବୁ ଶୁଣିଲା ବେଳେ ପିଏରେଙ୍କୁ ଆଶ୍ଚର୍ଯ୍ୟ ଲାଗୁଥିଲା ଓ ଡର ଆଶଙ୍କା ବି ହେଉଥିଲା । ତାଙ୍କୁ ସେହିପରି ଲାଗୁଥିଲା ଯେପରି ଲାଗନ୍ତା ଜଣେ ଯାଦୁକରଙ୍କୁ ଯେ ପ୍ରତି ମୁହୂର୍ତ୍ତରେ ଆଶଙ୍କା କରୁଛି ଯେ ତାର ଭୁମର ପଦାରେ ପଡ଼ିଯିବ । କିନ୍ତୁ ବୋଧହୁଏ ସେପରି ବୈଠକ ସୁରୁଖୁରୁରେ ଚଳାଇବାକୁ ହେଲେ ସେହିପରି ନିର୍ବୋଧତାହିଁ ଦରକାର, ଅଥବା ଯେଉଁ ଲୋକ ସେଠି ପ୍ରତାରିତ ହେଉଥିଲେ, ପ୍ରତାରିତ ହେବାରେହିଁ ସେମାନଙ୍କର ଆନନ୍ଦ, ତେଣୁ ପ୍ରତାରଣା ଧରା ପଡୁନଥିଲା ଓ ସେହି କାରଣରୁ ଏଲେନର ନାଁ ଡାକ

ହୋଇଥିଲା ଯେ ସେ ଜଣେ 'ଚମତ୍କାର ଭଦ୍ରମହିଳା', ଓ ସେହି ଖ୍ୟାତି ପାଇବା ଯୋଗୁଁ ସେଭଳି ସଭାରେ ସେ ଯେତେ ମୂର୍ଖ ଭାଷଣ ଦେଉଥିଲା ଲୋକେ ସେସବୁକୁ ଉତ୍ସାହ ଦେଖାଇ ଗ୍ରହଣ କରୁଥିଲେ । ତା ଉକ୍ତିରୁ ସେମାନେ ପ୍ରତ୍ୟେକ ଏଭଳି ଅର୍ଥ ବାହାର କରୁଥିଲେ ଯାହା ଏଲେନର ନିଜର କଳ୍ପନାତୀତ ।

ସେହି ଚମତ୍କାର ସାମାଜିକ ଭଦ୍ରମହିଳାଟିର ଯେଉଁପରି ସ୍ୱାମୀଟିଏ ଦରକାର ପିଏରେ ଅବିକଳ ଥିଲା ସେହିପରି । ସେ ଅନ୍ୟମନସ୍କ, ଅବାଗିଆ ସ୍ୱାମୀଟିଏ, ଗମ୍ଭୀର, ସମ୍ମାନାସ୍ପଦ, କାହାରି ବାଟ ସେ ଓଗଳେ ନାହିଁ । ଏଲେନର ବୈଠକଖାନାରେ ଯେଉଁ ଉଚ୍ଚାଙ୍ଗ ଆଲୋଚନା ହୁଏ, ସେଥିଯୋଗୁଁ ତାର ସେ ବୈଠକଖାନାରେ ଯେଉଁ ଖ୍ୟାତି, ପିଏରେ ଯୋଗୁଁ ତାହା ଆଦୌ କ୍ଷୁଣ୍ଣ ହୁଏ ନାହିଁ । ଯଦିଚ ସେ ତାର ବ୍ୟବହାର ତାର ସ୍ତ୍ରୀର ସୌଷ୍ଠବ ଓ ସୌଜନ୍ୟର ଠିକ୍ ଓଲଟା, ବରଂ ଏ ବିସାଦୃଶ୍ୟ ଯୋଗୁଁ ଏଲେନ୍‌ର ଲାଭ ହୁଏ । ଗତ ଦୁଇବର୍ଷ ହେଲା ସାଂସାରିକ ବାସ୍ତବ ବିଷୟ ଆଡ଼କୁ ତାର ମନ ଯାଉନଥିଲା, ସେସବୁ ପ୍ରତି ତାର ଘୋର ତାଚ୍ଛଲ୍ୟ ଆସୁଥିଲା. ସେ ଖାଲି ଅବାସ୍ତବ ବିଷୟ କଥା ଭାବୁଥିଲା । ତା ସ୍ତ୍ରୀ ପାଖେ ଯେତେ ବୈଠକ ବସେ ତା ପ୍ରତି ଥାଏ ତାର ସମ୍ପୂର୍ଣ୍ଣ ଉଦାସୀନତା ସେ ଲେଶେ ନିଆବି ଦିଏନାହିଁ । ସେଠିକି ଯେତେଲୋକ ଆସନ୍ତି ପ୍ରତ୍ୟେକଙ୍କ ପ୍ରତି ତାର ସମାନ ସୌଜନ୍ୟ । ଏ ଗୁଣଟି କୃତ୍ରିମତା ଦ୍ୱାରା ମିଳେ ନାହିଁ ଓ ତେଣୁ ତାକୁ ସମସ୍ତେ ସମ୍ମାନ କରନ୍ତି । ତା ସ୍ତ୍ରୀର ବୈଠକଖାନା ଭିତରେ ପଶିଲାବେଳେ ଗୋଟାଏ ଥିଏଟରରେ ପଶିଲାଭଳି ତାକୁ ଲାଗେ ଯେଉଁଠି ସେ ସମସ୍ତିଙ୍କ ସଙ୍ଗେ ପରିଚିତ, ସମସ୍ତଙ୍କ ପ୍ରତି ସମାନଭାବେ ସୌଜନ୍ୟ-ପୂର୍ଣ୍ଣ ଓ ଉଦାସୀନ । ଆଲୋଚନା ଚାଲିଥିଲା ବେଳେ ସମୟ ସମୟରେ କେଉଁ ବିଷୟ ପ୍ରତି ତାର ମନ ଗଲେ ସେ ସେହି ଆଲୋଚନାରେ ଅଂଶ-ଗ୍ରହଣ କରେ । "ରାଷ୍ଟ୍ରଦୂତାବାସର ଭଦ୍ର ବ୍ୟକ୍ତିମାନେ" ସେଠି ଉପସ୍ଥିତ ଅଛନ୍ତି କି ନାହିଁ ସେ ବିଷୟ ଆଦୌ ନ ବିଚାରି ସେତେବେଳେ ସେ ମନଖୋଲି ଧୀର ସ୍ୱରରେ ଟେକ୍‌ଠୋକ୍ କରି ଅଳ୍ପକିଛି କହି ନିଜ ମତାମତ ପ୍ରକାଶ କରେ । କିନ୍ତୁ ସେତେବେଳେ ସମାଜରେ ଯେଉଁ ବନ୍ଧା-ଗତରେ ଭାଷା ପ୍ରୟୋଗ କରି କଥା କହୁଥିଲେ ତା କଥା ଆଦୌ ସେପରି

ନଥିଲ । "ପିଟର୍ସ ବର୍ଗ ନଗରୀର ସର୍ବାଧିକା ମହାପ୍ରସୀ ଭଦ୍ରମହିଳା"ଙ୍କ ଅବଗିଆ ସ୍ୱାମୀଙ୍କ ବିଷୟରେ ମତାମତ ଏଭଳି ଦୃଢ଼ୀଭୂତ ହୋଇଯାଇଥାଏ ଯେ, ପ୍ରିଏରେର କଥାରେ କେହି ଗୁରୁତ୍ୱ ଆରୋପ କରୁନଥିଲେ ।

ଡିସେମ୍ବର ମାସ ୩୧ ତାରିଖରେ ନୂଆ ସାଲ ୧୮୧୦ର ପ୍ରଥମ ଦିନର ପୂର୍ବ ସନ୍ଧ୍ୟାରେ ଠାଏ ଗୋଟିଏ ପ୍ରକାଣ୍ଡ ଭୋଜି ଓ ନୃତ୍ୟ ଉତ୍ସବର ଆୟୋଜନ ହୋଇଥାଏ । ଯେ ଏହା କରୁଥାନ୍ତି ସେ ଜଣେ ପ୍ରଖ୍ୟାତ ବ୍ୟକ୍ତି, ମହାରାଣୀ କ୍ୟାଥାରିନ୍‌ଙ୍କ ରାଜସଭାରେ ସେ ସବୁଠୁଁ ବିଖ୍ୟାତ ହୋଇଥିଲେ । ସେ ଉତ୍ସବରେ ରୁଷ ଦେଶର ସମ୍ରାଟ ଓ ରୁଷ୍‌ର ବୈଦେଶିକ କୂଟନୀତିଜ୍ଞ ସଂସ୍ଥାର ସଭ୍ୟମାନେ ଉପସ୍ଥିତ ହେବାର ଥାଏ ।

ରୋଷ୍ଟଭ ପରିବାର ତରତର କରି ଆୟୋଜନ କରିବାରେ ବ୍ୟସ୍ତ ଥାନ୍ତି, ସେତେବେଳକୁ ନିମନ୍ତ୍ରିତ ବ୍ୟକ୍ତିମାନଙ୍କ ଭିତରୁ ଅନେକଗୁଡ଼ିଏ ଆଗେ ଆସି ଭୋଜି ଓ ନୃତ୍ୟ ସଭାରେ ପହଞ୍ଚିଗଲେଣି । ରୋଷ୍ଟଭ ପରିବାର ସେହି ଯେଉଁ ଭୋଜି ଓ ନୃତ୍ୟ ଉତ୍ସବକୁ ଯିବାକୁ ବସିଥିଲେ ସେଥିପାଇଁ ସେମାନେ ଆଗରୁ ନାନା ଆଲୋଚନା ଓ ଆୟୋଜନ କରିଥାନ୍ତି । ସେମାନଙ୍କର ମନରେ ନାନା ଆଶଙ୍କା ଥାଏ ଯେ କାଳେ ସେଠିକି ଯିବାକୁ ସେମାନଙ୍କ ପାଖକୁ ନିମନ୍ତ୍ରଣ ପତ୍ର ଆସି ପହଞ୍ଚି ପାରିବ ନାହିଁ, କାଳେ ସେ ନୃତ୍ୟ ଉତ୍ସବ ଲାଗି ବରାଦ ଦେଇଥିବା ପୋଷାକ ଠିକଣା ସମୟରେ ପ୍ରସ୍ତୁତ ହୋଇ ପାରିନଥିବ ଓ ଯାହା ଯାହା ହେବାର କଥା ତା ହୋଇପାରି ନଥିବ ।

ରୋଷ୍ଟଭ ପରିବାର ସହିତ କାଉଣ୍ଟେସଙ୍କର ଜଣେ ବନ୍ଧୁ ଓ ସମ୍ପର୍କୀୟା ମେରିଆ ଇଗ୍ନାଟିୟେଭ୍‌ନା ପିରେନସ୍କି ସେହି ଉତ୍ସବକୁ ଯିବାର ଥାଏ । ସେ ଜଣେ ପାତଳ ହୋଇ ହଳଦିଆ ବର୍ଣ୍ଣର ସ୍ତ୍ରୀଲୋକ । ପୂର୍ବତନ ରାଜସଭାରେ ସେ ଜଣେ "ସମ୍ମାନନୀୟା ସଖି" ହୋଇଥିଲେ । ମଫସଲବାସୀ ରୋଷ୍ଟଭ୍ ପରିବାରଙ୍କ ପାଇଁ ପିଟର୍ସ ବର୍ଗ ସହରରେ ଉନ୍ନତ ସମାଜରେ ପ୍ରବେଶର ସୁବିଧା କରିବାପାଇଁ ସେ ସେମାନଙ୍କର ପଥ ପ୍ରଦର୍ଶିକା ହୋଇଥାନ୍ତି ।

ଚାର୍ଲ୍ସ ରେଷ୍ଟି ବଗିଚାରେ ସେ ମହାଶୟଙ୍କ ଘର । କଥା ଥିଲା ଯେ ଠିକ୍ ଦଶଟା ବେଳେ ରୋଷ୍ଟଭ ପରିବାର ଗାଡ଼ିରେ ଚଢ଼ି ତାଙ୍କ ଘରେ ବାଜିବାକୁ ମାତ୍ର ପାଞ୍ଚ ମିନିଟ ବାକି, ସେପର୍ଯ୍ୟନ୍ତ ରୋଷ୍ଟଭ ପରିବାରରେ ଝିଅମାନେ ପୋଷାକ ପିନ୍ଧି ନାହାନ୍ତି ।

ଗୋଟାଏ ବଡ଼ ଭୋଜି ଓ ନୃତ୍ୟ ଉତ୍ସବକୁ ଯିବା ନାତାଶାର ଜୀବନରେ ସେହି ପ୍ରଥମଥର । ସେଦିନ ସକାଳ ଆଠଟାବେଳେ ସେ ନିଦରୁ ଉଠିଥାଏ ଓ ଦିନଟିଯାକ ଚଞ୍ଚଳ ମନରେ କାର୍ଯ୍ୟରେ ଲାଗି ପଡ଼ିଥାଏ । ସକାଳୁ ଏପର୍ଯ୍ୟନ୍ତ ସେ ଗୋଟିଏ ଉଦ୍ଦେଶ୍ୟ ରଖି ଲାଗି ପଡ଼ିଥାଏ ଯେ, କେମିତି ସେ ନିଜେ, ତା ମା' ଓ ସୋନିଆ ସବୁଠୁଁ ଭଲ ପୋଷାକ ପିନ୍ଧି ବାହାରି ପାରିବେ । ତା ମା' ଓ ସୋନିଆ ପୂରାପୂରି ତା ହାତରେ ନିଜକୁ ଛାଡ଼ି ଦେଇଥାନ୍ତି । ଠିକଣା କରାଯାଇଥାଏ ଯେ କାଉଣ୍ଟେସ ପିନ୍ଧିବେ, ଗାଢ଼ନାଲି ମଖମଲର ପୋଷାକ ଓ ଝିଅ ଦିହେଁ ଧଳା ପୋଷାକ ପିନ୍ଧିବେ, ତା ତଳେ ପିନ୍ଧିବେ ଗୋଲାପୀ, ତାଙ୍କ ବୋଡ଼ିସ ଉପରେ ଗୋଲାପ ଫୁଲ । ତାଙ୍କ ମୁଣ୍ଡବାଳ ଏକାପରି ବିଶିଷ୍ଟ ପ୍ରକାରରେ ଗଣ୍ଠି ହୋଇ ବନ୍ଧା ହେବ ।

ପ୍ରାରମ୍ଭିକ କାର୍ଯ୍ୟସବୁ ସରିଯାଇଥାଏ । ପାଦ, ହାତ, ବେକ, କାନ ଭଲ କରି ଧୁଆ ସରିଥାଏ, ତହିଁରେ ଅତର ଲଗା ସରିଥାଏ, ବଲ୍ ନାଚ ପାଇଁ ଖୁବ୍ ଯତ୍ନରେ ତହିଁରେ ପାଉଡ଼ର ବୋଳା ସରିଥାଏ । ସିଲ୍‌କ୍ ମୋଜା ଓ ରିବନ୍ ବନ୍ଧା ସାଟିନ ଜୋତା ପିନ୍ଧା ସରିଥାଏ । ମୁଣ୍ଡବନ୍ଧା ପ୍ରାୟ ସରିଆସିଥାଏ । ସୋନିଆ ଓ କାଉଣ୍ଟେସ୍ ପୋଷାକ ପିନ୍ଧି ସାରିଥାନ୍ତି, କିନ୍ତୁ ନାତାଶା ଯେ କି ସବୁକଥା ବୁଝାଶୁଝା କରୁଥାଏ, ସେ ପଛରେ ପଡ଼ିଯାଇଥାଏ । ତାର ସରୁ ସରୁ କାନ୍ଧ ଉପରେ ଗୋଟାଏ ଗ୍ଲ୍ଦର ପକାଇଦେଇ ସେ ସେତେବେଳେ ବି ଦର୍ପଣ ଆଗରେ ବସିଥାଏ । ପୋଷାକ ପିନ୍ଧିସାରି ସୋନିଆ ଘରମଝିରେ ଠିଆ ହୋଇଥାଏ, ପିନ୍ କଣ୍ଟା ମାରି ଶେଷ ରିବନ୍ ଫିତାକୁ ପୋଷାକରେ ମାରୁଥାଏ ଯେ ତା ଆଙ୍ଗୁଠିକୁ କାଟୁଥାଏ ଓ ସିଲକ୍‌ର ଖସ୍ ଖସ ଶୁଭୁଥାଏ ।

ନାତାଶା ମୁଣ୍ଡ ବୁଲାଇଦେଇ କହିଲା "ସେମିତି ହେବ ନାହିଁ ସୋନିଆ, ରିବନ୍ ସେମିତି ମରା ହୁଏନାହିଁ, ଏଠିକି ଆ" । ଯେଉଁ ଦାସୀଟି

ନାତାଶାର ମୁଣ୍ଡ ବାନ୍ଧି ଦେଉଥାଏ । ନାତାଶା ମୁଣ୍ଡ ବୁଲାଇ ଦେଲାବେଳେ ଦାସୀଟି ତା ମୁଣ୍ଡବାଳକୁ ହଠାତ୍ ଛାଡ଼ିଦେଇ ପାରିଲା ନାହିଁ, ତେଣୁ ନାତାଶା ନିଜେ ଦି' ହାତରେ ନିଜ ବାଳକୁ ମୁଠେଇ ଧରିଲା । ସୋନିଆ ତା ପାଖରେ ବସିପଡ଼ିଲା, ନାତାଶା ତା ନିଜ ବାଗରେ ତାର ରିବନ୍‌ଫିତା ବାନ୍ଧିଦେଲା । ନାତାଶାର ମୁଣ୍ଡ ବାନ୍ଧି ଦେଉଥିବା ଦାସୀଟି ତା ବାଳକୁ ଧରି କହିଲା "ସେମିତି ହେବ ନାହିଁ ମା, ହେଲା ନାହିଁ ।"

"ଆଲୋ ଆଲୋ !" ନାତାଶା କହିଲା. "ଆହୁରି ପଛକୁ । ହଁ ଏଥର ଠିକ୍ ହେଲା ସୋନିଆ ।"

କାଉଣ୍ଟେସଙ୍କ ସ୍ୱର ଶୁଭିଲା "ତୁମେମାନେ ଚଞ୍ଚଳ ପ୍ରସ୍ତୁତ ହୋଇଯିବ କି ନାହିଁ ?"

"ହୋଇ ସରିଆସିଲା, ଏଇ ସଙ୍ଗେ ସଙ୍ଗେ । ତୁ ପ୍ରସ୍ତୁତ ହେଲୁଣିତ ମା ?"

"ଖାଲି ମୋ ଟୋପିଟା ପିନ୍ଧିବା ବାକି ଅଛି ।"

ନାତାଶା ପାଟି କଲା, "ମୁଁ ନଥାଇ ପିନ୍ଧ୍‌ନା, କେମିତି ପିନ୍ଧିବାକୁ ତୁଏ ତତେ ଜଣାନାହିଁ ।"

"ଦଶଟା ବାଜିଗଲାଣି ଯେ ।"

ଠିକଣା ହୋଇଥିଲା ଯେ ସାଢ଼େ ଦଶଟାବେଳେ ସେମାନେ ଯାଇ ଉତ୍ସବ ସ୍ଥଳରେ ପହଞ୍ଚିବେ । ଏଣେ ନାତାଶା ପୋଷାକ ବି ପିନ୍ଧି ନାହିଁ, ପୁଣି ଆଗ ତାଭ୍ରିଚେସ୍କି ବଗିଚାକୁ ଯିବାକୁ ବି ପଡ଼ିବ ।

ନାତାଶାର ମୁଣ୍ଡବନ୍ଧା ଯେମିତି ସରିଗଲା ନାତାଶା ସୋନିଆ ପାଖକୁ ଧାଇଁଯାଇ ତାକୁ ତାଳୁରୁ ତଳିପା ଯାଏ ତନଖିକରି ଦେଖିଲା । ନାତାଶା ତା ମା'ଙ୍କର ଡ୍ରେସିଂ ଜ୍ୟାକେଟ୍ ପିନ୍ଧିଥାଏ, ଗୋଟିଏ ଅଣ୍ଡରସାୟା ପେଟିକୋଟ୍ ପିନ୍ଧିଥାଏ, ତା ତଳୁ ତାର ନାଚ ଜୋତା ଦିଶୁଥାଏ । ସୋନିଆକୁ ଦେଖିସାରି ସେ ତା ମା'ଙ୍କ ପାଖକୁ ଦୌଡ଼ିଲା, ତାକୁ ବୁଲାଇ-

ଦେଇ ମୁଣ୍ଡରେ ଟୋପି ପିନ୍ଧାଇଦେଇ ପିନ୍ ମାରିଦେଲା, ତାଙ୍କ ଧଳା ବାଳରେ ଚୁମା ଦେଇ ଦାସୀମାନଙ୍କ ପାଖକୁ ଧାଇଁଗଲା, ସେମାନେ ତା ସ୍କାର୍ଟ୍‌କୁ ଘେରିକି କରୁଥାନ୍ତି ।

ସମସ୍ତଙ୍କ ନଜର ପଡ଼ୁଥାଏ ନାତାଶାର ସ୍କାର୍ଟ୍ ଉପରେ, ସେଇଟା ବେଶି ଲମ୍ବା ହୋଇଯାଇଥାଏ । ଦୁଇଟି ଦାସୀ ତରତର କରି ତଳ୍ପିରେ ସିଲାଇ ହୋଇଥିବା ସୂତାକୁ କାମୁଡ଼ି ଛିଣ୍ଡାଇ ପକାଇ ତାକୁ ଉପରପଟକୁ ଭାଙ୍ଗିଦେଇ ଠିକ କରୁଥାନ୍ତି । ଆଉ ଗୋଟିଏ ଦାସୀ ଦାନ୍ତରେ ପିନଗୁଡ଼ାଏ କାମୁଡ଼ି ଧରି କାଉଣ୍ଟେସଙ୍କ ପାଖରୁ ସୋନିଆ ପାଖକୁ ଧାଉଁଥାଏ । ଚତୁର୍ଥ ଦାସୀଟି ବି ହାତରେ ନାତାଶା ଯେଉଁ ଧଳା ପୋଷାକ ପିନ୍ଧିବ ତାକୁ ଧରି ଠିଆ ହୋଇଥାଏ ।

"ତରତର କର ମାଭ୍ରୁସ୍କା, ସୁନାଟି ପରା—"

"ମତେ ଟିକିଏ ସୂତା ଲୁଗା ବଢ଼େଇ ଦିଅ ମା ।" କାଉଣ୍ଟେସ୍ କବାଟ ବାହାରୁ କହିଲେ "ତୁମେ ଚଞ୍ଚଳ ସାରୁଛଟି ?" ଭିତରକୁ ପଶି ଆସିଲେ । କହିଲେ "ହେଇଟି ନିଅ ତୁମ ଶୁଙ୍ଘିବା ଲବଣ । ମାଦାମ୍ ପେରେନସ୍କି ତେଣେ ଆମକୁ ଅପେକ୍ଷା କରି କରି ଥକା ହୋଇ-ଯିବେଣି ।"

ଦାସୀଟି ସରୁ ଧଳାକନାର ସ୍କାର୍ଟ୍‌କୁ ଦୁଇ ଆଙ୍ଗୁଠିରେ ଟେକି ଧରିଲା, ତଳ୍ପିରେ କଣ ଟିକିଏ ଲାଗିଥିଲା ଯେ ତାକୁ ପାଟିରେ ଫୁଙ୍କି ଉଡ଼ାଇଦେଲା, ଯାହା ଟେକି ଧରିଛି ସେ ଜିନିଷଟି କେଡ଼େ ଶୁଦ୍ଧ କେଡ଼େ ସ୍ୱଚ୍ଛ ସେଥିପାଇଁ ତାର ପ୍ରଶଂସା ଜଣାଇବାକୁ ତାକୁ ଥରେ ଝାଡ଼ିଦେଲା, କହିଲା—

"ଠିକ୍ ହୋଇଗଲା ଦେବରୀ ।"

ନାତାଶା ପୋଷାକ ପିନ୍ଧିବା ଆରମ୍ଭ କଲା ।

ସେ ଧଳା ପୋଷାକଟି ଗଳଉଥାଏ ଯେ ତହିଁରେ ତା ମୁହଁ ବୋଡ଼ ହୋଇପଡ଼ ଲୁଚି ଯାଇଥାଏ । ତା ବାପା ଦୁଆରମୁହଁରେ ଠିଆ ହେଲେଣି ଦେଖି ପାରିଲା ।

"ଟିକଏ ରହିଥା ଟିକଏ ରହିଥା, ଭିତରକୁ ଆସନାହିଁ ବାପା ।" ସୋନିଆ ଯାଇ କବାଟକୁ ବନ୍ଦ କରିଦେଲା । ମିନିଟିଏ ପରେ କାଉଣ୍ଟଙ୍କୁ ଭିତରକୁ ଅଣାଗଲା । ସେ ଗୋଟିଏ ନେଳ ଫ୍ରକ୍ କୋଟ ପିନ୍ଧିଥାନ୍ତି, ମୋଜା ପିନ୍ଧିଥାନ୍ତି, ନାଚ ଜୋତା ମାଡ଼ିଥାନ୍ତି, ଦେହରେ ଅତର ଓ ପ୍ରସାଧନ (ପୋମେଡ଼୍ ) ଲଗାଇଥାନ୍ତି ।

ଘର ମଝିରେ ଠିଆ ହୋଇ ନାତାଶା ତାର ଧଳା ପୋଷାକର ଭାଙ୍ଗୁଡ଼ିକୁ ସାଉଁଳୁ ସାଉଁଳୁ କହିଲା "ବାପା ତମେ କେଡ଼େ ସୁନ୍ଦର ଦିଶୁଛ !"

"ଟିକଏ ରହିଥା ଦେଈ" ଗୋଟିଏ ଦାସୀ କହିଲା । ସେ ପାଟିରେ କାମୁଡ଼ି ଧରିଥିବା ପିନ୍‌କଣ୍ଟାଗୁଡ଼ିକୁ ଜିଭରେ ଗୋଟାଏ କଣରୁ ଆରକଣକୁ ଠେଲିଦେଇ ନାତାଶାର ସ୍କାର୍ଟ୍‌କୁ ଆହୁରି ଉପରକୁ ଟେକିଦେଲା ।

ନାତାଶାର ସ୍କାର୍ଟ୍‌କୁ ଅନାଇଁ ନିରାଶ ହୋଇ ସୋନିଆ କହିଲା "ସେ ଯାହା ପଛେ କହ, ସ୍କାର୍ଟ୍‌ଟା ଏବେବି ବେଶି ଲମ୍ବା ଅଛି ।"

ନିଜ ପୋଷାକପିନ୍ଧା ବେଶକୁ ଦର୍ପଣରେ ଦେଖିବ ବୋଲି ନାତାଶା ଆହୁରି ଖଣ୍ଡେ ଦୂର ଘୁଞ୍ଚିଗଲା । ସ୍କାର୍ଟ୍‌ଟା ବେଶି ଲମ୍ବା ଥାଏ ।

ତା ପଛେ ପଛେ ଦାସୀ ମାଭ୍ରୁସ୍କା ଘର ଚଟାଣ ଉପରେ ଗୁରୁଣ୍ଡି ଗୁରୁଣ୍ଡି ଘୁଞ୍ଚିଥାଏ, କହିଲା "ନାହିଁ ମା, ଆଦୌ ବେଶି ଲମ୍ବା ହୋଇନାହିଁ ।"

ଆଉ ଜଣେ ଦାସୀ ଦୁନ୍ୟାସ୍କା,—ଟିକଏ ଟାଣୁଆ ମଣିଷ ସେ, କହିଲା "ବେଶି ଲମ୍ବା ହୋଇଥିଲେ ଆମେ ଅଇଗୁ ଏକା ମିନିଟ୍‌କେ ତାକୁ

ଠିକ କରିଦେବା ।" ସେ ତା ଗୁନ୍ଥରେ ଗୁଞ୍ଜିଥିବା ରୁମାଲ୍‌ରୁ ଗୋଟିଏ ଚୁମ୍ବି ଓଠାରେ ନେଇ ତଳେ ବସିପଡ଼ି ପୁଣି ସେହି ସ୍କାର୍ଟ ସଜାଡ଼ିବା କାମରେ ଲାଗିଗଲା ।

ସେତିକବେଳେ ଟୋପିପିନ୍ଧି ନାଲି ମଖମଲ ଗାଉନ୍ ପିନ୍ଧି କାଉଣ୍ଟେସ ଲାଜ ଲାଜ ହୋଇ ଥିର ଥିର ପାଦ ପକାଇ ସେ ଘର ଭିତରକୁ ପଶି ଆସିଲେ ।

କାଉଣ୍ଟ୍ ବଡ଼ପାଟିରେ କହିଲେ "ଆରେ, କେଡ଼େ ସୁନ୍ଦର ! କେଡ଼େ ସୁନ୍ଦର ! ଦେଖ ପେ୍ ତୁମ ସମସ୍ତଙ୍କଠୁଁ ସୁନ୍ଦର ଦିଶୁଅଛନ୍ତି !" ସେ ତାଙ୍କୁ କୁଣ୍ଢେଇ ପକାଇଥାନ୍ତେ, କିନ୍ତୁ ଲାଜରେ ନାଲି ପଡ଼ିଯାଇ କାଳେ ପୋଷାକ ଲେଉଟାକୋଚ୍ଚ ହୋଇଯିବ ବୋଲି କାଉଣ୍ଟେସ ପଛକୁ ଘୁଞ୍ଚିଗଲେ ।

ନାତାଶା କହିଲା, "ବୋଉ, ଟୋପିଟା ଗୋଟାଏ ପଟକୁ ବେଶି ଝୁଙ୍କିବ, ରହଥା ମୁଁ ତାକୁ ଆଦ୍ଧରଥରେ ସଜାଡ଼ି ଦେଇ ପିନ୍ ମାରିଦେବ ।" ନାତାଶା ଝପଟିଗଲା । ଯେଉଁ ଦାସୀମାନେ ତା ସ୍କାର୍ଟ୍‌ରେ ଲାଗିଥିଲେ ସେ ଏମିତି ଭୂଷକନା ଧାଇଁବ ବୋଲି ସେମାନେ ପ୍ରସ୍ତୁତ ନଥିଲେ, ତେଣୁ ସେ ସ୍କାର୍ଟ୍‌ରୁ ଟିକିଏ କନା ଚିରି ହୋଇଗଲା ।

"ହେ ଭଗବାନ୍ ! କଣ ହେଲା ! ପ୍ରକୃତରେ—ସେଇଟା ମୋ ଦୋଷ ନୁହେଁ ।"

"କିଛି ବିଗିଡ଼ି ନାହିଁ, ସବୁ ଠିକ୍ ଅଛି ।" ଦାସୀ ଦୁନ୍ୟାସ୍କା କହିଲା "ମୁଁ ତାକୁ ସିଲେଇ କରି ଦେଉଛି, ଆଦୌ ପଦାକୁ ଦିଶିବ ନାହିଁ ।"

ବୁଢ଼ୀ ଧାଈମା ଦୁଆରମୁହଁକୁ ଆସି କହିଲା "ମୋ ସୁନା, ମୋ ରାଣି ! କେଡ଼େ ସୁନ୍ଦର ! ଆଉ ସୋନ୍ୟାସ୍କା ବି ! କେଡ଼େ ସୁନ୍ଦର ଦିଶୁଛନ୍ତି ! କେଡ଼େ ସୁନ୍ଦର !"

ଶେଷରେ ଦଶଟାବାଜି ପନ୍ଦର ମିନଟ୍ ହେଲାବେଳକୁ ସେମାନେ ସମସ୍ତେ ଗାଡ଼ିରେ ବସିଥିଲେ, ଗାଡ଼ି ଚାଲିଲା । କିନ୍ତୁ ଆଦ୍ଧରେ ବାକିଥିଲା ସେମାନେ ତାଭ୍ରିଚେସ୍କି ବଗିଚାରେ ପହଞ୍ଚିବା ।

ମାଦାମ୍ ପେରୋନ୍‌ସ୍କି ପ୍ରସ୍ତୁତ ହୋଇ ଅପେକ୍ଷା କରିଥାନ୍ତି । ସେ ବୟସରେ ବୃଦ୍ଧା, ଚେହେରାରେ ଅସୁନ୍ଦର, କିନ୍ତୁ ରୋସ୍ତଭ୍ ପରିବାରଙ୍କ ଘରେ ଯେଉଁପରି ପ୍ରସ୍ତୁତ ହୋଇଥିଲା, ତାଙ୍କର ବି ସେମିତି । ସେ ତରତର ହୋଇନଥିଲେ, କାରଣ ଏଭଳି ସାଜ ହେବା ତାଙ୍କର ସାଧାରଣ ଅଭ୍ୟାସ । ତାଙ୍କର ଶରୀର ବୃଦ୍ଧ, ଦେହରେ ଆକର୍ଷଣୀୟ ହୋଇ କିଛି ନଥିଲା, କିନ୍ତୁ ତାକୁ ଗାଧୁଆଗାଧି କରାଯାଇଥିଲା, ତହିଁରେ ଅତର ଓ ପାଉଡ଼ର ବୋଳା ହୋଇଥିଲା । ତାଙ୍କ କାନ ପଛଆଡ଼ ବି ରୋସ୍ତଭ୍‌ମାନଙ୍କ ପରି ଖୁବ୍ ଯତ୍ନରେ ଧୁଆ ହୋଇଥିଲା । ରୋସ୍ତଭ୍ ଘରର ବୁଢ଼ୀ ଧାଈମା ପରି ତାଙ୍କର ବୁଢ଼ୀ ଦାସୀ ମଧ୍ୟ ଖାମିନ୍ଦୁଣୀଙ୍କ ପୋଷାକକୁ ଖୁବ୍ ପ୍ରଶଂସା କରିଥିଲା । ଯେତେବେଳେ ସେ ହଳଦିଆ ଗାଉନ୍‌ଟିଏ ପିନ୍ଧି ତା ଉପରେ "ସାମ୍ରାଜ୍ଞୀଙ୍କ ସଖି" ବୋଲି ବ୍ୟାଜ୍ ମାରି ବୈଠକଖାନାକୁ ଆସି ପହଞ୍ଚିଲେ । ମାଦାମ ପେରୋନ୍‌ସ୍କି ରୋସ୍ତଭ ପରିବାରର ପୋଷାକପତ୍ର ଦେଖି ପ୍ରଶଂସା କଲେ, ସେମାନେ ବି ତାଙ୍କ ପୋଷାକକୁ ଓ ରୁଚିକୁ ପ୍ରଶଂସା କଲେ । ତାପରେ, ନିଜ ନିଜର ମୁଣ୍ଡବାଳର ସାଜସଜ୍ଜା ଓ ପୋଷାକକୁ ହସିଆର ହୋଇ ଏଗାରଟା ବେଳେ ସମସ୍ତେ ଗାଡ଼ିରେ ବସିଲେ, ଗାଡ଼ି ଚାଲିଲା ।

ସେ ଦିନଯାକ ନାତାଶା ମୁହୂର୍ତ୍ତେ ବି ଏକୁଟିଆ ଭାବିବାକୁ ବେଳ ପାଇନଥିଲା ଓ ଥରେ ବି ଭାବିପାରି ନଥିଲା ଯେ ତାର କଣ ହେବାକୁ ଯାଉଛି ।

ପବନ ଲାଗୁଥାଏ ଓଦା, କାଉଦା, ଥଣ୍ଡା । ଗାଡ଼ି ଦୋହଲୁଥାଏ । ଗାଡ଼ି ଭିତର ଅଧା ଅଧା ଅନ୍ଧାରଥାଏ, ରୁଦ୍ଧ ହେଲପରି ଲାଗୁଥାଏ । ସେହି ଅବସ୍ଥାରେ ପ୍ରଥମଥର ନାତାଶା ମନକୁ ମନ ଭାବିଲା, ସେ ଯେଉଁ ଭୋଜି-ନୃତ୍ୟ ଉତ୍ସବକୁ ଯାଉଛି, ଯେଉଁଠି ପ୍ରକାଣ୍ଡ ପ୍ରକାଣ୍ଡ ହଲ୍ ଘରମାନ ଅତି ଉଜ୍ଜଳ ଆଲୁଅରେ ଦାଉ ଦାଉ ହୋଇଥିବ, ଯେଉଁଠି ଥିବା ସଙ୍ଗୀତ, ନାନା ଫୁଲ, ନାଚ, ରୁଷର ସମ୍ରାଟ ଥିବେ, ପିଟର୍ସବର୍ଗ ସହରର ସବୁ ଚମତ୍କାର ଯୁବକମାନେ ଥିବେ, ସେଠି ସେ କଣ ପାଇବ । ଭାବିଲାବେଳକୁ

ମନେ ମନେ ସେ ଯାହା ଦେଖୁଥାଏ ତାକୁ ଏତେ ଚମତ୍କାର ଲାଗୁଥାଏ ଯେ ପ୍ରକୃତରେ ସେପରି ଘଟିବ । ତାର ସେ କଳ୍ପନା ସେ ଗାଡ଼ି ଭିତରର ଥଣ୍ଡା, ଅନ୍ଧାର ଓ ନିଶ୍ୱାସ ରୁନ୍ଧିଲା ପରି ଅନୁଭବ ସହିତ ସମ୍ପୂର୍ଣ୍ଣ ବେଖାପ ଲାଗୁଥାଏ । ତାପାଇଁ ସେଠି କଣ ଅଛି ତାହା ସେ ସେତିକି ବେଳେ ଧରିପାରିଲା ଯେତେବେଳେ ସେ ଯାଇ ସେଠି ପହଞ୍ଚିଲା । ତଳେ ବିଛା-ହୋଇଥିବା ନାଲି କନା ଉପରେ ଚାଲି ଚାଲି ବାଟ ଘରକୁ ଗଲା । ପୋଷାକ ଉପରେ ଯେଉଁ ଖୋଳଟା ପିନ୍ଧିଥିଲା ତାକୁ ସେ ଘରେ ଓହ୍ଲାଇ ପକାଇଲା, ତାପରେ ସିଢ଼ି ବାଟେ ପାହାଚେ ପାହାଚେ ଉପରକୁ ଚଢ଼ିଗଲା । ଆଗରେ ସେ, ତା ପାଖରେ ସୋନିଆ, ସେ ଦୁହିଁଙ୍କ ପଛରେ ତାଙ୍କ ମା । ସିଢ଼ି ଉଜ୍ଜ୍ୱଳ ଆଲୋକରେ ଆଲୋକିତ ହୋଇଥାଏ, ଦୁଇପାଖେ ଫୁଲ ସଜା ହୋଇଥାଏ । ସେତେବେଳେ ଯାଇ ତାର ମନେ ପଡ଼ିଲା ଯେ ବଲ ନାଚରେ ସେ କିପରି ବ୍ୟବହାର ଦେଖାଇବା ଉଚିତ ହେବ । ତା ବିଚାରରେ—ଗୋଟିଏ ଝିଅ ବଲ୍ ନାଚକୁ ଗଲେ ସେଠି ସେ ରାଣୀପରି ଠାଣି ଦେଖାଇବ, ସେଇଟା ବିଧି, ନିତାନ୍ତ ଅପରିହାର୍ଯ୍ୟ । ସେ ସେହି ଠାଣି ଦେଖାଇବାକୁ ଚେଷ୍ଟା କଲା ।

କିନ୍ତୁ ତା ସୌଭାଗ୍ୟକୁ ତାକୁ ଲାଗିଲା ଯେ ତା ଆଖିକୁ ସବୁ କୁହୁଡ଼ିଆ ଦିଶୁଛି । ସେ ପରିଷ୍କାର କରି କିଛି ଦେଖିପାରିଲା ନାହିଁ । ତା ନାଡ଼ିର ସ୍ପନ୍ଦନ ମିନିଟକେ ଶହେଥର ଚାଲିଲା । ତା ଛାତି ଦମ୍ ଦମ୍ ପଡ଼ିଲା । ତେଣୁ, ଯେଉଁ ଠାଣି ଦେଖାଇଥିଲେ ସେ ଲୋକହସା ହୋଇଥାନ୍ତା । ସେ ତା ଦେଖାଇ ପାରିଲା ନାହିଁ । ସେ ଆଗକୁ ଚାଲିଲା, ସେ ପ୍ରବଳ ଉତ୍ତେଜନା ଅନୁଭବ କରୁଥାଏ, ପ୍ରାଣପଣେ ଚେଷ୍ଟା କରୁଥାଏ ଯେପରି ତାହା ଧରା ନପଡ଼ୁ, ଲୁଚି ରହୁ । ତାର ଏହିପରି ମାନସିକ ଅବସ୍ଥା ହୋଇଥିବାରୁ ତା ଚେହେରାରେ ଯେଉଁପରି ସେ ସବୁଠୁଁ ସୁନ୍ଦର ଦିଶିଥାନ୍ତା ସେ ସେହିପରି ଦିଶିଲା । ସେମାନଙ୍କ ଆଗେ ଆଗେ ଓ ପଛେ ପଛେ ଅନ୍ୟାନ୍ୟ ଅତିଥି-ମାନେ ଚାଲିଥାନ୍ତି । ସେମାନେ ବି ସେହିଭଳି ବଲ ନାଚର ପୋଷାକ ପିନ୍ଧିଥାନ୍ତି ଓ ଚାପିଲା ଚାପିଲା ସ୍ୱରରେ ଧୀରେ ଧୀରେ କଥାଭାଷା କରୁଥାନ୍ତି । ସିଢ଼ିମାନଙ୍କରେ ଯେଉଁ ଦର୍ପଣସବୁ ସଜାହୋଇଥାଏ ସେ ଦର୍ପଣମାନଙ୍କରେ ଭଦ୍ରମହିଳାମାନଙ୍କ ପ୍ରତିବିମ୍ବ ପଡ଼ୁଥାଏ ।

କଏ ଧଳା, କଏ ନେଳି, କଏ ଗୋଲାପୀ ପୋଷାକମାନ ପିନ୍ଧିଥାନ୍ତି, ସେମାନଙ୍କ ବାହୁ ଓ ବେକ ଖୋଲା ପଡ଼ିଥାଏ, ତହିଁରେ ହୀରା ଓ ମୁକ୍ତାମାନ ଶୋଭା ପାଉଥାଏ ।

ନାତାଶା ଦର୍ପଣରେ ନିଜକୁ ଦେଖିଲା ଓ ଅନ୍ୟମାନଙ୍କଠାରୁ ନିଜେ ସେ ଭିନ୍ନ ବୋଲି ବାରି ପାରିଲା ନାହିଁ । ସମସ୍ତେ ଏକାଠି ମିଶିଯାଇ ହୋଇଥାନ୍ତି ଗୋଟିଏ ଚମତ୍କାର ଝଲମଲ ପଟୁଆର । ପ୍ରଥମ ବଖରାର ଦୁଆର ମୁହଁରେ ପହଞ୍ଚିଲା ବେଳକୁ ଶବ୍ଦରେ ନାତାଶାର କାନ ତାବଦା ହୋଇଗଲା, ବହୁ ଲୋକଙ୍କ କଥାଭାଷା ଶବ୍ଦ, ପାଦଶବ୍ଦ, ପରସ୍ପରକୁ ସମ୍ବର୍ଦ୍ଧନା—ଏସବୁ ଅତି ସ୍ୱାଭାବିକ, କିନ୍ତୁ ଏକାଠି ମିଶି ପ୍ରବଳ ଶବ୍ଦ ହେଉଥାଏ । ତା'ଠୁ ବଳି ନାତାଶାକୁ ଅଭିଭୂତ କଲା ସେ ବଖରାର ଉଜ୍ଜଳ ଆଲୋକ ଓ ସେ ଦୃଶ୍ୟର ଝକ୍‌ଝକ୍ୟ ତା ଆଖି ଝଲ-ଝଲେଇ ଗଲା । ଅଧ ଘଣ୍ଟାଏ ହେଲା ଆମନ୍ତ୍ରଣକାରୀ ଗୃହସ୍ୱାମୀ ଓ ତାଙ୍କ ସ୍ତ୍ରୀ ସେ ଦୁଆର ମୁହଁରେ ଠିଆ ହୋଇଥାନ୍ତି । ପ୍ରତ୍ୟେକ ଅତିଥି ଆସି ପହଞ୍ଚିଲା ମାତ୍ରେ ପ୍ରତ୍ୟେକଙ୍କୁ ସେହି ଏକା କଥା କହି ସମ୍ବର୍ଦ୍ଧନା କରୁଥାନ୍ତି—"ଆପଣ ଆସିଲେ ବୋଲି ଆମେ କୃତାର୍ଥ ହେଲୁ ।" ସମ୍ବର୍ଦ୍ଧନା ବାକ୍ୟଟି କହୁଥାନ୍ତି ଫରାସୀ ଭାଷାରେ । ରୋଷ୍ଟୋଭମାନଙ୍କୁ ଓ ମାଦାମ ପେରନସ୍କିଙ୍କୁ ମଧ୍ୟ ସେ ସେହିପରି ସମ୍ବର୍ଦ୍ଧନା ଜଣାଇଲେ । ଯୋଡ଼ିକ ଯାକ ଝିଅ ଧଳା ପୋଷାକ ପିନ୍ଧିଥାନ୍ତି, କଳା ମୁଣ୍ଡବାଳରେ ଏକାପରି ଗୋଲାପ ଫୁଲ ଲଗାଇଥାନ୍ତି । ଦୁହେଁ ସେମାନଙ୍କୁ ନମସ୍କାର କଲେ । କିନ୍ତୁ ଆମନ୍ତ୍ରଣକାରିଣୀଙ୍କ ଦୃଷ୍ଟି ନାତାଶାର ପାତଳା ଦେହ ଉପରେ ନିଜ ଅଜାଣତରେ ଟିକିଏ ବେଶି ବେଳ ଯାଏ ଭରା ଦେଲା । ସେ ତାକୁ ଚାହିଁ ଦେଇ ମୁରୁକି ହସିଲେ । କିନ୍ତୁ ସମସ୍ତଙ୍କୁ ସମ୍ବର୍ଦ୍ଧନା ଜଣାଇଲା ବେଳେ ତାଙ୍କର ଯେଉଁ ମୁରୁକି ହସ ତା'ଠୁ ସେ ହସ ଆହୁରି ଭିନ୍ନକା । ଏପରି ସମ୍ଭବ ଯେ ଆମନ୍ତ୍ରଣକାରିଣୀ ନାତାଶାକୁ ଦେଖି ନିଜର କୁଆଁରୀ ଯୌବନର ସୁନେଲି ଦିନଗୁଡ଼ିକ ମନେ ପକାଇଲେ—ସେହି ଯେଉଁ ଦିନ ସବୁ ଚାଲିଯାଇଛି, ଆଉ ଆସିବ ନାହିଁ । ତାଙ୍କ ସ୍ମରଣରେ ଉଙ୍କିଲା ତାଙ୍କ ଜୀବନରେ ପ୍ରଥମ ଥର ଯେତେବେଳେ ସେ ବଲ୍ ନାଚ

ଭୋଜ ଉତ୍ସବକୁ ଯାଇଥିଲେ । ଆମନ୍ତ୍ରଣକାରୀ ଗୃହସ୍ୱାମୀଙ୍କ ଦୃଷ୍ଟି ମଧ୍ୟ ଚାଲି ଯାଉଥିବା ନାତାଶାକୁ ଅନୁସରଣ କଲା । ସେ କାଉଣ୍ଟ ରୋଷ୍ଟଭଙ୍କୁ ପଚାରିଲେ ସେ ଦୁହିଁଙ୍କ ଭିତରୁ କେଉଁ ଗୋଟିକ ତାଙ୍କ ଝିଅ ।

ନିଜ ଆଙ୍ଗୁଠି ଟିପକୁ ଚୁମ୍ବନ କରି ସେ କହିଲେ, "ବାଃ ! ଚମତ୍କାର !"

ରୁଷ ସମ୍ରାଟ ଆସିବେ ବୋଲି ନାଚଘର ବାଟମୁହଁରେ ଅତିଥି ମାନେ ରୁଣ୍ଡ ହୋଇ ଭିଡ଼ କରିଥାନ୍ତି । ସେହି ଗହଳିର ଆଗ ଧାଡ଼ିରେ କାଉଣ୍ଟେସ ରୋଷ୍ଟଭ ଯାଇ ଠିଆ ହେଲେ । ନାତାଶା ଶୁଣିଲା ଓ ଅନୁଭବ କଲା ଯେ, ଅନେକ ଲୋକ ତା ବିଷୟରେ ପଚରାପଚରି ହେଉଛନ୍ତି ଯେ ସେ କିଏ, ଅନେକ ଯୋଡ଼ା ଆଖି ତା ଉପରେ ପଡ଼ୁଛି । ସେ ଜାଣିଲା ଯେ ଯେଉଁମାନେ ତାକୁ ଦେଖିଲେ ସେମାନେ ତା ବିଷୟରେ ଖୁବ୍ ଭଲ ଧାରଣା କରୁଛନ୍ତି, ଏତକ ଚିନ୍ତା କରିବାରୁ ତାର ଉଦ୍‌ବେଗ କିଛି ପରିମାଣରେ ଶାନ୍ତ ହୋଇଗଲା ।

ସେ ଭାବିଲା, "କେତେ ଲୋକ ଅଛନ୍ତି ଯେଉଁମାନେ ଆମରି ପରି, ଆଉ କେତେ ଅଛନ୍ତି ଯେଉଁମାନେ ସେତେ ଭଲ ନୁହନ୍ତି ।"

ନାତାଶା ପିଏରେର ଚଉଡ଼ା ମୁହଁକୁ ଦେଖିଲା, ଦେଖି ଭାରି ଖୁସି ହେଲା । ସେ ଜାଣିଥିଲା ଯେ, ସେ ଗହଳି ଭିତରେ ପିଏରେ ସେମାନଙ୍କୁ, ବିଶେଷତଃ ତାକୁହିଁ ଖୋଜୁଛି । ପିଏରେ ତାକୁ କଥା ଦେଇଥିଲା ଯେ ସେ ସେହି ବଲ୍-ନାଚକୁ ଯିବ ଓ ନାତାଶା କାହା ସଙ୍ଗେ ନାଚିବ ସେଥିପାଇଁ ପିଏରେ ଲୋକ ବାଛିଦେବ । କିନ୍ତୁ ସେମାନଙ୍କ ପାଖେ ପହଞ୍ଚିବା ପୂର୍ବରୁ ଅନ୍ୟ ଜଣଙ୍କୁ ଦେଖି ତାଙ୍କ ପାଖେ ଠିଆ ହୋଇଗଲା । ସେ ଜଣଙ୍କ ଚେହେରାରେ ଭାରି ସୁନ୍ଦର, ତାଙ୍କ ବାଳ ଓ ଆଖି କଳା, ଉଚ୍ଚତା ମଝିଲିଆ, ସେ ଗୋଟିଏ ଧଳା ପୋଷାକ ପିନ୍ଧିଥାନ୍ତି, ଗୋଟିଏ ଝରକା ପାଖେ ଠିଆ ହୋଇ ଆଉ ଜଣଙ୍କ ସଙ୍ଗେ କଥା ହେଉଥାନ୍ତି । ଆଉ ଜଣକ ଜଣେ ଡେଙ୍ଗା ଲୋକ, ତାଙ୍କ ପୋଷାକ ଉପରେ କେତେଗୁଡ଼ିଏ ତାରା ଚିହ୍ନ ଓ ଗୋଟିଏ ରିବନ (ଫିତା)ରୁ ଖଣ୍ଡେ ମାରି ହୋଇଥାଏ ।

ଧଳା ପୋଷାକ ପିନ୍ଧିଥିବା ସୁଦର୍ଶନ ଯୁବକ ଜଣଙ୍କୁ ନାତାଶା ସଙ୍ଗେ ସଙ୍ଗେ ଚହ୍ନି ପାରିଲା । ସେ ପ୍ରିନ୍‌ସ ଆନ୍ଦ୍ରେ ବଲକନସ୍କି । ନାତାଶାକୁ ଜଣାଗଲା ଯେ ପ୍ରିନ୍‌ସ ବଲକନସ୍କି ପୂର୍ବ ଅପେକ୍ଷା ଆହୁରି ତରୁଣ ଆହୁରି ସୁନ୍ଦର ଆହୁରି ସୁଖୀ ହୋଇ ଯାଇଛନ୍ତି ।

ନାତାଶା ପ୍ରିନ୍‌ସ ଆନ୍ଦ୍ରେ ବଲକନସ୍କିଙ୍କ ଆଡ଼କୁ ସଙ୍କେତ ଦେଖାଇ ତା ମା'କୁ କହିଲା, "ଦେଖୁଛୁ ବୋଉ, ଏଠି ଆମର ଆଉ ଜଣେ ଚହ୍ନା ମଣିଷ ଅଛନ୍ତି, ପ୍ରିନ୍‌ସ ବଲ୍‌କନ୍‌ସ୍କି । ତୋର ମନେ ପଡ଼ୁଛି ? ଓଟ୍ରାଡ୍ନୋରେ ଆମ ଘରେ ସେ ରାତିଏ ରହିଥିଲେ ।"

ହଠାତ୍ ହଲଚଲ ଲାଗିଗଲା । ଭିଡ଼ କରିଥିବା ଲୋକେ କୁହାକୋହି ହେଲେ, ଆଗକୁ ଠେଲିଗଲେ, ପୁଣି ପଛକୁ ହଟି ଆସି ଦୁ'ଭାଗ ହୋଇଗଲେ । ମଝିରେ ଯେଉଁ ଜାଗା ଖୋଲିଗଲା ସେହି ବାଟେ ଚାଲି ଚାଲି ଆସିଲେ ରୁଷ୍ ଦେଶର ସମ୍ରାଟ ସଙ୍ଗେ ସଙ୍ଗେ ବ୍ୟାଣ୍ଡ ବାଜା ବାଜିଉଠିଲା । ସମ୍ରାଟଙ୍କ ପଛେ ପଛେ ଆସିଲେ ଆମନ୍ତ୍ରଣକାରୀ ଓ ତାଙ୍କ ସ୍ତ୍ରୀ । ସମ୍ରାଟଙ୍କ ବାଁ ଆଡ଼କୁ ଡାହାଣ ଆଡ଼କୁ ବାରମ୍ବାର ନଇଁ ନଇଁ ନମସ୍କାର ଜଣାଇ ଜଣାଇ ତରତର ହୋଇ ଚାଲିଥାନ୍ତି, ସତେ ଯେପରି ସମ୍ବର୍ଦ୍ଧନାର ସେହି ପ୍ରଥମ ମୁହୂର୍ତ୍ତକୁ ସେ ଶୀଘ୍ର ପାରି ହୋଇଯିବାକୁ ଚାହାନ୍ତି । ସେତେବେଳେ ସେହି ଉପଲକ୍ଷରେ ବ୍ୟାଣ୍ଡ ବାଜାରେ ପୋଲୋନାଏଜ ନାଚ ଗୀତର ସ୍ୱର ବଜାଇବା ପ୍ରଚଳିତ ଥିଲା । ସେହି ପୋଲୋନାଏଜ ନାଚ ଗୀତର ବାଜା ବାଜୁଥାଏ । ସେ ଗୀତର ପ୍ରଥମ ପଦର ଅର୍ଥ, "ହେ ଆଲେକଜାଣ୍ଡର, ହେ ଏଲିଜାବେଥ ଆପଣମାନେ ଆମ ହୃଦୟକୁ ମୁଗ୍‌ଧ କରିଛନ୍ତି ।" ରୁଷ ସମ୍ରାଟ ବୈଠକଖାନା ଭିତରକୁ ଗଲେ, ତାଙ୍କ ପଛେ ପଛେ ଜନଗହଳି ସେ ଘରର ଦୁଆର ମୁହଁ ଆଡ଼କୁ ଧାଇଁଲା । ଅନେକ ଲୋକଙ୍କ ମୁହଁରେ ଉତ୍ତେଜନା ଖେଳୁଥାଏ, ସେମାନେ ଦୁଆର ମୁହଁକୁ ଧାଇଁଲେ, ପୁଣି ପଛକୁ ଧାଇଁ ଆସିଲେ । ଲୋକଗହଳି ବୈଠକଖାନା ଦୁଆର ମୁହଁରୁ ପୁଣି ପଛକୁ ଝପଟି ଆସିଲା, ଯେତେବେଳେ ଦେଖାଗଲା ଯେ ବୈଠକଖାନା ଦୁଆର ମୁହଁ ପାଖେ ରୁଷ ଦେଶର ସମ୍ରାଟ ଆମନ୍ତ୍ରଣକାରିଣୀ ଭଦ୍ରମହିଳାଙ୍କ ସଙ୍ଗେ କଣ କଥାଭାଷା ହେଉଛନ୍ତି । ଜଣେ ଯୁବକ—

ଉତ୍ତେଜିତ ହୋଇ ପାଗଳ ପରି ତା ମୁହଁ ଦିଶୁଥାଏ—ସେ ଭଦ୍ରମହିଳା ମାନଙ୍କ ଉପରକୁ ଝାମ୍ପି ଲା ପରି ହୋଇ ସେମାନଙ୍କୁ ଅନୁନୟ କଲା ଯେ, ସେମାନେ ଟିକିଏ ଘୁଞ୍ଚିଯାନ୍ତୁ । ଆଉ କେତେଜଣଙ୍କ ମୁହଁ ଏପରି ଦିଶୁଥାଏ ଯେ ସେସବୁ ମୁହଁରେ ସାଧାରଣ ଭଦ୍ରତା ଓ ସୌଜନ୍ୟର ଚିହ୍ନବର୍ଣ୍ଣ ନଥାଏ ସେମାନେ ଠେଲା ପେଲା ହୋଇ ଆଗକୁ ମାଡ଼ିଗଲେ, ଫଳରେ ସେମାନଙ୍କ ପୋଷାକ ଅସ୍ତବ୍ୟସ୍ତ ହୋଇ ନଷ୍ଟ ହେଲା । ପୁରୁଷ ଲୋକେ ସ୍ତ୍ରୀ ଲୋକମାନଙ୍କ ପାଖକୁ ଗଲେ ଓ ବଲ ନାଚ ନାଚିବା ପାଇଁ ଜଣେ ପୁରୁଷକୁ ଜଣେ ସ୍ତ୍ରୀଲୋକ ଏହିପରି ଯୋଡ଼ିମାନ ତିଆରି ହେଲା ।

ସ୍ତ୍ରୀଲୋକମାନଙ୍କ ଭିତରେ ଅଳ୍ପ ସଂଖ୍ୟକ ସ୍ତ୍ରୀଲୋକ ଠେଲା ପେଲାରେ କାନ୍ଥକୁ ଆଉଜି ରହିଯାଇଥାନ୍ତି । ସେହି ଦଳରେ ଥାନ୍ତି ନାତାଶା, ସୋନିଆ ଓ ସେମାନଙ୍କ ମା । ନାତାଶାକୁ ଲାଗିଲା ଯେ ସେଇଠି ରହିଯିବ ଓ ସେମାନଙ୍କୁ କେହି ସେ ନାଚ-ଗୀତର ନାଚ ନାଚିବା ପାଇଁ ନିମନ୍ତ୍ରଣ କରିବେ ନାହିଁ । ସେ ଠିଆ ହୋଇଥାଏ । ତାର ସରୁ ସରୁ ବାହା ଦୁଇଟି ଦିକରରେ ଝୁଲି ପଡ଼ିଥାଏ । ତାର ଛାତି ବାରି ହେଉଥାଏ କି ନହେଉଥାଏ, ନିୟମିତ ଛନ୍ଦରେ ଉଠୁଥାଏ ପଡ଼ୁଥାଏ । ସେ ନିଶ୍ୱାସ ବନ୍ଦ କରି ସାମ୍ନାକୁ ଚାହିଁଥାଏ । ତା ଆଖି ଚକ୍ ଚକ୍ ଉରୁଆ ଉରୁଆ । ତା'ର ଚାଣି ଏପରି ଦିଶୁଥାଏ ଯେପରି ସେ ପ୍ରସ୍ତୁତ ଅଛି ଯାହା ହେବ ସେଥିପାଇଁ, ଆସୁ ପଛେ ତା ପାଇଁ ପରମ ଆନନ୍ଦ, ଅଥବା ଚରମ ଦୁଃଖ । ସମ୍ରାଟଙ୍କ ଆଡ଼କୁ ଆଦୌ ସେ ନିଘା ଦେଲା ନାହିଁ ଅଥବା ଦେଶର ଯେଉଁ ମାନ୍ୟଗଣ୍ୟ ଲୋକଙ୍କ ଆଡ଼କୁ ମାଦାମ୍ ପେରନ୍ସ୍କି ହାତ ଦେଖାଇ ଚିହ୍ନାଇ ଦେଉଥାନ୍ତି ସେମାନଙ୍କ ଆଡ଼କୁ ବି ନିଘା ଦେଲା ନାହିଁ । ତା ମନକୁ ଗୋଟାଏ ଚିନ୍ତା ଅଧିକାର କରି ବସିଥାଏ ଯେ, "ଏଇଟା କଣ ସତରେ ସମ୍ଭବ ଯେ କେହି ମୋ ପାଖକୁ ଆସିବେ ନାହିଁ ତାଙ୍କ ସଙ୍ଗରେ ମତେ ନାଚିବାକୁ ଡାକିବାକୁ ? ଯେଉଁମାନେ ସବୁଠୁ ନାଁ ଡାକ ତାଙ୍କ ମେଳରେ ମୁଁ କଣ ନାଚିବି ନାହିଁ ? ଏ ଲୋକମାନଙ୍କ ନିଘାରେ ମୁଁ ଆଦୌ ପଡ଼ିବି ନାହିଁ ଏଇଟା କଣ ସମ୍ଭବ ? ଏ ଲୋକେ ତ ମତେ ସତେ ଯେପରି ଆଦୌ ଦେଖିପାରୁ ନାହାନ୍ତି ! ଯଦି କାହା ଦୃଷ୍ଟି ମୋ ଉପରେ

ପଡ଼ିଯାଉଛି ତା ମୁହଁର ଭଙ୍ଗୀରୁ ଜଣାପଡ଼ୁଛି ଯେପରି ସେ ଭାବୁଛି "ଧାତ୍ତ ! ମୁଁ ଯାହାକୁ ଖୋଜୁଛି ସେ ତ ସେ ନୁହେଁ ! ତେଣୁ ସ୍ବ 'ଆଉକୁ ଅନାଇଁ ଲାଭ କଣ ?"

ନାତାଶା ଭାବିଲା, "ନା ତା ଅସମ୍ଭବ । ସେମାନଙ୍କର ନିଶ୍ଚୟ ଜାଣିବା ଆବଶ୍ୟକ ଯେ ନାଚିବାକୁ ମୋର ଭାରି ଇଚ୍ଛାହେଉଛି, ମୁଁ କେଡ଼େ ସୁନ୍ଦର ନାଚିପାରେ ଓ ମୋ ସଙ୍ଗେ ମିଶି ଯୋଡ଼ି ବଲ୍ ନାଚ ନାଚିଲେ ସେମାନଙ୍କୁ ଭାରି ଖୁସି ଲାଗିବ ।"

କେତେବେଳୁ ବଲ୍ ନାଚର ସଙ୍ଗୀତ ବାଜୁଥାଏ, ଏଣିକି ନାତାଶା କାନକୁ ସେ ଶୁଭିଲା ଗୋଟାଏ ବିଷର୍ଣ୍ଣ ସ୍ମୃତି ପରି, ତାର କାନ୍ଦିବାକୁ ମନ ହେଲା ।

ରୁଷ ସମ୍ରାଟ ଜଣ ଜଣ କରି ତିନିଜଣ ମହିଳାଙ୍କ ସଙ୍ଗେ ନାଚିଥିଲେ । ଶେଷରେ ସେ ତୃତୀୟ ଭଦ୍ର ମହିଳାଙ୍କ ପାଖରେ ସ୍ଥିର ହୋଇ ଠିଆ ହୋଇ ପଡ଼ିଲେ ଓ ସଙ୍ଗୀତ ବନ୍ଦ ହୋଇଗଲା । ତାଙ୍କର ଜଣେ ପାର୍ଶ୍ବଚର ସାମରିକ କର୍ମଚାରୀ ଉଦ୍‌ବିଗ୍ନ ମୁହଁକରି ଭଦ୍ରଲୋକମାନଙ୍କ ପାଖକୁ ଦୌଡ଼ି ଆସି ସେମାନଙ୍କୁ ଅନୁନୟ କଲେ ଯେ ସେମାନେ ଆହୁରି ପଛକୁ ଘୁଞ୍ଚି ଯାଆନ୍ତୁ, ଯଦିଓ ସେମାନେ କାନ୍ଥ ପାଖରେ ଠିଆ ହୋଇଥିଲେ ଅର୍କେଷ୍ଟ୍ରାରୁ ବାଜି ଉଠିଲା ଓ୍ବାଲ୍‌ଜ ନାଚର ବାଦ୍ୟ ସଙ୍ଗୀତ । ସେ ନାଚର ସଙ୍ଗୀତ ଖୁବ ମନମତାଣିଆ, ଖୁବ ମର୍ଯ୍ୟାଦାପୂର୍ଣ୍ଣ, ତାର ଛନ୍ଦ ଓ ତାଳ ଖୁବ ମପାଚୁପା, ଜଗିରଖା । ମୁରୁକି ମୁରୁକି ହସି ସମ୍ରାଟ ବଲ୍ ନାଚ ଘରେ ରୁଣ୍ଡ ହୋଇଥିବା ଲୋକଙ୍କ ଉପରେ ଆଖି ବୁଲାଇଲେ । ମୁହୂର୍ତ୍ତେ ଗଲା । ନାଚିବାକୁ କେହି ଆଗେଇ ଆସିଲେ ନାହିଁ । ସମ୍ରାଟଙ୍କର ଜଣେ ଆଡ୍‌ଜୁଟାଣ୍ଟ ଷ୍ଟିଓ୍ବାର୍ଡ଼, ତାଙ୍କ ପାର୍ଶ୍ବରେ ଓ ଅଙ୍ଗରକ୍ଷୀ—ସେ କାଉଣ୍ଟେସ ବେଜୁହଭଙ୍କ ପାଖକୁ ଯାଇ ତାଙ୍କୁ ତାଙ୍କ ସଙ୍ଗେ ନାଚିବାକୁ ଅନୁରୋଧ କଲେ । କାଉଣ୍ଟେସ୍ ବେଜୁହଭ ଅର୍ଥାତ ଏଲେନ୍ ମୁରୁକି ହସିଦେଲା । ତାଙ୍କ ମୁହଁକୁ ନ ଚାହିଁ ବାହା ଟେକି ତାଙ୍କ କାନ୍ଧରେ ହାତ ଥୋଇଦେଲା । ଆଡ୍‌ଜୁଟାଣ୍ଟ ଷ୍ଟିଓ୍ବାର୍ଡ ସେ ନାଚ ନାଚିବାରେ ଜଣେ ବିଶାରଦ । ସେ

ତାଙ୍କ ସଙ୍ଗିନୀଙ୍କୁ ଦୃଢ଼ ବନ୍ଧନରେ ଭିଡ଼ି ଧରିଲେ ଓ ଗୋଟିଏ ବୃତ୍ତର ପରିଧି କରେ କରେ ଘୋଡ଼ା କଦମ୍ ଡେଇଁଲା ପରି ତାଙ୍କ ସଙ୍ଗେ ପ୍ରଥମ ଥରକ ନାଚି ନାଚି ଧାଇଁଗଲେ, ନାଚରେ ସେ ଏତେ ଦକ୍ଷ ଯେ କିପରି ପାଦ ପକାଇବେ ସେ ବିଷୟରେ ସେ ଆଗରୁ ନିଶ୍ଚିତ ଓ ଆତ୍ମବିଶ୍ୱାସୀ, ତାଙ୍କ ନୃତ୍ୟ ନିର୍ବାଧ, ନିର୍ଭୁଲ, ଚକ୍‌କଣ। ବଲ୍ ନାଚ ଘରର କୋଣରେ ପହଞ୍ଚି ସେ ତାଙ୍କ ସଙ୍ଗିନୀଙ୍କ ବାଁ ହାତକୁ ଧରି ପକାଇଲେ, ତାଙ୍କୁ ଘୂରାଇ ଦେଲେ, ପୁଣି ନାଚିଲେ । ସଙ୍ଗୀତର ତାଳ ଦ୍ରୁତରୁ ଦ୍ରୁତତର ହେବାର ଶୁଭୁଥାଏ, ତା ଭିତରେ ସମାନ ତାଳରଖି ଶୁଭୁଥାଏ ଆଡ଼ଜୁଟାଣ୍ଟ ତାଙ୍କ ପାଦରେ ପିନ୍ଧିଥିବା ସ୍ପରମାନଙ୍କ ଝଣ୍ ଝଣ୍, ଓ ତାଳର ପ୍ରତି ତୃତୀୟ ଖଣ୍ଡରେ ଶୁଭୁଥାଏ ତାଙ୍କ ସଙ୍ଗୀଙ୍କ ଉଡ଼ନ୍ତା ମଖମଲ ସ୍କାର୍ଟର ଖସ୍ ଖସ୍, ଯେତେବେଳେ ସେ ଘୂରି ଯାଉଥାନ୍ତି, ଆଉ କିଛି ଶବ୍ଦ ଶୁଭୁ ନଥାଏ । ଆଡ଼ଜୁଟାଣ୍ଟ ଅଭ୍ୟସ୍ତ ବିଚକ୍ଷଣ ଦ୍ରୁତ ପଦକ୍ଷେପ ପକାଇ ନାଚି ଯାଉଥାନ୍ତି ।

ନାତାଶା ସେ ଦୁହିଁଙ୍କୁ ଅନାଇଁ ଥାଏ । ଓ୍ୱାଲ୍‌ଟ୍‌ଜ ନାଚରୁ ପ୍ରଥମ ଥର ସେ ନାଚିଲା ନାହିଁ, ସେ ଦୁହେଁ ନାଚିଲେ ଏକଥା ଭାବି କାନ୍ଦିବା ଭଳି ଅବସ୍ଥା ହୋଇଥାଏ ।

ନାଚର ବୃତ୍ତ ସାମ୍ନାରେ ଓ ବେସ୍ତୁଭମାନଙ୍କଠୁ ଅନତି ଦୂରରେ ଠିଆ ହୋଇଥାନ୍ତି ପ୍ରିନ୍‌ସ ଆନ୍ଦ୍ରେ । ସେ ଅଶ୍ୱାରୋହୀ ସୈନ୍ୟ ବିଭାଗର କର୍ଣ୍ଣେଲ ପଦବୀର ଉପଯୁକ୍ତ ଧଳା ପୋଷାକ ପିନ୍ଧିଥାନ୍ତି, ମୋଜା ଓ ନାଚ ଜୋତା ପିନ୍ଧିଥାନ୍ତି, ଉତ୍ସୁକ ଓ ପ୍ରାଣପ୍ରାଚର୍ଯ୍ୟମୟ ଦିଶୁଥାନ୍ତି । ପିଏରେ ପ୍ରିନ୍‌ସ ଆନ୍ଦ୍ରେଙ୍କ ପାଖକୁ ଯାଇ ତାଙ୍କ ବାହୁକୁ ଧରି ପକାଇଲା ।

"ଆପଣ ତ ସବୁବେଳେ ନାଚନ୍ତି । ହେଇ ଦେଖନ୍ତୁ ମୋର ଓ୍ୱାରସ, ରୋସ୍ତଭଙ୍କର କିଶୋରୀ ଝିଅ, ତାକୁ ନାଚିବାକୁ ଡାକୁ-ନାହାନ୍ତି ?" ପିଏରେ କହିଲା ।

"କାହିଁ କେଉଁଠି ସେ ?" ବଲ୍‌କନସ୍କି ପଚାରିଲେ । ପିଏରେ ଯେଉଁଆଡ଼କୁ ହାତ ଦେଖାଇଲା ସେ ସେହିଆଡ଼କୁ ଅନାଇଲେ । ନାତାଶାର

ହଠାଣ ଥନଥନ ମୁହଁ ପ୍ରିନ୍‌ସ୍ ଆନ୍ଦ୍ରେଙ୍କ ଦୃଷ୍ଟିରେ ପଡ଼ିଲା । ସେ ତାକୁ ଚିହ୍ନି ପାରିଲେ, କଣ ତା ମନ ହେଉଥିବ ଅନୁମାନ କଲେ, ଦେଖିପାରିଲେ ଆଜ ତାର ବଡ଼ଦିନ । ସେହି ଝରକା ପାଖେ ସେ କଣ କହୁଥିଲା ତାଙ୍କର ମନେ ପଡ଼ିଗଲା । ମୁହଁରେ ପରମ ଆନନ୍ଦର ଭଙ୍ଗୀ ଫୁଟାଇ ସେ କାଉଣ୍ଟେସ ରୋଷ୍ଟଭ୍‌ଙ୍କ ପାଖକୁ ଗଲେ । କାଉଣ୍ଟେସ୍ ତାଙ୍କୁ ଦେଖି ହୃଦୟ ଆବେଗରେ ରଙ୍ଗା ପଡ଼ିଯାଇ କହିଲେ "ଅନୁମତି ଦିଅନ୍ତୁ, ମୋର ଝିଅ ସଙ୍ଗେ ଆପଣଙ୍କର ପରିଚୟ କରାଇଦିଏଁ ।"

ପ୍ରିନ୍‌ସ୍ ଆନ୍ଦ୍ରେ ସଭ୍ରମ ସହକାରେ ମୁଣ୍ଡକୁ ତଳକୁ ନୁଆଇଁ କହିଲେ "କାଉଣ୍ଟେସ ଯଦି ମତେ ମନେ ରଖିଥିବେ ଜାଣିବେ ତାଙ୍କ ଝିଅଙ୍କ ସଙ୍ଗେ ପରିଚିତ ହେବାର ସୌଭାଗ୍ୟ ମତେ ଆଗରୁ ମିଳିସାରିଛି ।" ସେ ନାତାଶା ପାଖକୁ ଗଲେ ଓ ନାଚିବାକୁ ନିମନ୍ତ୍ରଣ କରୁଛନ୍ତି ତାଙ୍କ ପାଟିରୁ କଥା ନ ବାହାରୁଣୁ ନାତାଶାର ଅଣ୍ଟାରେ ହାତ ବଢ଼ାଇବାକୁ ସେ ବାଦ୍ଧ୍ୟ ହେଲେ । ସେ ତା ଆଗରେ ପ୍ରସ୍ତାବ କଲେ ତା ସଙ୍ଗରେ ଓ୍ୱାଲ୍‌ଜ ନାଚ ନାଚିବେ । ନାତାଶାର ମୁହଁରେ ଯେଉଁ ଥନଥନ ଭଙ୍ଗୀ ଥିଲା ଯେ ଜଣାପଡ଼ୁଥିଲା ସେ ଚରମ ନୈରାଶ୍ୟ ପାଇଁ ଅଥବା ଚରମ ଆନନ୍ଦ ପାଇଁ ପ୍ରସ୍ତୁତ ହୋଇ ରହିଛି । ହଠାତ୍ ସେ ଭଙ୍ଗୀ ବଦଳିଯାଇ ତା ମୁହଁ ଉଜ୍ଜଳ ହୋଇଗଲା, ଆନନ୍ଦ ଓ କୃତଜ୍ଞତାରେ ଗୋଟିଏ ପିଲାଳିଆ ହସ ତା ମୁହଁରେ ଫୁଟି ଉଠିଲା ।

ସେହି ଭୟାର୍ତ୍ତ ଆନନ୍ଦ ବିହ୍ୱଳା ଝିଅଟି ଯେତେବେଳେ ପ୍ରିନ୍‌ସ୍ ଆନ୍ଦ୍ରେଙ୍କ କାନ୍ଧକୁ ହାତ ବଢ଼ାଇଲା ସେତେବେଳେ ତା ଆଖି ଲୁହରେ ଛଳଛଳ ହୋଇ ଉଠିଥିଲା, ସେହି ଲୁହ ଉହାଡ଼ରୁ ତାର ଯେଉଁ ହସ ଉଙ୍କି ମାରୁଥିଲା ସେ ସତେକି ତାଙ୍କୁ କହୁଥିଲା "ବହୁତ ବେଳୁ ମୁଁ ତମର ପାଇଁ ଅପେକ୍ଷା କରି ଠିଆ ହୋଇଛି ।"

ପ୍ରିନ୍‌ସ ଆନ୍ଦ୍ରେ ସେ ସମୟରେ ସର୍ବୋତ୍ତମ ନର୍ତ୍ତକମାନଙ୍କ ଭିତରେ ଜଣେ ବୋଲି ତାଙ୍କ ନା ଡାକୁଥିଲା । ନାତାଶା ଅତି ଚମତ୍କାର ନାଚିଲା । ତାର ସାଟିନ୍ କନାର ନାଚ ଜୋତା ଭିତରେ କୁନ କୁନ ପଦଯୁଗଳ

ତାଙ୍କର କାମ ଖୁବ ହାଲୁକା ଭାବରେ କଲେ, ନାତାଶା ଉପରେ ନଜର କଲେ ନାହିଁ। ତା ମୁହଁ ପରମ ତୃପ୍ତିରେ ଝଟକି ଉଠିଲା।

ତାର ଖୋଲା ବେକ ଓ ବାହା ଯୋଡ଼ିକ ସରୁ ସରୁ, ଏଲେନ୍ ସଙ୍ଗେ ତୁଳନା କଲେ ସେଗୁଡ଼ିକର ଗଢ଼ଣ ସୁନ୍ଦର ନୁହେଁ। ତାର କାନ୍ଧ ଯୋଡ଼ିକ ସରୁ ସରୁ ତାର ସ୍ତନ ଦୁଇଟି ବାର ହୋଇନଥାଏ। ତାର ବାହୁ ଯୋଡ଼ିକ ପାତଳ। କିନ୍ତୁ ଯେଉଁ ସହସ୍ର ସହସ୍ର ଆଖି ଏଲେନ୍‌ର ଦେହ ଉପରେ ଚରି ବୁଲୁଥାଏ ଏଲେନ୍‌ର ଶରୀର ସତେକି ତାଙ୍କର ଚାହାଣିଆ ବାର୍ଣ୍ଣିତ ପୃଷ୍ଠ ବୋଲି ହୋଇ ଯାଇଥାଏ। ଆଉ ନାତାଶା ଦିଶୁଥାଏ ସେହିପରି ଗୋଟିଏ କୁମାରୀ ଝିଅପରି ଯାହା ଦେହରୁ ପ୍ରଥମଥର ଲୁଗାପଟା ଖୋଲି ଦିଆ ହୋଇଛି ଓ ସେଥିପାଇଁ ତାଙ୍କୁ ଭାରି ଲାଜ। କେବଳ ଏତିକି ଯେ ସେଠି ଯେତେ ଲୋକ ଥିଲେ ସମସ୍ତେ ସତେକି ତାକୁ ନଜର ଆଶ୍ୱସ୍ତି ଦେଉଥିଲେ ଯେ ଏମିତି ହେବାକୁ ହିଁ ହେବ।

ପ୍ରିନ୍‌ସ ଆନ୍ଦ୍ରେଙ୍କର ନାଚରେ ସଉକ ଥିଲା। ପ୍ରତ୍ୟେକ ତାଙ୍କୁ ରାଜନୈତିକ ଓ ପାଣ୍ଡିତ୍ୟ ପୂର୍ଣ୍ଣ ଆଲୋଚନା ଭିତରକୁ ଓଟାରି ନେବାକୁ ଚେଷ୍ଟା କରୁଥିଲେ ଓ ସେଥିରୁ କେମିତି ସେ ଚଞ୍ଚଳ ନିସ୍ତାର ପାଇବେ ସେଥିପାଇଁ ବ୍ୟାକୁଳ ହୋଇ ପଡ଼ୁଥିଲେ। ସମ୍ରାଟ ସେଠି ଉପସ୍ଥିତ ଥିବାରୁ ପ୍ରିନ୍‌ସ ଆନ୍ଦ୍ରେଙ୍କୁ କେମିତି ବାନ୍ଧିଲା ପରି ଲାଗୁଥିଲା, ମାଡ଼ ମାଡ଼ ପଡ଼ୁଥିଲା। ଏହି ଯେଉଁ ସଙ୍କୋଚର ବାଡ଼ ଠିଆ ହୋଇଥିଲା ତାକୁ ଭାଙ୍ଗି ଦେବାକୁ ତାଙ୍କର ପ୍ରବଳ ବ୍ୟାକୁଳତା ଜନ୍ମିଥିଲା। ତେଣୁ ସେ ନାଚିବା ପାଇଁ ତରତର ହେଲେ। ସେ କେବଳ ଏଇଥିପାଇଁ ନାତାଶାକୁ ତାଙ୍କର ନୃତ୍ୟ ସଙ୍ଗିନୀ କରି ବାଛିନେଲେ ଯେ ପିଏରେ ତାଙ୍କୁ ତାକୁ ଦେଖାଇ ଦେଇଥିଲା ଓ ନାତାଶା ଥିଲା ସେହି ପ୍ରଥମ ସୁନ୍ଦରୀ ଝିଅ ଯେ ତାଙ୍କର ଦୃଷ୍ଟି ଆକର୍ଷଣ କରିଥିଲା। କିନ୍ତୁ ତାର ନମନୀୟ କୃଶ କଟିରେ ଯେମିତି ତାଙ୍କର ବାହୁ ଗୁରେଇ ହୋଇଗଲା, ଯେମିତି ତାଙ୍କ ଦେହଠୁଁ ଏତେ ପାଖରେ ଲାଗି ରହିଥିବା ତା ଦେହର ସ୍ପନ୍ଦନ ସେ ଅନୁଭବ କଲେ ଯେମିତି ତାଙ୍କର ଏତେ ପାଖରେ ତାର ସ୍ମିତ ହସକୁ ସେ ଦେଖିଲେ ତତ୍‌କ୍ଷଣାତ୍ ତାର ରୂପର ମାଦକମୟ ନିଶା ତାଙ୍କ ମୁଣ୍ଡକୁ ଚଢ଼ିଗଲା।

ଗୋଟାଏ ଲମ୍ବା ନିଶ୍ୱାସ ଓଟାରି ନେଇ ସେ ଯେତେବେଳେ ତାକୁ ଠିଆ କରାଇ ଦେଇ ଅନ୍ୟାନ୍ୟ ନୃତ୍ୟରତ ଯୁଗଳ ମୂର୍ତ୍ତିଙ୍କୁ ଦେଖିବାକୁ ଲାଗିଲେ ସେତେବେଳେ ସେ ପୁଣି ପୁନଃ ଜୀବନ ଓ ଯୌବନ ଅନୁଭବ କଲା ।

ପ୍ରିନ୍‌ସ ଆନ୍ଦ୍ରେ ନାଚ ସାରିଲା ପରେ ବୋରିସ ଆସି ନାତାଶାକୁ ନାଚିବାକୁ ଡାକିନେଲା । ତାପରେ ଆସିଲେ ନାଚ ଓସ୍ତାଦ ଆଡ୍‌ଜୁଟାଣ୍ଟ ଜଣେ ଯେ ସର୍ବପ୍ରଥମେ ସେଠି ନାଚ ଆରମ୍ଭ କରିଥିଲେ । ତାପରେ ବହୁତ ତରୁଣ ଆସି ନାତାଶା ସଙ୍ଗେ ନାଚିଲେ । ନାତାଶା ନାଲି ପଡ଼ି-ଯାଇଥାଏ । ବହୁତ ଖୁସିଥାଏ । ଯେଉଁ ନୃତ୍ୟ ସଙ୍ଗିମାନଙ୍କ ସଙ୍ଗେ ସେ ନାଚ ସାରିଥାଏ ସେମାନଙ୍କୁ ସେ ସୋନିଆକୁ ଧରାଇ ଦେଉଥାଏ । ସେଇ ସଞ୍ଜଟିଯାକ ତାର ଆଉ ନାଚ ବନ୍ଦ ହେଲା ନାହିଁ ।

ଭୋଜିରେ ବସିବା ଆଗରୁ ପୁଣି ଥରେ ପ୍ରିନସ ଆନ୍ଦ୍ରେ ନାତାଶା ସଙ୍ଗେ ଅନ୍ୟ ଏକପ୍ରକାର ଅତି ଉପଭୋଗ୍ୟ ନାଚ ନାଚିଥିଲେ । ସେ ତାକୁ ସ୍ମରଣ କରାଇ ଦେଲେ ଯେ ଅଟ୍ରାଦ୍‌ନୋ ଗାଁରେ ତାଙ୍କ ପ୍ରାସାଦର ବଗିଚା ଭିତର ରାସ୍ତାରେ କେମିତି ସେ ପ୍ରଥମେ ତାକୁ ଦେଖିଥିଲେ କେମିତି ସେଦିନ ଜହ୍ନ ରାତିରେ ତାଙ୍କ ଆଉ ନିଦ ମାଡ଼ିଲା ନାହିଁ, କେମିତି ସେ କାହାକୁ କ'ଣ କହୁଛି ସେଥିକି କାନ ଡେରିବାକୁ ତାଙ୍କର ଉଦ୍ଦେଶ୍ୟ ନଥାଇ ବି ଘଟଣା କ୍ରମେ ସେ ତାର କଥାଭାଷା ଶୁଣି ପାରିଥିଲେ ।

ଏସବୁ ସ୍ମୃତି କଥା ଶୁଣି ନାତାଶା ଲାଜରେ ନାଲି ପଡ଼ିଗଲା । ତାକୁ ଲାଗୁଥାଏ ଯେ ପ୍ରିନସ ଆନ୍ଦ୍ରେ ତାର ଯେଉଁ ଯେଉଁ କଥା ଅଜାଣତରେ ଶୁଣିଗଲେ ତା ମନରେ ଯେଉଁ ଭାବ ଆସିବାରୁ ସେ ସେଭଳି କଥା କହିଥିଲା । ସେ ଯେ ଭାବ ପ୍ରକାଶ ପାଇଲେ କେଡ଼େ ଲାଜର କଥା । ତେଣୁ ସେ ତାଙ୍କ କଥା ଶୁଣି ନାନାପ୍ରକାର କୈଫିୟତ ଦେବାକୁ ଲାଗିଲା ।

ଯେତେଲୋକ ସମାଜରେ ଲୋକଙ୍କ ସଙ୍ଗେ ମିଳାମିଶା ହୋଇ ବଢ଼ି ଉଠନ୍ତି ସେମାନଙ୍କ ପରି ପ୍ରିନ୍‌ସ ଆନ୍ଦ୍ରେ ମଧ୍ୟ ସେହିଭଳି ପଦାର୍ଥକୁ ଦେଖିବାକୁ ଇଚ୍ଛା କରୁଥିଲେ । ଯାହା ଉପରେ ମାମୁଲି ସମାଜ-ଚଳଣିରେ

ଚୁପ ମଗ୍ନହୋଇ ନଥାଏ । ନାତାଶା ସେହିପରି ଗୋଟିଏ ପଦାର୍ଥ । ତାର ଆଶ୍ଚର୍ଯ୍ୟ ଭାବ, ତାର ହର୍ଷ ପୁଲକ, ତାର ଲଜ୍ଜ ସଙ୍କୋଚ ଏପରିକ ଫରାସୀ ଭାଷାରେ ସେ ଯେତେବେଳେ କଥା କହିବାକୁ ଚେଷ୍ଟା କଲେ ସେତେବେଳେ ତାର ଯେଉଁ ଭୁଲ ହୁଏ ସେ ସବୁଯାକ ମିଶି ନାତାଶା ଗୋଟିଏ ଅଭିନବ ବସ୍ତୁ । ସେ ନାତାଶା ସଙ୍ଗେ କଥା କହିଲା ବେଳେ ତା ପ୍ରତି ତାଙ୍କର ବ୍ୟବହାରରେ କୋମଳତା ଓ ବନ୍ଧୁଦୃଷ୍ଟି ରହିଥାଏ । ତା ପାଖରେ ବସିରହି ପ୍ରିନ୍ସ ଆନ୍ଦ୍ରେ ଯେତେବେଳେ ଅତି ସାଧାରଣ ଅତି ତୁଚ୍ଛ ବିଷୟର କଥା କହୁଥାନ୍ତି, ସେ ତାର ଆଖି ଓ ହସକୁ ଚାହିଁ ପ୍ରଶଂସା କରୁଥାନ୍ତି । ସେ ଆଖିରୁ ଉଜ୍ଜଳ ତେଜ ଯେପରିକ ଛୁଟିଉଠି ପଡ଼ୁଥାଏ । ଯେଉଁ ବିଷୟ ସେ କହୁଥାନ୍ତି ତା ସହିତ ନାତାଶାର ସେ ଚାହାଣିର ଓ ସେ ହସର କୌଣସି ସମ୍ପର୍କ ନଥାଏ, ସେ କେବଳ ତାର ସ୍ୱତଃ ଆନନ୍ଦରୁ ଉତ୍ପନ୍ନ । ଯେତେବେଳେ ନାତାଶା ନାଚିବା ପାଇଁ ଆଉ ଥରେ ବାଛିହେଲା ଆଉ ସେ ହସି ହସି ଉଠି ପଡ଼ିଯାଇ ନାଚିଲା । ପ୍ରିନ୍ସ ଆନ୍ଦ୍ରେ ବି ଶେଷରେ ତାର ସହଜ ଭଙ୍ଗୀ ଦେଖି ପ୍ରଶଂସା କରୁଥାନ୍ତି । ସମବେତ ନୃତ୍ୟ ଚାହାଣୀରେ ଗୋଟିଏ ପ୍ରକାର ନାଚ ସରି ଆଉ ଗୋଟାଏ ପ୍ରକାର ନାଚ ଆରମ୍ଭ ହେବା ମଝିରେ ନାତାଶା ଅଣନିଶ୍ୱାସୀ ହୋଇ ତାର ଜାଗାକୁ ଲେଉଟି ଗଲା । ପୁଣି ଆଉ ଜଣେ ନୃତ୍ୟ ସଙ୍ଗୀ ଆସି ତାକୁ ନିମନ୍ତ୍ରଣ କଲେ । ସେ କ୍ଳାନ୍ତ ହୋଇ ପଡ଼ିଥାଏ, ଅଣନିଶ୍ୱାସୀ ହୋଇ ଧକେଇ ହେଉଥାଏ । ଜଣାପଡୁଥାଏ ଯେ ନାତାଶା ବୋଧହୁଏ କ୍ଷଣକେ ଭାବୁଥାଏ ଯେ ଆଉ ନାଚିବାକୁ ସେ ମନା କରିଦେବ କିନ୍ତୁ ସେ ସଙ୍ଗେ ସଙ୍ଗେ ସେହି ନୃତ୍ୟ ସଙ୍ଗୀ କାନ୍ଧରେ ହାତ ଥୋଇଦେଇ ପୁଣି ଖୁସିରେ ନାଚିବାକୁ ଚାଲିଗଲା ।

ଆଉ ପ୍ରିନ୍ସ ଆନ୍ଦ୍ରେଙ୍କୁ ଅନାଇଁ ମୁରୁକି ମୁରୁକି ହସିଦେଇ ଗଲା ।

ସେହି ହସ ଯେପରିକ ପ୍ରିନ୍ସ ଆନ୍ଦ୍ରେଙ୍କୁ କହୁଥାଏ ତମ ପାଖରେ ବସି ବିଶ୍ରାମ କରିବାକୁ ମତେ ଭାରି ଖୁସି ଲାଗିଥାନ୍ତା, ମୁ ଥକା ହୋଇ ପଡ଼ିଲଣି । କିନ୍ତୁ ଦେଖୁଛନ୍ତି ଲୋକେ କେମିତି ବାରମ୍ବାର ମତେ ଡାକୁଛନ୍ତି ।

ସେଥିପାଇଁ ମତେ ଖୁସି ଲାଗୁଛି । ମୁ ତୃପ୍ତି ପାଇଛି । ମୁଁ ସମସ୍ତଙ୍କୁ ଭଲ ପାଏ । ମୁ ତୁମକୁ ଭଲ ପାଏ । ଏସବୁ କଥା ମତେ ସବୁ ଜଣା । ଏ କଥା ଓ ଆଉର ବହୁତ କଥା କହୁଥାଏ ସେ ହସ । ଯେମିତି ତାର ନୃତ୍ୟ ଭଙ୍ଗୀ ତା ପାଖରୁ ଚାଲିଗଲା, ନାତାଶା ସେ ନାଚ ଘରର ଆର ମୁଣ୍ଡକୁ ଚଡ଼େଇଟିଏ ପରି ଉଡ଼ିଯାଇ ନୃତ୍ୟ ଅଭ୍ୟାସ କରିବ ବୋଲି ଦୁଇଜଣ ଭଦ୍ରମହିଳାଙ୍କୁ ସଙ୍ଗୀ କରି ବାଛିନେଲା ।

"ସେ ଯଦି ଆଗ ତାର ଭଉଣୀ ପାଖକୁ ଯିବ ଆଉ ତାପରେ ଆଉ ଜଣେ ଭଦ୍ରମହିଳାଙ୍କ ପାଖକୁ ଯିବ ତେବେ ତାକୁ ମୋର ଭାରିଜା କରିବ ।" ପ୍ରିନ୍‌ସ ଆନ୍ଦ୍ରେ ତାକୁ ଅନାଇ ଅନାଇ ଏପରି ତାଙ୍କ ମନେ ମନେ କହି ଲାଗିଥିଲେ, ସେ ହଠାତ୍ ଆଶ୍ଚର୍ଯ୍ୟ ହୋଇ ଭାବିଲେ ଯେ ସେ ନିଜେ ମନେ ମନେ ଏପରି କହୁଛନ୍ତି । ନାତାଶା ଆଗ ତାର ଭଉଣୀ ପାଖକୁ ଗଲା ।

ପ୍ରିନ୍‌ସ ଆନ୍ଦ୍ରେ ଭାବିଲେ "ବେଳେ ବେଳେ କେତେ ପାଗଳ କଥା ସବୁ ମଣିଷ ମୁଣ୍ଡକୁ ଆସେ । ତେବେ ଗୋଟିଏ କଥା ନିଶ୍ଚିତ । ଏହି ଝିଅଟି ଏତେ ଚମତ୍କାର ଏତେ ଅଭିନବ ଯେ ସେ ଏଠି ମାସେ ନ ନାଚୁଣୁ ତାର ବାହା ହୋଇ ଯାଇସାରିଥିବ । ଏଭଳି ଜାଗାରେ ସେ ଗୋଟିଏ ଏତେ ଅମୂଲ୍ୟ ପଦାର୍ଥ ।" ଏହିପରି ସେ ଭାବୁଥାନ୍ତି, ନାତାଶା ତାର ପୋଷାକରୁ ଖସି ପଡ଼ୁଥିବା ଗୋଲାପ ଫୁଲଟିକୁ ଖୋସିଦେଇ ଆସି ତାଙ୍କ ପାଖରେ ବସିପଡ଼ିଲା ।

ନାଚ ଯେମିତି ସରିଲା ନେଳି ଫ୍ରକ ପିନ୍ଧିଥିବା ବୁଢ଼ା କାଉଣ୍ଟ ଆସି ଯେଉଁ ତରୁଣ ତରୁଣୀମାନେ ନାଚ କରିଥିଲେ ସେମାନଙ୍କ ପାଖକୁ ଗଲେ । ତାଙ୍କ ଘରକୁ ଯାଇ ସେମାନଙ୍କୁ ଦେଖିବାକୁ ସେ ପ୍ରିନ୍‌ସ ଆନ୍ଦ୍ରେଙ୍କୁ ନିମନ୍ତ୍ରଣ କଲେ । ସେ ତାଙ୍କ ଝିଅକୁ ପଚାରିଲେ ତାକୁ ଏଠି ଭଲ ଲାଗିଲା କି ନାହିଁ । ନାତାଶା ହଠାତ୍ ଜବାବ୍ ଦେଲା ନାହିଁ । ସେ ଖାଲି ମୁରୁକି ମୁରୁକି ହସିଲା । ସେ ହସରେ ଯେପରିକି ତିରସ୍କାର ଥିଲା, ଯେପରି ସେ ହସ କହୁଥିଲା "ତୁମ୍ଭେ ଏଭଳି ପ୍ରଶ୍ନଟାଏ କିପରି ପଚାରି ପାରିଲ ?"

ନାତାଶା କହିଲା "ମତେ ଏତେ ଭଲ ଲାଗିଲା ଯେମିତକ ଜୀବନରେ ଆଉ କେବେ ଲାଗିନାହିଁ।" ପ୍ରିନ୍ସ ଆନ୍ଦ୍ରେ ଲକ୍ଷ୍ୟ କରୁଥାନ୍ତି କେମିତି ତାର ସରୁ ସରୁ ବାହା ଯୋଡ଼କ ଉପରକୁ ଉଠିଲା, ଯେପରକ ସେ ତାଙ୍କ ବାପାଙ୍କୁ କୁଣ୍ଢେଇବାକୁ ମନ କରୁଥିଲା। ତାପରେ ବାହା ଯୋଡ଼କ ପୁଣି ତଳକୁ ଖସିପଡ଼ିଲା। ନାତାଶା ଖୁବ୍ ଖୁସିଥାଏ। ତା ଜୀବନରେ ସେ ଏପର ଆନନ୍ଦ କେବେ ହୋଇନଥିଲା। ନାତାଶା ଯେତେବେଳେ ସୁଖର ସେଇ ଚରମ ସୀମାରେ ଥାଏ ଯେଉଁ ଅବସ୍ଥାରେ ଜଣେ ପୁରା ଭଲ ମଣିଷ ଓ ଦୟାଳୁ ମଣିଷ ହୋଇଥାଏ ଓ ସଂସାରରେ ମନ୍ଦପଣ କ ଦୁଃଖ କ ଶୋକ ବୋଲ କଛି ସମ୍ଭବ ହୋଇପାରେ ଏଭଳି ବିଶ୍ୱାସ ତାର ଆଦୌ ନଥାଏ।

ସେହି ନାଚ ଉତ୍ସବରେ ପିଏରେର ସ୍ତ୍ରୀ ଦେଶର ଉଚ୍ଚତମ ରାଜକୀୟ ସମାଜରେ ଯେଉଁ ଆସନ ପାଇଲା ତା ଦେଖି ପିଏରକୁ ତା ଜୀବନର ପ୍ରଥମ ଥରକେ ଅତି କ୍ଷୀଣ ଲାଗିଲା। ସେ ଖୁସ୍ ହୋଇ ଅନ୍ୟମନସ୍କ ହୋଇ ରହିଲା। ସେ ଯେତେବେଳେ ଝରକା ପାଖେ ଠିଆ ହୋଇ ତାର ଚଷମା ଉପରବାଟେ ଏକ ଦୃଷ୍ଟିରେ ଚାହିଁ ରହିଥାଏ, କାହାରକ ଦେଖୁନଥାଏ, ସେତେବେଳେ ତାର କପାଳ ଉପରେ ଓସାର ହୋଇ ଗୋଟାଏ ଦବିଲା ଦାଗ ଦିଶୁଥାଏ। ତାର କରବାଟ ଦେଇ ନାତାଶା ଖାଇବାକୁ ଗଲା। ପିଏରେର ବେଦନା କ୍ଳିଷ୍ଟ ଦୁଃଖିତ ମୁହଁ ତା ମନରେ ଆନ୍ଦୋଳନ ସୃଷ୍ଟି କଲା। ସେ ତାର ମୁହାଁମୁହିଁ ହୋଇ ଅଟକଯାଇ ଠିଆ ହେଲା। ତାର ମନ ହେଉଥାଏ ସେ ତାକୁ ସାହାଯ୍ୟ କରନ୍ତା ଓ ଯେଉଁ ଆନନ୍ଦ ତା ଭିତରେ ପରପୂର୍ଣ୍ଣ ହୋଇ ପଦାକୁ ଉଚ୍ଛୁଳ ପଡ଼ୁଛି ସେଥିରୁ ତାକୁ ସେ କଛି ଦେଇପାରନ୍ତା କ ? ସେ କହିଲା "ସବୁ କେଡ଼େ ଚମତ୍କାର ! ନୁହେଁ ?"

କଣ ସେ କହିଲା ପିଏରେ ତାକୁ ବୁଝିପାରିଲା ନାହିଁ ବୋଲ ଜଣାପଡୁଥାଏ। ସେ ଅନ୍ୟମନସ୍କ ହସଟିଏ ହସିଦେଇ କହିଲା "ହଁ, ମତେ ଭାର ଖୁସି ଲାଗୁଛି।"

ନାତାଶା ଭାବୁଥାଏ "ଲୋକେ କେମିତି କେଉଁ କଥାରେ ଅସନ୍ତୁଷ୍ଟ ହୋଇପାରନ୍ତି ?ପୁଣି ପିଏରେ ବେଜୁଦଭଙ୍କ ପରି ଏଡ଼େ ଚମତ୍କାର ଲୋକ ବି ।"

ଯେତେଲୋକ ସେହି ନାଚ ଭୋଜକୁ ଆସିଥିଲେ ନାତାଶା ଆଖିରେ ସେମାନେ ସମସ୍ତେ ଅତି ଦୟାଳୁ, ଅତି ସ୍ନେହୀ ଭଲ ଲୋକ, ନାତାଶା ଭାବୁଥାଏ, ସେମାନେ ପରସ୍ପରକୁ ସ୍ନେହ କରନ୍ତି । କେହି ଅନ୍ୟ କାହାର କିଛି ଅନିଷ୍ଟ କରିଲା ଭଳିଆ ନୁହନ୍ତି । ଅତଏବ ସମସ୍ତେ ନିଶ୍ଚୟ ଭାରି ସୁଖୀ ତହିଁ ଆରଦିନ ପ୍ରିନସ୍ ଆନ୍ଦ୍ରେ ଏପରି କେତେ ଲୋକଙ୍କ ଘରକୁ ବୁଲିଗଲେ ଯାହାଙ୍କ ଘରକୁ ସେ ଆଗେ କେବେ ଯାଇନଥିଲେ ।

ତହିଁରୁ ଗୋଟିଏ ପରିବାର ଥିଲା । ରୋସ୍ତଭ ପରିବାର ଯାହାଙ୍କ ସହିତ ସେ ନାଚ ଭୋଜରେ ଆନ୍ତରିକଥରେ ପୂର୍ବର ପରିଚୟ ଜରିଆରୁ ପରିଚିତ ହୋଇଥିଲେ । ଭଦ୍ରତା ଖାତିରରେ ତ ରୋସ୍ତଭ ପରିବାରଙ୍କ ଘରକୁ ଯିବା ଦରକାର ଥିଲା, ତାଛଡ଼ା ପ୍ରିନ୍ସ ଆନ୍ଦ୍ରେଙ୍କର ଉଦ୍ଦେଶ୍ୟ ଥିଲା ଯେ ଯେଉଁ ଅଭିନବ, ଉଜ୍ଜ୍ୱଳୀ ଝିଅଟି ସମ୍ପର୍କରେ ତାଙ୍କ ମନରେ ସୁଖରେ ସ୍ମୃତି ରହି ଯାଇଥିଲା ତାକୁ ସେ ତା ଘରେ ଦେଖିବେ ।

ଯେଉଁମାନେ ତାଙ୍କୁ ଆଗ ଭେଟିଲେ ସେମାନଙ୍କ ଭିତରେ ନାତାଶା ବି ଜଣେ । ନିତିଦିନ ପିନ୍ଧା ନେଳିଆ ପୋଷାକଟିଏ ସେ ପିନ୍ଧିଥିଲା, ପ୍ରିନ୍ସ ଆନ୍ଦ୍ରେଙ୍କୁ ଲାଗିଲା ନାଚ ପୋଷାକ ପିନ୍ଧି, ସେ ଯେପରି ଦିଶୁଥିଲା ଏ ସେ ତାଙ୍କୁ ଆହୁରି ସୁନ୍ଦର ଦିଶୁଥାଏ । କେଉଁ କାଳରୁ ପୁରୁଣା ବନ୍ଧୁକୁ ଲୋକେ ଯେପରି ଅଭ୍ୟର୍ଥନା ଜଣାନ୍ତି ସେ ଓ ତା ପରିବାରର ସମସ୍ତେ ସେହିପରି ସରଳ ଭାବରେ ହୃଦୟ ଖୋଲି ତାଙ୍କୁ ପାଛୋଟି ନେଲେ । ସେ ଯେଉଁ ପରିବାରଟିକୁ ପ୍ରିନ୍ସ ଆନ୍ଦ୍ରେ ଆଗେ ତୀବ୍ର ଭାବରେ ସମାଲୋଚନା କରିଥିଲେ ଏତେବେଳେ ସେହି ପରିବାରର ସମସ୍ତେ ତାଙ୍କୁ ଲାଗିଲେ ଅତି ଚମତ୍କାର ମଣିଷ ବୋଲି । ଅତି ଚମତ୍କାର, ଅକପଟ, ସରଳ ସେହି ଲୋକଗୁଡ଼ିଏ । ପିଟର୍ସବର୍ଗ ସହରରେ ବୁଢ଼ା କାଉଣ୍ଟଙ୍କର ଅତିଥେୟତା ଓ ସ୍ନେହୀ ସ୍ୱଭାବରେ ସମସ୍ତେ ଆକୃଷ୍ଟ ହୁଅନ୍ତି, ତାହା ଏଭଳି ଥିଲା ଯେ ସେ ଯେତେବେଳେ ପ୍ରିନ୍ସ ଆନ୍ଦ୍ରେଙ୍କୁ ଅନୁରୋଧ କଲା ଯେ ସେ

ରହିବେ ଖାଇକରି ଯିବେ ସେତେବେଳେ ପ୍ରିନ୍‌ସ ଆନ୍ଦ୍ରେ ଖାଇବାକୁ ରହିବାକୁ ଅସ୍ୱୀକାର କରିପାରିଲେ ନାହିଁ । ପ୍ରିନ୍‌ସ ଆନ୍ଦ୍ରେ—

ବଲକନ୍‌ସ୍କି ମନେ ମନେ ଭାବୁଥାନ୍ତି "ବାସ୍ତବିକ, ଏମାନେ ଅତି ସ୍ନେହୀ, ଅତି ଉତ୍ତମ ଚମତ୍କାର ମଣିଷ ।" ଅବଶ୍ୟ ଏକଥା ତାଙ୍କର ଧାରଣା ହିଁ ନଥିଲା ଯେ ତାଙ୍କ ନାତାଶା ତାଙ୍କର କେଡ଼େ ଅମୂଲ୍ୟ ନିଧିଟିଏ, ତଥାପି ସେ ଭାବୁଥିଲେ—ଏ ଲୋକେ ଅତି ଚମତ୍କାର ମଣିଷ । ପ୍ରାଣ ପାଚୁର୍ଯ୍ୟରେ ପରିପୂର୍ଣ୍ଣା ଓ ସତେ ଅବା ଶବ୍ୟନାପ୍ଟି କାଟିଏ ଭଳି ସେହି ଅପରୂପ ଚମତ୍କାର ଝିଅଟିଏ ବ୍ୟକ୍ତିତ୍ୱ ପଛଆଡ଼େ ସେ ଲୋକେ ଅତି ଉତ୍ତମ ପଟ୍‌ଟଲେଭୂମୀ ।

ପ୍ରିନ୍‌ସ ଆନ୍ଦ୍ରେ ନାତାଶାଠିଁ ଗୋଟାଏ ସ୍ୱତନ୍ତ୍ର ପୃଥିବୀରୁ ସନ୍ଧାନ ପାଇଥିଲେ । ସେ ପୃଥିବୀ ତାଙ୍କଠୁ ବହୁତ ଦୂରରେ । ସେଠି ଏଭଳି ଆନନ୍ଦ ପରିପୂର୍ଣ୍ଣ ହୋଇ ରହିଛି ଯାହା ତାଙ୍କର ଅଜଣା । ସେହି ଆଶ୍ଚର୍ଯ୍ୟ ପୃଥିବୀ ଅତ୍ରାଦ୍‌ନୋର ବଗିଚ୍ଚ ଭିତରେ ସଡ଼କରେ ଆଉ ପୁଣି ସେହି ଜହ୍ନ ରାତିରେ ତାଙ୍କୁ ବ୍ୟଙ୍ଗ କରିଥିଲା । ଆଜି ସେ ପୃଥିବୀ ତାଙ୍କୁ ବ୍ୟଙ୍ଗ ବିଦ୍ରୁପ କରୁ ନାହିଁ । ସେ ଆଉ ତାଙ୍କର ଅଚିହ୍ନା ଜଣାଯାଉ ନାହିଁ କିନ୍ତୁ ସେ ନିଜେ ତହିଁରେ ବୁଡ଼ି ଯାଉଛନ୍ତି ଓ ସେହି ନୂଆ ପ୍ରକାର ଆନନ୍ଦ ପାଉଛନ୍ତି ।

ଖାଇସାରିଲା ପରେ ପ୍ରିନ୍‌ସ ଆନ୍ଦ୍ରେଙ୍କ ଅନୁରୋଧରେ ନାତାଶା କ୍ଲାଭିକର୍ଡ଼ (ବେହେଲା ଜାତୀୟ) ଯନ୍ତ୍ର ବଜାଇ ଗୀତ ବୋଲିଲା । ପ୍ରିନ୍‌ସ ଆନ୍ଦ୍ରେ ଝରକା ପାଖେ ଠିଆ ହୋଇ ଭଦ୍ରମହିଳାମାନଙ୍କ ସଙ୍ଗେ କଥାଭାଷା ହେଉଥାନ୍ତି ଓ ତା ଗୀତ ଶୁଣୁଥାନ୍ତି । ହଠାତ୍ କଥା କହୁ କହୁ ହଠାତ୍ ପ୍ରିନ୍‌ସ ଆନ୍ଦ୍ରେ ଅଟକି ଗଲେ । ତାଙ୍କୁ ଲାଗିଲା ଯେପରିକି ଲୁହରେ ତାଙ୍କ ତଣ୍ଟି ବନ୍ଦ ହୋଇ ଯାଉଛି । ତାଙ୍କର ଏଭଳି କେବେ ହୋଇପାରେ ଏକଥା ସେ ସ୍ୱପ୍ନରେ ସୁଦ୍ଧା କଳ୍ପନା କରିନଥିଲେ । ନାତାଶା ଗୀତ ଗାଉଥାଏ, ସେ ତାକୁ ଅନାଇଁଲେ ଆଉ ତାଙ୍କର ପ୍ରାଣ ଭିତରେ ନୂଆ ଆଉ ଆନନ୍ଦମୟ ହୋଇ କ'ଣ ଯେପରିକି ହଲଚଲ ହୋଇଉଠିଲା । ତାଙ୍କୁ ଖୁସି ଲାଗୁଥାଏ, ପୁଣି ଦୁଃଖ ଲାଗୁଥାଏ । କାନ୍ଦିବାକୁ ଅବଶ୍ୟ ତାଙ୍କର କୌଣସି କାରଣ ନଥିଲା । କାନ୍ଦିବାକୁ ତାଙ୍କର ମନ ହେଉଥିଲା ।

କାହିଁକି ? କ'ଣ ତାଙ୍କର ଅନ୍ତରର ପ୍ରେମ ଲାଗି ? ଠିକ ପ୍ରିନ୍‌ସେସ୍‌ଙ୍କ ପାଇଁ ଯେଉଁ ମାୟା ସ୍ୱପ୍ନ ପାଇଁ ? ଏହାର ଉତ୍ତର "ହଁ" ପୁଣି 'ନାହିଁ' ।

ହଠାତ୍ ପରିଷ୍କାର ହୋଇ ସେ ଅନୁଭବ କଲେ ଯେ ତାଙ୍କ ଭିତରେ କ'ଣ ଏପରି ଗୋଟିଏ ଅଛି ଯାହା ମହାନ ଆଉ ଅସୀମ ଅଥଚ ସେ ନିଜେ କେଡ଼େ ସାନ ଓ କେଡ଼େ ସୀମିତ । ନାତାଶା ବି କେଡ଼େ ସାନ ଆଉ ସୀମିତ । ମଣିଷ ଆଉ ମଣିଷ ଭିତରେ ଥିବା ମହାଭାବ ଏ ଦୁଇଟାର ଅସାମଞ୍ଜସ୍ୟକୁ ସେ ଅନୁଭବ କଲେ ଓ ତାହାହିଁ ତାଙ୍କୁ କାନ୍ଦ ମାଡ଼ିବାର ବଡ଼ କାରଣ । ଏହି ଅସାମଞ୍ଜସ୍ୟ କଥା ଭାବୁଁ ଭାବୁଁ ତାଙ୍କ ମୁଣ୍ଡ ବିଥାଉ ଥିଲା । ତେଣୁ ନାତାଶା ଯେତେବେଳେ ଗୀତ ବୋଲିଲା ତାଙ୍କୁ ଖୁସି ଲାଗିଲା ।

ନାତାଶା ଗାଇ ସାରିଲା । ସଙ୍ଗେ ସଙ୍ଗେ ତାଙ୍କ ପାଖକୁ ଯାଇ ପଚାରିଲା ଯେ ତାଙ୍କୁ ତା କଣ୍ଠସ୍ୱର କେମିତି ଲାଗିଲା । ସେ ଏକଥା ପଚାରି ଦେଲା । ତା ପରେ ଯେମିତି ତାର ହୋସ୍ ଆସିଲା ଯେ ଏଭଳି ପ୍ରଶ୍ନ ପଚାରିବାର ନୁହେଁ ସେତେବେଳେ ତାକୁ ଲାଜ ମାଡ଼ିଲା । ସେ ସ୍ମିତ ହସ ହସି ତା ଆଡ଼କୁ ଅନାଇଁ କହିଲେ ତା ଗୀତ ତାଙ୍କୁ ଭଲ ଲାଗିଲା ଓ ସେ ଯାହା କରେ ତାଙ୍କୁ ସବୁ ଭଲ ଲାଗେ ।

ପ୍ରିନ୍‌ସ ଆନ୍ଦ୍ରେ ରୋସ୍ତଭ ପରିବାରଙ୍କ ଘର ଛାଡ଼ୁ ଛାଡ଼ୁ ସଞ୍ଜ ଭିତରୁ କେତେ ଡ଼େରି ହୋଇ ଯାଇଥିଲା । ତାପରେ ବିଛଣା ଧରିବା ତାଙ୍କ ଅଭ୍ୟାସ, ତେଣୁ ସେ ବିଛଣାରେ ଶୋଇ ପଡ଼ିଲେ ସିନା, ତାଙ୍କ ଆଖିକି ନିଦ ଆସିଲା ନାହିଁ । ସେ ଗୋଟିଏ ମହମବତି ଜାଳିଲେ ଆଉ ବିଛଣା ଉପରେ ଉଠି ବସିଲେ । ତା ପରେ ଠିଆ ହୋଇ ପଡ଼ିଲେ, ପୁଣି ବିଛଣାରେ ଗଡ଼ି ପଡ଼ିଲେ । କିନ୍ତୁ ନିଦ ହେଉ ନଥାଏ ବୋଲି ତାଙ୍କୁ ଟିକିଏ ବି କ୍ଲାନ୍ତ ଲାଗୁନଥାଏ । ତାଙ୍କ ପ୍ରାଣରେ ନୂଆ ଆନନ୍ଦ ଆସିଛି ବୋଲି ଲାଗୁଥାଏ । ସତେ ଯେପରି ଗୋଟାଏ ଗେଞ୍ଜିବୁଦା ଘରଭିତରୁ ସେ ଖୋଲା ଦିନ ଆଲୁଅକୁ ବାହାରି ପଡ଼ିଛନ୍ତି । ଏଇ ଠିକ୍ ରୋସ୍ତଭ ଝିଅଟିର ପ୍ରେମରେ ସେ ପଡ଼ିଛନ୍ତି ଏକଥା ଆଦୌ ତାଙ୍କର ମନରେ ଉଙ୍କିଲା ନାହିଁ । ସେ ତା କଥା ଭାବୁ ନଥିଲେ ସେ ଖାଲି ତାର ଛବିଟି

ମନେ ପକାଇଲେ ଓ ସଙ୍ଗେ ସଙ୍ଗେ ତାଙ୍କର ସମୁଦାୟ ଜୀବନ ନୂଆ ଆଲୁଅରେ ତାଙ୍କ ଆଗରେ ଝଲକ ଉଠି ଉଭା ହେଲା । ସେ ମନକୁ ମନ କହିହେଲା "କାହିଁକି ମୁଁ ଏତେ କଷ୍ଟ କରୁଛି ? ମୋ ଆଗରେ ଜୀବନ ସବୁ ତାର ସବୁଯାକ ଆନନ୍ଦ ଘେନି ପଡ଼ିରହିଥିବା ବେଳେ ଖାଲରଣରୁ ମୁଁ ଏଇ ସଂକୀର୍ଣ୍ଣ ଚେଙ୍ଗା ଚେଙ୍ଗି ନିଡଦାନିଆ ନିର୍ଘଣ୍ଟ ଭିତରେ ମୋଡ଼ି ମକଚି ହୋଇ ପଡ଼ି ପଡ଼ି ଯନ୍ତ୍ରଣା ଭୋଗୁଛି ?" ତାପରେ ତାଙ୍କ ଜୀବନରେ ସେହି ପ୍ରଥମ ଥରକ ସେ ବହୁତ ବେଳଯାକେ ଭବିଷ୍ୟତ ଲାଗି ସୁଖରେ ଯୋଜନା ଗଢ଼ିବାକୁ ଲାଗିଲେ ।

ତହିଁ ଆରଦିନ ପ୍ରିନ୍‌ସ ଆନ୍ଦ୍ରେଙ୍କୁ କାଉଣ୍ଟ ଇଲିଆ ଆନ୍ଦ୍ରେଇଚ୍ ରୋସ୍ତଭ ଖାଇବାକୁ ଡାକିଥାନ୍ତି । ସେ ତାଙ୍କ ଘରକୁ ଖାଇବାକୁ ଗଲେ, ଦିନ ଗୋଟାକ ଯାକ ସେଇଠି କଟାଇଲେ ।

କାହା ସକାସେ ପ୍ରିନସ ଆନ୍ଦ୍ରେ ତାଙ୍କ ଘରକୁ ଆସିଛନ୍ତି । ସେ ଘରର ସମସ୍ତେ ସେ କଥା ଦେଖିପାରିଲେ, ପ୍ରିନ୍‌ସ ଆନ୍ଦ୍ରେ ମଧ୍ୟ ପ୍ରକାଶ୍ୟରେ ଚେଷ୍ଟା କରୁଥାନ୍ତି କେମିତି ଦିନଯାକ ନାତାଶା ପାଖରେ ରହିବେ ।

ନାତାଶାକୁ କେମିତି ଗୁନିଆ ହେଲା ପରି ଲାଗୁଥିଲା, କିନ୍ତୁ ସେ ସୁଖୀ ଥିଲା, ତାର ବହୁତ ଆଗ୍ରହ ଉତ୍ସାହ ଥିଲା । କେବଳ ନାତାଶାର ଅନ୍ତର ଭିତରେ ନୁହେଁ, ସେ ଘରର ସମସ୍ତଙ୍କ ମନରେ ଗୋଟାଏ ଭୟ ଆସିଯାଇଥିଲା ଯେ କ'ଣ ଗୋଟାଏ ବହୁତ ଗୁରୁତର କଥା ଘଟିବ । ପ୍ରିନସ ଆନ୍ଦ୍ରେ ନାତାଶା ସଙ୍ଗେ କଥା ଭାଷା ହେଉଥିବା ବେଳେ ତା ବୋଉ କାଉଣ୍ଟେସ ଦୁଃଖିତ ବିରକ୍ତ ଗମ୍ଭୀର ଆଖି କରି ଠିଆ ହୋଇ ରହିଥାନ୍ତି ଓ ପ୍ରିନ୍‌ସ ଆନ୍ଦ୍ରେ ବୁଲିପଡ଼ି ତାଙ୍କୁ ଅନାଇଲା ମାତ୍ରେ ଜାଣି ଜାଣି ଲାଜରେ ଲାଜରେ କ'ଣ ବାଜେ ଗପ ଲଗାଇ ଦେବାକୁ ଚେଷ୍ଟା କରନ୍ତି । ନାତାଶା ପାଖ ଛାଡ଼ି ଖସିଯିବାକୁ ସୋନିଆକୁ ଡର ମାଡୁଥାଏ ଅଥଚ ନାତାଶା ଓ ପ୍ରିନ୍‌ସ ଆନ୍ଦ୍ରେ ଏ ଦୁହିଁଙ୍କ ପାଖରେ ରହିଲେ ସେମାନଙ୍କୁ ଅଡୁଆ ଲାଗିବ ବୋଲି ଡର ମାଡୁଥାଏ । ମୁହୂର୍ତ୍ତେ ଯଦି ପ୍ରିନ୍‌ସ ଆନ୍ଦ୍ରେଙ୍କ ସଙ୍ଗେ ନାତାଶାକୁ ଏକୁଟିଆ ଛାଡ଼ି ଦେଉଥାନ୍ତି । ତେବେ କ'ଣ

ହେବ ଭାବ ଭ୍ରମଆରେ ନାତାଶା ବବର୍ଣ୍ଣ ପଡ଼ଯାଉ ଥାଏ । ପ୍ରିନ୍‌ସ ଆନ୍ଦ୍ରେ ଯେ ଭରସିବାକୁ ଡରୁଥାନ୍ତି ସେଥିପାଇଁ ତାଙ୍କ ପ୍ରତି ତାର ଭବ ଧାରଣା ହେଉଥାଏ । ତାକୁ ଲାଗିଲା ଯେ ସେ କ'ଣ କହିବେ ବୋଲି ହେଉଥାନ୍ତି କିନ୍ତୁ ଶେଷ ବେଳକୁ ପାରୁ ନାହାନ୍ତି ।

ସଞ୍ଜରେ ପ୍ରିନ୍‌ସି ଆନ୍ଦ୍ରେ ଚାଲିଯିବା ପରେ କାଉଣ୍ଟେସ ନାତାଶା ପାଖକୁ ଯାଇ ତା କାନରେ ଫୁସ୍ ଫୁସ କରି କହିଲେ —

"କ'ଣ ହେଲା ମା ?

ନାତାଶା କହିଲା "ବୋଉ, ତତେ ଈଶ୍ୱରଙ୍କ ରାଣ ଅଇଗ୍ର କିଛି ପଗ୍ଭରନା । ଏ ବିଷୟରେ ମଣିଷ କଥାବାର୍ତ୍ତା କରିପାରିବ ନାହିଁ ।"

ଏଭଳି ଉତ୍ତର ଦେଲେ କି ସେଦିନ ରାତିରେ ବହୁତ ବେଳ-ଯାକେ ନାତାଶା ତା ବୋଉ ପାଖେ ବିଛଣାରେ ପଡ଼ି ରହିଲା, ଆଖିରେ ପଲକ ପଡ଼ୁ ନଥାଏ । କେତେବେଳେ ତାର ଉତ୍ତେଜନା ଆସୁଥାଏ ତ କେତେବେଳେ ଭ୍ରମଆ । ସେ ତା ବୋଉକୁ କହିଲା କେମିତି ପ୍ରିନ୍‌ସ ଆନ୍ଦ୍ରେ ତାକୁ ପ୍ରଶଂସା କରି କହୁଥିଲେ, କେମିତି ସେ କହୁଥିଲେ ସେ ବିଦେଶକୁ ଯାଉଛନ୍ତି ଆଉ ପଗ୍ଭରୁଥିଲେ ତୁମେ ସବୁ ଖରାଦିନଟା କେଉଁଠି କଟାଇବ... ।

ଆଉ ନାତାଶା କହିଲା "ଏମିତି ସ୍ଥା ଆଗରୁ ମତେ କେବେ ଲାଗି ନାହିଁ । ଖାଲି ଏତିକି ଯେ ତାଙ୍କ ପାଖରେ ଥିଲେ କାହିଁକି ମତେ ଡ଼ର ଡ଼ର ମାଡ଼ୁଛି, ଯେତେବେଳେ ତାଙ୍କ ପାଖରେ ଥିଲେ ହେଲେ ଡ଼ର ମାଡ଼େ । କାହିଁକି ଏମିତି ଲାଗେ ? ତା ମାନେ କ'ଣ ଏଇ 'ସେହି' କଥା । ବୋଇ ଶୁଇଲୁଣି କିଲେ ?" ତା ବୋଉ କହିଲେ "ନାଇଲେ ମୋ ମାଆ ମତେ ନିଜେ ତ ତାକୁ ଡ଼ର ମାଡ଼େ ମା ଶୋଇପଡ଼ ।"

"ଯାହା କହ, ମୁଁ ନିଦରେ ଶୋଇବି ନାହିଁ । ନିଦଟା କେଡ଼େ ବାଜେ କଥା । ବୋଉ ମ, ବୋଉ ମ, ଏଭଳି ମତେ କେବେ ଆଗରୁ ଲାଗିନାହିଁ ।" ଆପଣଙ୍କ ଯେଉଁ ଭାବକୁ ସେ ଚହ୍ନି ପାରିଥିଲା ସେଥିପାଇଁ

ତାକୁ ଆଶ୍ଚର୍ଯ୍ୟ ଲାଗୁଥିଲା । ଭୟ ଲାଗୁଥିଲା । ସେ କହିଲା "ଏକଥା ଆମେ କେବେ ସ୍ୱପ୍ନରେ ସୁଦ୍ଧା ଭାବିନଥିଲୁ ।"

ନାତାଶାକୁ ଲାଗିଲା ସେହି ଯେଉଁଥର ଅଟ୍ରାଡ୍‌ନୋରେ ତାଙ୍କୁ ପ୍ରଥମେ ଦେଖିଲେ ସେହିଥର ସେ ତାଙ୍କ ପ୍ରେମରେ ପଡ଼ିଗଲା । ଯେଉଁ ମଣିଷକୁ ଯେତେବେଳେ ସେ ବାଛି ନେଇଥିଲା (ତାର ଦୃଢ଼ ବିଶ୍ୱାସ ହୋଇଥିଲା ଯେ ସେ ସେପରି କରିଥିଲା) ପୁଣି ସେହି ଲୋକକୁ ସେ ଆଉଥରେ ଦେଖିବ ଆଉ ସେ—ଜଣକ ବି ତା ପ୍ରତି ଅନାସକ୍ତ ହୋଇ ନ ରହିବ ତାର ଏକ ଅନନୁଭୂତ ଅପ୍ରତ୍ୟାଶିତ ଆନନ୍ଦ ଆସୁଥାଏ ଓ ସେଥିରେ ସେ ବ୍ୟସ୍ତ ହୋଇ ପଡ଼ୁଥାଏ ।

"ସତେ ଯେମିତି ସବୁ କେମିତି ଉଦ୍ଦେଶ୍ୟ ଥାଇ ହେଲା ପରି ହୋଇଗଲା—ଆମେ ଯେତେବେଳେ ପିଟର୍ସବର୍ଗରେ ଅଛୁଁ ସେତିକବେଳେ ସେ ଏଠିକି ଆସିବାଟା, ନାଚ ଭୋଜିରେ ଆମର ଭେଟାଭେଟି, ସବୁ ଯୋଗର କଥା ଏଇଟା ପରିଷ୍କାର ଜଣାପଡୁଛି ଦୈବାଯୋଗ ବୋଲି । ସବୁ ଏକାଠିହୋଇ ଶେଷରେ ଏଇ ପରିଣତି । ତଥାପି ମୁଁ ତାଙ୍କୁ ଦେଖିଲା ମାତ୍ରେ ମତେ କେମିତି ଭଲ୍ଲେ ଭଲ୍ଲେ ଲାଗୁଥାଏ ।"

"ତେବେ ସେ କ'ଣ କହିଲା ? ସେ ଗୀତ ଗୁଡ଼ାକ କ'ଣ ? ପଢିଲୁ ତାକୁ ।" ନାତାଶାର ବୋଉ ଚିନ୍ତିତ ହୋଇ ତାକୁ କହିଲେ, ପ୍ରିନ୍‌ସ୍ ଆନ୍ଦ୍ରେ ନାତାଶାର ଛବି ବହିରେ ଯେଉଁ ଗୀତ ଲେଖି ଦେଇଥିଲେ ସେହି କଥାକୁ ଉପଲକ୍ଷ କରି କହିଲେ ।"

"ଛି ! ନାତାଶା, ସେମିତି କହନ୍ତି ନାହିଁ । ଭଗବାନଙ୍କୁ ଡାକ," "ବାହା ଠିକଣା ହୁଏ ସ୍ୱର୍ଗରେ" ଢଗ ଅଛି । ନାତାଶାର ବୋଉ ସେହି ଢଗକୁ କହିଲେ ।

ନାତାଶା ସୁଖରେ ଉତ୍ତେଜନାରେ କାନ୍ଦ ପକାଇ ବୋଉକୁ କୁଣ୍ଢେଇ ପକାଇ ପାଟିକଲା । "ବୋଉଲୋ, ମୋ ସୁନା, ମୁଁ ତତେ କେତେ ଭଲପାଏଁ । ମତେ କେତେ ଖୁସି ଲାଗୁଛି ।"

ସେତିକିବେଳେ ପ୍ରିନ୍‌ସ ଆନ୍ଦ୍ରେ ପିଏରେ ଆଗରେ କହୁଥିଲେ ସେ କେମିତି ନାତାଶାକୁ ଭଲ ପାଇଛନ୍ତି ଆଉ ନିଷ୍ପତ୍ତି କରିସାରିଛନ୍ତି ଯେ ତାକୁ ବିଭା ହେବେ ।

ବିଭା ହେବାକୁ ହେଲେ ବାପା ରାଜିହେବା ଦରକାର, ତେଣୁ ବାପାଙ୍କ ମତ ଆଣିବା ପାଇଁ ପ୍ରିନ୍‌ସ ଆନ୍ଦ୍ରେ ବାପାଙ୍କ ପାଖକୁ ଗଲେ ।

ବାପା ତାଙ୍କ ପୁଅଙ୍କଠୁଁ ସମ୍ବାଦ ଏ ଶୁଣିଲା ବେଳେ ପଦାକୁ ଖୁବ ଥଣ୍ଡା ଦିଶୁଥିଲେ କିନ୍ତୁ ଭିତରେ ରାଗରେ ଜୁଳୁଥିଲେ । ସେ ଭାବି ପାରିଲେ ନାହିଁ ଯେ ତାଙ୍କ ଜୀବନ ଶେଷ ହେବାକୁ ଯେତେବେଳେ ଏତେ ପାଖ ହୋଇ ଆସିଲାଣି ସେତେବେଳେ କେମିତି ଜଣେ ଖୋଜିବ ତାଙ୍କ ଜୀବନର ଧାରା ବଦଳାଇବାପାଇଁ କି ତାଙ୍କ ଜୀବନ ଭିତରେ ପୁଣି ଗୋଟାଏ ନୂଆ ଜିନିଷ ଆଣି ପୁରାଇବା ପାଇଁ । ମୁଁ ମୋର ଯେମିତି ଇଚ୍ଛା ସେମିତି ଚଳନ୍ତି ଏବଂ ସେମିତି ଚଳିବାକୁ ଛାଡ଼ି ଦିଅନ୍ତୁ କି ତା ପରେ ତାଙ୍କ ମନକୁ ଯାହା ଆସିବ ତାହା କରନ୍ତୁ । ତାଙ୍କ ମନକୁ ମନ ସେ ଏହିପରି କହିହେଲେ । କୌଣସି ଗୁରୁତର ପରିସ୍ଥିତିରେ ପଡ଼ିଲେ କୂଟନୀତି ପ୍ରୟୋଗ କରିବା ତାଙ୍କର ଅଭ୍ୟାସ । ଏବେ ସେ ସେଇଆ କଲେ । ସ୍ୱରକୁ ଖୁବ ଶାନ୍ତ କରି ଜଣେ ବିଚାରକ ଗୋଟିଏ ସମସ୍ୟାକୁ ପରୀକ୍ଷା କରି ଦେଖିଲା ପରି ସେ ଏ ସମୁଦାୟ ପ୍ରଶ୍ନକୁ ଚାରିଆଡ଼ୁ ପରଖି ତଉଲି ଦେଖିଲେ ।

ପ୍ରଥମ କଥା । କୁଳ ସମ୍ପତ୍ତି କି ମାନମର୍ଯ୍ୟାଦା ଦୃଷ୍ଟିରୁ ଏ ବିଭାଘର ପ୍ରସଙ୍ଗଟା ସେତେ ଚମତ୍କାର ନୁହେଁ । ଦ୍ୱିତୀୟ କଥା ଯେ ପ୍ରିନ୍‌ସ ଆନ୍ଦ୍ରେ କିଛି ତାଙ୍କର ପ୍ରଥମ ଯୌବନ ଅବସ୍ଥାରେ ନାହାଁନ୍ତି, ତାଙ୍କ ସ୍ୱାସ୍ଥ୍ୟ ବି ଦୁର୍ବଳ (ବୁଢ଼ା ଏହି କଥା ଉପରେ ବେଶି ଜୋର ଦେଲେ) ଏଣେ ଝିଅଟା ଅତି ପିଲା । ତହିଁରେ ପୁଣି ପୁଅଟିଏ ବି ଅଛି ତାକୁ ଗୋଟାଏ ସାମାନ୍ୟ ବାଳିକା ହାତରେ ଛାଡ଼ିଦେବା ବି ଦୁଃଖର କଥା ବି ହେବ । ପୁଅ ଆଡ଼କୁ ବ୍ୟଙ୍ଗ ବ୍ୟଞ୍ଜକ ଚାହାଣିରେ ଅନାଇଁ ବାପା କହିଲେ "ଚତୁର୍ଥ ଆଉ ଶେଷକଥା ହେଉଛି, ମୋର ଅନୁରୋଧ ଏ ବାହାଘରଟାକୁ ବର୍ଷେ ଗଡ଼େଇ ଦିଅ । ବିଦେଶକୁ ଯାଇ ଦେହ ଭଲ କର । କହୁଥିଲପରା ସାନ

ପିଲାଟି ପାଇଁ ଗୋଟିଏ ଜର୍ମାନ ମାଷ୍ଟର ଠିକଣା କରିବ, ଯାଇ ଖୋଜ ଗୋଟିଏ । ତାପରେ ଯଦି ତୁମ ପ୍ରେମ କି କାମ ବିକାର କି ଏକ ଗପ ଆପଣ,—ଯାହା ତାକୁ କହିବ ତାହା—ମୁଁ ଯଦି ବଳେଇ ପଡ଼େ ଦେଖିବ, ତେବେ ବାହା ହୁଅ । ଏ ବିଷୟରେ ମୋର ଆଉ କିଛି କହିବାର ନାହିଁ ବାବୁ, ଏଇ ମୋର ଶେଷକଥା ।” ସେ ଏଭଳି ସ୍ୱରରେ କଥା କହିଲେ ଯେ ଜଣାପଡ଼ୁଥିଲା ଯେ ଆଉ ଯେତେ ଯାହା କଲେ ତାଙ୍କ ମତ ବଦଳିବ ନାହିଁ ।

ପ୍ରିନ୍‌ସ ଆନ୍ଦ୍ରେ ପରିଷ୍କାର ଦେଖିପାରିଲେ ଯେ ବୁଢ଼ା ଭାବୁଚନ୍ତି ଯେ ହୁଏତ ତାଙ୍କର ମନର ଏ ଭାବ ବର୍ଷେ ପରେ ଆଉ ନଥିବ କି ଯାହାକୁ ବାହା ହେବାକୁ ମନେ କରିଛନ୍ତି ତା ମନରେ ଏ ଭାବ ବି ବର୍ଷେ ପରେ ଆଉ ନଥିବ । ଆଉ ସେ ଭାବୁଛନ୍ତି ଯେ ହୁଏତ ବର୍ଷେ ଭିତରେ ବୁଢ଼ା ପ୍ରିନ୍‌ସ ନିଜେ ବି ମରିଯାଇ ସାରିଥିବ । ସେ ତେଣୁ ନିଷ୍ପତ୍ତି କଲେ ଯେ ତାଙ୍କ ବାପାଙ୍କର ଯେଉଁପରି ମନ ସେ ସେହିପରି କାମ କରିବେ । ବିବାହର ପ୍ରସ୍ତାବ ପକାଇବେ ଆଉ ବିବାହରଟିକୁ ଆଉ ବର୍ଷେ ଗଡ଼ାଇ-ଦେବେ ।

ରୋଷ୍ଟଭମାନଙ୍କ ଘରକୁ ଶେଷଥର ଯିବାର ତିନି ସପ୍ତାହ ପରେ ପ୍ରିନ୍‌ସ ଆନ୍ଦ୍ରେ ପିଟର୍ସବର୍ଗକୁ ଫେରି ଆସିଲେ ।

ନାତାଶା ତା ବୋଉ ସଙ୍ଗରେ କଥାଭାଷା ହେବାର ଆରଦିନ କାଳେ ପ୍ରିନ୍‌ସ ଆନ୍ଦ୍ରେ ଲେକନସ୍କି ଆସିବେପରି ବୋଲି ଅପେକ୍ଷା କରି ଦିନ ଗୋଟାକ କଟାଇଲା । କିନ୍ତୁ ସେ ଆସିଲେ ନାହିଁ । ତା ଆରଦିନ ପୁଣି ତୃତୀୟ ଦିନଟି ସେହିପରି କଟିଲା । ପିଏରେ ବି ଆସିଲା ନାହିଁ । ପ୍ରିନ୍‌ସ ଆନ୍ଦ୍ରେ ତାଙ୍କ ବାପାଙ୍କୁ ଦେଖିବାକୁ ଯାଇଛନ୍ତି-ବୋଲି ନାତାଶା ଜାଣିନଥିଲା ତେଣୁ ଏହାର କି ଅର୍ଥ ସେ ଜାଣିପାରିଲା ନାହିଁ ।

ଏମିତି ତିନି ସପ୍ତାହ କାଳ କଟିଗଲା । ନାତାଶା କୁଆଡ଼େ ବାହାରିଲା ନାହିଁ । ସେ ଛାଇ ପରି ଘରଯାକ ବୁଲୁଥାଏ; କିଛି କରୁନଥାଏ, କୌଣସି କଥାକୁ ତାର ମନ ଯାଉନଥାଏ । ରାତି ହେଲେ ଲୁଚେଇ

ଲୁଚେଇ କାନ୍ଦେ, ସଞ୍ଜରେ ତା ବୋଉ ପାଖକୁ ଯାଏ ନାହିଁ । ଯେତେବେଳେ ଦେଖିଲେ ସେ ଘଡ଼ ଘଡ଼କେ ନାଲି ପଡ଼ିଯାଉଥାଏ । ଭାରି ଚିଡ଼ ଚିଡ଼ ହେଉଥାଏ । ସେ ଭାବୁଥାଏ ତାର ଆଶା ଯେ ନିରାଶା ହେଲା ଏକଥା ସମସ୍ତେ ଜାଣିଲେଣି, ସମସ୍ତେ ତାକୁ ଦେଖି ହସୁଛନ୍ତି ଆଉ ଦୟା କରୁଛନ୍ତି । ତା ମନ ଭିତରେ ଯେତେ ପ୍ରବଳ ଦୁଃଖ ହେଉଥିଲେ ବି ତାର ଗର୍ବ ଏତେ ଆଘାତ ପାଇଲା ଏଇକଥା ଭାବି ତାର ଦୁଃଖ ବଳି ପଡ଼ୁଥାଏ ।

ଦିନେ ସେ କାଉଣ୍ଟେସ୍‌ଙ୍କ ବଖରାକୁ ପଶି ଆସି କ'ଣ କହିବ କହିବ ହେଲା ତାପରେ ଡ଼ି କନା କାନ୍ଦ ପକାଇଲା, ତା କାନ୍ଦଣା ଯେମିତି ଗୋଟିଏ ପିଲା ଚିଡ଼ିଲେ ଯେମିତି କାନ୍ଦେ, ସେମିତି, ଯେମିତି ପିଲାଟିଏ ଜାଣିପାରୁନାହିଁ ତାକୁ କାହିଁକି ଦଣ୍ଡ ଦିଆ ହେଉଛି ଆଉ କାନ୍ଦୁଛି । ଆଗ ସେ ତା ବୋଉ କଥାକୁ ଶୁଣିଲା, ତାପରେ ମଝିରେ ତା କଥାରେ ବାଧାଦେଇ କହିଲା —

"ରହମ ବୋଉ, ମୁଁ ତାଙ୍କର କଥା ଭାବୁନାହିଁ କି ତାଙ୍କ କଥା ଆଉ ଭାବିବାକୁ ମୋର ମନ ହେଉ ନାହିଁ ।" ତାପରେ ଆଉ ଆସିଲେ ନାହିଁ ... ତାର ସ୍ୱର ଥରଉଠିଲା, ସେ କାନ୍ଦିବାକୁ ଆରମ୍ଭ କଲା, ପୁଣି କାନ୍ଦ ବନ୍ଦକରି ପ୍ରକୃତିସ୍ଥା ହେଲା । ତାପରେ ଶାନ୍ତ କଣ୍ଠରେ କହିଲା "ଆଦୌ ମୁଁ ବିଭା ହେବାକୁ ଚାହୁଁ ନାହିଁ । ମତେ ତାଙ୍କୁ ଡ଼ରମାଡ଼ୁଛି । ବର୍ତ୍ତମାନ ମୁଁ ପ୍ରକୃତିସ୍ଥ ହୋଇଛି, ସମ୍ପୂର୍ଣ୍ଣ ପ୍ରକୃତିସ୍ଥ ହୋଇଛି ।"

ନାତାଶାର ଗୋଟିଏ ପୁରୁଣା ପୋଷାକ ଥିଲା । ସକାଳେ ତାକୁ ପିନ୍ଧିଲେ ସେ ଭାରି ମଜା କରୁଥିଲା, ସେ ପୋଷାକ ଦେଖିଲେ ତାର ସେଇଆ ମନେ ପଡ଼େ । ପରଦିନ ସେ ସେହି ପୋଷାକଟି ପିନ୍ଧିଲା ଆଉ ସକାଳେ ସଞ୍ଜଯାକେ ଆଗେ ଯେମିତି ତାର ଦିନ କଟାଉଥିଲା ସେହିପରି ଚଳିଲା । ନାଚ ଭୋଜି ଉତ୍ସବରୁ ସେ ସେମିତି ଚଳିବା ଛାଡ଼ିଦେଇଥିଲା । ସକାଳେ ଚାହା ଖାଇସାରି ସେ ବଡ଼ ହଲ୍ ଘରକୁ ଗଲା । ସେଘରେ କଥା କହିଲେ ଭାରି ଘାଉଁ ଘାଉଁ ଶୁଭେ ବୋଲି ସେଘର ତାକୁ ବେଶି ଭଲ ଲାଗେ । ତାପରେ ସେ ଘରେଯାଇ ଗୀତ ଗାଇବା ଅଭ୍ୟାସ ଚଳେଇଲା । ସଙ୍ଗୀତର ପ୍ରଥମ ପାଠ ଶେଷ କରିସାରି ସେ ଘରମଝିରେ ଠିଆହୋଇ

ଯେଉଁ ଧାଡ଼ିଟାକୁ ବେଶି ଭଲଲାଗେ ସେହି ଧାଡ଼ିକ ଆହୁରି ଆହୁରି ବୋଲିଲା । ସେ ସ୍ୱରର ପ୍ରତିଧ୍ୱନିକୁ ଅତି ଆନନ୍ଦରେ ଶୁଣିଲା ସତେକି ଏ ସ୍ୱର ତାକୁ ନୂଆ । ସେ ପ୍ରକାଣ୍ଡ ଘରର ଫାଙ୍କା ଜାଗାଯାକ ସେହି ସ୍ୱରରେ ପୂର୍ଣ୍ଣ ହୋଇ ଯାଉଥାଏ, ସ୍ୱର ଆସ୍ତେ ଆସ୍ତେ ହଜି ଯାଉଥାଏ । ତାପରେ ହଠାତ୍ ତାକୁ ଭାରି ଖୁସି ଲାଗିଲା । ସେ ମନେ ମନେ କହିହେଲା "ମଣିଷ ଏତେ କାହିଁ ସେହି କଥାଟା ଭାବୁଛି ? ସେକଥା ନହେଲେ ବି ତ ସବୁ ଭଲ ଲାଗୁଛି ।" ସେ ଘରଯାକ ଏକର ସେକର ହୋଇ ବୁଲିଲା । ତଳେ ପାଦ ମାଡ଼ିଦେଲେ ବି ଗୃହଆଡ଼େ ଧାଉଁ ଧାଉଁ ଶବ୍ଦ ହୁଏ । ସେ ଖାଲି ପାଦ ପକାଇଲେ ନାହିଁ । ପ୍ରତି ପାହୁଣ୍ଡରେ ଗୋଡ଼ର ବୁଢ଼ା ଆଙ୍ଗୁଠିଠୁଁ ଗୋଇଠିଯାକେ ବଙ୍କେଇ ବଙ୍କେଇ ଚାଲିଲା (ସେ ହେଲେ ନୂଆ ଜୋତା ପିନ୍ଧିଥାଏ ଯେ ସେ ଜୋତା ତାକୁ ଭାରି ଭଲ ଲାଗୁଥାଏ ।)

ଆପଣା ସ୍ୱରକୁ ଶୁଣିବାକୁ ତାକୁ ଯେତିକି ଖୁସି ଲାଗୁଥାଏ ତଳେ ତା ଗୋଇଠିର ଦୁମ୍ ଦୁମ୍ ଶବ୍ଦର ଛନ୍ଦ ବୁଢ଼ା ଆଙ୍ଗୁଠିର ମଚ୍ ମଚ୍ ଶବ୍ଦର ପ୍ରତିଧ୍ୱନି ବି ତାକୁ ଶୁଣିବାକୁ ସେତିକି ଭଲ ଲାଗୁଥାଏ । ଦର୍ପଣ ଆଗରେ ଚାଲିଗଲା ବେଳକୁ ସେ ଦର୍ପଣକୁ ଅନାଇଲା । ତାର ମୁହଁରେ ଛବି ଯେପରିକି ତାକୁ କହୁଥାଏ "ହଁ ଏଇତ ମୁଁ । ବା ! ଭାରି ଭଲ ଦିଶୁଛି । ମୋର ଆଉ କେହି ଦରକାର ନାହିଁ ।"

ସେ ଘରୁ କଣଟାଏ ସଫାକରି ନେବାକୁ ଜଣେ ଚାକର ଭିତରକୁ ପଶି ଆସିଥାନ୍ତା, କିନ୍ତୁ ସେ ତାକୁ ପୁରାଇ ଦେଲା ନାହିଁ । ସେ କବାଟ କିଳି ଦେଲା, ତାପରେ ଘରଯାକ ବୁଲିଲା । ସେଦିନ ସକାଳେ ସେ ତାର ମନର ପୁରୁଣା ଅବସ୍ଥାକୁ ଲେଉଟି ଆସିଥିଲା । ସେହି ଅବସ୍ଥା ହେଉଛି ନିଜକୁ ପ୍ରେମ କରିବା ଓ ସେଥିପାଇଁ ଉଚ୍ଛ୍ୱସିତ ହେବା ପୁଣି ସେ ନିଜେ ବର୍ଣ୍ଣନା କଥା ନିଜେ ଭୁଣ୍ଡରେ କରି କହିଲେ "ନାତାଶାଟି କେଡ଼େ ଚମତ୍କାର ।" ନିଜ ବିଷୟ ନିଜେ ସେ ପ୍ରଥମ ପୁରୁଷରେ କହିଲା ସତେକି ଜଣେ ପୁରୁଷ ଲୋକ ତା ବିଷୟରେ କହୁଛି ସେହିପରି କଥା କହିଲା ।

ତଳେ ପିଣ୍ଡା ଉପରେ ହଲ୍ ଘର ଖୋଲିବା ବନ୍ଦ ହେଲା । କିଏ ଜଣେ ପଚାରୁଥାନ୍ତି···"ଘରେ ଅଛନ୍ତି ?" ପାଦ ଶବ୍ଦ ଶୁଭୁଥାଏ । ନାତାଶା!

ଦର୍ପଣରେ ନିଜ ଛବିକୁ ଖୋଜିଁଥାଏ କିନ୍ତୁ ସେ ନିଜକୁ ଦେଖୁ ନଥାଏ । ସେ ଦୁଆର ମୁହଁରେ ପାଦ ଶବ୍ଦ ଶୁଣିଲା । ସେ ଯେତେବେଳେ ନିଜ ସ୍ତ୍ରୀଇକୁ ଦେଖିଲା ସେ ସେ କଳାକାଠ ପଡ଼ି ଯାଇଛି । 'ସେ' ଆସିଛନ୍ତି ଏକଥା ସେ ନିଶ୍ଚିତ ଭାବରେ ମନେ ମନେ ଜାଣି ପାରିଲା ସଦର ଘରେ ଖୋଲା କବାଟ ବାଟେ ସେ ତାଙ୍କ ପାଟି ଶୁଣିଲା ।

ନାତାଶା ବିବର୍ଣ୍ଣ ଦିଶୁଥିଲା । ବିବର୍ଣ୍ଣ ଓ ତ୍ରସ୍ତ ଦେଇ ସେ ବୈଠକ ଖାନା ଘରକୁ ଚାଲି ପରି ଧାଇଁ ଯାଇ କହିଲା "ବୋଉମ, ବୋଉମ, ପ୍ରିନ୍‌ସ ଆନ୍ଦ୍ରେ ବଲ୍‌କନସ୍କି ଆସିଛନ୍ତି... । ଏ କେଡ଼େ ଭୟଙ୍କର କଥା ବୋଉ । ଏତ ଅସହ୍ୟ ! ...ମୁଁ ଚାହୁଁନାହିଁ...ପୁଣି କଲବଲ ହବାକୁ କ'ଣ କହିବ ବୋଉ ?"

କାଉଣ୍ଟେସ ତା କଥାର ଜବାବ୍ ଦେବାକୁ ବେଳ ନ ପାଉଣୁ ପ୍ରିନ୍‌ସ ଆନ୍ଦ୍ରେ ବୈଠକ ଖାନା ଘରକୁ ପଶି ଆସିଥିଲେ । ତାଙ୍କ ମୁହଁ ଧଳା ହେଲାପରି ଦିଶୁଥିଲା । ଗମ୍ଭୀର ଦିଶୁଥିଲା । ସେ ନାତାଶାକୁ ଦେଖି ପକାଇଲାକ୍ଷଣି ତାଙ୍କ ମୁହଁ ଆନନ୍ଦରେ ଉଜ୍ଜ୍ୱଳ ହୋଇଗଲା । ସେ କାଉଣ୍ଟେସ ଓ ନାତାଶାଙ୍କ ହାତ ପାପୁଲି ଚୁମ୍ବନ କରି ବସିବା ଖଟୁଲିରେ ବସି ପଡ଼ିଲେ ।

କାଉଣ୍ଟେସ କଥା ଆରମ୍ଭ କରି ଆସୁଥିଲେ...ବହୁଦିନ ପରେ ଆମର ଆଜ ପରମ ସୌଭାଗ୍ୟ ଯେ...କିନ୍ତୁ ପ୍ରିନସ ଆନ୍ଦ୍ରେ କଥାରେ ବାଧା ଦେଇ କଥା କହିଗଲେ, ଯେଉଁ କଥା ପଚାରିବାକୁ କାଉଣ୍ଟେସଙ୍କ ମନଭିତରେ ଥିଲା ସେ କଥାର ବି ଉତ୍ତର ଦେଲେ । ଜଣାଯାଉ ଥାଏ, ଯେପରିକି ତାଙ୍କ ମନ ହେଉଛି ଯେ ସେ ଯେଉଁକଥା କହିବେ ବୋଲି ଆସିଛନ୍ତି ସେ କଥାକୁ କେମିତି ଚଞ୍ଚଳ କହିଦେବେ ।

ନାତାଶାକୁ ହଠାତ୍ ଅନାଇ ଦେଇ ସେ କହିଲେ "ଯୁଦ୍ଧ ଭିତରେ ମୁଁ ଆପଣଙ୍କ ସଙ୍ଗେ ଏଇଥି ପାଇଁ ଦେଖା କରିବାକୁ ଆସି ପାରିଲି ନାହିଁ ଯେ ମୁଁ ଟିକିଏ ମୋ ବାପାଙ୍କୁ ଦେଖିବାକୁ ଯାଇଥିଲି । ତାଙ୍କ ସଙ୍ଗରେ ମୋର ଗୋଟିଏ ଭାରି ଜରୁରୀ କଥା ହେଲା କିନା, ସେଇଥିପାଇଁ ମିଁ

ଟିକିଏ ଚୁପ ରହି ସେ କାଉଣ୍ଟେସଙ୍କୁ କହିଲେ "ଆପଣଙ୍କ ସଙ୍ଗରେ ମୋର ଟିକିଏ କଥା ଅଛି, ଆଜ୍ଞା କାଉଣ୍ଟେସ" ।

କାଉଣ୍ଟେସ ଏକ ଦୀର୍ଘ ନିଃଶ୍ୱାସ ପକାଇ ମୁହଁ ତଳକୁ କଲେ ଓ କଂଷ୍ଟମଷ୍ଟେ କହିଲେ 'ହଉ କହନ୍ତୁ ।"

ନାତାଶା ଜାଣିଲେ ଯେ ସେଠୁ ଉଠିଯିବା ଉଚିତ କିନ୍ତୁ ସେଇଠି ଯାଇପାରିଲା ନାହିଁ । କି'ଣ ଯେମିତି ତାର ତଣ୍ଟି ଚିପି ଧରୁଥାଏ । ଭଦ୍ରତା, ଶିଷ୍ଟାଚାର ନମାନି ସେ ବଡ ବଡ଼ ଆଖି କରି ପ୍ରିନ୍‌ସି ଆନ୍ଦ୍ରେଙ୍କ ଆଡ଼କୁ ଅନାଇଁ ରହିଲେ ।

ଭାବୁଥାଏ, "କି'ଣ ଏଇ ସାଙ୍ଗେ ସାଙ୍ଗେ ?·· ଏହି ମୁହୂର୍ତ୍ତରେ ? ···ନା, ନା କଦାପି ଏମିତି ହେବ ନାହିଁ ।"

ସେ ପୁଣି ତା ଆଡ଼କୁ ଚାହିଁଦେଲେ । ସେହି ଚାହାଣିରୁ ସେ ନିଶ୍ଚିତ ଭାବେ ଜାଣିଲା ଯେ ସେ ଯାହା ଭାବୁଛି ସେହି କଥା ଠିକ୍ । ହଁ, ଏଇ ବର୍ତ୍ତମାନ, ଏଇ ମୁହୂର୍ତ୍ତରେ ତାର ଭାଗ୍ୟ ନିଷ୍ପତ୍ତି ହୋଇଯିବ ।

କାଉଣ୍ଟେସ ତା କାନରେ ଫୁସ୍‌ଫୁସ୍ କରି କହିଲେ "ଚାଲି ଯା ନାତାଶା, ମୁଁ ତତେ ଡାକିବ ଯେ—"

ଭୟଭୀତ ହେଲାପରି ଓ ଅନୁନୟ କଲାପରି ଆଖିରେ ନାତାଶା ପ୍ରିନ୍‌ସ ଆନ୍ଦ୍ରେ ଆଉ ତା ବୋଉକୁ ଅନାଇଲା ଆଉ ସେଠୁ ଚାଲିଗଲା ।

ପ୍ରିନ୍‌ସ ଆନ୍ଦ୍ରେ କହିଲେ-- କାଉଣ୍ଟେସ, ମୁଁ ଆସିଛି ଆପଣଙ୍କ କନ୍ୟାର ପାଣିଗ୍ରହଣ କରିବାକୁ ଆପଣଙ୍କ ଅନୁମତି ପ୍ରାର୍ଥନା କରିବି ବୋଲି ।"

କାଉଣ୍ଟେସଙ୍କ ମୁହଁ ତାତିରେ ଲାଲ ପଡ଼ିଗଲା କିନ୍ତୁ ସେ ପାଟି ଫିଟାଇଲେ ନାହିଁ । ଶେଷରେ ଶାନ୍ତ ହୋଇ ସେ କହିଲେ "ଆପଣଙ୍କ ପ୍ରସ୍ତାବ···" ।

ପ୍ରିନ୍ସ ଆନ୍ଦ୍ରେ ତୁନ ହୋଇ ବସିଥାନ୍ତି, ତାଙ୍କ ମୁହଁକୁ ଅନାଇ ଥାନ୍ତି । ସେ ପୁଣି କହିଲେ, "ଆପଣଙ୍କ ପ୍ରସ୍ତାବ···" (ତାପରେ ବିବ୍ରତ ହୋଇ ଅଟକେଇ ଅଟକେଇ ହେଲେ), ପୁଣି କହିଲେ "ଆପଣଙ୍କ ପ୍ରସ୍ତାବରେ ଆମମାନଙ୍କର ସମ୍ମତି ଅଛି ; ଆଉ···ମୁଁ ଆପଣଙ୍କ ପ୍ରସ୍ତାବକୁ ଗ୍ରହଣ କରୁଛି । ମତେ ଭାରି ଆନନ୍ଦ ଲାଗୁଛି । ଆଉ ମୋର ସ୍ୱାମୀ ମଧ୍ୟ··· ମୁଁ ଆଶା କରୁଛି ଯେ ସେ···ତେବେ ସବୁକ ଝିଅର ମତ ଉପରେ ନିର୍ଭର କରୁଛି··· ।"

ପ୍ରିନ୍ସ ଆନ୍ଦ୍ରେ କହିଲେ "ଆପଣଙ୍କ ସମ୍ମତି ପାଇ ସାରିଲେ ମୁଁ ତାଙ୍କ ସଙ୍ଗରେ ଯାଇ କଥାବାର୍ତ୍ତା କରିବି···ଆପଣଙ୍କ ସମ୍ମତି ଦେଲେ ତ !" ପ୍ରିନ୍ସ ଆନ୍ଦ୍ରେ ପଚାରିଲେ ।

"ହଁ," କାଉଣ୍ଟେସ୍ କହିଲେ । ସେ ତାଙ୍କ ଆଡ଼କୁ ହାତ ବଢ଼ାଇଦେଲେ । ପ୍ରିନ୍ସ ଆନ୍ଦ୍ରେ ତାଙ୍କ ହାତ ପାପୁଲିକୁ ଚୁମ୍ବନ କରିବାକୁ ନଇଁ ପଡ଼ିବାବେଳେ ସେ ଯେତେବେଳେ ତାଙ୍କ କପାଳରେ ଓଠ ମାଡ଼ିଦେଲେ ସେତେବେଳେ ତାଙ୍କ ହୃଦୟରେ ସ୍ନେହ ଓ ବିରାଗ ଏକାଠି ମିଶି ଯାଇଥିଲା । ତାଙ୍କର ଇଚ୍ଛା ହେଉଥିଲା ତାଙ୍କୁ ପୁଅପରି ଭଲ ପାଆନ୍ତେ । କିନ୍ତୁ ସେ ଅନୁଭବ କଲେ ଯେ ଜଣେ ଅଚିହ୍ନା ପୁରୁଷ, ତାଙ୍କୁ ଡର ମାଡ଼ୁଥାଏ, ମାଡ଼ ପଡ଼ୁଥାଏ ।

କାଉଣ୍ଟେସ୍ କହିଲେ 'ମୁଁ ନିଶ୍ଚୟ ଜାଣିଛି ଯେ ମୋ ସ୍ୱାମୀ ଏଥିରେ ସମ୍ମତ ହେବେ । କିନ୍ତୁ ଆପଣଙ୍କ ବାପା ?"

ପ୍ରିନ୍ସ ଆନ୍ଦ୍ରେ କହିଲେ "ବାପାଙ୍କ ଆଗରେ ମୋର ଉଦ୍ଦେଶ୍ୟ ମୁଁ ଜଣାଇସାରିଛି । ସେ ଖାଲି ଗୋଟିଏ ସର୍ତ୍ତ ରଖିବାକୁ ଚାହାନ୍ତି ଯେ ବର୍ଷକ ଭିତରେ ଏ ବିବାହର ହେବନାହିଁ । ମୋର ବି ଆପଣଙ୍କୁ ସେତିକି ମାଗୁଣି ।"

"ନାତାଶାର ବୟସ ତ ଖୁବ ଅଳ୍ପ, ଏକଥା ସତ ଯେ, ତେବେ —ଏତେ ଦିନଯାକେ ?"

ପ୍ରିନ୍‌ସ ଆନ୍ଦ୍ରେ ଦୀର୍ଘଶ୍ୱାସ ପକାଇ କହିଲେ "ଆଉ କିଛି ଉପାୟ ନଥିଲା" । କାଉଣ୍ଟେସ ସେଠାରୁ ଚାଲି ଯାଉ ଯାଉ କହିଲେ "ମୁଁ ତାଙ୍କୁ ଆପଣଙ୍କ ପାଖକୁ ପଠାଇ ଦେଉଛି ।"

ଝିଅ କେଉଁଠି ଅଛି ଖୋଜୁ ଖୋଜୁ ସେ କହିଲେ "ଭଗବାନ ଆମକୁ ଦୟାକର ।"

ସୋନିଆ କହିଦେଲା ନାତାଶା ତା ଶୋଇବା ଘରେ ଅଛି । ସେ ତା ବିଛଣା ଉପରେ ବସିଥାଏ । ତା ମୁହଁରେ ରକ୍ତ ନଥାଏ । ଆଖି ଶୁଖିଲା ଦିଶୁଥାଏ । ସେ ଯିଶୁଖ୍ରୀଷ୍ଟଙ୍କ ଛବି ଆଡ଼କୁ ଅନାଇଥାଏ । କ'ଣ ଭୁଣ୍ଡୁରୁ ଭୁଣ୍ଡୁରୁ କରି କହି କହି ଚଞ୍ଚଳ ତା ଛାତି ଉପରେ ଛକ ମୁଦ୍ରା କଲା । ବୋଉକୁ ଦେଖି ସେ ଡେଇଁ ପଡ଼ି ତା ଆଡ଼କୁ ଧାଇଁଗଲା ।

"କୁଆଡ଼େ ଅଇଲୁ ବୋଉ···କ'ଣ ?"

"ମା' ତାଙ୍କ ପାଖକୁ ଯା । ସେ ତତେ ଦେଖିବେ ବୋଲି କହୁଛନ୍ତି ।" କାଉଣ୍ଟେସ କହିଲେ । ନାତାଶା ଭାବିଲା ତାଙ୍କ କଥାରେ ସେମିତିକା ଜୀବନ ନାହିଁ । ଝିଅ ଦୌଡ଼ି ପଳାଇଲାବେଳେ ଦୀର୍ଘନିଃଶ୍ୱାସ ପକାଇ କାଉଣ୍ଟେସ ତିରସ୍କାର କଲାପରି ସ୍ୱର କରି ଶୋକ ଗଦ୍ ଗଦ୍ ହୋଇ ଗୁଣୁ ଗୁଣୁ ହୋଇ କହିଲେ "ହଁ ଲୋ ମା···ଯା ?"

ନାତାଶା କେମିତି ବୈଠକଖାନା ଘରେ ଯାଇ ପହଞ୍ଚିଲା ସେ କଥା ତାକୁ ପଚାରିଲେ କହିପାରି ନଥାନ୍ତା । ସେ ଦୁଆର ମୁହଁ କାଟି ଭିତରକୁ ପଶିଯାଇ ତାଙ୍କୁ ଦେଖି ଅଟକି ଯାଇ ଆପଣାକୁ ଆପେ ପଚାରିଲା "ଏପରି କ'ଣ ସମ୍ଭବ ଯେ ଏ ଅଚିହ୍ନା ନିଶିଷ୍ଠା ମୋର ଜୀବନ ସର୍ବସ୍ୱ ହୋଇଗଲା ?" ସେହି ସାଙ୍ଗେ ସଙ୍ଗେ ସେ ଆପଣାକୁ ଆପେ ଉତ୍ତର ଦେଲା "ହଁ ମୋର ସର୍ବସ୍ୱ । ଏ ପୃଥିବୀରେ ଯାହା କିଛି ସବୁଠୁଁ ସେ ମୋର ଅଧିକ ପ୍ରିୟ ।" ପ୍ରିନ୍‌ସ ଆନ୍ଦ୍ରେ ଆଖିକୁ ତଳକୁ ପୋତି ତା ଆଡ଼କୁ ଆସିଲେ ।

"ମୁଁ ଯେଉଁ ମୁହୂର୍ତ୍ତରେ ତୁମକୁ ପ୍ରଥମେ ଦେଖିଲି ସେତିକିବେଳୁ ତୁମକୁ ମୁଁ ହୃଦୟ ସମର୍ପି ଦେଇଛି । କହ, ମୁଁ ଆଶା କରିବି କି ?"

ସେ ତାକୁ ଅନାଇଲେ । ତା ମୁହଁରେ ଗୁରୁ ଗମ୍ଭୀର ଠାଣି । ଉତ୍ତେଜନାପୂର୍ଣ୍ଣ । ତା ମୁହଁ କହୁଥାଏ'' ପଚାରୁଛ କାହିଁକି ? ଯାହା ତୁମେ ନଜାଣି ରହି ନପାର ସେଠିକି ପୁଣି ସନ୍ଦେହ କରୁଛ କାହିଁକି ? ମଣିଷ ମନ ଭିତରେ ଯାହା ହେଉଛି ତାକୁ ଯେତେବେଳେ ଭାଷାରେ କହିହେବ ନାହିଁ ସେତେବେଳେ ଆଉ କଥା କହୁଛ କାହିଁକି ?''

ସେ ତାଙ୍କ ପାଖକୁ ଆସି ଅଟକି ଠିଆ ହେଲା । ସେ ତା ହାତ ଉଠାଇ ନେଇ ଚୁମ୍ବନ କଲେ ।

''ତୁମେ ମତେ ଭଲ ପାଅ ?''

''ହଁ, ହଁ'' ନାତାଶା କହିଲା, ଲାଗିଲା ଯେମିତି କି ସେ ରାଗରେ କହୁଛି । ସେ ଗୋଟାଏ ଦୀର୍ଘଶ୍ୱାସ ପକାଇଲା, ଫେର୍ ଆଉ ଗୋଟାଏ, ତାର ନିଃଶ୍ୱାସ ତରତର ହୋଇ ପଡ଼ିଲା । ତାପରେ ସେ କଇଁ କଇଁ ହୋଇ କାନ୍ଦି ପକାଇଲା ।

''କଣ ହେଲା ? କାହିଁକି କାନ୍ଦୁଛ ?''

''ଲୁହ ଆଉ ଆନନ୍ଦରୁ କାନ୍ଦି ପକାଇ ସେ କହିଲା ''ଓଃ ! ମତେ ଏତେ ଖୁସି ଲାଗୁଛି !'' ସେ ତାଙ୍କର ଆହୁରି ପାଖକୁ ନଇଁପଡ଼ିଲା, ମୁହୂର୍ତ୍ତେ ଭାବିଲା, ସତେ ଯେପରି ସେ ଜାଣି ଜାଣି ହେଉଥିଲା ଏ ସତ କି ନୁହେଁ । ତାପରେ ସେ ତାକୁ ଚୁମ୍ବନ କଲା ।

ପ୍ରିନ୍ସ ଆନ୍ଦ୍ରେ ତାର ହାତ ଧରି ପକାଇଲେ, ତାର ଆଖିକୁ ଅନାଇଲେ, ଆଉ ଆପଣା ହୃଦୟ ଭିତରେ ଆଗେ ତା' ପାଇଁ ଯେଉଁ ପ୍ରେମ ଥିଲା ତାର ଚିହ୍ନ ବି ପାଇଲେ ନାହିଁ । ତାଙ୍କର ଅନ୍ତର ଭିତରେ ହଠାତ୍ କ'ଣ ଗୋଟାଏ ପ୍ରତିକ୍ରିୟା ଘଟିଯାଇ ଥିଲାପରି ତାଙ୍କୁ ଲାଗିଲା । ସେଠି ପୂର୍ବେ ଯେଉଁ ରହସ୍ୟମୟ କବିତାମୟ କାମନାର କୁହୁକ ଥିଲା ସେତେ-ବେଳେ ସେ ଆଉ ନଥିଲା । ତା' ପରିବର୍ତ୍ତେ ତାର ପିଲାଳିଆ ମାଇପି ଦୁର୍ବଳପଣ ପାଇଁ ତାଙ୍କ ହୃଦୟ ଅସହାୟବୋଧ କରୁଥିଲା, ତାର ଅନୁରକ୍ତି ଓ ବିଶ୍ୱାସ ଦେଖି ଭୟ ଲାଗୁଥିଲା । ଚିରକାଳ ପାଇଁ ତାକୁ ଆପଣା ସଙ୍ଗେ ଏକାଠି ବାନ୍ଧି ପକାଉଥିବା ଏକ ପ୍ରକାର ଜଞ୍ଜାଳମୟ ଅଥଚ ମଧୁର କର୍ତ୍ତବ୍ୟପରାୟଣତାର ଭାବ ଥିଲା ।

ତାର ଆଖିକୁ ଅନାଇଁ ରହି ପ୍ରିନ୍‌ସ ଆନ୍ଦ୍ରେ କହିଲେ "ବର୍ଷେ ପର୍ଯ୍ୟନ୍ତ ହୋଇପାରିବ ନାହିଁ ବୋଲି ତୁମ ବୋଉ ତୁମକୁ କହିଛନ୍ତି ?"

ନାତାଶା ଭାବୁଥାଏ, "ଏ କ'ଣ ମୁଁ ସେଇ କୁନି ଝିଅଟି ? (ଯେଉଁ ନା ଧରି ମୋତେ ସମସ୍ତେ ଡାକୁଥିଲେ) ସତରେ କ'ଣ ମୁଁ ଏଇ ମୁହୂର୍ତ୍ତରୁ ଜଣକର ଘରଣୀ ହୋଇଗଲି ? ଏଇ ଅଚିହ୍ନା, ଚମତ୍କାର ବୁଦ୍ଧିମାନ ମଣିଷ ଯାହାଙ୍କୁ ମୋ' ବାପାବି ମାନ୍ୟ କରନ୍ତି, ତାଙ୍କର ସାଙ୍ଗ ସହିସା ହୋଇଗଲି ? ଏ କଣ ସତ ? ଏ କ'ଣ ସତ କଥା ଯେ ଜୀବନ ସଙ୍ଗେ ଆଉ ଖେଳ ଖେଳ ହେବ ନାହିଁ । ମୁଁ ବଡ଼ ହୋଇଗଲି ! ମୁଁ ଏଣିକ ଯେଉଁ ପଦେ କଥା କହିବି କି ଯେଉଁ ଗୋଟିଏ କାମ କରିବି ତା' ଉପରେ ଗୋଟାଏ ଦାୟିତ୍ୱ ଆସିଗଲା । ହଁ କ'ଣ ସେ ମତେ ପଚାରିଲେଟି ?"

ସେ ତାଙ୍କ ପ୍ରଶ୍ନ ବୁଝିପାରି ନଥିଲା, କହିଲା, "ନାହିଁ" । ପ୍ରିନ୍‌ସ୍ ଆନ୍ଦ୍ରେ କହିଲେ "ମତେ କ୍ଷମା କର । ତୁମେ ଏତେ ସାନ, ଆଉ ଜୀବନ ବିଷୟରେ ମୋର ଏତେ ଅଭିଜ୍ଞତା ଅଛି । ମତେ ତମକୁ ଦେଖି ଡର ମାଡୁଛି । ତୁମେ ନିଜକୁ ଚିହ୍ନିନାହଁ ।"

ନାତାଶା ଏକ ମନରେ ଧ୍ୟାନ ଦେଇ ଶୁଣିଲା । ତାଙ୍କ କଥାର ଅର୍ଥ ବୁଝିବାକୁ ଚେଷ୍ଟାକଲା । କିନ୍ତୁ ସେ କ'ଣ କହୁଛନ୍ତି କିଛି ବୁଝିପାରିଲା ନାହିଁ ।

ପ୍ରିନ୍‌ସ ଆନ୍ଦ୍ରେ କହିଲେ "ସେହି ବର୍ଷଟା ମୋର ଡେରିକରି ଦେବ । ମତେ ଯେତେ ଅସହ୍ୟ ଲାଗୁଥାଉଛି ସେହି ସମୟ ଭିତରେ ତୁମେ ତୁମ ମନକୁ ନିଶ୍ଚିତ କରି ଜାଣିପାରିବ । ମୁଁ ତୁମକୁ ପ୍ରାର୍ଥନା କରୁଛି ।

ବର୍ଷେ ଗଲେ ତୁମେ ମୋର ଜୀବନକୁ ଆନନ୍ଦମୟ କରିବ କିନ୍ତୁ ତୁମେ ମୁକ୍ତ, ଆମର ଏ ପ୍ରସ୍ତାବକୁ ଗୁପ୍ତ ରଖାଯିବ । ତୁମେ ଯଦି ଅନୁଭବ କରିବ ଯେ ତୁମେ ମତେ ଭଲପାଉନ କିମ୍ବା ତୁମେ ଯଦି ଆଉ କାହାକୁ..." ପ୍ରିନ୍‌ସ ଆନ୍ଦ୍ରେ ଟାଣି ଓଟାର ମୁରୁକି ହସି କହିଲେ ।

ନାତାଶା ବାଧାଦେଇ କହିଲେ "ତୁମେ କାହିଁକି ଏପରି କହୁଚ ? ତୁମେତ ଜାଣିଛ ଯେ ତୁମେ ଯେଉଁଦିନ ଅଟ୍ରାଡ୍ନେକୁ ପ୍ରଥମେ ଆସିଲ ସେଦିନରୁ ମୁଁ ତମକୁ ଭଲପାଇଛି ।" ସେ ଠାଣକରି ନିଜେ ନିଜର ବିଶ୍ୱାସ ଜଣାଇଲେ ଯେ ସେ ଯାହା କହୁଛି ସତ କହୁଛି ।

"ଗୋଟାଏ ବର୍ଷରେ ତୁମେ ନିଜକୁ ଚହ୍ନି ସାରିଥିବ..." ନାତାଶା ହଠାତ୍ ଚିତ୍କାର କଲେ, "ଗୋ...ଟା...ଏ ବର୍ଷ !"

"ଏତିକବେଳେ କିଁ ସେ ତାଙ୍କର କଥାରୁ ବୁଝିଲା ଯେ ତାଙ୍କ ବିଭାଘର ବର୍ଷେ ଘୁଞ୍ଚିଯିବ ?"

କାହିଁକି ଡେରିହେବ ତା'ର କାରଣ ପ୍ରିନ୍ସ ଆନ୍ଦ୍ରେ ତାକୁ ବୁଝାଇବାକୁ ଚେଷ୍ଟା କଲେ । ନାତାଶା ଆଉ ଶୁଣିଲା ନାହିଁ ।

"ବର୍ଷେ ଡେରି ନହେଲେ ଚଳିବ ନାହିଁ ?" ସେ ପଚାରିଲା । ପ୍ରିନସ ଆନ୍ଦ୍ରେ ଉତ୍ତର ଦେଲେ ନାହିଁ । କିନ୍ତୁ ତାଙ୍କ ମୁହଁ ଦେଖି ଜଣାଗଲା ଏ ନିଷ୍ପତ୍ତି ବଦଳାଇବା ଅସମ୍ଭବ ।

ନାତାଶା ହଠାତ ଚିତ୍କାର କଲେ "ଓଃ ! କେଡ଼େ ଭୟାନକ କଥା ! କି ଭୟାନକ !" ସେ କଇଁ କଇଁ ହୋଇ କାନ୍ଦିଲା । କହିଲେ "ବର୍ଷେ ଅପେକ୍ଷା କରିବାକୁ ହେଲେ ମୁଁ ମରିଯିବି । ଏ ଅସମ୍ଭବ କଥା । ଏ ଭୟଙ୍କର ।" ସେ ତାର ପ୍ରଣୟୀପର ମୁହଁକୁ ଅନାଇଁ ଦେଲା । ସେଠି ଦେଖିଲା ସହାନୁଭୂତିର ବେଦନା ଓ କିଂକର୍ତ୍ତବ୍ୟବିମୂଢ଼ ଅବସ୍ଥା ।

ହଠାତ ସେ ତାର ଲୁହ ବନ୍ଦକରି କହିଲା "ନା ନା, ଯାହା କହିବ ତା ମୁଁ କରିବି । ମୁଁ କେଡ଼େ ଖୁସି ।"

ତାର ବାପା ମା ସେ ଘର ଭିତରକୁ ଆସି ବାଗଦତ୍ତ ଦମ୍ପତିଙ୍କୁ ଆଶିର୍ବାଦ କଲେ । ସେଦିନଠାରୁ ନାତାଶାର ଭାବୀସ୍ୱାମୀ ଓ ପ୍ରଣୟୀ ହୋଇ ପ୍ରିନ୍ସ ଆନ୍ଦ୍ରେ ରୋଷ୍ଟଭ୍ ପରିବାରଙ୍କ ଘରକୁ ଯା ଆସ କଲେ ।

କୌଣସି ନିବନ୍ଧ ହେଲା ନାହିଁ, କିମ୍ବା ପ୍ରିନ୍ସ ଆନ୍ଦ୍ରେ ବଲ୍‌କନସ୍କିଙ୍କ ସଙ୍ଗରେ ନାତାଶାଙ୍କର ବିଭାଘର ଠିକ ହୋଇଗଲା ବୋଲି ପଦାରେ ଘୋଷଣା କରାହେଲା ନାହିଁ, କାରଣ—ପ୍ରିନ୍ସ ଆନ୍ଦ୍ରେ କଥାଟିକୁ

ସେମିତି ଧରିଲେ । ସେ କହିଲେ ଯେ ତାଙ୍କ ବାହାଘର ତାଙ୍କର ଯୋଗୁ ଘୁଞ୍ଚିଗଲା । ତେଣୁ ସେ ସମ୍ପର୍କରେ ସବୁଯାକ ଦାୟିତ୍ୱ ସେ ତୁଲାଇବା ହିଁ ଉଚିତ । ସେ କହିଲେ ଯେ, ସେ ତ ଜବାବ ଦେଇଛନ୍ତି; ତେଣୁ ନିଜ ବଚନରେ ସେ ନିଜେ ବନ୍ଧା । କିନ୍ତୁ ନାତାଶାକୁ ବାନ୍ଧି ରଖିବା ତାଙ୍କର ଇଚ୍ଛା ନୁହେଁ, ସେ ତାକୁ ପୂର୍ଣ୍ଣ ସ୍ୱାଧୀନତା ଦେବାକୁ ଚାହାନ୍ତି । ଆଉ ଛ' ମାସ ପରେ ସେ ଯଦି ଭାବିବ ଯେ ତାଙ୍କ ପ୍ରତି ତାର ଅନୁରାଗ ନାହିଁ । ତେବେ ତାଙ୍କୁ ବିଭା ହେବାକୁ ମନା କରିଦେବାକୁ ତାର ପୂର୍ଣ୍ଣ ଅଧିକାର ରହିବ । ଏକଥା କହିବା ଅନାବଶ୍ୟକ ଯେ ଏପରି ଘଟିବାର ସମ୍ଭାବନା ଥାଇପାରେ ବୋଲି ଶୁଣିବାକୁ ବି ନାତାଶା କି ତାର ବାପ ମା'ଙ୍କର ମନ ନଥିଲା; କିନ୍ତୁ କିଦ୍ ପ୍ରିନ୍ସ ଆନ୍ଦ୍ରେ ଧରିଲେ ଯେ ସେ ଯେପରି କହୁଛନ୍ତି ସେପରି କରିବାକୁ ହିଁ ହେବ । ପ୍ରତିଦିନ ପ୍ରିନ୍ସ ଆନ୍ଦ୍ରେ ରୋସ୍ତଭ ପରିବାରଙ୍କ ଘରକୁ ଆସନ୍ତି କିନ୍ତୁ ନାତାଶା ତାଙ୍କର ସ୍ତ୍ରୀ ହେବାକୁ ବାଗଦତ୍ତା ଏପରି ବ୍ୟବହାର ସେ କରନ୍ତି ନାହିଁ । ସେ ତା ସଙ୍ଗରେ ମାମୁଲି କଥାଭାଷା ହୁଅନ୍ତି ଓ ତାର ହାତ ପାପୁଲିରେ ଚୁମ୍ବନ କରନ୍ତି । ପ୍ରିନ୍ସ ଆନ୍ଦ୍ରେ ବିବାହ ପ୍ରସ୍ତାବ କରିବା ଦିନଠାରୁ ନାତାଶା ସହିତ ତାଙ୍କର ସମ୍ବନ୍ଧ ଆଗଠୁ ସମ୍ପୂର୍ଣ୍ଣ ଭିନ୍ନ ହୋଇ ଯାଇଥିଲା । ତାଙ୍କ ଭିତରେ ସମ୍ପର୍କ ବଡ଼ ସରଳ ହୋଇଥିଲା କିନ୍ତୁ ଅତି ଘନିଷ୍ଠ ଥିଲା । ଲାଗୁଥାଏ ଯେପରିକି ଯୋଦିନ ପର୍ଯ୍ୟନ୍ତ ସେମାନେ ପରସ୍ପରକୁ ଚିହ୍ନି ନଥିଲେ । ସେମାନେ ଯେତେବେଳେ କେହି କାହାର କିଛି ହୋଇନଥିଲେ ସେତେବେଳେ ଦିନଗୁଡ଼ିକ ସ୍ମରଣ କରିବା-ପାଇଁ ବି ଜଣଙ୍କୁ ଭାରି ଭଲ ଲାଗୁଥିଲା । ବର୍ତ୍ତମାନ ଉଭୟଙ୍କୁ ଲାଗୁଥିଲା ସେମାନେ ସମ୍ପୂର୍ଣ୍ଣ ବଦଳି ଯାଇଛନ୍ତି । ଆଗେ ସେମାନେ ଲୋକଦେଖାଣିଆ ଥିଲେ । ବର୍ତ୍ତମାନ କେବଳ ସରଳ ଆଉ ଆନ୍ତରିକତା ପୂର୍ଣ୍ଣ । ପ୍ରଥମେ ପ୍ରିନ୍ସ ଆନ୍ଦ୍ରେଙ୍କ ସମ୍ପର୍କରେ ରୋସ୍ତଭ ପରିବାରରେ ଟିକିଏ ଅଡୁଆ ଅଡୁଆ ଲାଗୁଥିଲା । ଲାଗୁଥିଲା ଯେପରିକି ସେ ଏ ପୃଥିବୀରେ ଲୋକ ନୁହଁନ୍ତି, ଆଉ କେଉଁ ପୃଥିବୀରେ ମଣିଷ । ନାତାଶା ବହୁତ ବେଳଯାକେ ଚେଷ୍ଟା କରି ତା ଲୋକମାନଙ୍କୁ ବୁଝାଇବାକୁ ଚେଷ୍ଟା କରୁଥିଲା ପ୍ରିନ୍ସ ଆନ୍ଦ୍ରେ କିପରି ମଣିଷ । ସେ ଗର୍ବରେ ସମସ୍ତଙ୍କ ଆଗରେ କହୁଥିଲା ଯେ ସେ ସେମିତି ଅଲଗା ଅଲଗା ଜଣାପଡ଼ୁଛନ୍ତି ସିନା

ପ୍ରକୃତରେ ଅନ୍ୟମାନେ ଯେମିତ ସେ ବି ସେମିତି, ସେ ତାଙ୍କୁ ଭୟ କରେ ନାହିଁ ଆଉ ଅନ୍ୟ କେହିବି ତାଙ୍କୁ ଡରିବା ଦରକାର ନାହିଁ । କେତେ ଦିନ ଗଲାରୁ ପରିବାରର ଅନ୍ୟମାନଙ୍କର ତାଙ୍କୁ ଦେଖି ଦେଖି ଅଭ୍ୟାସ ହୋଇଗଲା । ସେମାନେ ନିସଙ୍କୋଚରେ ସେମାନଙ୍କ ଅଭ୍ୟସ୍ତ ଚଳଣି ଚଳି ଲାଗିଲେ, ସେଥିରେ ସେ ବି ଅଂଶ ନେଲେ । ପ୍ରିନ୍‌ସ ଆନ୍ଦ୍ରେ ଜାଣିଥିଲେ ଯେ କାଉଣ୍ଟେଙ୍କ ସଙ୍ଗେ କଥାଭାଷା କଲାବେଳେ ତାଙ୍କ ଜମିଦାରୀ ଚଳାଇବା ବିଷୟରେ କେମିତି କଥାଭାଷା ହେବାକୁ ପଡ଼ିବ । କାଉଣ୍ଟେସ୍‌ଙ୍କ ସଙ୍ଗେ ଓ ନାତାଶା ସଙ୍ଗରେ କଥା କହିଲାବେଳେ କେମିତି ପୋଷାକପତ୍ର ବିଷୟରେ କଥା କହିବାକୁ ପଡ଼ିବ ଆଉ ସୋନିଆ ସଙ୍ଗରେ କଥାବାର୍ତ୍ତା ହେଲାବେଳେ କେମିତି ତାର ଛୁଞ୍ଚିକାମ ବିଷୟରେ ଓ ତାର ଛବି ବହି ବିଷୟରେ କଥାଭାଷା ହେବାକୁ ପଡ଼ିବ । ବେଳେ ବେଳେ ରୋଷ୍ଟଭ୍ ପରିବାରର ଲୋକେ ନିଜ ନିଜ ଭିତରେ କଥା ପକାଉଥିଲେ ଓ ପ୍ରିନସ ଆନ୍ଦ୍ରେ ଥାଇବି କଥା ପକାଉଥିଲେ ଯେ ଏସବୁ କେମିତି ଆଶ୍ଚର୍ଯ୍ୟ ପ୍ରକାରେ ଘଟିଗଲା ଓ ପୁଣି ଯେଉଁ କଥା ଘଟିବ ବୋଲି ଆଗରୁ ଏ ଘଟଣାମାନ ତାର ସୂଚନା ସେସବୁ କେଡ଼େ ଆଶ୍ଚର୍ଯ୍ୟ କଥା । ପ୍ରିନ୍‌ସ ଆନ୍ଦ୍ରେ କେମିତି ଅଟ୍ରାଡନନୋକୁ ଆସିଲେ, ସେମାନେ ସମସ୍ତେ କେମିତି ପିଟର୍ସବର୍ଗକୁ ଆସିଲେ ଓ ଆଉ ଅନେକ ଘଟଣା ଯାହା ସେହି ଭବିତବ୍ୟରେ ସେ ବିଷୟରେ ସେମାନେ କଥା ପକାନ୍ତି ।

ଘରେ ବିବାହର ନିର୍ବନ୍ଧ ହୋଇ ସାରିଥିବା ଯୁବକ ଯୁବତୀ ଥିଲେ ଘରର ବାତାବରଣ ଯେପରି କାବ୍ୟମୟ ହୋଇ ଚୁପଚାପ ଆଉ ମାନ୍ଦା ମାନ୍ଦା ଲାଗେ ଘରର ବାତାବରଣ ସେହିପରି ଲାଗୁଥାଏ । ଅନେକଥର ଏପରି ହୁଏ ଯେ ସମସ୍ତେ ଏକାଠି ବସିଥିବେ ଅଥଚ ସମସ୍ତେ ଚୁପ । ବେଳେବେଳେ ଅନ୍ୟମାନେ ଉଠି ଚାଲିଯାଆନ୍ତି ; ଏ ଦିହେଁ ବସିଥାନ୍ତି, କିନ୍ତୁ ଲୋକ ଥିଲାବେଳେ ସେମାନେ ଯେମିତି ତୁନିତାନିଥାନ୍ତି ଲୋକ ଚାଲିଗଲେ ବି ସେମିତି, କାହାରି ତୁଣ୍ଡରେ କଥା ପଦେ ନାହିଁ । ସେମାନେ ସେମାନଙ୍କର ଭବିଷ୍ୟତରେ ଏକାଠି ଘରକରଣା କଥା କ୍ୱଚିତ ପକାନ୍ତି । ସେ ବିଷୟରେ କଥା କହିବାକୁ ପ୍ରିନ୍‌ସ ଆନ୍ଦ୍ରେଙ୍କୁ ଲାଜମାଡ଼େ ଆଉ ଡର ବି ମାଡ଼େ । ତାଙ୍କୁ କେମିତି ଲାଗୁଛି ଯେ ନାତାଶା ଜାଣିପାରେ ସେ ତାଙ୍କର

ସବୁ ମନକଥା ବାରିପାରେ, ସେ ଯେମିତି ଯାହା ମନରେ ଭାବନ୍ତି ସେ ସେହିପରି ଭାବେ । ପରେ ସେ ତାଙ୍କୁ ତାଙ୍କ ପୁଅ କଥା ପଚାରିଲା ।

ପ୍ରିନ୍‌ସ ଆନ୍ଦ୍ରେ ଲଜ୍ଜାରେ ନାଲି ପଡ଼ିଗଲେ । ସେତେବେଳେ ସମୟରେ ଏଇଟା ତାଙ୍କର ସବୁବେଳେ ହୁଏ, ନାତାଶାକୁ ବି ଦେଖିବାକୁ ଭଲ ଲାଗେ । ଆନ୍ଦ୍ରେ କହିଲେ ଯେ ତାଙ୍କ ପୁଅ ସେ ଦୁହିଁଙ୍କ ସଙ୍ଗରେ ରହିବ ନାହିଁ ।

ନାତାଶା ଗ୍ଭନଆ ହୋଇ କହିଲା "କାହିଁକି ରହିବ ନାହିଁ ?" ମୁଁ ତାକୁ ତାଙ୍କ ଅଜା ପାଖରୁ କେମିତି ଅନ୍ତର କରି ଆଣିବି···ତା ଛଡ଼ା···" ନାତାଶା ତାଙ୍କ ମନକଥା ଜାଣିପାରି କହିଲା ମୁଁ ତାକୁ କେତେ ଶରଧା ନ କରିଥାନ୍ତି ! ତେବେ ମୁଁ ତ ଜାଣେ କାଳେ ଆମକୁ କିଏ କେଉଁ କଥାରେ କେବେ ଦୋଷ ଦେବ ତାତ ତୁମେ କବଇ ଦେବ ନାହିଁ ।'

ବେଳେବେଳେ ବୁଢ଼ା କାଉଣ୍ଟେ ପ୍ରିନ୍‌ସ ଆନ୍ଦ୍ରେଙ୍କ ପାଖକୁ ଆସି ତାଙ୍କ କପାଳରେ ଚୁମ୍ବନ କରି ପେଟ୍ୟାର ପାଠପଢ଼ା କି ନିକୋଲେର ଚାକିରି ବିଷୟରେ କୌଣସି ସମସ୍ୟାରେ ତାଙ୍କ ପରାମର୍ଶ ମାଗନ୍ତି । ସେମାନଙ୍କ ଆଡ଼କୁ ଅନାଇଲେ ବୁଢ଼ା କାଉଣ୍ଟେ ଦୀର୍ଘଶ୍ୱାସ ପକାନ୍ତି । କାଳେ ତାଙ୍କୁ ଅଡୁଆ ଲାଗିବ ବୋଲି ସୋନଆ ତାଙ୍କ ଦୁହିଁଙ୍କ ମଝିକି ଆସିବାକୁ ଡରେ । ତାଙ୍କର ଏକୁଟିଆ ରହିବାକୁ ଇଚ୍ଛା ଥିଲେ ସୁଦ୍ଧା ତାଙ୍କୁ ଏକୁଟିଆ ଛାଡ଼ିଦେଇ ସୋନଆ କୌଣସି ଗୋଟାଏ ପଡଆର ବାହାର କରି ଚାଲିଯାଏ । ପ୍ରିନ୍‌ସ ଆନ୍ଦ୍ରେ କଥା କହିଲାବେଳେ ସେ ବିଷୟ ଗୁଡ଼ିକ ଭାରି ସୁନ୍ଦର ଭାବେ ବର୍ଣ୍ଣନା କରିପାରନ୍ତି । ନତାଶା ସେଥିପାଇଁ ଟର୍ବ ଅନୁଭବ କରେ ଓ ତାଙ୍କ କଥାକୁ ମନଦେଇ ଶୁଣେ । ସେ ନିଜେ ଯେତେବେଳେ କଥା କହେ ସେ ମନେ କରେ ଯେ ପ୍ରିନସ ଆନ୍ଦ୍ରେ ତାକୁ ଅତି ମନ ଧ୍ୟାନ ଦେଇ ନିରେଖି ଚାହିଁ ତା କଥାକୁ ଶୁଣନ୍ତି । ତାକୁ ଖୁସି ଲାଗେ, ଡର ବି ମାଡ଼େ । ସେ ଧନ୍ଦ ହୋଇ ନିଜକୁ ପଚାରେ, ଯେ ମୋଠି କ'ଣ ଅଛି- ବୋଲି ଖୋଜ ହେଉଛନ୍ତି ? ତାଙ୍କର ଏ ଚାହାଣିରେ କେଉଁ କେଉଁ କ'ଣ ସେ ଜଣାଉଛନ୍ତି ? ସେ ଏଇ ଚାହାଣୀରେ ଯାହା ମୋଠି ଖୋଜୁଛନ୍ତି ତାହା ଯଦି ମୋଠି ନଥିବ ତେବେ କ'ଣ ହେବ ?" ତାର ସ୍ୱଭାବ ଥିଲା

ଉତ୍ତାନ ଆନନ୍ଦ ଖେଳାଇବା । ବେଳେବେଳେ ସେ ସେଇ ପୁରୁଣା ସ୍ୱଭାବରେ ମତ୍ତ ଥାଏ । ତାର ସେତେବେଳ ଅବସ୍ଥାରେ ଶୀଘ୍ର ଆନ୍ଦ୍ରେ ହସ ଦେଖିବାକୁ ତାଙ୍କୁ ବିଶେଷ ଭଲ ଲାଗୁଥିଲା । ସେ କ୍ୱଚିତ୍ ବଡ଼ ପାଟିରେ ହସନ୍ତି କିନ୍ତୁ ଯେତେବେଳେ ହସନ୍ତି ସେତେବେଳେ ସେ ହସରେ ହସରେ ଆପଣାକୁ ହସାଇ ଦିଅନ୍ତି ଆଉ ସେଇ ହସ ଦ୍ୱାରାହିଁ ନାତାଶାକୁ ତାଙ୍କ ଆଡ଼କୁ ଓଟାରି ନେଉଛନ୍ତି, ଏହିପରି ନାତାଶାକୁ ଲାଗେ । ନାତାଶାର ଆଗରେ ଥିଲା ବିଚ୍ଛେଦର ଦୁଃଖ । ସେତକ କଟିଲେ ତାର ଆନନ୍ଦ ସମ୍ପୂର୍ଣ୍ଣ ହୋଇଥାନ୍ତା । ଏଇ ବିଚ୍ଛେଦର ଦୁଃଖ ପାଖହୋଇ ଆସୁଥାଏ, ତାକୁ ଡର ମାଡୁଥାଏ । ସେ କଥା ଭାବିଲା କ୍ଷଣି ପ୍ରିନ୍‌ସ ଆନ୍ଦ୍ରେବି ଦିବ ଯାଉଥାନ୍ତି । ବିବର୍ଣ୍ଣ ହୋଇ ଯାଆନ୍ତି ।

ବଲ୍ ନାଚ ଦିନଠୁଁ ପିଏରେ ଆଉ ରୋସ୍ତଭ ପରିବାରଙ୍କ ଘରକୁ ଆସି ନଥିଲେ । ପ୍ରିନ୍‌ସ ବର୍ଗ ଛାଡ଼ିବା ଆଗଦିନ ପ୍ରିନସ ଆନ୍ଦ୍ରେ ତାଙ୍କୁ ସଙ୍ଗରେ ଧରି ଆସି ପହଞ୍ଚିଲେ । ପିଏରେ ଅନ୍ୟମନସ୍କ ଓ ବିବ୍ରତ ଦିଶୁଥିଲା । ସେ ଖାଲି କାଉଣ୍ଟେସଙ୍କ ସଙ୍ଗେ କଥା ହେଲା । ନାତାଶା ସୋନିଆକୁ ଧରି ଚେସ ଖେଳ ପାଖରେ ବସିଥିଲେ । ତାଙ୍କ ସଙ୍ଗରେ ଖେଳିବାକୁ ସେ ଆନ୍ଦ୍ରେଙ୍କୁ ଡାକିଲେ । ସେ ତାଙ୍କ ଦୁହିଁଙ୍କ ପାଖକୁ ଗଲେ । ନାତାଶା ପଚାରିଲା "ତେମେ ଦିହେଁତ ବେଜୁଖଭଙ୍କୁ ବହୁତ ଦିନୁ ଜାଣିଛ କହିଲ, ସେ ତମକୁ ଭଲ ଲାଗନ୍ତି ନାହିଁ ?"

"ଭାରି ଭଲ ଲୋକ, ହେଲେ ଭାରି ବେଆଡ଼ା ।"

ଲୋକେ ପିଏରେଙ୍କ କଥା ପଡ଼ିଲେ ଯେମିତି ତାର ଅନ୍ୟମନସ୍କ ପଣ ବିଷୟରେ କାହାଣୀ କହନ୍ତି ନାତାଶା ବି କାହାଣୀ କହିବାକୁ ଆରମ୍ଭ କଲା । କିନ୍ତୁ କାହାଣୀ ଗୋଟାକ ସେ ଗଢ଼ି ନାହିଁ, ସେ ସବୁ ଅନ୍ୟମାନେ ଗଢ଼ିବା କଥା । ପ୍ରିନ୍‌ସ ଆନ୍ଦ୍ରେ କହିଲେ "ଜାଣିଲେ ଆମ ଭିତରେ ଗୋପନ କଥାଟି ମୁଁ ପିଏରକୁ ବିଶ୍ୱାସରେ କହିଦେଇଛି । ତା ପିଲାଟି ଦିନୁ ମୁଁ ତାକୁ ଚିହ୍ନିଛି । ତାର ହୃଦୟଟା ସୁନା ।" ହଠାତ୍ ଗମ୍ଭୀର ହୋଇ ସେ କହିଲେ "ଶୁଣ ନାତାଲି, ମୁଁ ତ ଯାଉଛି ଭଗବାନ ଜାଣନ୍ତି କ'ଣ ହେବ । ତୁମର ପରିବର୍ତ୍ତନ ଘଟିପାରେ···ନା ନା ମୁଁ ସେମିତି

କହିବା ଅନ୍ୟାୟ, ମୁଁ ଜାଣେ ଖାଲି ଗୋଟାଏ କଥା ଯେ ମୁଁ ନଥିଲାବେଳେ
ତୁମର ଯଦି କିଛି ହୁଏ...''
''କଣ ହେବ ?''
''ଯଦି କେବେ କୌଣସି ବିଷୟରେ ଦୋଦୁଲ୍ୟମାନ ଅବସ୍ଥାରେ ପଡ଼ିବ । ମନେ ରଖିଥିବେ, କାଳେ ଯଦି କେତେବେଳେ କିଛି ଘଟିବ । ତେବେ ମୋର ଅନୁରୋଧ ସେଇ ପିଏରର ସାହାଯ୍ୟ ଓ ପରାମର୍ଶ ସକାଶେ ତାହାର ପାଖକୁ ଯିବ । ଆଉ କାହା ପାଖକୁ ନୁହେଁ । ସେ ଗୋଟାଏ ଘର 'ଅନ୍ୟମନସ୍କ ମଣିଷ, ଅଖାଡୁଆ ମଣିଷ, କିନ୍ତୁ ଏପରି ବିଶ୍ୱାସୀ ହୃଦୟ ମଣିଷ ଏ ସଂସାରରେ ଆଉ କାହାର ନାହିଁ ।''
ନାତାଶାର ଉପରେ ବିଚ୍ଛେଦର ଦୁଃଖର ପ୍ରଭାବ କିପରି ହେବ ତାର ବାପ ମା ସୋନିଆ କି ପ୍ରିନ୍ସ ଆନ୍ଦ୍ରେ କେହି ଆଗରୁ କଳ୍ପନା କରି ପାରି ନଥିଲେ । ସେଦିନ ଗୋଟାକଯାକ ସେ ଘରସାରା ବୁଲୁଥାଏ । ମୁହଁ ନାଲି ପଡ଼ି ଯାଇଥାଏ । ସେ ଉତ୍ତେଜିତ ଦିଶୁଥାଏ । ଆଖିରେ ଲୁହ ନଥାଏ । ଅତି ତୁଚ୍ଛ କଥାକୁ ନିଜେ ଦେଇ ବ୍ୟସ୍ତ ରହୁଥାଏ । ସତେ ଯେପରି ତାର ଉପସ୍ଥିତ କର୍ତ୍ତବ୍ୟ ବିଷୟରେ ଜ୍ଞାନ ହଜିଯାଇଛି । ତା ପାଖରୁ ଗଲାବେଳେ ପ୍ରିନ୍ସ ଆନ୍ଦ୍ରେ ଯେତେବେଳେ ଶେଷଥର କି ତାର ହାତ ପାପୁଲିରେ ଚୁମ୍ବନ କଲେ ସେତେବେଳେ ବି ନାତାଶା କାନ୍ଦିଲା ନାହିଁ ।
''ଯାଅ ନାହିଁ ।'' ଏତିକି ଖାଲି ସେ କହିଲା । ସେତିକି ସେ ଏପରି ସ୍ୱରରେ କହିଲା ଯେ ସେ ଦ୍ୱନ୍ଦରେ ପଡ଼ି ଭାବିଲେ ଯେ ପ୍ରକୃତରେ ଯିବା ତାଙ୍କର ଉଚିତ ହେବ କି ନାହିଁ । ବହୁ କାଳ ପର୍ଯ୍ୟନ୍ତ ତାର ସେଇ ସ୍ୱର ତାଙ୍କର ମନେ ପଡ଼ୁଥିଲା । ସେ ଚାଲିଗଲା ପରେ ନାତାଶା କାନ୍ଦିଲା ନାହିଁ କିନ୍ତୁ ବହୁତ ଦିନ ପର୍ଯ୍ୟନ୍ତ ସେ ତା ବଖରାରେ ବସିରହିଥାଏ, କାନ୍ଦୁଥାଏ, କିନ୍ତୁ କୌଣସି କଥାରେ ତାର ମନ ନଥାଏ ଆଉ ମଝିରେ ମଝିରେ କହେ...''ଓଃ କାହିଁକି ସେ ଚାଲିଗଲେ ।'' କିନ୍ତୁ ସେ ଯିବାର ପନ୍ଦର ଦିନ ପରେ ସେ ହଠାତ୍ ତାର ଏ ମନର ବେମାରିରୁ ଝାଡ଼ିଝୁଡ଼ି ହୋଇ ଭଲ ହୋଇଯାଇ ଉଠିପଡ଼ିଲା । ତା ଦେଖି ସମସ୍ତେ କାବା ହେଲେ । ପୁଣି ସେ ଯେମିତି ଆଗେ ଥିଲା ସେମିତି ହୋଇଗଲା । କେବଳ ତାର ସ୍ୱରୂପଟା ଟିକିଏ ବଦଳିଗଲା, ସେହି ଯେପରି ପିଲାଏ ବହୁତ ଦିନ ବେମାରିରେ ପଡ଼ି ପଡ଼ି ଉଠିଲେ ଦିଶେ ସେହିପରି ।

# ଯୁଦ୍ଧ ଓ ଶାନ୍ତି | ଷଷ୍ଠ ଭାଗ

ଶୀତ ଋତୁର ଆରମ୍ଭରେ ପ୍ରିନ୍‌ସ ନିକୋଲ ଆନ୍ଦ୍ରେଇଚ ବଲକନସ୍କି ଓ ତାଙ୍କ ଝିଅ ମସ୍କୋ ସହରରେ ଯାଇ ରହିଲେ ।

ସେହି ବର୍ଷ ଭିତରେ ପ୍ରିନସ ବହୁତ ବୁଢ଼ା ହୋଇଯାଇଥାନ୍ତି । ତାଙ୍କ ଶକ୍ତି ଦିନୁ ଦିନ ସରି ସରି ଆସୁଛି ବୋଲି ତାଙ୍କ ହାବଭାବରୁ ନାନା ସଙ୍କେତରୁ ନିର୍ଭୁଲ ହୋଇ ଜଣାପଡ଼ି ଯାଉଥାଏ । ହଠାତ୍ ସେ ତନ୍ଦ୍ରାରେ ଆଚ୍ଛନ୍ନ ହୋଇ ପଡ଼ନ୍ତି । ଅତି ଅଳ୍ପଦିନ ତଳର ଘଟଣା ବି ସେ ପାଶୋରି ପକାନ୍ତି । ବହୁତ ପୁରୁଣା କଥା ସେ ଅବିକଳ ମନେପକାଇ ପାରନ୍ତି । ପ୍ରିନସ ଆନ୍ଦ୍ରେ ଫେରିବା ଦିନ ଓ ତାଙ୍କ ବାହାଘରର ଦିନ ପାଖ ହୋଇ ଆସୁଥାଏ । ଆଜି କାଲି ବୁଢ଼ା ପ୍ରିନ୍‌ସଙ୍କ ମଗଜ ଥଣ୍ଡା ରହୁନଥାଏ । କାଉଣ୍ଟ ରୋସ୍ତଭଙ୍କ ଝିଅର ନାଁ ପଡ଼ିଲେ ହିଁ ବୁଢ଼ା ପ୍ରିନ୍‌ସ ଚିଡ଼ି ଉଠନ୍ତି ।

ଜାନୁଆରି ଶେଷ ଆଡ଼କୁ ନାତାଶା ଓ ସୋନିଆଙ୍କୁ ନେଇ କାଉଣ୍ଟ ଇଲିଆ ଆନ୍ଦ୍ରେଇଚ୍ ରୋସ୍ତଭ ମସ୍କୋରେ ପହଞ୍ଚିଲେ । କାଉଣ୍ଟେସଙ୍କ ଦେହ ଅସୁସ୍ଥ ଥାଏ । ସେ କୁଆଡ଼େ ବାହାରି ପାରୁ ନଥାନ୍ତି କିନ୍ତୁ ପ୍ରିନସ ଆନ୍ଦ୍ରେ ଯେ କୌଣସି ଦିନ ମସ୍କୋରେ ପହଞ୍ଚିବେ ବୋଲି କାଉଣ୍ଟେସ ଭଲ ହୋଇ ସାରିବାଯାଏ ସେମାନେ ଆଉ ଅପେକ୍ଷା କରିପାରିଲେ ନାହିଁ । ତା ଛଡ଼ା ତାଙ୍କର ଆଉ କେତେକ ଜରୁରୀ କାମ ଥାଏ । ବିଭାଘର ପୋଷାକ ବରାଦ ଦେବାକୁ ହେବ । ମସ୍କୋ ବାହାରେ ତାଙ୍କର ଯେଉଁ ଜମିବାଡ଼ି ତାକୁ ବିକିବାକୁ ପଡ଼ିବ । ବୁଢ଼ା ପ୍ରିନ୍‌ସ ବଲକନସ୍କି ଯେତେବେଳେ ମସ୍କୋରେ ଆସି ଅଛନ୍ତି ତାଙ୍କୁ ତାଙ୍କ ଭାବୀ ବୋହୂକୁ ନେଇ ଦେଖେଇବାକୁ ପଡ଼ିବ ।

ମସ୍କୋରେ ରୋଷ୍ଟଭ ପରିବାରରେ ଯେଉଁ ଘରଟି ଥାଏ ସେଥିରେବ ଶୀତ ଋତୁ ଯାକ ସେ ଘର ଉଷ୍ଣମ କରାହୋଇଥାଏ । ସେମାନେ ତ ମୋଟେ ଅଳ୍ପ ଦିନ ରହିବେ ବୋଲି ଆସୁଥାନ୍ତି, କାଉଣ୍ଟେସ ବି ତାଙ୍କ ସଙ୍ଗରେ ଥାନ୍ତି । ତେଣୁ କାଉଣ୍ଟ ଇଲିଆ ଆନ୍ଦ୍ରେଇଚ ଠିକଣା କଲେ ଯେ ସେ ମେରିଆ ମିତ୍ରୋୟେଭ୍ନା ଆରେସିମଭଙ୍କ ଘରେ ରହିବେ । ସେ ବି ବହୁତ ଦିନୁଁ ତାଙ୍କ ଘରେ କୁଣିଆ ହେବା ପାଇଁ ସେମାନଙ୍କୁ ଅନୁରୋଧ କରୁଥାନ୍ତି ।

ତହିଁ ଆରଦିନ ମେରିଆ ମିତ୍ରୋୟେଭ୍ନାଙ୍କ କହିବା ଅନୁଶାରେ କାଉଣ୍ଟ ଇଲିଆ ଆନ୍ଦ୍ରେଇଚ ନାତାଶାକୁ ସଙ୍ଗରେ ଘେନି ନିକୋଲେ ଆନ୍ଦ୍ରେଇଚଙ୍କ ସଙ୍ଗେ ଦେଖା କରିବାକୁ ଗଲେ । ଏଇ ଭେଟାଭେଟି ପାଇଁ କାଉଣ୍ଟ ନିଜକୁ ପ୍ରସ୍ତୁତ କଲାବେଳେ ମନ ଖୁସି ନଥିଲା । କାଉଣ୍ଟ ଇଲିଆ ଆନ୍ଦ୍ରେଇଚ୍‌ଙ୍କର ସେ ବୁଢ଼ା ପ୍ରିନ୍‌ସଙ୍କ ସଙ୍ଗେ ଶେଷଥର ସାକ୍ଷାତ ହେଲା ବେଳର କଥା ଗୋଟିଗୋଟି କରି ମନେଥିଲା । ସେତେବେଳେ ସୈନ୍ୟ ସଂଗ୍ରହ କରାହେଉଥାଏ । ସେ ଯେତେବେଳେ ତାଙ୍କୁ ଭୋଜନପାଇଁ ନିମନ୍ତ୍ରଣ କଲେ ସେତେବେଳେ ଓଲଟି ରାଗ ତମ ତମ ହୋଇ ପ୍ରିନସ୍ ତାଙ୍କୁ କଡ଼ା କଡ଼ା କଥା କହିଥିଲେ ଯେ ଯେତେଜଣ ସୈନ୍ୟ ଯୋଗାଇବା କଥା କାହିଁକି ସେ ତହିଁରୁ କମ୍ ଲୋକ ଯୋଗାଇଲେ । ନାତଶା ତାର ସବୁଠୁ ଭଲ ପୋଷାକଟି ପିନ୍ଧିଥାଏ । ତା- ମନଭିତର ଖୁସିଥାଏ । ସେ ଭାବୁଥାଏ "ସେମାନେ ସତେ ଭଲନପାଇ ରହିପାରିବେ ନାହିଁ । ମତେତ ସମସ୍ତେ ସବୁବେଳେ ଭଲପାଆନ୍ତି । ଆଉ ସେମାନଙ୍କୁ ଯାହା ଭଲ ଲାଗିବ ତା କରିବାକୁ ମୁଁ ତ ସବୁବେଳେ ତିଆରି, କେତେବେଳେ ନୁହେଁ କି ? ସେମାନଙ୍କୁ ଭଲପାଇବାକୁ ମୁଁ ତ ପ୍ରସ୍ତୁତ ଅଛି । ଜଣେ ତାଙ୍କର ବାପା ଆଉ ଜଣଙ୍କ ତାଙ୍କର ଭଉଣୀ ମୋତେ ଭଲ ନ ପାଇବାକୁ ତାଙ୍କର କୌଣସି କାରଣ ନାହିଁ ।"

ଉଦ୍‌ଭିନଶଂକାରେ ତାଙ୍କର ଯେଉଁ ପୁରୁଣା ଘରଟା ଥିଲା, ଯେଉଁଟାକୁ ଦେଖିଲେ ମାଡ଼ ମାଡ଼ ପଡ଼େ, ମନ ଦବିଯାଏ, ସେମାନେ ଗାଡ଼ି ଚଢ଼ି ସେଇ ଘରକୁ ଯାଇ ପହଞ୍ଚି ପିଣ୍ଡାକୁ ଉଠିଲେ ।

କାଉଣ୍ଟେସ କହିଲେ "ଏଥର ଭଗବାନ ଆମକୁ ଦୟା କରନ୍ତୁ।" ସେ ଅଧେ ଥଟ୍ଟାକଳିଆ କରି ଅଧେ ଗମ୍ଭୀର ହୋଇ ଏପରି କହିଲେ। କିନ୍ତୁ ନାତାଶା ଲକ୍ଷ୍ୟ କଲାଯେ ଦୁଆର ମୁହଁକୁ ଗଲାବେଳକୁ ତା ବାପା କେମିତି ଡରି ଡରି ଏକରି ସେକରି ହେଉଥାନ୍ତି। ସେ ଭୟରେ ଆସ୍ତେ-ଆସ୍ତେ ପଚାରିଲେ ଯେ ବୁଢ଼ା ପ୍ରିନସ୍ ଓ ପ୍ରିନସେସ୍ ଘରେ ଅଛନ୍ତି କି ନାହିଁ। ସେମାନେ ପହଞ୍ଚିଗଲେ ଦେଖି ପ୍ରିନସ୍‌ଙ୍କ ଚାକରମାନଙ୍କଠାରେ ଗୋଟାଏ ବିଶୃଙ୍ଖଳା ଖେଳିଯିବାର ଦେଖାଗଲା। ଜଣେ ଦରୁଆନ ସେମାନଙ୍କ ଆସିବା ଖବର ଦେବାକୁ ଧାଇଁ ଯାଉ ଯାଉ ଆଉ ଜଣେ ତାକୁ ଅଟକାଇଲା। ତାପରେ ସେମାନେ କ'ଣ ଫୁସୁର ଫାସର ହେଲେ। ଜଣେ ଦାସୀ ବାଡ଼ ହଲ୍ ଘରକୁ ଧାଇଁ ଯାଇ ଡରି ଡରି କରି କ'ଣ କହିଲା। ପ୍ରିନ୍‌ସେସ ବୋଲି ନା ଧରିଲେ। ଶେଷରେ ଜଣେ ବୁଢ଼ା ଜଗୁଆଳି ତମ ତମ ମୁହଁ କରି ପଦାକୁ ଆସି ସେମାନଙ୍କୁ କହିଲା ଯେ ପ୍ରିନସ୍ କାହା ସଙ୍ଗେ ଦେଖା କରୁ ନାହାନ୍ତି, କିନ୍ତୁ ପ୍ରିନସେସ୍ ଅନୁରୋଧ କରିଛନ୍ତି ସେମାନେ ଦୟାକରି ଉପରକୁ ଆସନ୍ତୁ। ଆଗ ମାବାମୋଏଜେଲ ବୁରିଏନୀ ଆଗନ୍ତୁକମାନଙ୍କୁ ଅଭ୍ୟର୍ଥନା ଜଣାଇଲେ ସେ ବାପ ଝିଅଙ୍କୁ ବହୁତ ବିନୟ ଦେଖାଇ ସ୍ୱାଗତ ଜଣାଇଲେ ଆଉ ପ୍ରିନସେସ୍ ଆଗନ୍ତୁକ ମାନଙ୍କୁ ଅଭ୍ୟର୍ଥନା କରିବାକୁ ଦଉଡ଼ି ଆସିଲେ। ତାଙ୍କ ମୁହଁରେ ଭୟ ଓ ଉତ୍ତେ-ଜନାର ଚିହ୍ନ ଦିଶୁଥିଲା। ମୁହଁରେ ଠାଏ ଠାଏ ନାଲି ନାଲି ଦିଶୁଥିଲା। ସେ ଦୁମ୍ ଦୁମ୍ ହୋଇ ଚାଲୁଥାନ୍ତି। ସେ ଟାଣି ଓଟାରି ଆନ୍ତରିକତା ଓ ସ୍ୱାଭାବିକ ଭାବ ଦେଖାଇବାକୁ ଚେଷ୍ଟା କରୁଥାନ୍ତି। କିନ୍ତୁ ମୂଳରୁ ପ୍ରିନସେସ୍ ମେରିଆ ନାତାଶାକୁ ଅପ୍ରିୟ ଚକ୍ଷୁରେ ଦେଖିଲେ। ସେ ଭାବିଲେ ସେ ବହୁତ ବେଶି ଆଡ଼ମ୍ବର ଦେଖାଇ, ପରିପାଟିରେ ପୋଷାକ ପିନ୍ଧିଛି, ବହୁତ ବେଶି ହେରେଷୀଟାଏ। ଗୋଟାଏ ଅନର୍ଥକ ଫୁଲେଇ ଝିଅଟାଏ। ପ୍ରିନସେସ୍ ମେରିଆଙ୍କର ଧାରଣା ହେଲା ଯେ ସେ ତାଙ୍କ ଭାଉଜକୁ ଦେଖିବା ଆଗରୁ ତା ବିଷୟରେ ମନ୍ଦ ଧାରଣା କରିନେଇ ସାରିଥିଲେ। ଆଉ ତାର କାରଣ ହେଉଛି ଅଜାଣତରେ ସେ ତାର ରୂପକୁ, ତାର ଯୌବନକୁ, ତାର ହରଷକୁ ଇର୍ଷା ଜର ଜର ଚକ୍ଷୁରେ ଦେଖିଥିଲେ, କାରଣ ତାଙ୍କ ଭାଇ ତାକୁ ଭଲ ପାଉଥିଲା। ତାଙ୍କରିତ ସହଜରେ ନାତାଶା ପ୍ରତି ଏଭଳି

ବିତୃଷ୍ଣା ଥିଲା । ସେ ବିତୃଷ୍ଣାକୁ ଦୂର କରିବା ତାଙ୍କ ପକ୍ଷରେ ଅସମ୍ଭବ । ତା ଉପରେ ପୁଣି ଏପରି ହେଲାଯେ ରୋଷ୍ଟଭ ପରିବାର ଆସିଛନ୍ତି ଶୁଣିଲା ମାତ୍ରେ ବୁଢ଼ା ପ୍ରିନସ୍ ପାଟିକରି ଉଠିଲେ ଯେ ସେ ଆଦୌ ତାଙ୍କ ମୁହଁ ଚାହିଁବେ ନାହିଁ । ପ୍ରିନସେସ୍ ମେରିଆଙ୍କର ମନହେଲେ ସେ ତାଙ୍କ ସଙ୍ଗେ ଦେଖାକରନ୍ତି ସିନା ତାଙ୍କୁ ଦେଖା କରିବାକୁ ସେମାନଙ୍କୁ ଅନୁମତି ଦିଆଯିବ ନାହିଁ । ଏଥିପାଇଁ ପ୍ରିନସେସ୍ ମେରିଆଙ୍କ ମନ ଚଞ୍ଚଳ ହୋଇ ଉଠିଥିଲା । ପ୍ରିନସେସ୍ ମେରିଆନିଜେ ରୋଷ୍ଟଭମାନଙ୍କ ସଙ୍ଗେ ଦେଖାକରିବାକୁ ନିଶ୍ଚିନ୍ତ କଲେ କିନ୍ତୁ ବୁଢ଼ା ପ୍ରିନସ୍ ତ ରୋଷ୍ଟଭମାନେ ଆସିବାକଥା ଶୁଣି ଭାରି ଉତକ୍ଷିପ୍ତ ହୋଇ ଉଠିଥିଲେ ତେଣୁ ସେ କାଳେ କେତେବେଳେ କ'ଣ କରିପକାଇବେବୋଲି ପ୍ରିନସେସ୍ ମେରିଆଙ୍କ ମନରେ ଭାରି ଡର ଥାଏ ।

ପାଦକୁ ପଛକୁ ଘୋସାରି ନେଇ ମୁଣ୍ଡ ନୁଆଇଁ ଦଣ୍ଡବତ କରି କାଉଣ୍ଟ କହିଲେ "ହେଇ ଦିଅନ୍ତୁ ଆପଣଙ୍କ ପାଖକୁ ଆପଣଙ୍କ ଗାପ୍ପିକାମଣିଟିକୁ ଆଣି ଦେଇଦେଲି ପ୍ରିନସେସ୍ ।" ସେ ଡରି ଡରି ଚାରିଆଡ଼କୁ ଅନାଉ ଥାନ୍ତି କାଳେ ବୁଢ଼ା ପ୍ରିନସ୍ କେତେବେଳେ ଆସି ପହଞ୍ଚିଯିବେ ବୋଲି । "ଆପଣ ଆଉ ସ୍ନେହ ଦୁହେଁ ପରସ୍ପର ସଙ୍ଗେ ବନ୍ଧୁତା କରିବେ, ମତେ କେଡ଼େ ଖୁସି ଲାଗୁଛି । ପ୍ରିନସ୍ଙ୍କ ଦେହ ଏ ପର୍ଯ୍ୟନ୍ତ ଭଲହେଲାନାହିଁ ।" ଏମିତି ଗୁଡ଼ାଏ ମାମୁଲି କଥା କହି ସେ ଠିଆ ହୋଇପଡ଼ିଲେ । କହିଲେ "ଆପଣଙ୍କର ଆପତ୍ତି ନଥିଲେ ମୋ ନାତୁଣୀ ଏଠି ଆପଣଙ୍କ ପାଖରେ ପନ୍ଦର ମିନିଟ୍ ଥାଉ, ମୁଁ ଟିକିଏ ଗାଡ଼ିରେ ଚଢ଼ି ଚାଲିଯାଇ ଫେରି ଆସନ୍ତି । ବେଶୀ ଦୂର ନୁହେଁ, ହେଇ ଏ ପାଖରେ କୁକୁର ସାହି ବସ୍ତିକୁ ଯାଇ ଆସନ୍ତି । ସେଠି ଆନ୍ନା ସେମ୍ୟନୋଭ୍ନ ଅଛନ୍ତିଯେ ଯାଇ ଦେଖିଆସିବି ।

କାଉଣ୍ଟ ବାଲିଆ ଆନ୍ଦ୍ରଇଚ ରୋଷ୍ଟଭ ଯେ କୂଟନୀତିମୟ ଛଳନା ପ୍ରୟୋଗ କଲେ, ତାର କାରଣ ହେଉଛି ଯେ ନଣନ୍ଦ ଭାଉଜ ଦିହେଁ ମନଖୋଲି ପରସ୍ପରର ମନଭାବ କୁହାକୋହି ହେବାକୁ ବେଳ ଓ ସୁବିଧା ପାଆନ୍ତୁ ଏଇଆ ତାଙ୍କର ଇଚ୍ଛା ଥିଲା । ଏଇଆ ପଛେ ସେ ତାଙ୍କ ଝିଅକୁ କହିଲେ ? ତା ଛଡ଼ା ଆଉ ଗୋଟିଏ କାରଣ ଥିଲା, ସେ ନିଜେ ବୁଢ଼ା

ପ୍ରିନସ୍‌ଙ୍କୁ ଡରୁଥିଲେ ଓ ତାଙ୍କ ହାବୁଡେ ନ ପଡ଼ିବାକୁ ସେ ଏପରି କଲେ । ଏ କଥା ସେ ତାଙ୍କ ଝିଅ ଆଗରେ କହିଲେ ନାହିଁ । କିନ୍ତୁ ନାତାଶା ତାଙ୍କର ଏଇ ଭୟ ଓ ଅସ୍ୱସ୍ତି ଦେଖିପାରିଲା ଓ ସେଥିପାଇଁ ସେ ଭାରି ଦୁଃଖିତ ହେଲା । ସେ ତା ବାପା ଆଗରେ ନାଲ ପଡ଼ିଗଲା । କାହିଁକି ନାଲ ପଡ଼ିବ ବୋଲି ସେ ଆହୁରି ରାଗିଗଲା । ତାପରେ ପ୍ରିନସ୍‌ଙ୍କ ଆଡ଼କୁ ସାହସ ଦେଖାଇ ଡରୁରପଡ଼ି ଗାରଡ଼େଇ ଅନାଇଲା । ଯେପରିକି ସେ ଏଇଆ ବୁଝେଇଦେବାକୁ ଚାହେଁ ଯେ କାହାରିକୁ ତାର ଡର ନାହିଁ । ପ୍ରିନସେସ୍ କାଉଣ୍ଟଙ୍କୁ କହିଲେ ଯେ ତାହାହେଲେ ସେତ ଭାରି ଖୁସି ହେବେ । ସେ ତାଙ୍କୁ ଏତିକି ଅନୁରୋଧ କଲେ ଯେ ସେ ଆନ୍ନା ସେମ୍ୟୋନୋଭ୍ନାଙ୍କ ଘରୁ ଚଞ୍ଚଳ ନ ଆସି ବରଂ ଟିକିଏ ଡେରିରେ ଫେରିଲେ ଭଲ ହୁଅନ୍ତା । ତାପରେ ଇଲଆ ଆନ୍ଦ୍ରେଇଚ୍ ଗଲେ ।

ପ୍ରିନସେସ୍ ମେରିଆଙ୍କର ନାତାଶା ସଙ୍ଗେ ନିଜେ କଥା ଭାଷା ହେବାକୁ ମନଥାଏ । ସେ ମାଦମ୍‌ଏବୋଲ ବୁରିଏଙ୍କ ଆଡ଼କୁ କଟମଟ କରି ଅନାଉଥାନ୍ତି । କିନ୍ତୁ ମାଦାମ୍‌ଏବୋଲ ବୁରିଏ ସେ ଘରୁ ଗଲେନାହିଁ । ମସ୍କୋସହରର ମଉଜ ମଜଲିସ୍ ଆଉ ଥିଏଟର ବିଷୟରେ ଏଣୁତେଣୁ ହୋଇ ଗୁନ୍ଥାଏ କଥାଭାଷା ଲଗାଇଦେଲେ । ସେମାନଙ୍କୁ ଘର ଭିତରକୁ ଆଣିବାକୁ ଏତେ ଡେରି ହେଲା । ତା ବାପାଙ୍କ ହାବଭାବରେ ଅସ୍ୱସ୍ତି ଜଣାଯାଉଥିଲା । ପ୍ରିନସ୍‌ସେଙ୍କ ହାବଭାବରେ କେମିତି ସଂକୋଚ ଜଣାପଡ଼ୁଥାଏ । ସତେ ଯେପରି ତାକୁ ସେ ଦେଖାଦେଇ ଭାରି ଦୟାଟାଏ କଲେବୋଲି ସେ ଭାବୁଚନ୍ତି ଏସବୁ କଥା ଭାବି ନାତାଶା ମନରେ ରାଗ ହେଉଥାଏ । ସେ ପ୍ରିନସେସ୍ ମେରିଆଙ୍କୁ ସୁଖ ପାଇ ପାରିଲା ନାହିଁ । ତାକୁ ଲାଗିଲା ଏ ଅସୁନ୍ଦର, କପଟୀ, ପୁଣି ଅମେଳାପି । ହଠାତ୍ ଯେପରିକି ନାତାଶା ଖିନ୍ନ ହୋଇ ଆପଣା ଭିତରେ ବୁଡ଼ିଗଲା । ଆପଣା ଅଜାଣତରେ ସେ କେମିତି ଉଦାସୀନ ହୋଇଗଲା, ସେଥିରେ ପ୍ରିନସ୍‌ଙ୍କର ଆହୁରି ବିତୃଷ୍ଣା ବଢ଼ିଲା । ପାଞ୍ଚ ମିନଟ୍ ଏମିତି ସଙ୍କୋଚରେ ଟାଣି ଓଟାରି କଥା ଭାଷା ଚାଲିଲା । ତାପରେ ତରତର ହୋଇ ମାଡ଼ି ଆସୁଥିବା ଚଟି ପିନ୍ଧା ପାଦର ଶବ୍ଦ ସେମାନେ ଶୁଣିଲେ ।

ପ୍ରିନସେସ୍ ମେରିଆଙ୍କ ମୁହଁରେ ଆତଙ୍କର ଛବି ଫୁଟିଉଠିଲା । ଘରର କବାଟ ଖୋଲିଗଲା । ପ୍ରିନସ୍ ପଶିଆସିଲେ । ଧଳା ରାତ୍ରଟୋପି ଓ ଡ୍ରେସିଂଗାଉନ୍ ପିନ୍ଧିଥାନ୍ତି ।

ସେ କହିଲେ "ଆଃ ମହାଶୟା କାଉଣ୍ଟେସ୍ । କାଉଣ୍ଟେସ୍ ରୋସ୍ତଭ···ଯଦି ମୋର ଭୁଲ ହେଉଛି···ମତେ କ୍ଷମା କରନ୍ତୁ, ଆଜ୍ଞା ମତେ କ୍ଷମା କରନ୍ତୁ···ମୁଁ ଜାଣିନଥିଲି ମହାଶୟା, ଭଗବାନ ସାକ୍ଷୀ ଅଛନ୍ତି, ମୁଁ ଜାଣିନଥିଲି ଯେ ଆପଣ ଦୟାକରି ଆମକୁ ଦେଖିବାକୁ ଆସୁଛନ୍ତି । ତେଣୁ ଏମିତି ପୋଷାକରେ ମୁଁ ମୋ ଝିଅ ପାଖକୁ ଚାଲି ଆସିଲି । ମୁଁ ଆପଣଙ୍କୁ କ୍ଷମା ପ୍ରାର୍ଥନା ମାଗୁଛି···ଭଗବାନ ସାକ୍ଷୀ ଆଜ୍ଞା । ମୁଁ ଜାଣିନଥିଲି ।" ସେ ବାରମ୍ବାର ଏହିପରି କହିଲେ । 'ଭଗବାନ' ଶବ୍ଦଟି ଉପରେ ସେ ଜୋର ଦେଇ କହୁଥାନ୍ତି । ତାଙ୍କ ସ୍ୱର ଏତେ ଅସ୍ୱାଭାବିକ ଶୁଭୁଥାଏ । ଏତେ ଅପ୍ରୀତିକର ଶୁଭୁଥାଏ ଯେ ପ୍ରିନସେସ୍ ମେରିଆ ଆଖିକୁ ତଳକୁ ପୋତି ଚୁପ୍ କରି ଠିଆହୋଇପଡ଼ିଲେ । ତାଙ୍କ ବାପାଙ୍କ ଆଡ଼କୁ କି ନାତାଶା ଆଡ଼କୁ ଅନାଇବାକୁ ତାଙ୍କର ସାହାସ ହେଲାନାହିଁ । ନାତାଶା ଠିଆହୋଇ ପଡ଼ି ଦଣ୍ଡବତ ହେଲା । ତାପରେ କ'ଣ କରିବ ବୋଲି ଜାଣି ପାରିଲା ନାହିଁ ଏକା ମାଦାମଏଜେଲ ବୁରିଏନ ମିଠାହସ ହସୁଥାନ୍ତି ।

ବୁଢ଼ା ଭୁନ୍ଭୁନ୍ ହେଉଥାନ୍ତି "ମୁଁ ପ୍ରାର୍ଥନା କରୁଛି ମତେ କ୍ଷମା କରନ୍ତୁ । ଭଗବାନ ସାକ୍ଷୀ ଅଛନ୍ତି । ମୁଁ ଜାଣିନଥିଲି" ନାତାଶାକୁ ଗୋଡ଼ଠୁ ମୁଣ୍ଡଯାକେ ଅନାଇ ଦେଇ ସେ ଚାଲିଗଲେ ।

ସତେକି ଗୋଟାଏ ପ୍ରେତାତ୍ମା ପଶି ଆସି ଚାଲିଗଲା । ତାପରେ ଆଗ ମାଦାମୋଆଜେଲ ବୁରିଏନ ପ୍ରକୃତିସ୍ଥା ହେଲେ । ପ୍ରିନ୍ସଙ୍କ ଦେହ କପରି ଭାରି ଖରାପ ଅଛି ସେ ବିଷୟ ସେ କହିଲେ । ନାତାଶା ଆଉ ପ୍ରିନସେସ୍ ମେରିଆ ମୂକ ହୋଇ ପରସ୍ପରକୁ ଅନାଇଲେ ପଦେ ପାଟି ନଫିଟାଇ ଯେତେ ସେମାନେ ପରସ୍ପରକୁ ଅନାଉଥାନ୍ତି ସେତେ ସେମାନଙ୍କର ପରସ୍ପର ପ୍ରତି ବିରାଗ ବଢ଼ି ଯାଉଥାଏ ।

କାଉଣ୍ଟ ଯେମିତି ଲେଉଟି ଆସିଲେ ତାଙ୍କୁ ଦେଖିଲା ମାତ୍ରେ ନାତାଶା ଯେପରି ଅସ୍ୱସ୍ତି ହେଲେବୋଲି ଭାବ ଦେଖାଇଲେ ସେ ଭାବ ଶିଷ୍ଟାଚାରର ଲଂଘନ କରିଥାଏ । ଚାଲି ଯିବାକୁ ତାଙ୍କୁ ସଚେତକ ତର ସହିଲା ନାହିଁ । ସେତେବେଳେ ସତେ ଯେପରିକି ପ୍ରିନସେସ୍‌ଙ୍କ ପ୍ରତି ତା ମନରେ କୃପା ଆସିଥାଏ, ସେ ଭାବୁଥାଏ ଯେ ଗୋଟାଏ ଶୁଖିଲା କାଠୁଆ ବୁଢ଼ୀଟାଏ । ତାଙ୍କୁ ଏମିତି ଅଖାଡୁଆରେ ସେ ପକାଇଦେଲା ଯେ ଅନର୍ଥକ ତାର ଅଧଘଣ୍ଟାଏ ବେଳ ନଷ୍ଟ କଲା ଅଥଚ ପ୍ରିନ୍‌ସ ଆନ୍ଦ୍ରେଙ୍କ ବିଷୟରେ ପଦେ କଥାବି କହିଲା ନାହିଁ ଏଇଟା । ସେ ଭାବୁଥାଏ "ସେଠି ସେ ଫରାସି ମାଇକିନାଟା ଥାଏ । ମୁଁ ତା ଆଗରେ କେମିତି ଆଗଭଳି ପଡ଼ି ତାଙ୍କ ବିଷୟରେ କଥା ପକାନ୍ତି ଯେ–" ପ୍ରିନସେସ୍ ମେରିଆଙ୍କ ମନରେ ବି ସେତେବେଳେ ଅବିକଳ ସେହିଭାବ ଆସୁଥାଏ । ନାତାଶା ସଙ୍ଗରେ କେଉଁ ସମୟରେ କଥା ଭାଷା ହେବାକୁ ପଡ଼ିବ ସେ କଥା ସେ ଜାଣିଥାନ୍ତି । କିନ୍ତୁ ସେ ତା କରିପାରିଲେ ନାହିଁ । ତାର ଗୋଟିଏ କାରଣ ହେଉଛି ଯେ ମାଦାମୋଏଜେଲ ବୁରିଏନ ତାଙ୍କୁ ତା କରଇ ଦେଲେନାହିଁ । ଦ୍ୱିତୀୟତଃ, କାହିଁକି କେଜାଣି, ତା ବାହାଘର ବିଷୟରେ କିଛି କଥା କହିବା ବିଷୟରେ ତାଙ୍କୁ କଷ୍ଟ ଲାଗୁଥାଏ । କାଉଣ୍ଟ ସେ ଘରୁ ବାହାରି ଯାଉଥାନ୍ତି ଏତିକିବେଳେ ପ୍ରିନ୍‌ସେସ୍ ମେରିଆ ତର ତର ହୋଇ ନାତାଶା ପାଖକୁ ଚାଲିଯାଇ ତା ହାତ ଧରି ପକାଇଲେ । ଗୋଟାଏ ଓଜନ ଦୀର୍ଘଶ୍ୱାସ ପକାଇ କହିଲେ—"ଟିକିଏ ରହ, ମୁଁ—" ନାତାଶା ପ୍ରିନ୍‌ସେସ୍ ମେରିଆଙ୍କ ମୁହଁକୁ ଚାହିଁଲା ବେଳେ ତା ମୁହଁରେ ବ୍ୟଙ୍ଗର ଠାଣି ଫୁଟିଉଠୁଥାଏ, କାହିଁକି ଏପରି ହେଉଥାଏ ନାତାଶା ଜାଣି ନଥିଲା ।

ପ୍ରିନ୍‌ସେସ୍ ମେରିଆ କହିଲେ "ନାତାଲି, ମୋ ସୁନାଟି ପରା, ମୋ କଥା ବିଶ୍ୱାସ କର । ମୋର ଭାଇର ଏତେ ଭାଗ୍ୟ ହେଲା, ଏତେ ସୁଖ ଶରଧା ମିଳିଲା, ସେଥିପାଇଁ ମତେ ଭାରି ଖୁସି ଲାଗୁଛି ।" ···ସେ ଅଟକି ଗଲେ । ତାଙ୍କୁ ଲାଗିଲା ସେ ମିଛକଥା କହୁଛନ୍ତି । ନାତାଶା ଲକ୍ଷ୍ୟ କଲା ଯେ ସେ କଥା ମଝିରେ ଅଟକି ଗଲେ । ତାର କାରଣଟାବି ସେ ଅନୁମାନ କଲା ।

ନାତାଶାକୁ କାନ୍ଦ ମାଡୁଥାଏ ସେ ଜାଣିଲ୍, ତଥାପି ପଦାକୁ ମର୍ଯ୍ୟଦା ଦେଖାଇ ଅନୁଗ୍ରହରେ ସେ କହିଲ୍ "ପ୍ରିନସେସ୍, ସେ ସବୁକଥା କହିବାକୁ ଏପର୍ଯ୍ୟନ୍ତ ବେଳ ଆସିନାହିଁ ମତେ ଲାଗୁଛି ।"

ସେ ଘରୁ ବାହାର ପଦାକୁ ଆସିଲ୍ ମାତ୍ରେ ସେ ଭାବିଲ ।"ମୁଁ କ କଥା କହିଲ । ମୁଁ କ'ଣ କଲି ।"

ସେଦିନ ତା ଘରେ ସମସ୍ତେ ଖାଇ ବସିଲାବେଳେ ନାତାଶା ଆସିବ ବୋଲି ସମସ୍ତଙ୍କୁ ବହୁତ ବେଳଯାକେ ଅପେକ୍ଷା କରିବାକୁ ପଡ଼ିଲା ସେ ତା କୋଠରୀରେ ବସିଥାଏ । ସାନ ପିଲା ପରି ସେ କାନ୍ଦୁଥାଏ । ଛାର କହିଁ ଉଠୁଥାଏ । କାନ୍ଦିପାରୁନ ଥାଏ ଅଟକି ଯାଉଥାଏ । ସୋନିଆ ତା ପାଖରେ ଠିଆ ହୋଇ ବାରମ୍ବାର ନାତାଶାର କପାଳରେ ଚୋକ ଦେଉଥାଏ । ସେ କହୁଥାଏ " ନାତାଶା ଏ କ'ଣ ? ସେମାନଙ୍କ କଥାକୁ ଏତେ ଛଳ କରୁଛୁ କାହିଁକି ? ସେସବୁ ଭୁଲିଯିବ ନାତାଶା ।"

"ନାଇଁ ତୁ ଜାଣି ନୁ ।...ତୁ ଯଦି ଜଣିଥାନ୍ତୁ ସେଇଟା ବଡ଼ ଅପମାନ...ସତେକି ମୁଁ ଗୋଟାଏ..." ସୋନିଆ କହିଲା ।

"ତୁ ସେମିତି କହନା, ସେ କଥା ପକାନା । ତୋର ତ ଦୋଷନାହିଁ ସେଥିରେ ତୋର କ'ଣ ଯାଉଛି ? ଆ ମତେ ଗେଲକର ।"

ନାତାଶା ମୁଣ୍ଡ ଟେକିଲା । ତା ସଙ୍ଗାତର ଓଠରେ ଓଠ ଲଗାଇ ଚୁମ୍ବନ କରି ତାର ଲୁହ ସର ସର ଓଦା ମୁହଁକୁ ତାର ଗାଲରେ ମାଡ଼ିଦେଲା ।

ନାତାଶା କହିଲ "ମୁଁ କହିପାରିବ ନାଇଁଲୋ । ମତେ ଜଣାନାହିଁ । ସେ କାହାର ଦୋଷ ନୁହେଁ । ସେ ମୋର ଦୋଷ । ଯାହାହେଉ ସେ ଭାରି ଯନ୍ତ୍ରଣା ଲୋ । ଓଃ ! କାହିଁକି ସେ ସେ ଆସୁନାହାନ୍ତି ।"

ସେ ଖାଇବାକୁ ତଳକୁ ଓହ୍ଲାଇଗଲ । ଆଖି ନାଲି ଦିଶୁଥାଏ । ବୁଢ଼ା ପ୍ରିନସ୍ ବୋଲ୍‌କୋନସ୍କିମାନଙ୍କୁ ଦେଖି କେମିତି ଚର୍ଚ୍ଚା କରିଥିଲେ ମେରିଆ ମିତ୍ରୋଭ୍ନା ସବୁ ଶୁଣିଥିଲେ, କିନ୍ତୁ ନାତାଶାର ଶୁଖିଲା ମୁହଁକୁ ସେ ଦେଖି

ନ ଦେଖିଲାପରି ହୋଇ କାଉଣ୍ଟେ ଓ ଅନ୍ୟ ଅତିଥିମାନଙ୍କ ସଙ୍ଗେ ହସ ନବଜ ଲଗାଇ ବଡ଼ ପାଟିରେ କଥା କହୁଥାନ୍ତି ।

ସେଦିନ ସଞ୍ଜରେ ରୋଷ୍ଟଭମାନେ ଥିଏଟର ଦେଖିଗଲେ । ସେମାନଙ୍କ ପାଇଁ ମେରିଆ ମିଟ୍ରୋଫାନ୍ଣ ଟିକେଟ କରି ଜାଗା ଠିକଣା କରିଥାନ୍ତି ।

ଯିବାକୁ ନାତାଶାର ଆଦୌ ମନ ହେଉନଥିଲା, କିନ୍ତୁ ଏକେ ତ ଖାସ୍ ତାହାର ପାଇଁ ଏ ଆୟୋଜନ କରାହୋଇଥାଏ । ତା ଛଡ଼ା ମେରିଆ ମିଟ୍ରୋଫାନ୍ଣଙ୍କର ଏତେ ସ୍ନେହ, ତେଣୁ ସେ ମନା କରିପାରିଲା ନାହିଁ । ସେ ପୋଷାକ ପିନ୍ଧି ସଜହୋଇ ବଡ଼ ହଲ୍ ଘରେ ଯେତେବେଳେ ତା ବାପାଙ୍କୁ ଅପେକ୍ଷା କରିଥାଏ, ସେତେବେଳେ ସେ ଦର୍ପଣରେ ନିଜ ଚେହେରାକୁ ଦେଖିଲା ।

ସେ ଦେଖିଲା ଯେ ସେ ସୁନ୍ଦର ଦିଶୁଛି, ଭାରି ସୁନ୍ଦର ଦିଶୁଛି । ତାକୁ ଆହୁରି ଦୁଃଖ ଲଗିଲା । ସେ ଏକ ମଧୁର କୋମଳତାବୋଳା ଦୁଃଖ ।

"ହେ ଭଗବାନ, ସେ ଯଦି ଏଠି ଥାନ୍ତେ ତେବେ ଆଗେ ଯେମିତି ମୁଁ ନିବୁଧିଆ ହୋଇ ଲାଜରେ ସଢ଼ୁଥିଲି, ସେମିତି ନ ହୋଇ ମୁଁ ନୂଆ କରି ଆଉ ପ୍ରକାରେ ବ୍ୟବହାର କରନ୍ତି । ମୁଁ ସିଧା ତାଙ୍କୁ ଯାଇଁ କୁଣ୍ଢେଇ ଧରନ୍ତି, ନିବିଡ଼ ଭାବେ ଧରନ୍ତି ତାଙ୍କର ସେହି ଯେଉଁ ଖୋଜିଲା ଖୋଜିଲା ପରି ବାଛିଲା ବାଛିଲା ପରି ଚାହାଣୀ, ଯେଉଁଥିରେ ସେ ସବୁବେଳେ ଏତେ ଆଗେ ଅନାଉଥିଲେ, ମୁଁ ତାଙ୍କୁ ବାଧ୍ୟ କରନ୍ତି ସେହି ଚାହାଣୀରେ ମତେ ଚାହିଁ ଦେଖିବାକୁ । ତାପରେ ମୁଁ ତାଙ୍କୁ ହସାନ୍ତି । ଆଗେ ସେ ଯେମିତି ହସୁଥିଲେ, ସେମିତି ତାଙ୍କୁ ମୁଁ ହସାନ୍ତି । ଆଃ ତାଙ୍କର ଯେଉଁ ଆଖି— କେମିତି ଏବେବି ମୁଁ ସେ ଆଖିକି ଦେଖିପାରୁଛି ।"

ନାତାଶା ଏପରି ଭାବୁଥାଏ । ଆଉ ଭାବୁଥାଏ "ତାଙ୍କ ବାପା କି ଭଉଣୀ ସଙ୍ଗରେ ମୋର ଯାଏ ଆସେ କେତେ ? ମୁଁ ଆଉ କାହାରିକି ଭଲପାଏ ନାହିଁ । ଭଲ ପାଇଛି ତାଙ୍କୁ, ତାଙ୍କର

ସେଇ ମୁହଁ, ଆଖି, ସେହି ହସ, ପୁରୁଷପଣର ଅନୁରୂପ ସେହି ହସ ଆଉ କେତେ ପିଲାଳିଆ···ନା ନା ତାଙ୍କ କଥା ମୁଁ କାହିଁକି ଭାବୁଛି, ନ ଭାବିବା ଭଲ। ଭାବିବି ନାହିଁ। ଭୁଲିଯାଏଁ। ଅନ୍ତତଃ ବର୍ତ୍ତମାନ ତ ବିଲକୁଲ ଭୁଲିଯାଏଁ। ଏମିତି ଅପେକ୍ଷା କରି ଦୋଦପାଞ୍ଚ ହେବା ତ ମୁଁ ଆଉ ସହିପାରୁ ନାହିଁ। ଏମିତି ହେଲେ ମୁହୂର୍ତ୍ତିକେ ମୁଁ କାନ୍ଦି ପକାଇବି।" ନ କାନ୍ଦିବାକୁ ଚେଷ୍ଟା କରି ସେ ଦର୍ପଣ ଆଡ଼ୁ ମୁହଁ ବୁଲାଇନେଲା।

ସେହି ମୁହୂର୍ତ୍ତରେ ନାତାଶାର ମନ ଏମିତି ନରମ ହୋଇ ତରଳ ହୋଇ ଯାଇଥାଏ ଯେ, କେବଳ ନିଜେ ସେ ଜଣକୁ ଭଲପାଉଛି ଓ ସେ ଜଣକ ତାକୁ ଭଲପାଉଛି କେବଳ ଏତିକି ତାକୁ ଯଥେଷ୍ଟ ହେଲା ନାହିଁ। ବର୍ତ୍ତମାନ ଏ ମୁହୂର୍ତ୍ତରେ ତାର ପ୍ରେମିକାକୁ ଆଲିଙ୍ଗନ କରନ୍ତା, ଏହାପରି ସେ କାମନା କରୁଥିଲା। ତାର ହୃଦୟ ଯେଉଁ ପ୍ରେମରେ ପୂର୍ଣ୍ଣ ହୋଇ ରହିଥିଲା ସେ ଚାହୁଁଥିଲା ତାଙ୍କ ତୁଣ୍ଡରୁ ସେଇ ପ୍ରେମର ଭାଷା ସେ ଶୁଣନ୍ତା। ସେ ଯେତେବେଳେ ଗାଡ଼ି ଭିତରେ ମଉନ ହୋଇ ତା ବାପା ପାଖରେ ବସି ବରଫ ବସି ଯାଇଥିବା ଝରକା କଡ଼ବାଟେ ଚଟ୍‌ଚଟ୍ ଉଡ଼ି ଯାଉଥିବା ରାସ୍ତା ଆଲୁଅଗୁଡ଼ାକୁ ଦେଖୁଥିଲା ତା ମନରେ ଆହୁରି ଦୁଃଖ ଆଉରି ପ୍ରେମ ସେ ଅନୁଭବ କରୁଥିଲା। ରାସ୍ତାରେ ଧାଡ଼ି ହୋଇ ଗାଡ଼ିସବୁ ଚାଲିଥାଏ। ସେହି ଧାଡ଼ିରେ ରୋଷ୍ଟଭଙ୍କ ଗାଡ଼ିବି ଅନ୍ୟାନ୍ୟ ଗାଡ଼ି ସଙ୍ଗରେ ମିଶି ଚାଲିଲା ଓ ଥିଏଟର ଘରଯାକେ ଚାଲିଗଲା। ତାର ଚକ ଧିରେ ଧିରେ ତଳର ବରଫକୁ ମର୍ ମର୍ କରି ଚୂର୍ଣ୍ଣ କରି କରି ଗଡ଼ି ଚାଲିଥାଏ। ପିନ୍ଧା ପୋଷାକମାନଙ୍କ କାନି ଟେକିଧରି ନାତାଶା ଓ ସୋନିଆ ଚଞ୍ଚଳ ଗାଡ଼ିରୁ ଓହ୍ଲାଇ ଚାଲି ଆସିଲେ। କାଉଣ୍ଟ ଦରୁଆନ୍‌ମାନଙ୍କ ଉପରେ ଭରଦେଇ ଓହ୍ଲାଇ ଆସିଲେ। ଲୋକେ ନିର୍ଘଣ୍ଟ ସୂଚୀ ବିକି କରୁଥାନ୍ତି। ସ୍ତ୍ରୀ ପୁରୁଷ-ମାନେ ଭିତରକୁ ପଶୁଥାନ୍ତି। ସମସ୍ତେ ଏକାଠି ହୋଇ ଗୋଟାଏ ମଣିଷ ସୁଅ। ତିନଜଣଯାକ ସେଇ ସୁଅରେ ମିଶି ବା ରେଣ୍ଡାଯାକେ ଚାଲିଯାଇ ସେମାନଙ୍କ ବସିବା ଜାଗା ଖୋଜିଲେ। କବାଟ ବନ୍ଦ ଥାଏ, ଭିତରୁ ସଙ୍ଗୀତର ଶବ୍ଦ ଶୁଭୁଥାଏ।

ସୋନିଆ ତୁନି ତୁନି ହୋଇ କହିଲା "ନାତାଶା ତୋ ମୁଣ୍ଡବାଳ··· ସେମାନେ ଯେଉଁ ଖୋଟିଆ ଘେରି ଭିତରେ ବସି ଥିଏଟର ଦେଖିବେ ସେ

ଘରର କବାଟ ଖୋଲିବା ଲୋକେ ଭଦ୍ରମହିଳାମାନଙ୍କ ଆଗରେ ତରତର ହୋଇ ଖସି ପଳାଇ ତା'ର କବାଟ ଖୋଲିଦେଲା । ଦୁଆର ମୁହଁରେ ସଙ୍ଗୀତର ସ୍ୱର ଆହୁରି ସ୍ପଷ୍ଟ ହୋଇ ଶୁଭିଲା । ଧାଡ଼ି ଧାଡ଼ି ହୋଇ ଆଲୁଅ ଜଳ ଜଳ ଝେରଟିମାନ ଦିଶୁଥାଏ । ସେଠି ଭଦ୍ରମହିଳାମାନଙ୍କର ଖୋଲା ହାତ ଖୋଲା କାନ୍ଧମାନ ଦିଶୁଥାଏ । ତଳେ ଦୋକାନ ମାନ ଦିଶୁଥାଏ । ସେଠି ଲୋକଙ୍କ ପାଟି ଶବ୍ଦରେ ହୋହା ଶୁଭୁଥାଏ । ସୁନ୍ଦର ସୁନ୍ଦର ଓ୍ୱାର୍ଦି ପୋଷାକମାନ ଦିଶୁଥାଏ । ସେମାନଙ୍କ ପାଖ ଦେଇ ଭିତରକୁ ଜଣେ ଭଦ୍ରମହିଳା ପଶିଆସିଲେ । ସେ ସ୍ତ୍ରୀଲୋକ ସୁଲଭ ଚାହାଣୀରେ ନାତାଶାକୁ ଅନାଇ ଦେଲେ । ସେ ଚାହାଣୀରେ ଈର୍ଷା ବାରିହୋଇ ପଡ଼ୁଥାଏ । ସେତେବେଳକୁ ରଙ୍ଗମଞ୍ଚ ଉପରେ ପର୍ଦ୍ଦା ଉଠି ନଥାଏ, ତା ଆଗରୁ ସମବେତ ବାଦ୍ୟ ସଙ୍ଗୀତ ହେଉଥାଏ । ନାତାଶା ତାର ସ୍କାର୍ଟକୁ ସାଉଁଳି ସାଉଁଳି ସୋନିଆ ସଙ୍ଗରେ ଭିତରକୁ ପଶିଲା । ତାଙ୍କ ଆଗରେ ଧାଡ଼ି ଧାଡ଼ି ହୋଇ ଯେଉଁ ଆଲୁଅ ଝଲ୍‌ମଲ୍ ଝେରମାନ ଥାଏ ସେହି ଆଡ଼କୁ ଚାହିଁ ଚାହିଁ ସେ ବସିପଡ଼ିଲା । ତାର ଖୋଲା ହାତ ଖୋଲା ବେକ ଆଡ଼କୁ ଶହଶହ ଆଖି ଅନାଇଁ ରହିଛନ୍ତି । ଏଭଳି ହେଲେ କେମିତି ଲାଗେ ବହୁକାଳ ହେଲା ତାର ସେ ଅନୁଭବ ନଥିଲା । ହଠାତ୍ ସେ ଏ ଅନୁଭୂତି ଅନୁଭବ କଲା, ତାକୁ ଭଲ ବି ଲାଗୁଥାଏ ଖରାପ ବି ଲାଗୁଥାଏ ।

ଏହି ଅନୁଭୂତି ସଙ୍ଗେ ସଙ୍ଗେ ଏକାଠି ଗୋଛାହୋଇ ଉଠି ଆସୁଥାଏ ନାନା ସ୍ମୃତି, ନାନା କାମନା, ନାନା ପ୍ରକାର ଭାବ ।

ଅସାମାନ୍ୟ ସୁନ୍ଦରୀ ଝିଅ ଯୋଡ଼ିକ, ନାତାଶା ଆଉ ସୋନିଆ, ଆଉ ତାଙ୍କ ସଙ୍ଗରେ କାଉଣ୍ଟ ଇଲିଆ ଆନ୍ଦ୍ରେଇଚ୍ ଯେ ବହୁଦିନୁଁ ମସ୍କୋରେ ଦେଖାନଥିଲେ, ଏମାନେ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କଲେ । ପ୍ରତ୍ୟେକେ ଅସ୍ପଷ୍ଟ ଭାବରେ ଖବରଟା ଜାଣିଗଲେ ଯେ ପ୍ରିନ୍‌ସ ଆନ୍ଦ୍ରେଙ୍କ ସଙ୍ଗରେ ନାତାଶାର ବିବାହର ଠିକଣା ହୋଇଛି । ଆଉ ସେଦିନୁ ରୋଷ୍ଟୋଭ ପରିବାର ଗାଁରେ ରହୁଛନ୍ତି । ଯେଉଁ ଝିଅଟି ସାରା ରୁଷ ଦେଶରେ ସବୁଠାରୁ ଚମତ୍କାର ବିବାହ ସମ୍ବନ୍ଧଟିଏ କରିବ ସମସ୍ତେ ତାହାରି ଆଡ଼କୁ କୁତୂହଳୀ ହୋଇ ଅନାଇଲେ ।

ନାତାଶା ଗାଁରେ ରହି ଆହୁରି ସୁନ୍ଦରୀ ହୋଇ ଯାଇଥିଲା ବୋଲି ସମସ୍ତେ ତାକୁ କହୁଥିଲେ । ତାର ମନରେ ଉତ୍ତେଜନା ଥିବାରୁ ସେ ବିଶେଷତଃ ସେଇଥିପାଇଁ ବେଶି ସୁନ୍ଦରୀ ଦିଶୁଥିଲା । ଜୀବନ ଓ ରୂପର ପୂର୍ଣ୍ଣତା, ତା ସହିତ ତାର ଚାରିଆଡ଼କୁ ଉଦାସୀନ ଭାବ ଏସବୁ ମିଶି ସେ ଏଭଳି ଦିଶୁଥିଲା ଯାହା ଦେଖି ଭୁଲି ହେବନାହିଁ । ତାର କଳା କଳା ଆଖି ଜନତାକୁ ଦେଖୁଥାଏ କିନ୍ତୁ କୌଣସି ଜଣକୁ ସେ ଖୋଜୁନଥାଏ । ତାର ସରୁ ହାତ କହୁଣୀଯାକେ ଖୋଲା ଥାଏ, ଘରର ମଖମଲ ଫଳ ଉପରେ ସେ ଭରା ଦେଇଥାଏ । ତା ହାତ ପାପୁଲିରେ ନାଟ୍ୟ ସୂଚୀରେ କାଗଜ ଖଣ୍ଡିକ ଥାଏ, ଅଜାଣତରେ ସଙ୍ଗୀତର ତାଳେ ତାଳେ ସେ ହାତ ମୁଠାଉ ଥାଏ ପୁଣି ହାତ ଖୋଲୁଥାଏ ।

ହଠାତ୍ ତାର ବିଦାୟକର ଅପମାନ ତାର ମନେ ପଡ଼ିଗଲା । ସେ ମନେ ମନେ ନିଜକୁ ନିଜେ କହିଲା "ମତେ ତାଙ୍କର ପରିବାରରେ ମିଶାଇବାକୁ ତାଙ୍କର କି ଅଧିକାର ଅଛି ! ସେକଥା ଭାବିବା ଉଚିତ୍ ନୁହେଁ । ଆନ୍ଦ୍ରେ ଆସିବାଯାକେ ଭାବିବା ଉଚିତ ନୁହେଁ ।" ଯେଉଁମାନେ ଦର୍ଶକ ଆସନରେ ବସିଥାନ୍ତି, ସେଠି ଯେତେ ଚିହ୍ନା ମୁହଁ ଯେତେ ଅଚିହ୍ନା ମୁହଁ ସେ ସେହି ମୁହଁଗୁଡ଼ିକୁ ଅନାଇଁ ରହିଲା ।

ଦର୍ଶକମାନଙ୍କ ସବା ଆଗରେ ଠିକ୍ ମଝିରେ ରେଲିଂ ଉପରେ ଭରାଦେଇ ଠିଆ ହୋଇଥାଏ ଦୋଲଦୋଭ୍, ସେ ପାରସ୍ୟ ଦେଶର ପୋଷାକ ପିନ୍ଧିଥାଏ । ତାର ମୁଣ୍ଡରେ କୁଞ୍ଚକୁଞ୍ଚିଆ ହୋଇ ମୁଣ୍ଡେବାଳ ଯେ ମୁଣ୍ଡ ଆଗରୁ ପଛଆଡ଼କୁ ଟାଣି ସେ ମୁଣ୍ଡ କୁଣ୍ଡେଇ ଥାଏ । ସମଗ୍ର ଥିଏଟର ଘର ଭିତରେ ଯେଉଁଠି ଠିଆ ହେଲେ ମଣିଷ ବାରି ହୋଇପଡ଼ିବ ସେ ସେଇଠି ଠିଆ ହୋଇଥାଏ । ଲୋକେ ତାକୁ ଅନାଉଛନ୍ତି ସେ ଜାଣିଥାଏ । କିନ୍ତୁ ତାକୁ ମୋଟେ ଅସଜ ଲାଗୁନଥାଏ । ସତେ ଯେପରି ସେ ଘରେ ସେ ଏକୁଟିଆ ଅଛି ସେମିତି ତାକୁ ଲାଗୁଥାଏ । ମସ୍କୋ ସହର ଭିତରେ ଯୁବକମାନଙ୍କ ଭିତରେ ଯେଉଁମାନେ ସବୁଠୁ ବେଶି ନାଁ ଡାକ ସେମାନେ ତା ଚାରିପାଖ ଘେରିଥାନ୍ତି, ଜଣାଯାଉଥାଏ ସେମାନଙ୍କ ମଧ୍ୟରେ ସେହି ଅଗ୍ରଣୀ ।

ଆଉପାଖ ଘରେ ଭିତରକୁ ଆସିଲା ଗୋଟିଏ ଡେଙ୍ଗା ସୁନ୍ଦର ସ୍ତ୍ରୀଲୋକ । ତା ମୁଣ୍ଡରେ ବହୁତ ବାଳ । ତାର ବାହା ଆଉ ବେକ ବୁଝି ଖୋଲା ପଡ଼ିଥାଏ, ଖୁବ୍ ମୋଟା । ତା ବେକରେ ଦୁଇସର ହୀରା ମୋତିମାଳ ପଡ଼ିଥାଏ । ସେ ତା ଆସନରେ ବସିବାକୁ ବହୁତ ଡେରି କଲା । ତାର ସିଲ୍‌କ ତିଆରି ବହଳ ଗାଉନ୍‌କୁ ସେ ଖସ୍‌ଖସ୍ କରୁଥାଏ ।

ନାତାଶା ତାର ମନ ଅଜାଣତରେ ସେହି ବେକ, ସେହି କାନ୍ଧ, ସେହି ମୋତିହାର, ସେହି ଦେହକୁ ପରଖି ଦେଖିଲା ଓ ସେ କାନ୍ଧର ଓ ବେକର ସୌନ୍ଦର୍ଯ୍ୟକୁ ପ୍ରଶଂସା କଲା । ନାତାଶା ତାକୁ ଆଉରି ଧାରେ ଦେଖୁଥାଏ । ସେ ବୁଲିପଡ଼ି ଅନାଇ ଦେଇ କାଉଣ୍ଟ ଇଲିଆ ଆନ୍ଦ୍ରେଇଚ୍‌ଙ୍କ ମୁହଁକୁ ଚାହିଁ ତାଙ୍କ ଆଡ଼କୁ ମୁଣ୍ଡ ହଲାଇ ହଲାଇ ମୁରୁକ ମୁରୁକ ହସିଲା । ସେ କାଉଣ୍ଟେସ୍ ବେଜୁଖଭ୍ ପିଏରେର ସ୍ତ୍ରୀ । କାଉଣ୍ଟ ତ ସମାଜର ସମସ୍ତଙ୍କୁ ଚିହ୍ନିଥିଲେ । ସେ ନଇଁପଡ଼ି ତାଙ୍କ ସଙ୍ଗରେ କଥାଭାଷା ଆରମ୍ଭ କରିଦେଲା ।

ସେ ପଚାରିଲେ "କ'ଣ ଏଠିକି ବହୁତବେଳୁ ଆସିଲଣି ? ରହନ୍ତୁ ମୁଁ ଯାଉଛି । ମୁଁ ଯାଉଛି ଆପଣଙ୍କ ହାତକୁ ଚୁମ୍ବନ କରିବ । କାମ ଥିଲା ବୋଲି ସହରକୁ ଆସିଛି ସେ ଝିଅମାନଙ୍କୁ ସଙ୍ଗରେ ଆଣିଛି । ଲୋକେ କହୁଛନ୍ତି ସେ ସେମ୍ୟୋନଭ୍‌ଙ୍କ ଅଭିନୟ କୁଆଡ଼େ ଅତି ଚମତ୍କାର । କାଉଣ୍ଟ ପ୍ୟଟର୍ କିରଲୋଭିଚ୍ ଆମକୁ କେବେ ଭୁଲନ୍ତି ନାହିଁ । ସେ କ'ଣ ଏଠି ଅଛନ୍ତି ?"

ଏଲେନ ନାତାଶାକୁ ତୀକ୍ଷ୍ଣ ଦୃଷ୍ଟିରେ ଅନାଇଁ ଅନାଇଁ କହିଲା "ହଁ ସେ ଆସିବାକୁ ବସିଥିଲେ ।"

କାଉଣ୍ଟ ଇଲିଆ ଆନ୍ଦ୍ରେଇଚ ତାଙ୍କ ଜାଗାରେ ବସିପଡ଼ିଲେ । ସେ ନାତାଶା କାନରେ ଫୁସ୍‌ଫୁସ୍ କରି କହିଲେ "ଭାରି ସୁନ୍ଦର ଲୁହନ୍ତି ?"

ନାତାଶା କହିଲା "ଭାରି ସୁନ୍ଦର । ତାଙ୍କୁ ଦେଖି ତାଙ୍କ ପ୍ରେମରେ ପଡ଼ିଯିବାକୁ ଇଚ୍ଛା ହେଉଛି ।

ସେତିକବେଳେ ସେମାନେ ଯନ୍ତ୍ର ସଙ୍ଗୀତରେ ଶେଷ ଧାଡ଼ିର ରାଗିଣୀ ଶୁଣିଲେ । ସଙ୍ଗୀତ ଚାଳକ ତାଙ୍କ ବାଡ଼ି ଠକ୍ ଠକ୍ କଲେ ଶୁଭିଲା । ଦର୍ଶକମାନେ ତରତର ହୋଇ ନିଜ ନିଜ ଜାଗାକୁ ଧାଇଁ ଆସିଲେ । ପର୍ଦ୍ଦା ଉଠିଲା ।

ପର୍ଦ୍ଦା ଉଠିଲା ମାତ୍ରେ ଚେୟାରମାନଙ୍କରେ ଓ ଆସନମାନଙ୍କରେ ବସିଥିବା ଲୋକେ ଚୁପ୍ ହୋଇଗଲେ । ବୁଢ଼ା ଟୋକା ସମସ୍ତେ ନିଜ ନିଜ ପୋଷାକ ପିନ୍ଧି ବସିଥାନ୍ତି । ମାଇପେ ନିଜ ନିଜ ଖୋଲା ମାଂସଳ ଦେହ ଉପରେ ଦାମୀ ଦାମୀ ପଥରର ଅଳଙ୍କାର ପିନ୍ଧିଥାନ୍ତି । ଯେତେ ଯେ ରହିଲେ ସମସ୍ତଙ୍କ ନିଶା ରହିଲା ରଙ୍ଗମଞ୍ଚ ଉପରେ । ସମସ୍ତିଙ୍କ ଆଖିରେ ଆଗ୍ରହୀ କୁତୁହଳ । ନାତାଶା ସେଇଆଡ଼କୁ ଅନାଇଁଲା ।

ଏତେ ଦିନ ମଫସଲରେ ରହି ଆସିଲାପରେ ପୁଣି ତାର ମନର ଗମ୍ଭୀର ଅବସ୍ଥାରେ ନାତାଶାକୁ ଏସବୁ ଲାଗିଲା ଉତ୍କଟ ଓ ଅତି ଅସାଧାରଣ । ସେ ନାଟକର ଅଭିନୟକୁ ତା ମନ ଭିତରେ ଅନୁସରଣ କରିପାରିଲା ନାହିଁ । ତା ଆଖିକି ଦିଶୁଥାଏ ଖାଲି ରଙ୍ଗବୋଳା କାଗଜ ପଟାମାନ, ଅଦ୍ଭୁତ ପ୍ରକାରେ ଅଚିହ୍ନା ପୋଷାକ ପିନ୍ଧିଥିବା ସ୍ତ୍ରୀ ପୁରୁଷ । ସେମାନେ ଉଜ୍ଜଳ ଆଲୁଅରେ କେମିତି ପ୍ରକାରେ ବୁଲାଚଲା କରୁଥାନ୍ତି, କଥା କହୁଥାନ୍ତି, ଗୀତ ବୋଲୁଥାନ୍ତି, କି ଅର୍ଥ ପ୍ରକାଶ କରିବାକୁ ଏ ସବୁ ହୋଇଥାଏ ତା' ସେ ଜାଣିଥାଏ । କିନ୍ତୁ ଏସବୁ ଏମିତି ଉଦ୍ଭଟ ହୋଇ ମିଛ, ଏମିତି ଅବାସ୍ତବ ଯେ ଅଭିନେତା ଅଭିନେତ୍ରୀମାନଙ୍କୁ ଦେଖି ତାକୁ ଲାଜ ମାଡୁଥାଏ ଓ ପୁଣି ହସ ବି ମାଡୁଥାଏ । ସେ ଦର୍ଶକମାନଙ୍କ ମୁହଁକୁ ଅନାଇଲା । ତା ନିଜର ଯେମିତି ବ୍ୟଙ୍ଗଭାବ ଆସୁଥାଏ ତା ନିଜକୁ ଯେମିତି ଗୋଳମାଳିଆ ଲାଗୁଥାଏ ସେ ସେମାନଙ୍କ ମୁହଁରେ ବି ସେହି ଭାବରେ ଚିହ୍ନ ଦେଖିବାକୁ ଆଶା କରିଥିଲା । କିନ୍ତୁ ସେ ଦେଖିଲା ଯେ ସବୁ ମୁହଁ ସେଇ ରଙ୍ଗମଞ୍ଚ ଉପରେ କ'ଣ ଘଟୁଛି ସେଇଆକୁ ଲକ୍ଷ କରୁଥାନ୍ତି । ସବୁ ମୁହଁରେ ଦିଶୁଥାଏ ପରମ ଆନନ୍ଦ । କିନ୍ତୁ ନାତାଶାକୁ ଲାଗୁଥାଏ ସେମାନଙ୍କର ଠାଣି ବୋଲି ଲୋକ ଦେଖାଣିଆ । ନାତାଶା ଭାବିଲା "ବୋଧହୁଏ ଏସବୁ ହୁଏ ।" ସେ ଥର ଥର କରି ଧାଡ଼ି ଧାଡ଼ି ହୋଇ ସଜା ହୋଇ ରହିଥିବା ପୁରୁଷମାନଙ୍କର ପୋମେଡ଼ ବୋଳା ମୁଣ୍ଡମାନଙ୍କୁ

ଦେଖୁଥାଏ ତ ପୁଣି ଘେର ଭିତରେ ଯେଉଁ ସ୍ତ୍ରୀ ଲୋକମାନେ ବସିଥାନ୍ତି, ଦେହର କିଛି କିଛି ଖୋଲା ଥାଏ ସେମାନଙ୍କ ଆଡ଼କୁ ଅନାଉଥାଏ। ବିଶେଷତଃ ଆର ପାଖରେ ବସି ତାର ପଡ଼ୋଶୀ ହୋଇଥାଏ ଏଲେନ୍, ତାକୁ ଦେଖୁଥାଏ। ଏଲେନର ଦେହରେ ଠାଏ ଠାଏ ଲୁଗା ନଥାଏ। ତାର ମୁହଁରେ ଏକ ଶାନ୍ତ ସ୍ନିଗ୍ଧ ହସ। ସେ ନିବିଷ୍ଟ ମନରେ ରଙ୍ଗମଞ୍ଚ ଆଡ଼କୁ ଅନାଇଁଥାଏ। ଥିଏଟର ଘରେ ଉଜ୍ଜ୍ୱଳ ଆଲୁଅ ଜଳୁଥାଏ। ଗହଳି ଲାଗି ପବନ ତାତି ଉଠିଥାଏ। ସେଇଠି ବସିଥାଏ ଆରାମରେ ଏଲେନ୍। କ୍ରମେ ନାତାଶା ଗୋଟାଏ ପ୍ରକାର ନିଶାରେ ଘାରିହେଲା। ବହୁତ ଦିନ ହେଲା ସେ ଏ ଅନୁଭୂତି ପାଇଥିଲା। ସେ କିଏ ସେ କେଉଁଠି ଅଛି ତା ଆଗରେ ପୁଣି କ'ଣ ସବୁ ହେଉଛି ଏସବୁ ବିଷୟରେ ତାର ସଂଜ୍ଞା ଲୁପ୍ତ ହୋଇଗଲା। ସେ ଖାଲି ଗୁହିଁ ଗୁହିଁ ସ୍ୱପ୍ନ ଦେଖିଲା। ତାର ମନ ଭିତରେ ଅତି ଅଦ୍ଭୁତ ଧାରଣାମାନ ଛିଣ୍ଡା ଛିଣ୍ଡା ହୋଇ ଆକସ୍ମିକ ଭାବରେ ଉଡ଼ି ଉଡ଼ି ଗ୍ଲଲା। ଥରେ ତା ମୁଣ୍ଡରେ ଏଭଳି ଧାରଣା ଆସିଲା ଯେ ସେ ଷ୍ଟେଜରେ ଆଲୁଅମାଳା ଉପରେ ଡେ଼ଇଁପଡ଼ି ସେଠି ସେ ଅଭିନେତ୍ରୀ ଯେଉଁ ଗୀତ ବୋଲୁଛି ସେ ନିଜେ ସେ ଗୀତ ବୋଲି, ପୁଣି ତାର ଇଚ୍ଛା ହେଲା ତା ସେପାଖ ଯେଉଁ ବୁଢ଼ା ଭଦ୍ରଲୋକ ଜଣକ ବସିଛନ୍ତି ସେ ତାଙ୍କ ଦେହରେ ତାର ହାତପଙ୍ଖାଟା ଗେଞ୍ଜିଦେବ। ପୁଣି ତାର ମନେହେଲା ସେ ଏ ଲୋକ ଆଡ଼କୁ ନଇଁପଡ଼ି ତାକୁ କୁତୁକୁତୁ କରିବ।

ଗୋଟାଏ ଗୀତ ଆରମ୍ଭ ହେବା ପୂର୍ବରୁ ରଙ୍ଗମଞ୍ଚ ଉପରେ ଯେତେବେଳେ ସବୁ ଭୁନତାନ ପଡ଼ିଗଲା, ସେତେବେଳେ ରୋସ୍ତଭଙ୍କ ପାଖ ଘେର ଆଡ଼କୁ ଥିବା ଦର୍ଶକମାନଙ୍କ ଆଡ଼କୁ ଯେଉଁ କବାଟ ଥିଲା ସେ କବାଟ କେଁ କେଁ ହେଲା ଓ ଜଣେ ପୁରୁଷର ପାଦ ଶବ୍ଦ ଶୁଭିଲା। କାଉଣ୍ଟେସ ବେଦହଭ ସ୍ମିତ ହସ ହସି ଆଗନ୍ତୁକ ଆଡ଼କୁ ଅନାଇଲେ ତାଙ୍କ ଦୃଷ୍ଟି ଯେଉଁ ଆଡ଼କୁ ପଡ଼ିଛି ସେହି ଆଡ଼କୁ ଗୁହିଁ ନାତାଶା ଦେଖିଲା ଜଣେ ଭାରି ସୁନ୍ଦର ଚେହେରାର ଆଡଜୁଟାଣ୍ଟ ସେମାନଙ୍କ ଘେର ଆଡ଼କୁ ଆତ୍ମତୁଷ୍ଟ ଅଥଚ ଭଦ୍ର ଚାଲିରେ ଗ୍ଲଲି ଆସୁଛନ୍ତି। ସେ ଜଣକ ଆନାତୋଲ କୁରଗିନ୍, ସେ ତାକୁ ବହୁତ ଦିନ ତଳେ ଦେଖିଥିବା ଓ ପିଟର୍ସବର୍ଗରେ

ନାଚ ଦେଖିବାକୁ ଦେଖିଥିଲା । ସେ ବର୍ତ୍ତମାନ ସେ ଗୋଟାଏ ଆଡ଼ଜୁଟାଣ୍ଟର ପୋଷାକ ପିନ୍ଧିଥିଲା । ସୈନ୍ୟ ବିଭାଗରେ ତାର ଯେଉଁ ପଦବୀ ସେହି ଚିହ୍ନ ପିନ୍ଧିଥିଲା । ପୋଷାକରେ କାନ୍ଧରେ ଘଣ୍ଟି ପଡ଼ିଥିଲା । ସେ ଗୋଡ଼ ଛୋଟିଛୋଟି ଛୁଣ୍ଡ ଫୁଲେଇ ଚାଲୁଥିଲା । ସେ ଯଦି ସୁନ୍ଦର ହୋଇନଥାନ୍ତା, ତେବେ ତାର ସୁନ୍ଦର ମୁହଁରେ ମନଖୋଲା ସନ୍ତୋଷ ଓ ପ୍ରଫୁଲ୍ଲତାର ଭଙ୍ଗୀ ଯଦି ପ୍ରକୁଟି ନଥାନ୍ତା ତେବେ ତାର ଚାଲିଦେଖି ସେ ବି ହସୁଥାନ୍ତେ । ସେତେବେଳେ ଅଭିନୟ ଚାଲିଥିଲେବି ଗାଲିଚା ପଡ଼ିଥିବା କାଠ ରାସ୍ତାରେ ସେ ମୋଟେ ତରତର ନ ହୋଇ ହାଲୁକା ହୋଇ ଚାଲୁଥାଏ । ତାର ଅଳର ବୋଳା ସୁନ୍ଦର ମୁଣ୍ଡଟି ଉପରକୁ ଟେକିଥାଏ । ତାର ଖଣ୍ଡା ଓ ଗୋଡ଼ରେ ବନ୍ଧା ହୋଇଥିବା ଯୋଡ଼ା କେଞ୍ଚା ଟଣ୍‌ଟଣ୍ ଶବ୍ଦ କରୁଥାଏ । ନାତାଶାକୁ ଚାହିଁଦେଇ ସେ ତାର ଭଉଣୀ ପାଖକୁ ଗଲା । ସେ ତା ହାତକୁ କଷ୍ଟ ହେଉଥିବା ଦସ୍ତାନା ପିନ୍ଧିଥାଏ । ଘେରର ଫାନ୍ଦରେ ହାତକୁ ଥୋଇଦେଇ ସେ ତା ଭଉଣୀ ଆଡ଼କୁ ଚାହିଁ ମୁଣ୍ଡ ହଲାଇଲା । ନଇଁପଡ଼ି ନାତାଶା ଆଡ଼କୁ ଇଙ୍ଗିତ କରି ସେ ତା ଭଉଣୀକୁ କ'ଣ ପଚାରିଲା ।

"ବା ଭାରି ସୁନ୍ଦର" ସେ କହିଲା । ସମ୍ଭବତଃ ସେ ନାତାଶା କଥାହିଁ କହୁଥାଏ । ନାତାଶା ତା କଥା ଶୁଣିପାରୁ ଥାଏ । କିନ୍ତୁ ତାର ଓଠର ଭଙ୍ଗୀରୁ କଥାଗୁଡ଼ା ଅନୁମାନ କରିପାରୁଥାଏ । ସେଠୁ ଉଠି ସେ ଆଗ ଧାଡ଼ିକୁ ଚାଲିଗଲା ଓ ଯାଇ ଦୋଲହଭ୍ ପାଖରେ ବସି ପଡ଼ିଲା । ଯେଉଁ ଲୋକଟାକୁ ସମସ୍ତେ ଏତେ ଜଗିରଖି ଚଳନ୍ତି, ବନ୍ଧୁ ଭାବରେ ସେ ନଜାଣିଲାପରି ତାକୁ କହୁଣୀରେ ଭୁଷାଏ ମାରିଲା । ତାପରେ ଆନନ୍ଦରେ ଆଖିଠାରି ସେ ତାକୁ ଚାହିଁ ହସିଲା ଓ ରଙ୍ଗମଞ୍ଚର ଆଲୁଅ ଧାଡ଼ିରେ ପାଦ ଭିଡ଼ିଦେଲା ।

କାଉଣ୍ଟ କହିଲେ, "ଭାଇ ଭଉଣୀ ହେଲେ ଅବିକଳ ଏକାପରି ! ଦୁଇଜଣଙ୍କ ଚେହେରା କେଡ଼େ ସୁନ୍ଦର" ପ୍ରଥମ ଅଙ୍କ ସରିଗଲା । ଯେଉଁ ଦର୍ଶକମାନେ ଆସନରେ ବସିଥିଲେ, ସେମାନେ ସମସ୍ତେ ଠିଆ ହୋଇପଡ଼ି ଏଠି ଉଠି ସେଠି ବସି ପଡୁଥାନ୍ତି, ପଦାକୁ ଯାଉଥାନ୍ତି ଓ ପୁଣି ଭିତରକୁ ଆସୁଥାନ୍ତି ।

ଏଲେନ ଯେଉଁ ଘର ଭିତରେ ଥାଏ, ସେଠି ସେତେବେଳକୁ ଲୋକ ଭରି, ତାର ଯେଉଁ କଡ଼କୁ ସାଧାରଣ ଆସନ ମାନ ଥାଏ, ସେଠି ସେତେବେଳେ ଦେଶର ସବୁଠୁ ମାନ୍ୟଗଣ୍ୟ, ସବୁଠୁଁ ଅଧିକ ବୁଦ୍ଧିଜୀବୀ ଲୋକେ ରୁଣ୍ଡ ହୋଇଥାନ୍ତି । ସେମାନେ ତାକୁ ଚହିଁଛନ୍ତି, ସମସ୍ତଙ୍କୁ ଏହି କଥାଟି ଜଣାଇ ଦେବାକୁ ସତେକି ସେମାନେ ପରସ୍ପର ସଙ୍ଗରେ ପ୍ରତି-ଦ୍ୱନ୍ଦ୍ୱିତା କରୁଥାନ୍ତି । ପର୍ଦ୍ଦା ଉଠିବା ଆଗରୁ ସେତକ ଅନ୍ତରାୟ ସମୟଯାକ କୁରବନ୍ ଦୋଲହଭ୍ ସଙ୍ଗରେ ରଙ୍ଗମଞ୍ଚ ନେଇ ଆଲୁଅ ସାମନାରେ ଠିଆହୋଇ ରହିଥାଏ ଓ ରୋସ୍ତଭମାନେ ଯେଉଁ ଭିତରେ ଥାନ୍ତି, ସେହି ଘେର ଆଡ଼କୁ ଅନାଇଁ ଥାଏ । ନାତାଶା ଜାଣିପାରୁଥାଏ ଯେ ସେ ତାହାର କଥା କହୁଛି । ଏକଥା ଜାଣି ତାକୁ ଖୁସି ଲାଗୁଥାଏ । ସେ ବୁଲିବି ପଡ଼ିଲା ଯେପରିକି ଯେଉଁ କଣରୁ ତା ମୁହଁକୁ ଦେଖିଲେ ତା ମୁହଁ ବେଶୀ ଶୋଭା ଦିଶିବ । ସେ ତାକୁ ସେହି କଣରୁ ଦେଖିପାରିବ । ଦ୍ୱିତୀୟ ଅଙ୍କ ଆରମ୍ଭ ହେବାପୂର୍ବରୁ ସାଧାରଣ ଦର୍ଶକ ମଣ୍ଡଳୀରେ ସେ ପିଏରେର ଚେହେରାକୁ ଦେଖିଲା । ରୋସ୍ତଭ ପରିବାର ଆସିବା ଦିନଠାରୁ ସେମାନେ ତାକୁ ଦେଖି ନଥିଲେ । ତା ମୁହଁଟି ବିମର୍ଷ ଦିଶୁଥାଏ । ନାତାଶା ଆଗେ ତାକୁ ଶେଷଥର ଯେପରି ଦେଖିଥିଲା ସେ ତାଠାରୁ ଆହୁରି ମୋଟା ହୋଇଯାଇଥାଏ । କାହାରି ଆଡକୁ ନଚାହିଁ ସେ ଆଗ ଧାଡ଼ି ଆଡ଼କୁ ଚାଲିଗଲା । ଆନାଓତାଲ ତା ପାଖକୁ ଗଲା ଓ ରୋସ୍ତଭ ପରିବାର ଯେଉଁ ଘେର ଭିତରେ ଥିଲେ, ସେହି ଆଡ଼କୁ ଅନାଇ ଅଙ୍ଗଭଙ୍ଗୀ କରି ତାକୁ କ'ଣ କହିଲା । ପିଏରେ ନାତାଶାକୁ ଦେଖି ଖୁସି ହୋଇ ଉଠିଲା ଓ ଧାଡ଼ି ଧାଡ଼ି ଆସନ କଡ଼େ କଡ଼େ ସେ ସେମାନଙ୍କ ଘେର ଆଡ଼କୁ ଚାଲିଆସିଲା । କହୁଣୀରେ ଭରାଦେଇ ସେ ବହୁତ ବେଳ ଯାଏ ହସି ହସି ନାତାଶା ସହିତ କଥାଭାଷା ହେଲା । ପିଏରେ ସଙ୍ଗେ କଥାଭାଷା ହେଲାବେଳେ କାଉଣ୍ଟେସ ବେଜହୋଭଙ୍କ ଘେର ଭିତରେ ଜଣେ ପୁରୁଷ କଥା ହେଲାପରି ନାତାଶାକୁ ଶୁଭିଲା ।

ସତେ ଯେପରିକି ତାକୁ କେହି କହିଦେଲା ଯେ, ଏ ଜଣକ କୁରାଗିନ୍ । ସେ ବୁଲିପଡ଼ିବାରୁ ଦୁହିଁଙ୍କ ଆଖି ଭେଟାଭେଟି ହେଲା । କୁରାଗିନ୍ ସିଧା ତା ଆଖିକୁ ଅନାଇଲା । ସେ ହସିଲା ପରି ଦିଶୁଥାଏ ।

ତା ଦୃଷ୍ଟିରେ ଅନୁରାଗ ଓ ପ୍ରଶଂସା ପୁରି ରହିଥାଏ । ନାତାଶାକୁ ଲାଗୁଥାଏ ସେ ତାର ଏତେ ପାର୍ଶ୍ୱରେ ଥାଇ ତା ଆଡ଼କୁ ଅନାଇଁ ପୁଣି ସେ ତାକୁ ପ୍ରଶଂସା କରୁଛି । ଏ କଥାକୁ ନିଶ୍ଚିତ ଭାବେ ଜାଣି ସେ ଯେ ତା ସଙ୍ଗରେ ଚିହ୍ନା ନହୋଇଛି ଏ ବଡ଼ ଆଶ୍ଚର୍ଯ୍ୟର କଥା !

ହ୍ୱିଁ ଖିପ୍ସ ଅଙ୍କ ଗ୍ଭଲିଥିଲବେଳେ ଯେତେଥର ନାତାଶା ସାଧାରଣ ଦର୍ଶକ ମଣ୍ଡଳୀ ଆଡ଼କୁ ଅନାଏ ଯେତେଥର ସେ ଦେଖେ, ସେ ଆନାତୋଲ କୁରଗିନ୍ ଚଉକ ପଛଆଡ଼େ ଗୋଟାଏ ହାତ ପକାଇ ଦେଇ ତାର ଆଡ଼କୁ ଏକ ଦୃଷ୍ଟିରେ ଅନାଇ ରହିଛି । ସେ ଯେ ତାକୁ ଗ୍ଭହିଁ ଏଭଳି ମନ୍ତ୍ରମୁଗ୍ଧ ହୋଇ ଯାଇଛି ଏକଥା ଦେଖି ନାତାଶାକୁ ଆନନ୍ଦ ଲାଗୁଥାଏ, ଏଥିରେ କିଛି ଅଡୁଆ ଅଛି ଏକଥା ତା ମୁଣ୍ଡରେ ବି କେବେ ପଶିନଥିଲା ।

ହ୍ୱିଖିପ୍ସ ଅଙ୍କ ସରିଗଲା ମାତ୍ରେ କାଉଣ୍ଟେସ ବେଜୁଖଭ ଠିଆ ହୋଇପଡ଼ି ବେଜୁଖଭ ପରିବାର ଯେଉଁ ଘେର ଭିତରେ ଥିଲେ, ସେ ଆଡ଼କୁ ବୁଲି ପଡ଼ିଲେ, (ତାଙ୍କର ଛାତି ଉପରେ ଆଦୌ ଲୁଗା ନଥିଲା) । ସେ ଦସ୍ତାନ ପିନ୍ଧିଥିଲେ । ସେଇ ଦସ୍ତାନ ପିନ୍ଧା ହାତ ପାପୁଲିରେ କାଣି ଆଙ୍ଗୁଠି ହଲାଇ ସେ ବୁଢ଼ା କାଉଣ୍ଟଙ୍କୁ ଠାରିଲେ ଓ ଯେତେ ମଣିଷ ତାଙ୍କ ଘେର ଗ୍ଭରିପାଖେ ଗୁଣ୍ଡ ହୋଇଥିଲେ, ସେମାନଙ୍କୁ ଖାତିର ନକରି ହସି ହସି ବୁଢ଼ା କାଉଣ୍ଟଙ୍କ ସଙ୍ଗେ କଥାଭାଷା ଆରମ୍ଭ କରିଦେଲେ ।

ସେ କହିଲେ "ଆଜ୍ଞା ଆପଣଙ୍କର ଏତେ ଚମତ୍କାର ଝିଅମାନଙ୍କ ସଙ୍ଗରେ ମତେ ଟିକିଏ ଚିହ୍ନା କରାଇ ଦେଉ ନାହାନ୍ତି ? ସହରଯାକ ମଣିଷ ତାଙ୍କର ପ୍ରଶଂସା ଗାଉଛନ୍ତି । ଅଥଚ ମୁଁ ତାଙ୍କୁ ଚିହ୍ନେ ନାହିଁ ।"

ନାତାଶା ଠିଆ ହୋଇପଡ଼ି ସେଇ ଅନୁରୂପ ସୁନ୍ଦରୀ କାଉଣ୍ଟେସଙ୍କୁ ନମସ୍କାର କଲା । ଏଇ ଅସାମାନ୍ୟ ସୁନ୍ଦରୀ ତାକୁ ପ୍ରଶଂସା କରୁଛନ୍ତି ପୁଣି ନାତାଶା ଏତେ ଖୁସି ହୋଇଗଲା ଯେ ସେ ଅତି ଆନନ୍ଦରେ ନାଲି ପଡ଼ିଗଲା ।

ଏଲେନ କହିଲା "ମୁଁ ନିଜେତ ମସ୍କୋ ସହରରେ ବାସିନ୍ଦା ହେବାକୁ ମନେ କରୁଛି । ଆଉ ଆପଣ ଏଭଳି ରତ୍ନକୁ ମଫସଲରେ ଲୁଚାଇ ରଖିଛନ୍ତି, କେଡ଼େ ଲଜ୍ଜାର କଥା ।

କାଉଣ୍ଟେସ ଓ ବେର୍ଜହଭ୍ ଲୋକଙ୍କୁ ବଶ କରାଇପାରୁଥିଲେ ବୋଲି ତାଙ୍କର ଯେଉଁ ନା ଥିଲା, ତା ଯଥାର୍ଥ । ଯେଉଁ କଥା ପ୍ରକୃତରେ ତାଙ୍କ ମନରେ ନଥିବ, ବିଶେଷତଃ ଖୁସାମଦିଆ କଥା ସେ ଅତି ସରଳ ହୋଇ ସହଜ ଭାବରେ କହି ପାରୁଥିଲେ ।

ସେ କହିଲେ "ନାହିଁ, ନାହିଁ, କାଉଣ୍ଟ, ଏଥରକ ମୁଁ ଏଠିକି ବେଶୀଦିନ ରହିବାକୁ ନଆସି ଥିଲେବି ଆପଣ ମଧ୍ୟ ବେଶୀ ଦିନ ପାଇଁ ଆପଣଙ୍କ ଝିଅମାନଙ୍କର ଚର୍ଚ୍ଚା କରିବାକୁ ନିଶ୍ଚୟ ମତେ ସୁଯୋଗ ଦେବେ । ଯାହାହେଉ ସେମାନଙ୍କୁ ଆନନ୍ଦ ଦେବାପାଇଁ ମୁଁ ମୋର ପାରୁପର୍ଯ୍ୟନ୍ତ ଚେଷ୍ଟା କରିବି ।" ତାଙ୍କର ସେହି ଅପରିବର୍ତ୍ତିତ ସୁନ୍ଦର ହସ ହସି ସେ ନାତାଶାକୁ କହିଲେ "ମୁଁ ପିଟର୍ସବର୍ଗରେ ତୁମର ବହୁତ ପ୍ରଶଂସା ଶୁଣିଛି । ତୁମ ସାଙ୍ଗେ ଚିହ୍ନା ହେବାପାଇଁ ମୋର ଭାରି ଇଚ୍ଛା ଥିଲା । ମୋର ସ୍ୱାମୀଙ୍କର ବନ୍ଧୁ ପ୍ରିନ୍‌ସ ଆନ୍ଦ୍ରେ ବଲକନସ୍କିଙ୍କ ତୁଣ୍ଡରୁ ମୁଁ ମଧ୍ୟ ତୁମ କଥା ଶୁଣିଛି ।"

ସେ ଏକଥା ଉପରେ ଖୁବ୍ ଜୋର ଦେଇ କହିଲେ । ଏହାଦ୍ୱାରା ସେ ଜଣାଇ ଦେବାକୁ ଚାହିଁଲେ ଯେ ପ୍ରିନ୍‌ସ ଆନ୍ଦ୍ରେ ବଲକନ୍‌ସ୍କିରେ ନାତାଶା ସଙ୍ଗରେ କି ସମ୍ପର୍କ ତା ସେ ଜାଣନ୍ତି । ସେ ଅନୁରୋଧ କଲେ ଯେ ଅଭିନୟ ଶେଷ ହେବାମାନେ ସେ ଦୁଇଟି ଝିଅ ଭିତରୁ ଜଣଙ୍କୁ ତାଙ୍କ ସହିତ ତାଙ୍କ ଘର ଭିତରେ ବସିବାକୁ ପଠାଇଲେ ସେ ତା ସଙ୍ଗରେ ଆହୁରି ବେଶି ଚିହ୍ନାପରିଚୟ ହୁଅନ୍ତେ । ତେଣୁ ନାତାଶା ସେଠାକୁ ଉଠିଗଲା ।

ଆଗ ଅଙ୍କ ପୂର୍ବରୁ ଯେଉଁ ଅନ୍ତରାୟ ହେଲା ସେତେବେଳେ ଏଲେନର ଘେର ଭିତରକୁ ଥୋଡ଼ାଏ ଥଣ୍ଡା ପବନ ପଶିଆସିଲା ।

କବାଟ ଖୋଲିଗଲା ଆନାତୋଲ୍ ଘରର ଭିତରକୁ ଆସିଲା । ସେ ନଇଁ ନଇଁ ଆସୁଥାଏ ଯେପରିକି ତାହା ଦେହରେ ସେ ନିବାଜିବ ।

ଏଲେନର ଆଖି ଅସ୍ପୃଷ୍ଟି ସହକାରେ ନାତାଶା ମୁହଁରୁ ଆନାତୋଲ ମୁହଁକୁ ଚହଟିଗଲା । ଏଲେନ କହିଲା "ଇଏ ମୋ ଭାଇ । ମୁଁ ତୁମ ଦୁହିଁଙ୍କୁ ପରିଚିତ କରାଇଦେବି ।" ନାତାଶା ସେଇ ସୁନ୍ଦର ଚେହେରାର ଆଡ଼କୁ ଚାହିଁ ଆଡ଼କୁ ତାର ସୁନ୍ଦର ଟିକି ମୁଣ୍ଡଟି ଘୁରାଇଦେଇ ଖୋଲା କାନ୍ଧ ଉପରେ ମୁହଁ ରଖି ମୁରୁକି ମୁରୁକି ହସିଲା । ଆନାତୋଲ୍ ତା ପାଖରେ ବସିପଡ଼ିଲା । ସେ ଦୂରରୁ ଦେଖିଲେ ଯେତିକି ସୁନ୍ଦର, ଅତି ପାଖରୁ ଦେଖିଲେ ବି ସେତିକି ସୁନ୍ଦର ।

ଆନାତୋଲ ତାକୁ କହିଲା ନାରିସ୍କିନ ପରିବାର ଯେଉଁ ନାଚ ଭୋଜି ଆୟୋଜନ କରିଥିଲେ, ସେଠାରେ ସେ ତାକୁ ଦେଖିଥିଲା, ଦେଖି ଭାରି ଖୁସି ହୋଇଥିଲା ମଧ୍ୟ । ସେ ଆନନ୍ଦ ସେ ଭୁଲିପାରିନାହିଁ ଓ ସେହି ଦିନଠାରୁ ଏତେଦିନଯାକେ ଆଉଥରେ ଏ ଆନନ୍ଦ ପାଇବ ବୋଲି ସେ ଅପେକ୍ଷା କରି ବସିଥିଲା । କୁରାଗିନ୍‌ର ସ୍ୱଭାବ ଯେ ସେ ପୁରୁଷ ଲୋକଙ୍କ ସଙ୍ଗ ଅପେକ୍ଷା ସ୍ତ୍ରୀ ଲୋକଙ୍କ ମେଳରେ ଅଧିକ ବୁଦ୍ଧିମାନ ଓ ଖୋଲା ଖୋଲା ବ୍ୟବହାର କରିପାରେ । ସେ ସରଳଭାବରେ ସାହାସରେ କଥା କହି-ଯାଉଥାଏ । ନାତାଶା ଦେଖିଲା ଏହି ଯେଉଁ ଲୋକଟା ବିଷୟରେ ଲୋକେ ଏତେକଥା କହନ୍ତେ ତାଠାରେ କାହିଁ ସେଭଳି ଭୟର କାରଣ କିଛି ନାହିଁ । ବରଂ ତା ମୁହଁରେ ଅତି ନିଷ୍ପାପ, ପ୍ରଫୁଲ୍ଲ ମନଖୋଲା ହସଟିଏ ଲାଗି ରହିଛି । ବଡ଼ ଆଶ୍ଚର୍ଯ୍ୟ ପ୍ରକାରେ ନାତାଶା ଅତି ଆନନ୍ଦରେ ଏଥିରେ ଆକୃଷ୍ଟ ହେଲା ।

କୁରାଗିନ ତାକୁ ପଚାରିଲା ଯେ ଏ ଅଭିନୟ ତାକୁ କେମିତି ଲାଗିଲା ଓ ତାକୁ କହିଲା ଯେ ଶେଷ ଦୃଶ୍ୟରେ ଓସମଇଓନଲ୍‌ନା ଅଭିନୟ କରୁଥିବା ବେଳେ ସେ ତଳେ ପଡ଼ିଗଲେ ।

ସତେ ଯେପରିକି ନାତାଶା ତାର ଏକ ପୁରୁଣା ବନ୍ଧୁ । ହଠାତ୍ ସେହିପରି ଭାବ ଦେଖାଇ କୁରାଗିନ୍ ନାତାଶାକୁ କହିଲା "ଜାଣିଛନ୍ତି କାଉଣ୍ଟେସ, ଆମେ ବନ୍ଧୁମାନେ ପ୍ରତ୍ୟେକ ପିନ୍ଧିଥିବା ନାଚଉତ୍ସବ

ଲାଗି କରୁଛନ୍ତି । ଆପଣ ସେଥିରେ ମିଶିବା ଦରକାର । ଭାରି ମଜା ହେବ । ଆମେମାନେ ସମସ୍ତେ କୁରାଗିନ ପରିବାରଙ୍କ ଘରେ ଏକାଠି ରହୁଛୁ । ମୁଁ ଅନୁରୋଧ କରୁଛି ଆସନ୍ତୁ । ବର୍ତ୍ତମାନ ଆସିବେନା ?” ଏତକ କହିଲାବେଳେ ସେ ନାତାଶାର ମୁହଁ, ବେକ ଓ ଖୋଲା ହାତ ଉପରୁ ତାର ହସିଲା ହସିଲା ଦୃଷ୍ଟି ଉଠାଇ ନେଲା ନାହିଁ । ନାତାଶାର ଆଉ ସନ୍ଦେହ ରହିଲା ନାହିଁ ଯେ କୁରାଗିନ କୁହୁକରେ ପଡ଼ିଲା ପରି ତାକୁ ଦେଖି ମୁଗଧ ହୋଇଛି । ତାକୁ ଖୁସି ଲାଗିଲା । କିନ୍ତୁ ତଥାପି ତାର ଉପସ୍ଥିତିରେ ତାକୁ କିପରି ସଙ୍କୋଚ ଓ ଛଟପଟ ଲାଗିଲା । ସେ ନିଜେ ଯେତେବେଳେ କୁରାଗିନ୍‌କୁ ନ ଅନାଇଁଥାଏ, ସେ ଅନୁଭବ କରୁଥାଏ ଯେ, କୁରାଗିନ୍ ତାର କାନ୍ଧକୁ ଅନାଇଛି, ବରଂ ସେ ତାକୁ ମୁହାଁମୁହିଁ ଅନାଉଁ ଏହାଭାବ ସେ ତାର ଆଖିକୁ ଅନାଇଥାଏ । କିନ୍ତୁ ସେ ତାର ଆଖିକୁ ଅନାଇ ଭୟରେ ଅନୁଭବ କଲା ଯେ, ସେ ତା ଭିତରେ ଓ ଅନ୍ୟ ପୁରୁଷଙ୍କ ଭିତରେ ଲଜ ସଙ୍କୋଚର ଯେଉଁ କାନ୍ଥ ଠିଆ ହୋଇ ଥିବାର ସେ ସବୁବେଳେ ଜାଣିପାରେ, ଏଠି ଆଉ ତାହା ନାହିଁ । ପାଞ୍ଚ-ମିନିଟ୍‌ରେ ସେ ଅନୁଭବ କରିପାରିଲା,—କେମିତି ଜାଣିପାରିଲା ସେ ଜାଣେନାହିଁ—ଯେ ସେ ଏ ଲୋକଟାର ଘନିଷ୍ଠ ସମ୍ପର୍କକୁ ଆସିପାରିଛି ।

ସେ ଯେତେବେଳେ ବୁଲିପଡ଼ିଲା ତାକୁ ଡରମାଡ଼ିଲା କାଳେ କୁରାଗିନ୍ ତା ଘରଆଡ଼ୁ ତାର ଖୋଲା ବାହାକୁ ଧରିପକାଇ ତାର ବେକରେ ଚୁମ୍ବନ କରିବ । ସେମାନେ ଅତି ସରଳ କଥା ବିଷୟରେ କଥାଭାଷା ହେଉଥାନ୍ତି ଅଥଚ ତାକୁ ଲାଗୁଥାଏ ଯେ ଏହା ଭିତରୁ ଏତେ ଘନିଷ୍ଠ ସେ କୌଣସି ଲୋକ ସଙ୍ଗରେ କେବେ ହୋଇନାହିଁ । ନାତାଶା ବୁଲିପଡ଼ି ତାର ବାପାଙ୍କୁ ଆଉ ଏଲେନକୁ ଅନାଇଲା । ସେତକ ସେ ସେମାନଙ୍କୁ ପଚାରି ବୁଝନ୍ତା ଯେ, ଏହାରମାନେ କ’ଣ । କିନ୍ତୁ ଏଲେନ୍ ସେତେବେଳକୁ ଜଣେ ସେନାପତିଙ୍କ ସଙ୍ଗରେ କଥାଭାଷା କରିବାରେ ବ୍ୟସ୍ତ, ସେ ତା ଚାହାଣୀରେ ଉତ୍ତର ଦେଲାନାହିଁ ଆଉ ତାର ବାପାଙ୍କ ଚାହାଣୀ ସବୁବେଳେ ତାକୁ ଯେପରି କହେ ଯେ “ହିଅ ? ଫୁର୍ତ୍ତି କରୁଛୁଚ ! ତୁ ଖୁସି ହେଲେ ମୋର ଖୁସି,” ବେଶ୍ ଏତକ ଛଡ଼ା ତାର ବାପାଙ୍କ ଚାହାଣୀ ତାକୁ ଅଧିକ କିଛି କହିଲା ନାହିଁ ।

ବେଳେ ବେଳେ ଅଖାଡ଼ୁଆ ହୋଇ ସେମାନେ ଭୁନ ଡାନହୋଇ ରହୁଯାନ୍ତି । ସେତେବେଳେ ଆନାତୋଲ ବାରମ୍ବାର ଶାନ୍ତ ହୋଇ ତାକୁ ଏକା ଆଖିରେ ଅନାଇଁ ରହେ । ସେହିଭଳି ଏକ ମୁହୂର୍ତ୍ତରେ ମାରବତା ଭାଙ୍ଗିବା ସକାଶେ ନାତାଶା ତାକୁ ପଚାରିଲା ଯେ ମସ୍କୋ ତାକୁ କେମିତି ଲାଗୁଛି ! ଏ ପ୍ରଶ୍ନ ପଚାରିଦେଇ ନାତାଶା ସଙ୍ଗେ ସଙ୍ଗେ ନାଲି ପଡ଼ିଗଲା । ତାକୁ ଲାଗିଲା ଯେ ସେ ଏ ଲୋକ ସଙ୍ଗେ ଯେ କଥା କହୁଛି ତହିଁରେ ସେ ଅନ୍ୟାୟ କରୁଛି । ତାକୁ ସତେକ ଉତ୍ସାହ ଦେବାକୁ ଆନାତୋଲ ହସିଦେଲା ।

ତା ଆଡ଼କୁ ଅର୍ଥପୂର୍ଣ୍ଣ ଦୃଷ୍ଟିରେ ଅନାଇଁ ଦେଇ ସେ କହିଲା "ଆଗେତ ସେତେ ଭଲ ଲାଗୁନଥିଲା । ତେବେ ମଣିଷ କାହିଁକି ଗୋଟାଏ ସହରକୁ ଭଲପାଏ ? ସହରର ସୁନ୍ଦର ସ୍ତ୍ରୀ ଲୋକଙ୍କ ପାଇଁତ ? ତେବେ ବର୍ତ୍ତମାନ ମତେ ସହର ପର ଭଲ ଲାଗୁଛି । କାଉଣ୍ଟେସ୍, ଆପଣ ଏ ମଉଜ ନାଚରେ ମିଶିବାକୁ ଆସିବେତ ? ଆସିବେ, ଏଁ"—ନାତାଶା ତା ହାତରେ ଯେଉଁ ଫୁଲ ପେନ୍ଥାଟି ଧରିଥିଲା ସେ ଆଡ଼କୁ ହାତ ବଢ଼ାଇ ସ୍ୱର କୁଆଇଁ ସେ କହିଲା "ଆପଣ ସେଠି ହେଣିବେ ସବୁଠୁ ବଳ ପରମା ସୁନ୍ଦରୀ । ଆସନ୍ତୁ ପ୍ରିୟ କାଉଣ୍ଟେସ । ତାର ଚିହ୍ନ ସ୍ୱରୂପ ମତେ ଏ ଫୁଲଟି ଦିଅନ୍ତୁ ।"

ଆନାତୋଲ କ'ଣ ଯେ କହୁଛି ନାତାଶା ତା କଥା ବୁଝିପାରିଲା-ନାହିଁ କି ଆନାତୋଲ ନିଜେ ବି ତା କଥା ବୁଝିପାରିଲା ନାହିଁ କ'ଣ ସେ କହିଯାଉଛି । କିନ୍ତୁ ନାତାଶାକୁ ଲାଗିଲା ଯେ ତାର ଏ ଦୁର୍ବୋଧ କଥା ଭିତରେ କିଛି ଅସତ୍ ଉଦ୍ଦେଶ୍ୟ ରହିଛି । ସେ କି ଉତ୍ତର ଦେବ କିଛି ଠିକଣା କରିପାରିଲା ନାହିଁ, ତା କଥା ନଶୁଣିଲା ପରି ସେ ସେଠୁ ଘୁଞ୍ଚିଗଲା । କିନ୍ତୁ ସେ ଯେମିତି ଘୁଞ୍ଚିଯାଇଛି ସେମିତି ତାକୁ ଲାଗିଲା ଯେ ଆନାତୋଲ ଠିକ୍ ତା ପଛେ ପଛେ ରହିଛି ତାର ଅତି ପାଖରେ ।

ସେ ଧନ୍ଦହୋଇ ମନକୁ ମନ ଭାବିଗଲେ ? କ'ଣ ସେ ଅବସ୍ଥା ! ତାର କଣ ମୁଣ୍ଡ ଗୋଳମାଳ ହୋଇଯାଉଛି ? ସେ କ'ଣ ରାଗିଛି ? ମୁଁ କ'ଣ ତାର ରାଗ ଭାଙ୍ଗିଦେବି ?" ସେ ବୁଲିପଡ଼ି ନ ଅନାଇଁ ରହିପାରିଲା

ନାହିଁ । ସେ ସିଧା ତାର ଆଖିକି ଅନାଇଲା । ଆନାତୋଲ ସୌନ୍ଦର୍ଯ୍ୟ, ତାର ଆତ୍ମବିଶ୍ୱାସ, ତାର ମନଖୋଲା ହସ ନାତାଶାକୁ ଅଭିଭୂତ କରିଦେଲା ଆନାତୋଲ ଯେମିତି ହସିଲା । ନାତାଶା ଅବିକଳ ସେମିତି ହସିଲା । ସିଧା ତାର ଆଖିକି ଅନାଇଁ ହସିଲା । ପୁଣି ସେ ଭୟରେ ଭୟରେ ଭାବିଲା ଯେ, ଦୁହିଁଙ୍କ ଭିତରେ ଆଉ ବ୍ୟବଧାନହିଁ ନାହିଁ ।

ପର୍ଦ୍ଦା ପୁଣି ଉଠିଲା । ଆନାତୋଲ୍ କୁରାଗିନ୍ ଶାନ୍ତ ପ୍ରଫୁଲ୍ଲ ହୋଇ ସେ ଘେର ଭିତରୁ ବାହାର ଚାଲିଗଲା । ନାତାଶା ପୁଣି ତା ବାପା ପାଖକୁ ଲେଉଟି ଗଲା । ସେ ଯେଉଁ ଦୁନିଆରେ ଯେତେବେଳେ ଥାଏ ସେଇ ଦୁନିଆଁରେ କମିଆଁରେ ସେ ଆଚ୍ଛନ୍ନ ହୋଇପଡ଼ୁଥାଏ । ଏଣିକି ତା ଆଗ ରଙ୍ଗ ମଞ୍ଚରେ ଯାହା ଯାହା ଘଟୁଥାଏ ସବୁ ତାକୁ ଲାଗୁଥାଏ ଅତି ସ୍ୱାଭାବିକ ବୋଲି । ପରନ୍ତୁ ତାର ବିବାହ ନିର୍ବନ୍ଧ କଥା । ପ୍ରିନସେସ୍ ମେରିଆଙ୍କ କଥା, ତାର ଜୀବନର କଥା ଏସବୁ ଆଦୌ ଥରେହେଲେ ତା ମନରେ ଉଠିଲା ନାହିଁ । ସତେ ଯେପରି କି ଏସବୁ କେଉଁ ଦୂର ଅତୀତର କଥା ।

ନାତାଶାକୁ ଲାଗୁଥାଏ ଯେପରିକି ସେ କେଉଁ ଆଘାତରେ ପୀଡ଼ା ଅନୁଭବ କରୁଛି । ପୁଣି ଉତ୍ତେଜିତବି ଲାଗୁଥାଏ । ସେ ଉତ୍ତେଜନାର କାରଣ ଥିଲା କୁରାଗିନ୍ ସେ ତା ଆଡ଼କୁ ନ ଅନାଇଁ ରହିପାରୁନଥାଏ । ସେମାନେ ଯେମିତି ଥିଏଟରରୁ ବାହାରି ଆସିଲେ ସେମିତି ସେ ସେମାନଙ୍କ ପାଖରେ ଆସି ପହଞ୍ଚିଗଲା । ସେ ତାଙ୍କ ଗାଡ଼ିକୁ ଡକାଇ ଆଣିଲା । ସେମାନେ ଗାଡ଼ିରେ ଚଢ଼ିଲାବେଳେ ସେମାନଙ୍କୁ ଗାଡ଼ିରେ ଉଠିବାକୁ ସାହାଯ୍ୟ କଲା । ସେ ନାତାଶାକୁ ଗାଡ଼ିରେ ଉଠେଇ ଦେଲାବେଳେ ତା କହୁଣୀ ଉପରୁ ହାତକୁ ଚିପିଦେଲା । ନାତାଶା ନାଲି ପଡ଼ିଯାଇ ଉତ୍ତେଜନାରେ ତା ଆଡ଼କୁ ବୁଲି ପଡ଼ି ଅନାଇଦେଲା । ସେ ସ୍ନିଗ୍ଧ ହସ ହସି ନାତାଶାକୁ ଅନାଇ ରହିଲା । ତା ଆଖି ସତେ କି ଜଳୁଥାଏ ।

ଘରେ ପହଞ୍ଚିଲାରୁ ନାତାଶାର ପରିଷ୍କାର ଧାରଣା ହେଲା ଯେ କ'ଣ ସବୁ ଘଟିଯାଇଛି ତା ନିଜ ସମ୍ପର୍କରେ ହଠାତ୍ ସେ ପ୍ରିନ୍ସ୍

ଆନ୍ଦ୍ରେଙ୍କୁ ସ୍ମରଣ କରି ଉପସ୍ଥିତ ହୋଇଗଲା । ଥିଏଟରରୁ ଫେରି ସେମାନେ ସମସ୍ତେ ଗୃହରେ ଖାଇ ବସିଥାନ୍ତି, ସେ ଆର୍ତ୍ତ ଚିତ୍କାର କରି ନାଲି ପଡ଼ିଯାଇ ଘରୁ ଦୌଡ଼ି ପଳାଇଗଲା । ସେ ମନକୁ ମନ କହିହେଉଥାଏ, "ହାୟ ଭଗବାନ ! ମୋର ସର୍ବନାଶ ହେଲା ।" ସେ ଭାବୁଥାଏ "କେମିତି ମୁଁ ଏତେ ତଳକୁ ଖସି ଗଲି ?" ବହୁତ ସମୟ ପର୍ଯ୍ୟନ୍ତ ସେ ତାର ନାଲି ପଡ଼ିଯାଇଥିବା ମୁହଁକୁ ହାତ ପାପୁଲିରେ ଲଗାଇ ବସିରହିଥାଏ । କ'ଣ ସବୁ ଘଟିଯାଇଛି, ତାର ଏକ ପରିଷ୍କାର ଧାରଣା କରିବାକୁ ସେ ଚେଷ୍ଟା କରୁଥାଏ ଅଥଚ କ'ଣ ଯେ ଘଟିଛି କି ଭାବ ତାର ମନରେ ସୃଷ୍ଟି ହେଉଛି ସେ ବିଷୟରେ କିଛି ତଥ୍ୟ ସେ ପାଉନଥାଏ । ସବୁ ତାକୁ ଦିଶୁଥାଏ ଅନ୍ଧାର, ଅଜଣା, ଭୟଙ୍କର । ଥିଏଟରର ସେହି ପ୍ରକାଣ୍ଡ ଆଲୁଅ ଜଳ ଘର ଭିତରେ ଯେଉଁଠି ଅଭିନେତା ଭୁପୋଟ ସନ୍‌ସନ୍ତିଆ ପଟା ଉପରେ ଗୋଡ଼କୁ ନ ଛୋଡ଼ାଇ ଖୋଲାରଖି ସାନ ଜ୍ୟାକେଟ ପିନ୍ଧି ଏଣୁ ତେଣୁ ସାଜ ଓ୍ଵହନେଇ ସଙ୍ଗୀତର ତାଳେ ତାଳେ ଡେଉଁଥାଏ ଆଉ ଯୁବତୀମାନେ, ବୁଢ଼ାମାନେ, ପୁଣି ସେହି ଏଲେନ୍ ଯେ, ଅଧ ଲଙ୍ଗଳୀ ହୋଇ ଗର୍ବରେ ସ୍ନିଗ୍ଧ ହସ ହସୁଥାଏ ଏମାନେ ସମସ୍ତେ ମିଶି 'ବାହା ବାହା' କହୁଥାନ୍ତି । ସେଠି ସେହି ଥିଏଟର ଘରେ ଏଲେନ ସଙ୍ଗେ ସବୁତ ଭାରି ସ୍ୱଚ୍ଛ ଆଉ ସରଳ ଲାଗୁଥିଲା । ଅଥଚ ଏଠି ସେ ଯେତେବେଳେ ନିଜେ ଏକୁଟିଆ ବସିଛି କିଛି ତାର ବୁଦ୍ଧିରେ ପଶୁନଥାଏ । "କ'ଣ ଯାର ଅର୍ଥ ? ତା ସଙ୍ଗରେ ଥିଲାବେଳେ କାହିଁକି ମତେ ଭୟ ଲାଗିଲା ? କ'ଣ ହେବ ବୋଲି ବର୍ତ୍ତମାନ ମୁଁ ଯେ ବିବେକର ଦଂଶନ ପାଉଛି, କାହିଁକି ? ମୁଁ କ'ଣ କରିଛି ବୋଲି ଏପରି ଲାଗୁଛି ?" ଏମିତି ସେ ଭାବୁଥାଏ ।

ନାତାଶାର ମନଯାହା ହେଉଥାଏ ସେ ଯଦି ସେ ବିଷୟରେ କାହାରିକୁ କିଛି କହନ୍ତା ତ ସେ ଜଣକ ତା ବୋଉ, — ରାତିରେ ଶୋଇଲାବେଳେ ସେ କଥା ତା ବୋଉ ଆଗରେ କହିପାରିଥାନ୍ତା । ସେ ସୁନିଆକୁ ଚାହାନ୍ତି । ତାର ଦୃଷ୍ଟି ବଡ଼ କଠୋର, ତାର ବୁଝାମଣା ଧରଣ ବଡ଼ ଏକ ବାଗିଆ, ତା ଆଗରେ ସେ ଏସବୁ କଥା କହିଦେଲେ ହୁଏତ କିଛି ବୁଝିପାରନ୍ତା ନାହିଁ । ନ ହେଲେ ତା ମନ ସେ ଘୃଣାରେ

ପୂରଯାନ୍ତା । ତେଣୁ ସେ ଭାବୁଥାଏ ଯେଉଁ ଗୋଲକ ଧନ୍ଦା ତା ମନକୁ ଆକ୍ରାନ୍ତ କରୁଛି ତାର ସମାଧାନ ତାକୁ ନ ଗୃହିଁ କରିବାକୁ ପଡ଼ିବ ।

ସେ ନିଜେ ନିଜକୁ ପଚାରିଲା, "ଆଚ୍ଛା, ପ୍ରିନସ ଆନ୍ଦ୍ରେଙ୍କ ପ୍ରେମର ଉପଯୁକ୍ତ ଆଧାର ହେବା ସକାଶେ ମୁଁ କ'ଣ ନିଷ୍ପାପ ରହିଛି ନା ମାସ ହୋଇଗଲଣି" । ପୁଣି ନିଜକୁ ନିଜେ ଆଶ୍ୱାସ ଦେଇ ସେ ନିଜକୁ ବିଦ୍ରୂପ କରି ଭାବିଲା "ମୁଁ କେଡ଼େ ମୂର୍ଖ ଯେ ନିଜକୁ ଏଭଳି ପ୍ରଶ୍ନଟାଏ ପଚାରୁଛି । ମୋର କ'ଣଟାଏ ହୋଇଛି ? କାହିଁ କିଛି ହୋଇ ନାହିଁତ । ମୁଁ ତ କିଛି କରିନାହିଁ । ଆନାତୋଲକୁ ଆଶାଦେଇ ଆଗକୁ ମଡ଼େଇ ନେବାପାଇଁ ବି ମୁଁ କିଛି କରି ନାହିଁ । ତେଣୁ ସଫା ଜଣା ପଡ଼ୁଛିଯେ କେଉଁଠି କିଛି ଘଟିନାହିଁ, କୌଣସି କଥାକୁ ଅନୁଶୋଚନା ନାହିଁ । ଅତଏବ ପ୍ରିନସ ଆନ୍ଦ୍ରେ ତଥାପି ମତେ ଭଲ ପାଇଲେ ତହିଁରେ ମୋର କିଛି ଦୋଷତନାହିଁ । 'ତଥାପି' ବୋଲି ମୁଁ କାହିଁକି କହୁଛି ? ହେ ଭଗବାନ ! ହେ ଭଗବାନ । ସେ ଏଠି ନାହାନ୍ତି କାହିଁକି ?" ମୁହୂର୍ତ୍ତିକ ପାଇଁ ନାତାଶାକୁ ଆଶ୍ୱସ୍ତ ଲାଗିଲା । ତଥାପି ତାର ମନ ତାକୁ କହିଲାଯେ ଏସବୁ କଥା ସତ ହେଲେ ସୁଦ୍ଧା କେଉଁଠି କିଛି ନଘଟିଥିଲେ ସୁଦ୍ଧା ପୂର୍ବେ ପ୍ରିନସ ଆନ୍ଦ୍ରେଙ୍କ ପ୍ରତି ତାର ପ୍ରେମର ଯେଉଁ ବିଶୁଦ୍ଧତା ଥିଲା ସେ ବିଶୁଦ୍ଧତା ନଷ୍ଟ ହୋଇଯାଇଛି । ପୁଣି ସେ ମନେ ମନେ ତାର କଳ୍ପନାର ଆନାତୋଲ କୁରଗିନ୍ ସଙ୍ଗେ ତାର ଯାହା ଯାହା କଥା ଭାଷା ହୋଇଥିଲା ସେ କଥା ମନେପକେଇଲା ଆଉ ସେହି ସୁନ୍ଦର ତେଜେଶ୍ୱୀ ସାହାସୀ ଲୋକଟା ତା ବାହାକୁ ଚିପିଦେଲାବେଳେ ତାର ମୁହଁ, ତାର ହାବ ଭାବ ତାର ହସ ସବୁ ସେ ମନେପକାଇଲା ।

ଆନାତୋଲ କୁରେଗିନ ମସ୍କୋରେ ଆସି ରହୁଥାଏ କାରଣ ତା ବାପା ତାକୁ ପିଟର୍ସବର୍ଗରୁ ତଡ଼ି ଦେଇଥାନ୍ତି । ପିଟର୍ସବର୍ଗରେ ସେ ବର୍ଷକୁ ନଗଦ କୋଡ଼ିଏ ହଜାର ଲେଖାଁ ଖର୍ଚ୍ଚ କରୁଥିଲା ଓ ତାଠୁଁ ଆହୁରି ଅଧିକ ଟଙ୍କାର ଜିନିଷ ବାକିରେ ନେଇ ଖର୍ଚ୍ଚ କରୁଥିଲା ଓ ସେ ଯେଉଁ ମାନଙ୍କଠାରୁ ଟଙ୍କା ଧାରିଥିଲେ ସେମାନେ ତା ବାପାଙ୍କୁ ବ୍ୟସ୍ତ କଲେ ।

ତା ବାପା ତାକୁ କହିଲେ ଯେ ଏଇ ଶେଷ ଥର କ ସେ ତାର କରଜ ଟଙ୍କାକୁ ଅଧେ ଶୁଝି ଦେବେ, ତେବେ ଗୋଟିଏ ସର୍ତ୍ତରେ ଯେ ସେ ପିଟର୍ସବର୍ଗରୁ ଚାଲିଯାଇ ମସ୍କୋରେ ରହିବ । ତା ବାପା ବହୁତ ଚେଷ୍ଟା କରି ମସ୍କୋରେ ତାପାଇଁ ଗୋଟିଏ ଚାକିରି ଠିକଣା କରି ଦେଇଥାନ୍ତି । ତା ପରେ ଶେଷରେ ସେଠି ସେ ତା ପାଇଁ ଗୋଟିଏ ଭଲ ଜାଗାରେ ବସାଘର କରିଦେବେ । ଆନାତୋଲ ରାଜିହୋଇ ମସ୍କୋ ଚାଲିଯାଇ ସେଠାରେ ପିଏରେ ପାଖରେ ରହିଲେ । ଆଗତ ପିଏରେ ଆନାତୋଲକୁ ତା ଘରେ ରହିବାରେ କୌଣସିମତେ ଖୁସି ହେଲେନାହିଁ । କିନ୍ତୁ କିଛି ଦିନ ଗଲାପରେ ଆନାତୋଲ ତାର ଆଖିସହା ହୋଇଗଲା । ପିଏରେ ବେଳେ ବେଳେ ତା ସଙ୍ଗରେ ମଉଜ ମଜଲସ୍‌କୁ ଯାଏ ଆଉ ତାକୁ ଟଙ୍କା ଉଧାର ଦିଏ ।

ମସ୍କୋରେ ଯେତେ ଭଦ୍ରମହିଳା ଥିଲେ ଆନାତୋଲ ସେମାନଙ୍କର ସମସ୍ତଙ୍କର ହୃଦୟକୁ କିଣି ସାରିଥାଏ । ତାର କାରଣ ହେଉଛି ସେ ସେମାନଙ୍କ ପ୍ରତି ଅଧିକ ଅନୁରକ୍ତ ଦେଖାଇ ଥାଏ । ଅଭିନେତ୍ରୀମାନଙ୍କ ଭିତରେ ବେଶି ବିଖ୍ୟାତ ଥିଲେ ମାଦା ମୋଆଦେଲ ଜର୍ଜ । ଲୋକେ କହନ୍ତି ଆନାତୋଲର ତାଙ୍କ ସଙ୍ଗରେ ପୂରା ସମ୍ବନ୍ଧ ଅଛି । ଡ୍ରାନିଲଭଙ୍କ ଘରେ ବି ମସ୍କୋରେ ଅନ୍ୟ କୌଣସି ଉତ୍ସବ ହେଲେ କୌଣସି ମଦ ଭୋଜିକୁ ସେ ନଯାଇ ଛାଡ଼େ ନାହିଁ । ରାତି ରାତି ସେ ଖାଲି ମଦ ପିଇ ପିଇ କଟାଏ । ସେଥିରେ ସମସ୍ତଙ୍କୁ ଟପିଯାଏ ଓ ଭଦ୍ର ସମାଜରେ ଯେତେ ବୈଠକ ହୁଏ କି ନାଚ ଭୋଜି ହୁଏ ସବୁଠି ଥିବ ଆନାତୋଲ । ମସ୍କୋରେ ଅନେକ ଭଦ୍ରମହିଳାଙ୍କ ସଙ୍ଗରେ ତାର ପାପ ସମ୍ବନ୍ଧ ଥାଏ ବୋଲି ଲୋକେ କୁହାକୁହି ହୁଅନ୍ତି । ନାଚ ଉତ୍ସବ ହେଲେ ସେଠାରେ ସେମାନଙ୍କ ଭିତରୁ କେତେଜଣଙ୍କୁ ସେ ପ୍ରେମ ନିବେଦନ କରେ । କିନ୍ତୁ ଅବିଆହିତା ଝିଅମାନଙ୍କୁ ବିଶେଷତଃ ଯେଉଁମାନେ ସମ୍ପତ୍ତିର ଉତ୍ତରାଧିକାରିଣୀ ସେମାନଙ୍କୁ ଦେଖିଲେ ସେ ଦୂରେଇ ଯାଉଥିଲେ, ସେମାନଙ୍କ ରୂପ ବି ସାଧାରଣ, ଏଥି ସକାଶେ ତାର ଗୋଟିଏ କାରଣ ଥିଲା । କାରଣଟି ତାର ଅନ୍ତରଙ୍ଗ ବନ୍ଧୁମାନଙ୍କ ଛଡ଼ା ଆଉ କେହି ଜାଣି ନଥିଲେ । ତାର କାରଣ ହେଉଛି ଯେ ଗତ ଦୁଇବର୍ଷ ହେଲା ସେ ବାହା ହୋଇ ସାରିଥାଏ । ତାର ଦୁଇବର୍ଷ ଆଗରୁ ସେ ଯେଉଁ ସୈନ୍ୟ-ଦଳରେ

ଥିଲେ ସେ ସୈନ୍ୟଦଳ ପୋଲାଣ୍ଡ ଦେଶରେ ରହିଥିଲା । ସେତେବେଳେ ଜଣେ ପୋଲାଣ୍ଡ ଦେଶର ଜମି ମାଲିକ—ତାଙ୍କର ବେଶି ସମ୍ପତ୍ତିବାଡ଼ି ନ ଥିଲେହେଁ ସେ ତାଙ୍କ ଝିଅକୁ ବିଭା ହେବାକୁ ଆନାତୋଲକୁ ବାଧ୍ୟ କରିଥିଲେ ।

ତାର ଅତି ଅଳ୍ପଦିନ ପରେ ଆନାତୋଲ ତାର ସ୍ତ୍ରୀକୁ ପରିତ୍ୟାଗ କରି ଦେଇ ଆସିଥିଲା । ତା ଶଶୁର ତାଠାରୁ କିଛି ଟଙ୍କା ପାଇଲେ ସେ ଅବିବାହିତ ପ୍ରକାଶ କରିବାକୁ ସ୍ୱୀକୃତ ହୋଇଥିଲେ ।

ସେ ବି ତା ଶଶୁରଙ୍କୁ ସେଇଆ କହିବା ସକାଶେ ଟଙ୍କା ପଠାଇବ ବୋଲି ରାଜି ହୋଇଯାଇଥାଏ । ତେଣୁ ତା ଶଶୁର ଆଉ ଅଡୁଆ ନ ଲଗାଇ ସେ ନିଜକୁ ଅବିବାହିତ ବୋଲି କହିବାରେ ଆଉ ଆପତ୍ତି ଉଠାଇ ନଥାଏ ।

ଆପଣା ଅବସ୍ଥା ସହିତ ଓ ଅନ୍ୟ ଲୋକଙ୍କ ସହିତ ଆନାତୋଲ ସନ୍ତୋଷ ହୋଇ ରହିଥାଏ । ସେ ମନକୁ ମନ ନିଜର ଦୃଢ଼ ବିଶ୍ୱାସ ଜନ୍ମାଇ ଥାଏ ଯେ ସେ ଯେପରି ବଞ୍ଚିଛି ତା ଛଡ଼ା ତାର ଅନ୍ୟ ପ୍ରକାର ଚଳିବାକୁ ଉପାୟ ନାହିଁ ଓ ସେ ତା ଜୀବନର କୌଣସି ଅପକର୍ମ ମଧ୍ୟ କରୁନାହିଁ । ଅନ୍ୟମାନେ ତା କାର୍ଯ୍ୟ କଲାପରେ କି ଅର୍ଥ କରିବେ କି ସେ କେଉଁ କାମ କରିଦେଲେ ତାର ଫଳ କ'ଣ ହେବ ଏ କଥା ବିଚାର କରି ତଉଲି ଦେଖିବା ତା ଦେଇ ହୋଇ ପାରେ ନାହିଁ । ତାର ଦୃଢ଼ ବିଶ୍ୱାସ ଆସିଥାଏ ଯେ ଭଗବାନ ହଂସକୁ ଯେପରି ସୃଷ୍ଟି କରିଛନ୍ତି ଯେ ସେ ପାଣିରେ ରହିବା ଛଡ଼ା ଆଉ କେଉଁଠି ରହିପାରିବ ନାହିଁ, ଅବିକଳ ସେହିପରି ତାକୁ ସୃଷ୍ଟି କରିଛନ୍ତି ଯେ ସେ ବର୍ଷକେ ତିରିଶ ହଜାର ଟଙ୍କା ଖର୍ଚ୍ଚ କରିବ ଆଉ ସମାଜରେ ଏକ ଉତ୍ତମ ସ୍ଥାନ ଅଧିକାର କରି ରହିଥିବ । ଏଭଳି କଥାରେ ତାର ଏପରି ଏକ ପୂର୍ଣ୍ଣ ବିଶ୍ୱାସ ଥିଲାଯେ ଅନ୍ୟ ଯେଉଁମାନେ ତାକୁ ଦେଖୁଥିଲେ ସେମାନେ ବି ସେହିପରି ବିଶ୍ୱାସ କରୁଥିଲେ ଓ ତାକୁ ସମାଜରେ ଉଚ୍ଚ ଆସନ ଦେବାକୁ ମନା କରୁ ନ ଥିଲେ, କିମ୍ବା ସେ ବାଁ ଏ ଡାହାଣେ ଯେପରି ଭାବରେ ଟଙ୍କା କରଜ କରୁଥିଲା ଅଥଚ ବୋଧହୁଏ କରଜ ଶୁଝିବା ତାର ଉଦ୍ଦେଶ୍ୟ

ନଥିଲା, ସେଥିପାଇଁ ତାକୁ ଟଙ୍କା କରଜ ଦେବାକୁ ବି ଲୋକେ ନାହିଁ କରୁ ନ ଥିଲେ ।

ସେ ଜୁଆ ଖେଳେ ନାହିଁ । ଅନ୍ତତଃ ତାସ୍ ଖେଳ ବସି ଅନ୍ୟ ଲୋକଙ୍କ ଟଙ୍କା ଜିତି ନେବାକୁ ତାର ସେତେ ମନ ନ ଥାଏ । ସେ ନିଜ ଢଙ୍ଗ ଦେଖାଇବା ଭଳି ଲୋକ ମଧ୍ୟ ନ ଥିଲା । ଅନ୍ୟ ଲୋକ ତା ବିଷୟରେ କି ଧାରଣା କରିଛନ୍ତି ସେଥି ପ୍ରତି ତାର ଆଦୌ ଖାତିର ନଥିଲା କିମ୍ବା ବଡ଼ ହେବାକୁ ତାର ଉଚ୍ଚାଭିଳାଷ ଅଛି ଏଭଳି ଦୋଷ ବି ତାକୁ ଦେଇ ହେବନାହିଁ । ଅନେକ ଥର ଏପରି ହୋଇଛି, ଯେଉଁଥିପାଇଁ ତା ବାପା ତା ଉପରେ ଅତି ବିରକ୍ତ ହୋଇଥାନ୍ତି ଯେ ଗୋଟିଏ ଭଲ ଚାକିରି ପାଇବା ଭଳି ଓ ସେବାଟି ଭଲରେ ରହିଲା ଭଳି ସମ୍ଭାବନା ସେ ନିଜେ ନଷ୍ଟ କରି ଦେଇଛି । ନିଜ ଗୋଡ଼ରେ କୁରାଢ଼ି ମାରିଛି । ଲୋକେ ଯେତେ ପ୍ରକାରି ନା କରନ୍ତୁ ସେସବୁ ସବୁ ଉପାୟ ଧରିବା କଥାକୁ ସେ ହସରେ ଉଡ଼ାଇ ଦିଏ । ସେ କୃପଣ ବି ନଥିଲା କି ତାକୁ କିଏ କେବେ କିଛି ମାଗିଲେ ତାକୁ ଦେବାକୁ ନାହିଁ କରୁନଥିଲା । ସେ ଖାଲି ଭଲ ପାଉଥିଲା ମଦ ଆଉ ମାଇକିନିଆ । ତା ଧାରଣା ଯେ ତାର ଏଭଳି ରୁଚିରେ ସମ୍ମାନ ହାନି ହେଲା ଭଳି କିଛି ନଥିଲା କି ତାର ଏରୁଚିମାନ ଚରିତାର୍ଥ କରିବାକୁ ଯାଇ ଅନ୍ୟମାନଙ୍କ ଉପରେ ତା କାର୍ଯ୍ୟରେ କିପରି ଫଳ ଫଳିବ ସେ କଥା ଭାବିବାକୁ ତାର ଶକ୍ତି ନଥିଲା । ତେଣୁ ତାର ଅନ୍ତର ଭିତରେ ସେ ନିଜକୁ ନିଜେ ଜଣେ ଅନିନ୍ଦନୀୟ ମଣିଷ ବୋଲି ଜ୍ଞାନ କରୁଥିଲା ଓ ଦୁର୍ବୃତ୍ତ ଓ ଶ୍ରେଷ୍ଠଲୋକମାନଙ୍କ ପ୍ରତି ତାର ପ୍ରକୃତିରେ ଘୃଣା ଥିଲା । ତାର ବିବେକ ମୋଟେ ତାକୁ ଝିଙ୍ଗାସୁ ନଥିଲା, ସେ ମୁଣ୍ଡ ଉପରକୁ ଟେକି ରଖି ପାରୁଥିଲା ବା ବାଇବଲରେ ଯେଉଁ ଅସଚ୍ଚରିତ୍ରା ସ୍ତ୍ରୀ ଲୋକ ମାଗଦାଲେନର କଥା ଲେଖାହୋଇଛି ସେଭଳି ସ୍ତ୍ରୀ ଲୋକମାନଙ୍କ ପ୍ରତି ପୁରୁଷମାନଙ୍କର ଧାରଣା ଥାଏ ଯେ ସେମାନେ ସ୍ୱଭାବତଃ ନିଷ୍ପାପ ଓ ଶେଷରେ ପ୍ରତିଷ୍ଠିତ ହୋଇଥାନ୍ତି । "ସେ ମାଇକିନିଆ ଯାହା ଯାହା ଅପକର୍ମ କରିଛି ସବୁ କାମ ପାଇଁ ସେ କ୍ଷମା ପାଇଯିବ କାରଣ ସେ ବହୁତ ପ୍ରେମ କରିଛି । ସେ ପୁରୁଷଟା ବି ଯାହା ଯାହା କରିଛି ଭଗବାନ ତାକୁ ବି କ୍ଷମା ଦେବେ କାରଣ ସେ ନିଜ ଜୀବନରେ ବହୁତ ଭୋଗ କରିଛି ।"

ସେ ବର୍ଷ ଦୋଲହଭ ପୁଣି ମସ୍କୋରେ ଦେଖାଦେଇ ଥାଏ । ଭୋଗ ବିଳାସ, ମଦପିଆ, ଜୁଆଖେଳ ଏହିପରି ସବୁ କାମରେ ସମୟ ଖର୍ଚ୍ଚ କରୁଥାଏ । ପିଟର୍ସବର୍ଗରେ ଆନାଟୋଲ କୁରଗିନ ତାର ସାଙ୍ଗ ଥିଲା, ପୁଣି ଏଠି ସେ ତା ସଙ୍ଗରେ ବନ୍ଧୁତା ଲଗାଇ ଦେଇ ତା ନିଜ ଉଦ୍ଦେଶ୍ୟରେ ତାକୁ ବ୍ୟବହାର କରୁଥାଏ ।

ଦୋଲହଭ୍‌ର ବୁଦ୍ଧି ଓ ସାହାସ ସକାଶେ ଆନାଟୋଲ୍ ତାକୁ ଅନ୍ତର ସହିତ ଭଲ ପାଉଥିଲା । ଏଣେ ଦୋଲହଭ୍ ଆନାଟୋଲ୍‌ର ନା ତାଇ ପଦ, ତାର ବନ୍ଧୁବାନ୍ଧବ ସମ୍ପର୍କ ଏସବୁ କଥାକୁ ଆପଣା ଦଳ ଭିତରକୁ ଧନୀ ଯୁବକମାନଙ୍କୁ ଜୁଆ ଖେଳାଇବା ସକାଶେ ଫାନ୍ଦରେ ଧରିବା କାମରେ ବ୍ୟବହାଇରେ ଲଗାଉଥାଏ । ଏକଥା ସେ ଆନାଟୋଲ୍ କୁରଗିନକୁ ଜଣାଇ ଦେଉନ ଥାଏ ବରଂ ଆନାଟୋଲ ତାକୁ ଆମୋଦ ଦେଉଥାଏ । ଆନାଟୋଲକୁ ସେ ଆପଣା ଉଦ୍ଦେଶ୍ୟ ସାଧନ ପାଇଁ ଆବଶ୍ୟକ କରୁଥିଲା, କିନ୍ତୁ ତା ଛଡ଼ା ଅନ୍ୟ ଜଣଙ୍କର ବୁଦ୍ଧି ବୃତ୍ତିକୁ ନିଜ ଅକ୍ତିଆରରେ ରଖିବା ଦୋଲହଭର ଗୋଟାଏ ସଉକ ଓ ଅଭ୍ୟାସ ହୋଇଯାଇଥିଲା ଓ ତାହା ବି ତାର ଦରକାର ଥିଲା ।

କୁରଗିନ୍ ଉପରେ ନାତାଶାର ପ୍ରଭାବ ପ୍ରଚଣ୍ଡ ଭାବେ ପଡ଼ିଥିଲା । ଥିଏଟରରୁ ଫେରିଆସି ଖାଇବସିଲା ବେଳେ ଜଣେ କଳାବିତ୍ ଗୋଟିଏ ଛବିକୁ ଯେଉଁପରି ବିଶ୍ଳେଷଣ କରି ବର୍ଣ୍ଣନା କରେ ସେହିପରି ସେ ଦୋଲହଭ୍ ଆଗରେ ନାତାଶାର ବାହୁ, କାନ୍ଧ, ପାଦ, ମୁଣ୍ଡବାଳ ଆଦି ବିଷୟରେ ଠିକଣଖି କରି ବର୍ଣ୍ଣନା କରି ନିଜ ମନକଥା ପ୍ରକାଶ କଲାଯେ ନାତାଶା ସାଙ୍ଗରେ ପ୍ରେମ ଖେଳ ଖେଳିବା ତାର ଉଦ୍ଦେଶ୍ୟ । ଏଭଳି ଖେଳରେ ଯେ କ'ଣ ପରିଣତି ହେବ ସେ କଥା ଭାବିବାଟା ଆନାଟୋଲ୍ ପକ୍ଷରେ ଅସମ୍ଭବ, ସେ କଥା ସେ ଥରେ ମାତ୍ର ଭାବି ପାରୁନଥାଏ । ଯେପରି ତାର କୌଣସି କୃତକର୍ମର ଫଳ କ'ଣ ହେବ ସେ କେବେ ତାହା ଭାବିପାରେ ନାହିଁ, ଏବେ ସେହିପରି ।

ଦୋଲହଭ କହିଲା "ବାବୁରେ, ସୁନ୍ଦରୀ ସେ ସତ, କିନ୍ତୁ ସେ ତମ ଆମପାଇଁ ନୁହେଁ ।"

ଆନାତୋଲ କହିଲା "ମୁଁ ସେ ଅପାକୁ କହିବ ତାକୁ ଖାଇବାକୁ ଡାକିବ । କ'ଣ କହୁଛ ?"

"ଟିକିଏ ଅପେକ୍ଷା କରିଯାଅ ବାବୁ, ସେ ବାହାହୋଇ ସାରୁ ।"

ଆନାଟୋଲ କହିଲା "ତମେତ ଜାଣ ମୁଁ କୁନ ଝିଅମାନଙ୍କୁ ଦେଖିଲେ ମୁଣ୍ଡରେ ବସାଏ । ସେମାନେ ଏକ ମିନଟ୍‌ରେ କ'ଣ ଯେ ହେଇଯାଆନ୍ତି, ତାଙ୍କ ମୁଣ୍ଡ ଗୋଳମାଳ ହୋଇଯାଏ ।

ଡୋଲହଭ୍ ଆନାଟୋଲ୍‌ର ବିଗ୍ରହର କଥା ଜାଣିଥିଲା । ସେ କହିଲା "ଦେଖ, ଥରେ ଗୋଟିଏ 'କୁନ ଝିଅ' ସଙ୍ଗରେ ଲାଗିଲ ବୋଲି ମହାବିପଦରେ ପଡ଼ିଥିଲ । ଦେଖ ସାବଧାନ !"

ଆନାଟୋଲ ଖୁସି ମନରେ ହସିଉଠି କହିଲା "ହଃ, ହିଥର କ'ଣ ସେମିତି କରିବାକୁ ମନା ଅଛି ? ଏ ? କଣ କହୁଛ ?

ରବିବାରଗୁଡ଼ିକ ମେରିଆ ମିତ୍ରୋଭ୍ନାଙ୍କୁ ଭାରି ଭଲ ଲାଗେ । ସେସବୁ ଛୁଟିଦିନ କେମିତି ପାଳିବାକୁ ହୁଏ ତାଙ୍କୁ ଭଲ ଜଣା । ଶନିବାର ଦିନ ତାଙ୍କ ଘର ଓଳିଆ ପୋଛିଆ ହୋଇ ପରିଷ୍କାର ରହିଥାଏ । ରବିବାର ଦିନ ସେ ନିଜେ କିଛି କାମ କରନ୍ତି ନାହିଁ । ସମସ୍ତେ ରବିବାରିଆ ପୋଷାକ ପିନ୍ଧି ଭଗବାନଙ୍କୁ ପ୍ରାର୍ଥନା କରିବାକୁ ଗିର୍ଜା ଘରକୁ ଯାନ୍ତି । ସେଦିନ ଗୃହକର୍ତ୍ତୀଙ୍କ ଭୋଜନ ପାଇଁ ବଳକା ନୂଆ ନୂଆ ତରକାରି ହୋଇଥାଏ । ଚାକରମାନଙ୍କୁ "ଭଡକା" ମଦ ଦିଆଯାଏ ଓ ସେମାନଙ୍କ ପାଇଁ ହଂସର ମାଂସ ଭଜାଯାଏ ନହେଲେ ଦୁଧଖିଆ ଘୁଷୁରି ଛୁଆର ମାଂସ ରନ୍ଧା ହୁଏ । ଘରେ ଯେତେ ଯାହା ହୁଏ କେଉଁଥିରେ ଏ ଛୁଟିଦିନରେ ମଉଜ ଏଭଳି ବାରିହୁଏ ନାହିଁ ଯେପରି ଦିଶେ ମେରିଆ ମିତ୍ରୋଭ୍ନାଙ୍କ ଓସାରିଆ ଗମ୍ଭୀର ମୁହଁଟିରେ, ସେଥିରେ ଏକ ପ୍ରଶାନ୍ତ ଗମ୍ଭୀର ଠାଣି ଲାଗି ରହିଥାଏ, ବଦଳେ ନାହିଁ ।

ଗିର୍ଜାରେ ପ୍ରାର୍ଥନା କରିସାରି ଘରକୁ ଫେରି ବୈଠକଖାନା ଘରେ ସେମାନେ ବସି କଫି ପିଉଥାନ୍ତି । ସେ ଘରେ ଘରର ଆସ୍‌ବାବପତ୍ର ଉପରୁ ଘୋଡ଼ଣି ଉଠାଇ ନିଆ ହୋଇଥାଏ । ସେତେବେଳେ ଜଣେ ଚାକର

ଆସି କହିଲା ଗାଡ଼ି ସଜ ହେଲାଣି । ମେରି ମିଃହ୍ୟେଷ୍ଟ୍ନ ବାହାରକୁ ବୁଲିଗଲେ ତାଙ୍କର ସବୁଠୁ ଚମତ୍କାର ଶାଲ୍ ଖଣ୍ଡିକ ଯୋଡ଼ି ହୋଇ ଯାଆନ୍ତି । ସେହି ଶାଲ୍ ଖଣ୍ଡିକ ସେତେବେଳେ ବି ସେ ଯୋଡ଼ି ହୋଇ ବସିଥାନ୍ତି । ଗୃକର କଥାଶୁଣି ସେ କଠୋର ଭଙ୍ଗୀରେ ଉଠିପଡ଼ି କହିଲେ ଯେ ନାତାଶା ପ୍ରତି ପ୍ରିନ୍‌ସ ନିକୋଲେ ଆନ୍ଦ୍ରେଇଚ ବଲକନସ୍କି କାହିଁକି ଏପରି ଦୁର୍ବ୍ୟବହାର କଲେ ସେଥିପାଇଁ ତାଙ୍କର ମାଗିବାପାଇଁ ସେ ତାଙ୍କ ଘରକୁ ଯାଉଛନ୍ତି । ମେରିଆ ମିହ୍ୟେଷ୍ଟ୍ନ ଗୃଲିଗଲା ପରେ ଜଣେ ପୋଷାକ ତିଆରି କରିବା ଲୋକ ଆସି ରୋଷ୍ଟଭ୍ ପରିବାରଙ୍କୁ ଭେଟିବ ବୋଲି ଅପେକ୍ଷା କଲା । ମାଦାମ ଗୃଲ୍‌ସି ତାକୁ ପଠାଇଥାନ୍ତି । ମନ ଭୁଲାଇବାକୁ ନୂଆ କଥା ମିଳିଗଲା ବୋଲି ନାତାଶା ବି ଭାରି ଖୁସି ହେଲା । ବୈଠକଖାନା ଘରକୁ ଲାଗି ଯେଉଁ ବଖରାଟି ଥାଏ ନାତାଶା ସେ ବଖରାକୁ ଉଠିଗଲା । ଘର କବାଟ ବନ୍ଦ କରିଦେଇ ସେ ନୂଆ ପୋଷାକମାନ ଦେହରେ ଗଳେଇ ଦେଖିଲା, ସେ ଗୋଟିଏ ବଡ଼ିସ୍ ପିନ୍ଧି ପକାଇଥାଏ । ସେଥିରେ ହାତ ଯୋଡ଼ାକ ଏପର୍ଯ୍ୟନ୍ତ ଉପରକୁ ଟେକା ହୋଇଥାଏ । ସେ ପୋଷାକ ତା ଦେହକୁ ହେଉଛି କି ନାହିଁ ଦେଖିବାପାଇଁ ସେ ଯେମିତି ଦର୍ପଣ ଆଡ଼କୁ ମୁଣ୍ଡ ବୁଲାଇଦେଲା ସେମିତି ସେ ତା ବାପାଙ୍କ ପାଟି ଶୁଣିଲା । ବୈଠକଖାନା ଘରେ ଆଉ ଜଣେ ସ୍ତ୍ରୀଲୋକ ସଙ୍ଗରେ ତା ବାପା ଭାରି ଆନ୍ତରିକତା ସହିତ କଥାଭାଷା ହେଉଥାନ୍ତି । ସେ ନାଲି ପଡ଼ିଗଲା । ସେ ସ୍ୱର ଏଲେନ୍‌ର । ନାତାଶା ଯେଉଁ ବଡ଼ିସ୍‌ଟା ଗଳେଇ ପକେଇ ଥିଲା ତାକୁ ଖୋଲି ପକାଇବାକୁ ବେଳ ନ ହେଉଣୁ ଘର କବାଟ ଫିଟିଗଲା ଆଉ କାଉଣ୍ଟେସ ବେଜୁହବ୍ ସେ ଘର ଭିତରକୁ ପଶିଆସିଲେ । ସେ ଶଙ୍ଖମଲର ଗୋଟାଏ ଗାଢ଼ ସୂର୍ଯ୍ୟମୁଖୀ ଫୁଲ ବର୍ଣ୍ଣର ଗାଉନ୍ ପିନ୍ଧିଥାନ୍ତି । ତାର ବେକର କଲର ଖୁବ୍ ଉଚ୍ଚ । ତାଙ୍କ ମୁହଁରେ ବନ୍ଧୁତା ଓ ଭଲମନର ହସ ଝଟକୁଥାଏ ।

ନାଲି ପଡ଼ିଯାଇଥିବା ନାତାଶାକୁ ସେ କହିଲେ "ଆଲୋ ମୋ ମାୟାବିନୀ ଲୋ ! କେଡ଼େ ଚମତ୍କାର !" କାଉଣ୍ଟ ବାଲିଆ ଆନ୍ଦ୍ରେଇଚ୍ ତା ପଛେ ପଛେ ଆସିଥାନ୍ତି, ତାଙ୍କୁ ହେଲେନ କହିଲେ "ଦେଖନ୍ତୁ ତ କାଉଣ୍ଟ, ଏଭଳି ମୁଁ କେବେ ଦେଖିନାହିଁ । ଏଡ଼େ ସୁନ୍ଦର । କେମିତି

ତମେ ମସ୍କୋ ସହରରେ ରହିବ କୁଆଡ଼େ ଯାଉନାହିଁ ! "ଏଁ ! ନାଁ, ମୁଁ ତମକୁ ଛାଡ଼ିବ ନାହିଁ । ଆଜି ସଞ୍ଜରେ ମାଦାମୋଆସେଲ୍ ଜର୍ଜ ଗୋଟିଏ ଆବୃତ୍ତି କରିବେ । ଅଳ୍ପ ଲୋକ ଆସୁଛନ୍ତି । ଆପଣଙ୍କ ଝିଅମାନେ ମାଦାମୋଆସେଲ୍ ଜର୍ଜଙ୍କଠାରୁ ବହୁତ ସୁନ୍ଦର । ଆପଣ ଯଦି ସେମାନଙ୍କୁ ସଙ୍ଗରେ ନେଇ ନ ଆସିବେ ତେବେ ଆପଣଙ୍କ ସଙ୍ଗରେ ମୋର ବନ୍ଧୁତା ଏତିକି ଥାଉ । ମୋ ସ୍ୱାମୀ ଏଠି ନାହାନ୍ତି । ସେ ଟ୍ୱରରେ ସହରକୁ ଯାଇଛନ୍ତି, ନହେଲେ ମୁଁ ଆପଣଙ୍କ ପାଖକୁ ତାଙ୍କୁ ପଠାଇଥାନ୍ତି । ଆପଣ ନିଶ୍ଚୟ ଆଜି ଆମ ଘରକୁ ଆସିବେ । ନିଶ୍ଚୟ ନଅଟା ବାଜିବା ଆଗରୁ ଆସି ପହଞ୍ଚିବେଟି ?"

ପୋଷାକ ତିଆରି କରିବା ଲୋକକୁ ସେ ଚିହ୍ନିଥାନ୍ତି, ସେ ତା ଆଡ଼କୁ ଅନାଇଁ ମୁଣ୍ଡ ହଲେଇଲେ । ସେ ଭାରି ସମ୍ମାନ ଦେଖାଇ ତାଙ୍କୁ ଦଣ୍ଡବତ ହେଉଥାଏ । ଗୋଟିଏ ଅଳ୍ପ ଉଚ୍ଚ ଚୌକିରେ ଦର୍ପଣ ପାଖରେ ବସିପଡ଼ି ଏଲେନ୍ ତାର ଛବି ପରି ଗାଉନ୍‌ର ଭାଙ୍ଗକୁ ସାଉଁଳୁଥାଏ । ସେ ହସ ଖୁସିରେ ମନଖୋଲା ଗଳ୍ପରେ ସୁଅ ଛୁଟାଇ ଦେଇଥାଏ । ବାରମ୍ବାର ନାତାଶାର ସୌନ୍ଦର୍ଯ୍ୟକୁ ପ୍ରଶଂସା କରି କରି କଥା କହୁଥାଏ । ସେ ତାର ପୋଷାକମାନ ଦେଖି ତାକୁ ବି ପ୍ରଶଂସା କଲା । ସେ କହିଲା ଯେ ସେ ପ୍ୟାରିସରୁ ତାର ନିଜ ପାଇଁ ଧାତୁ ଦ୍ରବ୍ୟର ଗ୍ୟାସରେ ତିଆରି ଗୋଟାଏ ନୂଆ ପ୍ରକାର ପୋଷାକ ଆଣେଇକୁ ଦେଇଛି, ସେମିତି ଗୋଟିଏ ପୋଷାକ ରଖିବାପାଇଁ ସେ ନାତାଶାକୁ କି ପରାମର୍ଶ ଦେଲା ।

ସେ କହିଲା "ଯାହା ତମେ ପିନ୍ଧିବ ତାହା ତମକୁ ମାନିବ, ଲୁମେ ପରୀ କୁହୁକମା !" ନାତାଶାର ମୁହଁରୁ ଆନନ୍ଦର ହସ ଲିଭିଲା ନାହିଁ । ତାକୁ ଭାରି ଆନନ୍ଦ ଲାଗୁଥାଏ । ସତେ ଯେପରିକି କଢ଼ଟିଏ ଫୁଲ ଫୁଟିଲା ପରି ଏଇ ସୁନ୍ଦରୀ କାଉଣ୍ଟେସ ବେଦୁଖବଙ୍କ ପ୍ରଶଂସା ଶୁଣି ଶୁଣି ସେ ଖୁସି ହେଉଥାଏ । ଆମେ ଯାଙ୍କୁହିଁତ ଯେ ଭାବିଥିଲା ସେ ସେ ଜଣେ ଅତି ସମ୍ମାନାର୍ହା ଭଦ୍ରମହିଳା, ଯାଙ୍କ ପାଖରେ ପଶିହୁଏ ନାହିଁ । ଅଥଚ ବର୍ତ୍ତମାନ ସେ ତାକୁ ଦେଖି କେଡ଼େ ଖୁସି ହେଉଛନ୍ତି । ନାତାଶାର ମନ ଫୁଲି ଉଠିଲା । ତାକୁ ଲାଗିଲା ସେ ଏହି ସୁନ୍ଦର ଚମତ୍କାର ସ୍ୱଭାବର ସ୍ତ୍ରୀ ଲୋକଟିର ପ୍ରେମରେ ପଡ଼ିଯାଇଛି । ଏଲେନ୍ ପ୍ରକୃତରେ ନାତାଶାକୁ ଦେଖି

ପ୍ରଶଂସା କରୁଥାଏ, ନାତାଶା ସୁଖ ଭୋଗ କରିବାକୁ ଯାହିଁ ଏହା ଦେଖି ମଧ୍ୟ ସେ ଖୁସି ହେଉଥାଏ । ଆନାଟୋଲ୍ ଏଲେନ୍‌କୁ ବାରମ୍ବାର ଅନୁନୟ କରଥାଏ ଯେ ତାକୁ ନାତାଶା ସଙ୍ଗରେ ମିଳାମିଶା ହେବାକୁ ସେ ଯେମିତି ବ୍ୟବସ୍ଥା କରଦେବ । ସେହି ଉଦ୍ଦେଶ୍ୟ ମନରେ ରଖି ସେ ରୋସ୍ତଭ ପରିବାରଙ୍କ ଘରକୁ ଆସିଥାଏ । ନାତାଶା ଆଉ ତା ଭାଇ ଏ ଦୁହିଁଙ୍କୁ ଏକାଠି କଲେ କେମିତି ହେବ ଏଇଆ ଭାବିବାକୁ ତାକୁ ଭାରି ମଜା ଲାଗୁଥାଏ ।

ସେ ରୋସ୍ତଭମାନଙ୍କ ଘରୁ ଚାଲିଗଲା ବେଳେ ନାତାଶାକୁ ହଲ୍‌କୁ ଡାକନେଇ କହିଲା "କାଲି ମୋ ଭାଇ ମୋ ସଙ୍ଗରେ ଖାଇ ବସିଥିଲା— ସେ ଜମା ଖାଉନାହିଁ, ଖାଲି ତମରି ପାଇଁ ଦୀର୍ଘଶ୍ୱାସ ପକାଉଛି ଗୋ କୁହୁକକନ୍ୟା । ମୋ ସୁନାଟି, ଶୁଣ, ସେ ପାଗଳ ପରି ତମରି ପ୍ରେମରେ ପଡ଼ିଯାଇଛି, ବାୟା ହୋଇଯାଇଛି ।"

ଏକଥା ଶୁଣି ନାତାଶା ସିନ୍ଦୁର ପରି ନାଲି ପଡ଼ିଗଲା । ଏଲେନ କହିଲା "ହେଇ ଦେଖ, କେମିତି ସେ ରଙ୍ଗା ପଡ଼ିଗଲେ । କେମିତି ସେ ରଙ୍ଗା ପଡ଼ିଯାଉଛନ୍ତି ଦେଖତ ମା ! ଆଃ । ଏଡ଼େ ସୁନ୍ଦର !" କହିଗଲା, "ଦେଖି ନିଶ୍ଚୟ ତୁମେ ଆସିବ । ତୁମେ ଯଦି କାହାକୁ ପ୍ରେମ କଲଚ ସେଥିପାଇଁ ଘର କ'ଣରେ ବନ୍ଦୀ ହୋଇ ରହିବ କାହିଁକି ? ତୁମେ ଯଦିବା ବାଗ୍‌ଦତ୍ତା ହୋଇ ରହିଛ ସେଥିରେ କ'ଣ ଅଛି ? ମୁଁ ତ ଭାବୁଛି ଯାହାସଙ୍ଗେ ତୁମର ବିଭାଘର ଲାଗିଛି ସେ କହନ୍ତା ଯେ ଏମିତି ଝୁରିଝୁରି କ୍ଷୀଣ ହେବା ଅପେକ୍ଷା ତୁମେ ପଦାକୁ ବାହାରନ୍ତ, ଲୋକଙ୍କ ସଙ୍ଗରେ ମିଶନ୍ତ ।"

"ତା ମାନେ ସେ ଜାଣିଛନ୍ତି ଯେ ମୁଁ ବାଗଦତ୍ତା । ଆଉ ତାଙ୍କ ସ୍ୱାମୀ ପିଏରେ, ସମସ୍ତେ ସେ ବିଷୟରେ ଏକାଠି କଥାଭାଷା ହୋଇଛନ୍ତି ହସାହସି ହୋଇଛନ୍ତି । ତା ମାନେ ମୋର ବାଗଦତ୍ତା ହେବାଟା କିଛି ନୁହେଁ ।"

ଏଲେନ୍‌ର ପ୍ରଭାବ ଆଗେ ତାକୁ ଡ଼ର ମାଡୁଥିଲା । ପୁଣି ତାକୁ ଲାଗିଲା ଅତି ସରଳ ଆଉ ସ୍ୱାଭାବିକ ।

ନାତାଶା ଭାବୁଥାଏ "ଏଇ ବିଖ୍ୟାତ ଭଦ୍ରମହିଳା ଏତିକ ସ୍ନେହୀ। ନିଶ୍ଚୟ ମତେ ସେ ତାଙ୍କ ଅନ୍ତର ଭିତରୁ ଭଲ ପାଉଛନ୍ତି । ତେବେ ମୁଁ ଆନନ୍ଦ କଲେ ତହିଁରେ କ୍ଷତି କ'ଣ ? ସେ କାବା କାବା ହୋଇ ବଡ଼ ବଡ଼ ଆଖି କରି ଏଲେନକୁ ଅନାଇ ରହିଥାଏ ।

ମେରିଆ ମିତ୍ରୋଭ୍ନା ଖାଇବାକୁ ଲେଉଟି ଆସିଲାବେଳେ ଚୁପ୍ ଚାପ୍ ଗମ୍ଭୀର ଦିଶୁଥାନ୍ତି, ଜଣାପଡୁଥାଏ ଯେ ବୁଢ଼ା ପ୍ରିନସ ତାଙ୍କୁ ପରାଜିତ କରି ଦେଇଛନ୍ତି । ଯେଉଁ ସଂଘର୍ଷ ଭିତରେ ବୁଢ଼ା ପ୍ରିନ୍ସଙ୍କ ସଙ୍ଗରେ ତାଙ୍କର ଭେଟାଭେଟି ହେଲା ସେଥିରେ ସେ ଏତେ ବିଚଳିତ ହୋଇ ପଡ଼ିଥାନ୍ତି ଯେ କ'ଣ ହେଲା ସେ ତା ବର୍ଣ୍ଣନା କରି ପାରୁନଥାନ୍ତି । କାଉଣ୍ଟ ଯେତେ-ବେଳେ ପଚାରିଲେ ସେ କହିଲେ ଯେ ସବୁ ଠିକ ହେଲା । ସେସବୁ କଥା ସେ ତାଙ୍କ ଆଗରେ ତା ଆଉଦିନ କହିବେ । ସେ ଯେମିତି ଶୁଣିଲେ ଯେ କାଉଣ୍ଟେସ୍ ବେଜହୁଭ ଆସି ସଞ୍ଜରେ ଯିବାପାଇଁ ନିମନ୍ତ୍ରଣ କରିଦେଇ ଯାଇଛନ୍ତି ସେମିତି ସେ ନାତାଶାକୁ କହିଲେ "ସେ କାଉଣ୍ଟେସ ବେଦ୍‌ହୁଭଙ୍କ ସଙ୍ଗରେ ସାଙ୍ଗ ହେବା ମତେ ମୋଟେ ଭଲ ଲାଗେ ନାହିଁ କି ତାଙ୍କ ସଙ୍ଗରେ ମିଶିବାକୁ ମୁଁ ତମକୁ ଉପଦେଶ ଦେବି ନାହିଁ, ତେବେ ତୁମେ କଥା ତ ଦେଇ ଦେବାଇଛ । ତେଣୁ ବରଂ ଯାଅ, ତମ ମନଟା ଟିକିଏ ବଦଳି ଯିବ ।"

କାଉଣ୍ଟ ଇଲିଆ ଆନ୍ଦ୍ରେଇଚ ତାଙ୍କ ଦୁଇ ଝିଅଙ୍କୁ ଧରି ବେଦୁହଭଙ୍କ ଘରକୁ ଗଲେ । ସେଠି ବହୁତ ମଣିଷ ଜୁଣ୍ଡ ହୋଇଥାନ୍ତି । କିନ୍ତୁ ସେଠି ଯେଉଁମାନେ ଥାନ୍ତି ନାତାଶା ତାଙ୍କ ଭିତରୁ କାହାରିକି ଚିହ୍ନି ନଥାଏ । କାଉଣ୍ଟ ଇଲିଆ ଆନ୍ଦ୍ରେଇଚ ଦେଖି ବିରକ୍ତ ହେଲେ ଯେ ଯେତେ ସ୍ତ୍ରୀ ପୁରୁଷ ସେଠି ଥାନ୍ତି ସେମାନେ ପ୍ରାୟ ସମସ୍ତେ ସେମିତିଆ ଲୋକ ଯେଉଁମାନେ ଉଚ୍ଛୃଙ୍ଖଳ ଜୀବନ ବିତାନ୍ତି ବୋଲି ସମାଜରେ ତାଙ୍କର ବଦନାମ ଅଛି । ତାସ୍ ଖେଳିବି ନାହିଁ, ଝିଅରି ପାଖ ଛାଡ଼ିବି ନାହିଁ ଆଉ ମାଦାମୋଆ ଜେଲ ଜର୍ଜଙ୍କ ଅଭିନୟ ସରିଗଲା ମାତ୍ରେ ଘରକୁ ଚାଲିଯିବି ଏହିପରି ସେ ନିଷ୍ପତ୍ତି କରିନେଲେ ।

ଆନାତୋଲ ଦୁଆର ମୁହଁ ପାଖେ ଠିଆ ହୋଇଥାଏ, ସେ ରୋଷ୍ଟଭ ପରିବାରଙ୍କ ପାଇଁ ଅପେକ୍ଷା କରି ରହିଥାଏ ଏକଥା ପରିଷ୍କାର

ଜଣା ପଡୁଥାଏ । କାଉଣ୍ଟଙ୍କୁ ସଙ୍ଗେ ସଙ୍ଗେ ଦଣ୍ଡବତ କରି ଅଭ୍ୟର୍ଥନା ଜଣାଇ ସେ ନାତାଶା ପାଖକୁ ଯାଇ ତା ପଛେ ପଛେ ଘର ଭିତରକୁ ଗଲେ । ଯେମିତି ନାତାଶା ତାକୁ ଦେଖି ପକାଇଲେ ଥିଏଟରରେ ତାକୁ ଦେଖିଲାବେଳେ ତା ମନରେ ଯେପରି ଭାବ ଆସିଥିଲା ସେହିପରି ଭାବ ଆସିଲା । ସେ ତାକୁ ପ୍ରଶଂସା କରୁଛି ସେଥିପାଇଁ ତାର ଗର୍ବ ଚରିତାର୍ଥ ହେଲା ଓ ତା ଭିତରେ ନିଜ ଭିତରେ କୌଣସି ନୈତିକ ପ୍ରତିବନ୍ଧକ ନାହିଁ ଏକଥା ଭାବି ତାକୁ ଭାରି ଡର ମାଡ଼ିଲା ।

ଏଲେନ ଅତି ଗେହ୍ଲା ଆଦରକରି ନାତାଶାକୁ ଅଭ୍ୟର୍ଥନା ଜଣାଇଲ୍ ଓ ତା ପୋଷାକଟି କେଡ଼େ ସୁନ୍ଦର ହୋଇଛି ବୋଲି ବଡ଼ ପାଟିରେ ପ୍ରଶଂସା ଆରମ୍ଭ କରିଦେଲ୍ । ସେମାନେ ଆସି ପହଞ୍ଚିବାର ଅଳ୍ପ ସମୟ ପରେ ମାଦାମ ଆଜେଲ ଜର୍ଜ ପୋଷାକ ବଦଳାଇବା ପାଇଁ ସେ ଘରୁ ଚାଲିଗଲେ । ବୈଠକ ଖାନା ଘରେ ଧାଡ଼ି ଧାଡ଼ି ହୋଇ ଚଉକି ସବୁ ପକା ହେଉଥାଏ, ଲୋକେ ବସି ପଡ଼ିଲେ । ଆନାତୋଲ ନାତାଶା ପାଇଁ ଚୌକିଟିଏ ଉଠାଣ ଆଣିଲେ ଓ ତା ପାଖ ଚୌକିରେ ବସିପଡ଼ିଲେ । କିନ୍ତୁ କାଉଣ୍ଟ ନାତାଶା ଉପରେ ସତର୍କ ଦୃଷ୍ଟି ରଖିଥାନ୍ତି, ସେ ତା ପାଖରେ ବସିଲେ । ଆନାତୋଲ ପଛଆଡ଼େ ବସିଲେ ।

ଧାଡ଼ି ଧାଡ଼ି ଚୌକି । ଚୌକି ମଝିରେ ମାଦାମ୍ ଆଜେଲ ଜର୍ଜ ଅଭିନୟ ଦେଖାଇବେ ବୋଲି ଜାଗା ଖାଲି ରଖା ହୋଇଥାଏ । ସେ ସେଠିକି ଆସିଲେ ତାଙ୍କ ମୋଟା ମୋଟା ହାତ ଯୋଡ଼ିକ ଅନାବୃତ ଥାଏ । ସେଥିରେ ସାନ ସାନ ଖୋଲ ଫୁଟିଥାଏ । ତାଙ୍କର ଗୋଟିଏ କାନ୍ଧ ଉପରେ ଗୋଟିଏ ଖଣ୍ଡ ଲୁଗା ପଡ଼ିଥାଏ । ସେ ଆସି ଏକ ଅପ୍ରାକୃତ ଭଙ୍ଗୀ କରି ଠିଆ ହେଲେ । ସମସ୍ତେ ଭାରି ପ୍ରଶଂସାରେ ଫୁସ୍ ଫୁସ ହେଉଥାନ୍ତି ଶୁଭୁଥାଏ ।

ମାଦାମାଆଜେଲ ଜର୍ଜ ଦର୍ଶକମଣ୍ଡଳିକୁ କଠୋର ଅଥଚ ଦୁଃଖିତ ଆଖିରେ ଅନାଇଲେ ଓ ଫରାସି ଭାଷାରେ କବିତା ଆବୃତ୍ତି କଲେ । ପୁଅ ପ୍ରତି ମା'ର ପାପ ପ୍ରଣୟ ସେ କବିତାରୁ ବର୍ଣ୍ଣନା କଲେ । ଠାଏ ଠାଏ ସେ ସ୍ୱରକୁ ଟେକୁଥାନ୍ତି । ଠାଏ ଠାଏ ଗମ୍ଭୀର

ସ୍ୱରରେ ମୁଣ୍ଡକୁ ଟେକ ସେ ଅତି ଭୁନ ଭୁନ ହୋଇ ଆବୃତ୍ତି କରୁଥାନ୍ତି । ଠାଏ ଠାଏ ସେ କଥା ବନ୍ଦ କରି ଡୋଳାକୁ ବୁଲେଇ ବୁଲେଇ ସାପ ପରି ଫଁ ଫଁ କରୁଥାନ୍ତି ।

ଚାରିପାଖରୁ ପାଟି ଶୁଭୁଥାଏ, "ଆଃ ! କେଡ଼େ ସୁନ୍ଦର ! ଚମତ୍କାର ! ସ୍ୱର୍ଗୀୟ !" ନାତାଶା ସେହି ମୋଟୀ ଅଭିନେତ୍ରୀକୁ ଅନାଇ ଥାଏ । ତା ଆଖି ଆଗରେ କଣ ଚାଲିଛି ସେ କିଛି ନଜର କରିପାରୁ ନ ଥାଏ କି କିଛି ଶୁଣିପାରୁ ନଥାଏ କି କିଛି ସେ ବୁଝିପାରୁ ନଥାଏ । ସେ କେବଳ ଗୋଟିଏ କଥା ଅନୁଭବ କରି ପାରୁଥାଏ ଯେ ତାର ପୁରୁଣା ଦୁନିଆଁକୁ ଟେକ ନେଇ ଯାଉଛି ଯେପରି ଆଉ ସେ କଥା ବଦଳିବ ନାହିଁ । ସେ ଏକ ଆଶ୍ଚର୍ଯ୍ୟ ଦୁନିଆଁ, ସେଠି ଭଲ କଣ ମନ୍ଦ କଣ ,ଉଚିତ କଣ ଅନୁଚିତ କଣ, ଏ ସବୁର କିଛି ବିଚାର ନାହିଁ, ସେ ଦୁନିଆଁରେ କାଣ୍ଡଜ୍ଞାନ ବି ନାହିଁ । ସେ ତାର ପୁରୁଣା ଦୁନିଆଁଠୁ ବହୁ ଦୂରରେ । ନାତାଶା ଜାଣିଥାଏ ଯେ ଆନାଟୋଲ ତା ପିଠିଆଡ଼େ ବସିଛି । ଯେପରି କଣ ଗୋଟିଏ ଘଟିବ ବୋଲି ସେ ଭୟରେ ଆଶଙ୍କା କରି ଅପେକ୍ଷା କରିବାରେ ଲାଗିଲେ ।

ପ୍ରଥମ ସର୍ଗର ଆବୃତ୍ତି ସରିଲା ଉତ୍ତାରୁ ସମସ୍ତେ ଉଠିପଡ଼ି ମାଦାମୋଆଜେଲ ଜର୍ଜଙ୍କ ଚାରିପଟେ ରୁଣ୍ଡ ହୋଇ ତାଙ୍କୁ ପ୍ରଶଂସା କରୁଥାନ୍ତି ।

ଅନ୍ୟମାନଙ୍କ ପରି ନାତାଶାର ବାପା ବି ଉଠିପଡ଼ି ଗହଳି ଭିତରେ ଅଭିନେତ୍ରୀ ଆଡ଼କୁ ଚାଲିଲେ । ନାତାଶା ତାଙ୍କୁ କହିଲା, "ସେ କେଡ଼େ ସୁନ୍ଦର !"

ନାତାଶାର ପଛେ ପଛେ ଥାଏ ଆନାଟୋଲ । ଯେତେବେଳେ କେହି ତା କଥା ଶୁଣି ପାରିବେ ନାହିଁ ଖାଲି ନାତାଶା ଶୁଣିବ ଏମିତି ବେଳ ବାଛି ସେ କହିଲା, 'ତମକୁ ଦେଖିବା ପରେ ମତେ ସେ ମୋଟେ ସୁନ୍ଦର ଦିଶୁ ନାହାନ୍ତି । ତୁମେ ଚମତ୍କାର···ଯେଉଁ ମୁହୂର୍ତ୍ତରେ ମୁଁ ତୁମକୁ ପ୍ରଥମେ ଦେଖିଲି ସେତିକି ବେଳୁ ମୁଁ ଅନବରତ ତୁମକୁ ଚାହିଁ ରହିଛି ।

ଝିଅ କାନ୍ଦିଁଗଲା ବୋଲି ପଛକୁ ବୁଲିପଡ଼ି କାଉଣ୍ଟ ଡାକିଲେ "ଚାଲିଆ ମା, ନାତାଶା ଚାଲିଆ। ସେ କେଡ଼େ ସୁନ୍ଦର।" ନାତାଶା କିଛି ନକହି ବାପା ପାଖକୁ ଗଲା । ଆଶ୍ଚର୍ଯ୍ୟ ହୋଇ ପଚାରିଲା, ପଚାରିଲା ଆଖି କରି ସେ ତାଙ୍କୁ ଅନାଇଁଲା।

ଭିନ୍ନ ଭିନ୍ନ ରାଗିଣୀରେ ଆବୃତ୍ତି କରିସାରି ମାଦାମୋଆ ଜେଲି ଜର୍ଜ ଚାଲିଗଲେ। କାଉଣ୍ଟେସ ବେଦହିଭ ସବୁ ଅତିଥିମାନଙ୍କୁ ବଡ ହଲ୍ ଘରକୁ ଆସିବାକୁ ଡାକିଲେ।

କାଉଣ୍ଟ ଯିବାକୁ ବସିଥିଲେ କିନ୍ତୁ ଏଲେନ୍ ତାଙ୍କୁ କହିଲା— "ସେ ଚାଲିଗଲେ ତାର ଏ ନାଚ ବ୍ୟବସ୍ଥା ମାଟି ହୋଇଯିବ । ରୋଷ୍ଟଭ ପରିବାର ରହିଗଲେ। ଆନାତୋଲ ନାତାଶାକୁ ଡାକିଲା ତା ସାଙ୍ଗରେ ନାଚିବାକୁ। ନାଚିଲା ବେଳେ ସେ ତାର ଅଣ୍ଟା ଓ ହାତକୁ ଚିପି ଦେଲା । ତାକୁ କହିଲା ଯେ ସେ ଭାରି ସୁନ୍ଦର ଓ ତା ପ୍ରେମରେ ପଡ଼ି ଯାଇଛି । ପୁଣି ଆନାତୋଲ ସଙ୍ଗରେ ନାତାଶା ଆଉଥରେ ଗୋଟିଏ ନାଚ ନାଚିଲା। ଦୁହେଁ ଏକୁଟିଆ ଥିଲେ । ଆନାତୋଲ ତାକୁ କିଛି ନ କହି ତାକୁ ଖାଲି ଅନାଇଲା । ନାଚବେଳେ ଆନାତୋଲ ତାକୁ ଯାହା କହି ଦେଇଛି ସେ କଥା ସେ ସତରେ କହିଛି ନା ସେ ତାର ସ୍ୱପ୍ନ ଏ ବିଷୟରେ ନାତାଶା ଧନ୍ଦି ହେଉଥାଏ । ନାଚର ପ୍ରଥମ ପର୍ବ ପରେ ଆନାତୋଲ ପୁଣି ତା ହାତକୁ ଚିପିଦେଲା। ନାତାଶା ତା ମୁହଁକୁ ଭୟାର୍ତ୍ତ ଚାହାଣିରେ ଅନାଇଲା କିନ୍ତୁ ତାର ମୁଗ୍ଧ ଦୃଷ୍ଟିରେ ହସରେ ଏଭଳି ସ୍ନେହ ଓ ବିଶ୍ୱାସର ଠାଣି ଫୁଟି ଉଠୁଥାଏ ଯେ ନାତାଶା ଯାହା କହିବ ବୋଲି ଭାବିଥିଲା ତା ମୁହଁକୁ ଚାହିଁ ନକହି ପାରି ଆଖି ତଳକୁ ପୋତିଦେଲା।

ସେ ଥରଥର ହୋଇ କହିଲା—"ମତେ ସେମିତିଆ କଥା, କହିବେ ନାହିଁ। ମୁଁ ବାଗଦତ୍ତା ଆଉ ମୁଁ ଅନ୍ୟ ଜଣଙ୍କୁ ପ୍ରେମ କରୁଛି···।" ସେ ଆନାତୋଲ ଆଡକୁ ଅନାଇଲା । ତା କଥା ଶୁଣି ଆନାତୋଲ ବିବ୍ରତ ହୋଇ ନଥାଏ କି ଦୁଃଖିତ ଜଣାପଡୁ ନଥାଏ ।

ସେ କହିଲା "ମୋ ଆଗରେ ସେକଥା ପକାଅ ନାହିଁ । ମୋର ସେଥିରେ କ'ଣ ଅଛି ? ମୁଁ ତୁମକୁ ମୋର ହୃଦୟର କଥା ଖୋଲି କହୁଛି । ମୁଁ ପାଗଳ ହୋଇଛି ତୁମ ପ୍ରେମରେ, ମୁଁ ପାଗଳ ହୋଇଛି । ତୁମେ ଯେ ଏତେ ସୁନ୍ଦର ସେଥିପାଇଁ କ'ଣ ମୁଁ ଦୋଷୀ···ଏଥର ଆସ ଆମେ ନାଚ ଆରମ୍ଭ କରିବା—"

ନାତାଶା ଉଦ୍‌ବିଗ୍ନ ଆଉ ଉତ୍ତେଜିତ ହୋଇଥାଏ । ସେ ଚାରି ଆଡକୁ ଚାହିଁଲା । ତାର ଆଖିରେ ଭୟ ପୂରି ଯାଇ ଥାଏ, ଆଖି ଖୁବ୍ ବଡ଼ ଦିଶୁଥାଏ । ଲାଗୁଥାଏ ସେ ଆଜିର ବେଶୀ ବେଶୀ ଜୀବନକୁ ଉପଭୋଗ କରୁଛି । ସେ ଦିନ ସ୍ୱପ୍ନରେ କଣ କଣ ଘଟୁଥାଏ ସେ ଆଦୌ ବୁଝି ପାରୁ ନ ଥାଏ । ସେମାନେ ଆଉ ଯୋଡ଼ାଏ ନାଚ ନାଚିଲେ । ତହିଁରୁ ଗୋଟିଏ ନାଚର ନାମ 'ଅକା' । ତା ବାପା କହିଲେ ଏଥର ଯିବା, କିନ୍ତୁ ତାଙ୍କୁ ସେ ଅନୁରୋଧ କଲାନାହିଁ ଆଉ ଟିକିଏ ରହିବା । ଥାଉ ପଛେ, ସେ ଯାହା ସଙ୍ଗେ ପଛେ କଥା ହେଉ ଥାଉ, ସେ ଅନୁଭବ କଲା ଯେ ତାଙ୍କ ଦୃଷ୍ଟି ତା ଉପରେ ଅନବରତ ରହିଛି । ତା ପରେ ତାର ମନେ ପଡ଼ିଲା ଯେ ତାର ପୋଷାକ ସଜାଡ଼ିବା ପାଇଁ ସେ ପୋଷାକ ପିନ୍ଧିବା ଘରକୁ ଯିବାକୁ ତାଙ୍କର ଅନୁମତି ମାଗିଥିଲା । ତାପରେ ଏଲେନ୍ ବି ସେ ଘରକୁ ଯାଇଥିଲା ହସି ହସିକା ତା ପ୍ରତି ତା ଭାଇର ପ୍ରେମ ବିଷୟରେ କଥା କହିଥିଲା । ତାପରେ ଆନାତୋଲ ସେଠି ଆସି ପହଞ୍ଚିଯାଇଥିଲା ଆଉ ଏଲେନ୍ କେମିତି କୁଆଡ଼େ ଅଦୃଶ୍ୟ ହୋଇଯାଇ ଥିଲା ସେ ଦୁହେଁ ଏକୁଟିଆ ପଡ଼ିଯାଇଥିଲେ ଆନାତୋଲ ତାର ହାତ ଧରି ପକାଇ କଅଁଳ ସ୍ୱରରେ କହିଥିଲା "ମୁଁ ତ ତମ ସଙ୍ଗରେ ଦେଖାକରିବାକୁ ଯିବା ଅସମ୍ଭବ, ତେବେ ଏକଥା କ'ଣ ସମ୍ଭବ ଯେ ମୁଁ ଆଉ ତୁମକୁ କେବେହେଲେ ଦେଖିବି କି ନାହିଁ ? ମୁଁ ତୁମକୁ ପାଗଳ ପରି ଭଲ ପାଏ । ମୁଁ କଣ କେବେ—" ଆଉ ତାର ବାଟ ଓଗାଳି ସେ ତା ମୁହଁପାଖକୁ ନେଇ ଆସିଥିଲା ।

ତାର ବଡ଼ ବଡ଼ ଉଜ୍ଜ୍ୱଳ ପୁରୁଷ ଆଖି ଯୋଡ଼ାକ ନାତାଶାର ଏତେ ପାଖରେ ଥିଲା ଯେ ସେ ଆଖିଛଡ଼ା ଆଉ କିଛି ଦେଖି ପାରୁ ନ ଥିଲା ।

"ନାତାଲି—" ତାର ସ୍ୱର ଫୁସ୍ ଫୁସ ହୋଇ ପଶ୍ନରୁ ଥାଏ । ସେ ତାର ହାତକୁ ଏତେ ଜୋର୍‌ରେ ଚିପୁ ଥାଏ ଯେ ହାତକୁ କାଟୁଥାଏ ; ପଗ୍ଭରୁଥାଏ "ନାତାଲି ?"

"ମୁଁ କିଛି ବୁଝି ପାରୁନାହିଁ । ମୋର କିଛି କହିବାକୁ ନାହିଁ ।" ଏଇ ଉତ୍ତର ଥିଲା ତା ଆଖିରେ ।

ସେ ଅନୁଭବ କଲା ତା ଓଠରେ ତାଙ୍କର ଓଠ ମାଡ଼ି ବସିଁ ହେଲା । ଫେର୍ ସେହି ମୁହୂର୍ତ୍ତରେ ସେ ଅନୁଭବ କଲା ସେ ମୁକ୍ତ ହୋଇଛି । ପୁଣି ସେ ଘରେ ଏଲେନର ସ୍ୱର ଓ ତା ଗାଉନର ଖସ୍ ଖସ୍ ଶବ୍ଦ ତା କାନରେ ବାଜିଲା । ନାତାଶା ବୁଲି ପଡ଼ି ଏଲେନ୍‌କୁ ଚାହିଁଲା । ତାପରେ ନାଲି ପଡ଼ିଯାଇ ଥର ଥରକା ସେ ଆନାତୋଲ୍ କୁର୍‌ଗିନ୍ ଆଡ଼କୁ ପଗ୍ଭରିଲା ପଗ୍ଭରିଲା, ଦୃଷ୍ଟିରେ ଅନାଇଁ ଅନାଇଁ କବାଟ ଆଡ଼କୁ ଗ୍ଭଲିଲା ।

ଆନାତୋଲ୍ କହୁ ଥାଏ 'ନାତାଲି ! ପଦେ କଥା, ଖାଲି ପଦେ କଥା ।" ସେ ଅଟକି ଗଲା । ସେ ଖୋଜୁ ଥିଲା ସେ ସେହି ପଦେକଥା କହନ୍ତା ଯହିଁରୁ ସେ ବୁଝି ପାରନ୍ତା ଯେ କଣ ଘଟିଯାଇଛି । ତେବେ ସେ ତାର ଉତ୍ତର ଦିଅନ୍ତା ।

କିନ୍ତୁ ସେ ବାରମ୍ବାର କହି ଲାଗିଥାଏ, "ନାତାଲି ! ପଦେ କଥା ଶୁଣ—ପଦେ··· ।" କଣ ସେ କହିବ ସେ ନିଜେ ଜାଣି ନ ଥାଏ । ଏଲେନ୍ ସେମାନଙ୍କ ପାଖରେ ପହଞ୍ଚିବା ଯାଏ ଖାଲି ସେଇଆ ସେ କହୁଥାଏ ।

ଏଲେନ ନାତାଶାକୁ ସାଙ୍ଗରେ ନେଇ ବୈଠକଖାନା ଘରକୁ ଗ୍ଭଲିଗଲା । ରୋସ୍ତଭ ପରିବାର ଖାଇବାକୁ ଅପେକ୍ଷା ନକରି ଗ୍ଭଲିଗଲେ ।

ସେମାନେ ଘରେ ପହଞ୍ଚିବା ପରେ ନାତାଶାକୁ ସେ ରାତିସାରା ନିଦ ହେଲା ନାହିଁ । ଗୋଟାଏ ପ୍ରଶ୍ନର ଉତ୍ତର ଖୋଜି ଖୋଜି ସେ ଛଟପଟ ହେଉଥାଏ ଯେ କାହାପ୍ରତି ତାର ପ୍ରେମ ଅଛି, ଆନାତୋଲ୍ ପ୍ରତି ନା

ପ୍ରିନସ ଆନ୍ଦ୍ରେଙ୍କ ପ୍ରତି । ପ୍ରିନ୍‌ସ ଆନ୍ଦ୍ରେଙ୍କୁ ସେ ପ୍ରେମ କରୁଥିଲା । ତାଙ୍କ ପ୍ରତି ଯେଉଁ ପ୍ରଗାଢ଼ ପ୍ରେମ ଥିଲା ସେକଥା ତାକୁ ଜଳଜଳ ହୋଇ ଦିଶି-ଯାଉଥାଏ । କିନ୍ତୁ ସେ ଆନାତୋଲ୍‌କୁ ବି ପ୍ରେମ କରୁଥିଲା । ସେ ବିଷୟରେ ଆଦୌ ସନ୍ଦେହ ନଥିଲା । ସେ ଭାବୁଥାଏ "ତା ହୋଇ ନଥିଲେ କଣ ଏମିତି ଘଟିଥାନ୍ତା ? ଯଦି ସେସବୁ ଘଟିଲା ପରେ ସୁଦ୍ଧା ବିଦା ହେଲାବେଳେ ସେ ମୋତେ ଦେଖି ମୁରୁକି ମୁରୁକି ହସିଲା ସେତେବେଳେ ମୁଁ ବି ମୋ ହସରେ ତାର ଜବାବ୍ ଦେଲି । ଯଦି ମୁଁ ଏତେ ତଳକୁ ଖସିଯାଇ ପାରିଲି ତେବେ ତ ତାକୁ ଦେଖିଲା ମୁହୂର୍ତ୍ତରୁ ହିଁ ମୁଁ ତାର ପ୍ରେମରେ ପଡ଼ିସାରିଛି । ଅତଏବ ନିଶ୍ଚୟ ସେ ଜଣେ ଭାରି ସ୍ନେହୀ ଉଦାର ଆଉ ଭଲ ମଣିଷ, ତାକୁ ଭଲ ନପାଇ ମୁଁ ରହିପାରି ଥାନ୍ତି କିପରି । ତେବେ ମୁଁ କଣ କରିବି, ମୁଁ ତ ତାକୁ ଭଲ ପାଉଛି ପୁଣି ଆଉ ଜଣଙ୍କୁ ବି ଭଲପାଉଛି ।" ଏମିତି ସେ ମନକୁ ମନ କହି ହେଉଥାଏ ଓ ଏଇ ଭୟଙ୍କର ପ୍ରଶ୍ନର ଉତ୍ତର ଖୋଜି ପାଉନଥାଏ ।

ସକାଳ, ପ୍ରତିଦିନର ଚିନ୍ତା ଓ ଗହଳି ଚହଳି ଯେମିତି ଆସି-ପହଞ୍ଚିଲା । ସମସ୍ତେ ନିଦରୁ ଉଠି ଏକରି ସେକରି ହୋଇ କଥାଭାଷା ଆରମ୍ଭ କଲେ । ପୁଣି ପୋଷାକ ତିଆରି କରିବା ଲୋକେ ଆସିଲେ । ପୁଣି ମେରିଆ ମିତ୍ରୋଫ୍ଭନା ପଦାକୁ ବାହାରିଗଲେ ଓ ଗୃହା ଖାଇବାକୁ ସେମାନଙ୍କୁ ଡକରା ବି ଆସିଗଲା । ନାତାଶା ସମସ୍ତଙ୍କୁ ବଡ଼ ବଡ଼ ଆଖିକରି ଅସୁସ୍ଥ ହୋଇ ତରକି ତରକି ଦେଖୁଥାଏ । ସତେଯେପରି ତା ଉପରେ ଯେତେ ଲୋକଙ୍କ ଦୃଷ୍ଟି ଆସି ପଡ଼ୁଛି ସବୁ ସେ ଅଧବାଟରେ ଅଟକାଇ ଦେବାକୁ ଚାହେଁ । ସବୁଦିନ ପରି ଆଜି ବି ସେ ସେମିତି ଏଇଆ ଦେଖାଇ ହେବାକୁ ସେ ପାରୁପର୍ଯ୍ୟନ୍ତ ଚେଷ୍ଟା କରୁଥାଏ ।

ଖାଇସାରିବା ପରେ ମେରିଆ ମିତ୍ରୋଫ୍ଭନାଙ୍କର ସବୁଠୁ ଭଲ ବେଳା । ସେଦିନ ଖାଇ ସାରିବା ପରେ ମେରିଆ ମିତ୍ରୋଫ୍ଭନା ତାଙ୍କ ଆରାମ ଚୌକିରେ ବସିପଡ଼ି ନାତାଶା ଆଉ କାଉଣ୍ଟକୁ ତାଙ୍କ ପାଖରେ ବସାଇଲେ ।

ସେ କହିଲେ "ଶୁଣ ବନ୍ଧୁମାନେ, କଥାଟାକୁ ମୁଁ ଗୁରୁଆଡ଼ୁ ଭାବି ଦେଖିଛି । ବର୍ତ୍ତମାନ ମୋର ଉପଦେଶ ଶୁଣାଇଲି, ତୁମେ ଜାଣିଛ ମୁଁ ପ୍ରିନ୍‌ସ ବଲକନସ୍କିଙ୍କ ଘରକୁ ଯାଇଥିଲି । ତାଙ୍କ ସଙ୍ଗରେ ମୋର କଥାଭାଷା ହେଲା ।···ସେ ଭାବିଲେ ମୋ ଉପରେ ପାଟି କରିବା ଭାରି ଭଲ । ତେବେ ପାଟିକରି ମୋତେ ଡରାଇ ଦେଇ ପାରିଲେ ନାହିଁ । ତାଙ୍କ ସଙ୍ଗରେ ସବୁକଥା ପଡ଼ିଗଲା ।"

କାଉଣ୍ଟ କହିଲେ "ତେବେ ତାଙ୍କର ମତଲବ କଣ ?" ନୋଋଆ ମିହ୍ୟୋଭ୍ନା କହିଲେ "ତାଙ୍କ ମୁଣ୍ଡ ଖରାପ ହୋଇଛି···ସେ ସେକଥା ଆଦୌ କାନକୁ ନେଲେ ନାହିଁ । ବେଶ୍ ସେକଥା ସେଇଠି ବନ୍ଦ ଥାଉ । ମୋର ଉପଦେଶ ହେଉଛି ଏସବୁ କଥା ଶେଷ କରି ଦେଇ ଅଟ୍ରାଦ୍‌ନୋ ଫେରିଯାଅ···ସେଇଠି ଅପେକ୍ଷା କରି ଥାଅ ।"

ନାତାଶା କହିଲା, "ନାହିଁ ନାହିଁ ।"

ମେଋଆ ମିହ୍ୟୋଭ୍ନା କହିଲେ "ହଁ, ଘରକୁ ଯାଅ । ସେଇଠି ଅପେକ୍ଷା କରି ରହ । ତୁମେ ଯାହା ସଙ୍ଗେ ବାଗ୍‌ଦତ୍ତା ହୋଇଛ ସେ ଯଦି ବର୍ତ୍ତମାନ ଏଠିକି ଆସିବତ କଜିଆ ଲାଗିଯିବ, କୌଣସି ମତେ କଜିଆ ନ ହୋଇ ହେବନାହିଁ । କିନ୍ତୁ ସେ ଏଠି ଏକୁଟିଆ ହେଲେ ବୁଢ଼ା ସଙ୍ଗରେ ସବୁ ମୀମାଂସା କରିନେଇ ତାପରେ ତମ ପାଖକୁ ଯିବ । ବୁଝିଲ ?"

ଏ ଯେ ଦେଶର ସାରତା କାଉଣ୍ଟ ଇଲିଆ ଆନ୍ଦ୍ରେଇଚ ହୃଦୟରୁ କମ୍ କରି ଏ ପ୍ରସ୍ତାବକୁ ସଙ୍ଗେ ସଙ୍ଗେ ସମର୍ଥନ କଲେ । ସେ ଭାବିଲେ ଯେ ବୁଢ଼ାଙ୍କ ମନ ଯଦି ବଦଳିଯିବ ତେବେ ମସ୍କୋରେ ବା ଲିଶ୍ରା ପାହାଡ଼ରେ ତାଙ୍କ ସଙ୍ଗେ ଦେଖାକଲେ ଭଲ ହେବ । ଯଦି ନ ବଦଳେ ତେବେ ତାଙ୍କ ଇଚ୍ଛା ବିରୁଦ୍ଧରେ ବାହାଘରଟା କଲେ ଅଟ୍ରାଦ୍‌ଶେରେ ହିଁ କରିବାକୁ ପଡ଼ିବ ।

କାଉଣ୍ଟ କହିଲେ "ସେ ଅତି ସତ କଥା । ମୁଁ ଯେ କାହିଁକି ତାଙ୍କ ସଙ୍ଗରେ ଦେଖା କରିବାକୁ ଗଲି ଆଉ ଝିଅକୁ ବି ସଙ୍ଗରେ ନେଇଗଲି ସେଇଟା ଭୁଲ ହେଲା । ସେମିତ ମୋର କରିବାର ଥିଲା ।"

ମେରିଆ ମିହ୍ୱୋଭ୍ନା ତାଙ୍କ ମୁଣିରେ କଣ ଖୋଜୁ ଖୋଜୁ କହିଲେ—"ଆଃ ! ସେଥିପାଇଁ କାହିଁକି ମନଦୁଃଖ କରୁଚ ? ଏଠିକି ଯେତେବେଳେ ଆସିଲ ଖୁବ କମ୍‌ରେ ଅନ୍ତତଃ ତାଙ୍କୁ ମାନ୍ୟ ଦେଖାଇ ଆସିବା କଥା ତ । ସେ ଯଦି ତାକୁ ଗ୍ରହଣ ନ କଲେ ସେ କଥା ସେ ବୁଝିବେ । ବର୍ତ୍ତମାନ ବିଭାଘର ପୋଷାକ ବି ତିଆରି ସରିଗଲା । ଆଉ ଏଠି କାହିଁକି ତୁମେ ଅପେକ୍ଷା କରିବ ? ଯାହା ଯାହା ନ ହୋଇଚି ମୁଁ ତାକୁ ପଛେ ପଠାଇବି । ଅବଶ୍ୟ ତୁମେ ଗଲେ ମୁଁ ଭାରି ଦୁଃଖିତ ହେବି, ତଥାପି ଏଠୁ ଚାଲି ଯିବାହିଁ ତୁମ ପକ୍ଷରେ ସବୁଠୁଁ ଭଲ । ଯାଅ ତୁମକୁ ଭଗବାନଙ୍କ ଦୟା ଥାଉ ।" ସେ ଯାହା ଖୋଜୁଥିଲେ ତାହା ପାଇ ନାତାଶା ହାତକୁ ବଢ଼ାଇ ଦେଲେ । ସେଇଟା ପ୍ରିନ୍‌ସେସ୍ ମେରିଆଙ୍କ ଚିଠି । "ଦେଖ ସେ ତୋ ପାଖକୁ ଚିଠି ଦେଇଛନ୍ତି । ଆହା ବିଚାରି କେଡ଼େ ଚିନ୍ତାରେ ଅଛି । ସେ ଭାବୁଛି କାଳେ ତୁ ଭାବୁଥିବୁ ସେ ତୋତେ ସୁଖ ପାଉନାହିଁ ବୋଲି ।"

ନାତାଶା କହିଲା, "ସତେତ, ସେ ତ ମୋତେ ଭଲ ପାଏ ନାହିଁ ।" ମେରିଆ ମିହ୍ୱୋଭ୍ନା ପାଟିକରି କହିଲେ "ଛି, ସେମିତି କହନ୍ତୁ ନାହିଁ ।' ନାତାଶା ସେଇ ଚିଠିଟା ନେଇ ସାହାସରେ କହିଲା, "ସେ ଯାହା କହୁ ମୁଁ ମୋଟେ ବିଶ୍ୱାସ କରିବି ନାହିଁ । ମୁଁ ଜାଣେ ସେ ମୋତେ ଭଲପାଏ ନାହିଁ ।" ତା ମୁହଁରେ କଠୋର ଜିଦ୍ଧି ପ୍ରତିଜ୍ଞା ଫୁଟି ଉଠୁଥିଲା । ତାକୁ ଦେଖି ମେରିଆ ମିହ୍ୱୋଭ୍ନା ମୁହଁ ଆହୁରି କଠେଇ ଦେଇ ଭ୍ରୂକୁଟୀ କରି କହିଲେ, "ସୁନାଟି ପରି, ମତେ ଏମିତି ଜବାବ ଦେବୁନାହିଁ ମା । ମୁଁ ଯଦି ଏମିତି କହିଲି ତ ମୋ କଥାକୁ ଖାଲି ସତ ବୋଲି ମାନନେ । ଯା ସେ ଚିଠିର ଗୋଟାଏ ଉତ୍ତର ଲେଖିଦେ ।"

ନାତାଶା କିଛି ନ କହି ପ୍ରିନ୍‌ସେସ୍ ମେରିଆଙ୍କ ଚିଠି ପଢ଼ିବ ବୋଲି ତା ବଖରାକୁ ଉଠିଗଲା ।

ପ୍ରିନ୍‌ସେସ୍ ମେରିଆ ଲେଖିଥିଲେ ଯେ ତାଙ୍କ ଭିତରେ ପରସ୍ପର ପ୍ରତି ଯେଉଁ ଅବୁଝାମଣା ଉପୁଜିଥିଲା ସେଥିପାଇଁ ତାଙ୍କ ମନରେ ଭାରି ଦୁଃଖ । ତାଙ୍କ ବାପାଙ୍କ ପ୍ରତି ଯାହା ମନୋଭାବ ହୋଇଥାଉ ପଛେ ସେ ନାତାଶାକୁ ବିଶ୍ୱାସ କରିବାକୁ ଲେଖିଥିଲେ ଯେ ତାଙ୍କ ଭାଇ ଯେତେବେଳେ

କଳେ ତାକୁ ବାଛିଛନ୍ତି ସେ ତାକୁ ଭଲ ନପାଇ ରହିପାରିବେ ନାହିଁ । ତାପାଇଁ ସବୁପ୍ରକାର ସ୍ୱାର୍ଥତ୍ୟାଗ କରିବାକୁ ସେ ପ୍ରସ୍ତୁତ ।

ସେ ଲେଖିଥାନ୍ତି "ତଥାପି, ତୁମେ ଟିକିଏ ବୋଲି ଭାବିବ ନାହିଁ ଯେ ବାପା ତୁମ ପ୍ରତି ବିମୁଖ । ସେ ବୁଢ଼ା ହେଲେଣି, ବିଛଣାରୁ ଉଠିବାକୁ ତାଙ୍କର ବଳ ନାହିଁ । ତାଙ୍କ କଥା କେହି ଧରିବା ଉଚିତ୍ ନୁହେଁ । କିନ୍ତୁ ତାଙ୍କ ହୃଦୟଟା ଅତି ଭଲ, ଅତି ଉଦାର । ଯେଉଁ ବୋହୂଟି ଆସି ତାଙ୍କ ପୁଅର ଜୀବନକୁ ସୁଖମୟ କରିବ ତାକୁ ସେ ନିଶ୍ଚୟ ଭଲ ପାଇବେ ।" ପ୍ରିନ୍‌ସେସ୍ ମେରିଆ ନାତାଶାକୁ ଆଗ୍ରହର ଅନୁରୋଧ କରି ଲେଖିଥିଲେ ଯେ ପୁଣି ତା ସଙ୍ଗରେ ତାଙ୍କର କେତେବେଳେ ଦେଖା ହୋଇ ପାରିବ ସେ ଲେଖୁ ।

ନାତାଶା ଚିଠିଟି ପଢ଼ିସାରି ତାର ଉତ୍ତର ଲେଖିବାକୁ ଟେବୁଲ ପାଖରେ ବସିପଡ଼ିଲା । ସେ କଲମ ଧରି ତରତର କରି ଫରାସୀ ଭାଷାରେ ଲେଖିବାକୁ ଆରମ୍ଭ କରି ଲେଖିଲା, "ସ୍ନେହର ପ୍ରିନ୍‌ସେସ ।" ସେଇଠି ସେ ଅଟକିଗଲା । କାଲି ଯାହା ଘଟିଯାଇଛି ତା ଉତ୍ତାରୁ ସେ ଆଉ ଅଧିକ କଣ ଲେଖିବ ? "ହଁ, ସେସବୁ ଘଟିଯାଇଛି । ବର୍ତ୍ତମାନ ସବୁ ବଦଳି ଯାଇଛି ।" ଯେଉଁ ଚିଠିଟା ସେ ଲେଖିବାକୁ ଆରମ୍ଭ କରିଥିଲା ତାକୁ ସାମ୍ନାରେ ରଖି ସେ ଭାବୁଥାଏ "ମୁଁ କଣ ତାକୁ ମନା କରିଦେବି ? ସତେ କଣ ମନା କରିଦେବି ? ସେ ତ ଭୟାନକ କଥା !" ଏହି ସବୁ ଭୟାନକ ଚିନ୍ତା ଭୁଲିବା ସକାଶେ ସେ ସୋନିଆ ପାଖକୁ ଚାଲିଗଲା । ଲୁଗାରେ ଫୁଲ ପକାଇବାର ଜାତି ଜାତି ଛବି ସୋନିଆ ସଙ୍ଗରେ ଏକାଠି ମିଶି ସେ ଦେଖିଲା ।

ଖାଇସାରି ପୁଣି ନାତାଶା ତା ନିଜ ବଖରାକୁ ଯାଇ ପ୍ରିନ୍‌ସେସ୍ ମେରିଆଙ୍କ ଚିଠିକି ପୁଣି ଉଠାଇ ନେଲା । ସେ ଭାବିଲା "ସବୁ କଣ ଶେଷ ହୋଇଗଲା ? ଏସବୁ କଥା ଏତେ ଜଲଦି ଘଟିଯାଇ ଆଗେ ଯାହା ଯାହା ଘଟିଥିଲା ତାକୁ ସବୁ ଧ୍ୱଂସ କରିଦେଲା, ଏସବୁ କଣ ସମ୍ଭବ ?" ଭାବି ପ୍ରିନ୍‌ସ ଆନ୍ଦ୍ରେଙ୍କ ପ୍ରତି ତାର ଯେଉଁ ପ୍ରଗାଢ଼ ପ୍ରେମ ଥିଲା ସେକଥା ସେ ସ୍ମରଣ କଲା ଅଥଚ ସେତେବେଳେ ବି ଭାବିଲା ଯେ ସେ ଆନାତୋଲ

କୁରଗିନ୍‌କୁ ପ୍ରେମ କରେ । ସେ ପ୍ରିନସ ଆନ୍ଦ୍ରେଙ୍କ ସ୍ତ୍ରୀ ହୋଇଛି ବୋଲି ମନେ ମନେ ପରିଷ୍କାର ଛବି ଦେଖିଲା, ଭାବିଲା ତାଙ୍କ ସଙ୍ଗେ ରହି ସେ କେମିତି ସୁଖ ପାଉଛି । ତାର କଳ୍ପନାରେ କେତେଥର ଯେଉଁ ସ୍ୱପ୍ନ ଆଗେ ସେ ଦେଖିଥିଲା ପୁଣି ସେସବୁ ସ୍ୱପ୍ନକୁ ସେ ସ୍ମରଣ କଲା ଅଥଚ ସେତିକି-ବେଳେ ଉତ୍ତେଜନାରେ ତାତିଯାଇ ପୂର୍ବ ଦିନର ସଞ୍ଜରେ ଆନାତୋଲ୍ ସଙ୍ଗରେ ତାର ସାକ୍ଷାତ ବେଳର ସବୁକଥା ଗୋଟିଗୋଟି ହୋଇ ମନେ ପଡ଼ିଲା ।

ଧନ୍ଦ ହୋଇ ମୁଣ୍ଡ ଗୋଳମାଳ ହୋଇଯାଇ ବେଳେ ବେଳେ ସେ ଏପରି ବି ଭାବୁଥାଏ "ତା ବି ହେବ ନାହିଁ କାହିଁକି ? ଯାହା କଲେ ମୁଁ ସମ୍ପୂର୍ଣ୍ଣ ସୁଖୀ ହେବି ତାହାହିଁ ତ ହେବାର କଥା । ମତେ ବାଛି ନେବାକୁ ପଡ଼ିବ । ସେ ଦୁହିଁଙ୍କ ଭିତରୁ ଜଣେ ବି ଯଦି ବାଦ୍ ପଡ଼ିଯିବେ ମୁଁ କେବେହେଲେ ସୁଖୀ ହୋଇ ପାରିବି ନାହିଁ । ଗୋଟାଏ କଥା କରିଯାଇ-ପାରେ । ଯାହା ହୋଇଛି ସବୁ ପ୍ରିନ୍‌ସ ଆନ୍ଦ୍ରେଙ୍କୁ କହିଦେବି କି ତାଙ୍କଠୁଁ ଲୁଚେଇ ରଖିବି ଏ ଦୁଇଟାଯାକ କଥା ସମାନ ହୋଇପାରେନା । କିନ୍ତୁ ତାର କିଛି ନଷ୍ଟ ହୋଇ ନାହିଁ । ତେବେ ଏତେ ଦିନକାଳ ପ୍ରିନସ ଆନ୍ଦ୍ରେଙ୍କର ପ୍ରେମରେ ବଞ୍ଚିରହି ଶେଷରେ କଣ ମୁଁ ସେ ପ୍ରେମର ଆନନ୍ଦରୁ ମୁଁ ଚିରଦିନ ବଞ୍ଚିତ ହେବି ?"

ଭାରି ରହସ୍ୟମୟ ଠାଣିରେ ସେ ଘର ଭିତରକୁ ଜଣେ ଦାସୀ ଚାଲିଆସି କହିଲା, "ଦେଇମା, ଗୋଟାଏ ଲୋକ ମତେ ଏଇଟା ଦେଇ କହିଲା ଆପଣଙ୍କୁ ଦେଇଦବାକୁ ।" ନାତାଶା କିଛି ନଭାବି ନଶୁଣି ଯନ୍ତ୍ରଚାଳିତ ପରି ସେ ଚିଠିର ମୋହର ଭାଙ୍ଗିଦେଇ ଆନାତୋଲର ପ୍ରଣୟ ଚିଠି ପଢ଼ିବାକୁ ଆରମ୍ଭ କଲାବେଳେ ଦାସୀ କହିଲା, 'ଖାଲି ଏତିକି ଦେଈମା, ଆପଣଙ୍କୁ ସ୍ୱୟଂ ଯୀଶୁଖ୍ରୀଷ୍ଟଙ୍କ ରାଣ, ଏକଥା······" ନାତାଶା ସେହି ଚିଠିରୁ ପଦେ ବି ବୁଝିପାରିଲା ନାହିଁ । ଖାଲି ଏତିକି ବୁଝିଲା ଯେ ପ୍ରେମ ତାର ଚିଠି, ସେହି ଯେଉଁ ମଣିଷଟାକୁ ପ୍ରେମ କରୁଛି "ହଁ ସତେତ, ମୁଁ ତ ତାକୁ ପ୍ରେମ କରୁଛି, ନ ହେଲେ ଯାହା ଘଟିଗଲା ତା ବା କାହିଁକି ଘଟିଥାନ୍ତା ? ନହେଲେ ତାର ପ୍ରେମ ଚିଠି ମୋ ହାତକୁ ଆସନ୍ତା କାହିଁକି ?"

ସେହି ଅତି ଆବେଗମୟ ପ୍ରେମ ଚିଠିକୁ ନାତାଶା ଥର ଥର ହାତରେ ଧରିଥାଏ । ସେ ଚିଠିକୁ ଆନାତୋଲ ପାଇଁ ଦୋଲୋହଭ ରଚନା କରି ଦେଇଥାଏ । ନାତାଶାକୁ ଲାଗୁଥାଏ ଯେ ସେ ତା ମନ ଭିତରେ ଯାହା ଯାହା ଭାବୁଛି ସେ ଚିଠିରେ ସେସବୁ କଥା ଲେଖା ହୋଇଛି ।

"କାଲି ସଞ୍ଜଠାରୁ ମୋର ଭାଗ୍ୟ ନିଷ୍ପତ୍ତି ହୋଇସାରିଛି । ତୁମରି ପ୍ରେମ ପାଇବି ନହେଲେ ମରିବି । ଆଉ ମୋର ଅନ୍ୟ ଉପାୟ ନାହିଁ ।" ଏମିତି ସେ ଚିଠି ଆରମ୍ଭ ହୋଇଥାଏ । ତାପରେ ସେ ଲେଖିଥାଏ ଯେ ସେ ଜାଣିଛି ତାର ବନ୍ଧୁବାନ୍ଧବ ତାକୁ କେବେହେଲେ ଆନାତୋଲକୁ ଦାନ କରିବେ ନାହିଁ । କାହିଁକି ନ ଦେବେ ସେଥିପାଇଁ ଅନେକ ଗୁପ୍ତ କାରଣ ଅଛି ସେକଥା କେବଳ ସେ ତାରି ଆଗରେ ପ୍ରକାଶ କରିପାରିବ । କିନ୍ତୁ ଯଦି ପ୍ରକୃତରେ ସେ ତାକୁ ପ୍ରେମ କରୁଛି ତେବେ ଖାଲି 'ହଁ' ବୋଲି ପଦେ କହିଦେଲେ ତାଙ୍କର ସୁଖପଥରେ ପ୍ରତିବନ୍ଧକ ହେବାକୁ ସଂସାରରେ କାହାରି ଶକ୍ତି ନାହିଁ । ପ୍ରେମ ସବୁ କଥାକୁ ଜୟ କରିପାରେ । ସେ ତାକୁ ଧରିପକାଇ ଏ ପୃଥିବୀର ଶେଷ ସୀମାନ୍ତ ପର୍ଯ୍ୟନ୍ତ ବୋହିନେଇ ଚାଲିଯାଇ ପାରିବ ।

କୋଡ଼ିଏ ଥର ବି ସେ ଚିଠି ପଢ଼ିସାରି ନାତାଶା ଭାବିଲା, "ହଁ ମୁଁ ତାକୁ ପ୍ରେମ କରୁଛି ।" ପ୍ରତ୍ୟେକ ଶବ୍ଦରୁ କିଛି ଭିତରି ଅର୍ଥ ସେ ପାଉଥାଏ ।

ସେଦିନ ସଞ୍ଜରେ ମେରିଆ ମିତ୍ରୋଭ୍ନା ଆର୍ହାରୋଭ ପରିବାରଙ୍କ ଘରକୁ ବୁଲି ଯାଉଥାନ୍ତି, ସେ କହିଲେ ସେ ଝିଅମାନଙ୍କୁ ତାଙ୍କ ସଙ୍ଗରେ ନେଇଯିବେ । ନାତାଶା କହିଲା ତାର ମୁଣ୍ଡ ବଥାଉଛି । ସେ ଘରେ ରହିଲା ।

ସଞ୍ଜରେ ସୋନିଆ ଫେରୁ ଫେରୁ ଟିକିଏ ଡେରି ହୋଇଗଲା । ସେ ନାତାଶାର କଖରିକୁ ଯାଇ ଆଶ୍ଚର୍ଯ୍ୟ ହୋଇ ଦେଖିଲା ଯେ ନାତାଶା ପୋଷାକ ନ ପାଲଟି ଖଟରେ ଶୋଇ ଯାଇଛି । ତା ପାଖରେ ଟେବୁଲ

ଉପରେ ଆନାତୋଲର ଚିଠି ଖୋଲା ହୋଇ ପଡ଼ିଥାଏ । ସୋନିଆ ଚିଠିଟି ଉଠାଇ ନେଇ ପଢ଼ିଲା ।

ସେ ଚିଠି ପଢ଼ିସାରି ଶୋଇଲା । ନାତାଶାକୁ ଚାହିଁ ରହିଲା । ଯାହା ପଢ଼ିଲା ତାର ଅର୍ଥ କଣ ତାହା ତା ମୁହଁ ଭଙ୍ଗୀରେ ଦେଖିବ ବୋଲି ନିରେଖି ବସିଲା । ସେଠି ସେ କିଛି ଅର୍ଥ ପାଇଲା ନାହିଁ । ନାତାଶାର ମୁହଁ ଦିଶୁଥାଏ ସୌମ୍ୟ, ଶାନ୍ତ, ପ୍ରଫୁଲ୍ଲ । ସୋନିଆର ନିଃଶ୍ୱାସ ବନ୍ଦ ହୋଇ-ଯାଉଥାଏ, ତେଣୁ ସେ ଆପଣା ଗଣ୍ଠିକୁ ଚିପିରଖିଲା । ଭୟ ଓ ରାଗରେ ସେ ବିବର୍ଣ୍ଣ ଦିଶୁଥାଏ, ଗୋଟା ସୁଦ୍ଧା ସେ ଥରୁଥାଏ । ସେ ଗୋଟାଏ ଅଳ୍ପ ଭଙ୍ଗା ଚୌକିରେ ବସିପଡ଼ି ଭେଁ କରି କାନ୍ଦ ପକାଇଲା ।

"କେମିତି ମୁଁ କିଛି ଦେଇ ପାରିଲି ନାହିଁ ? କେମିତି କଥା ଏତେ ଦୂରକୁ ଚାଲିଗଲା ? ପ୍ରିନ୍ସ ଆନ୍ଦ୍ରେଙ୍କୁ କଣ ସେ ଆଉ ପ୍ରେମ କରୁନାହିଁ ! ଏକଥା କଣ ସମ୍ଭବ ? କେମିତି ସେ ଏ କୁରାଗିନ ବଦମାଶଟାକୁ ଏତେବାଟ ଆଗେଇ ଯିବାକୁ ଛାଡ଼ିଦେଇ ପାରିଲା । ସେଇଟା ତ ଗୋଟାଏ ଶଠ, ବଦମାସ୍, ଏ ତ ଜଣାଶୁଣା । ନିକୋଲେଙ୍କା ମୋର ପ୍ରିୟ ଉଦାରମନା ନିକୋଲେଙ୍କା ଏକଥା ଶୁଣିଲେ କଣ କରିବ ? ଓ ! ତେବେ ସେଇଥିପାଇଁ ପହରଦିନ, ପୁଣି କାଲି, ପୁଣି ଆଜି ତା ମୁହଁରେ ଉତ୍ତେଜନା ଏପରିକି ପ୍ରତିଜ୍ଞାର ଛାଇ ଫୁଟି ଉଠୁଥିଲା । ସେଇଥିପାଇଁ ତାର ମୁଖର ଭଙ୍ଗୀ ଏତେ ଅସ୍ୱାଭାବିକ ଦିଶୁଥିଲା । ଏବେ ଏହା ଅସମ୍ଭବ ! କେମିତି ସେଇ ଲୋକଟା ପ୍ରତି ତାର ଅନୁରାଗ ହୋଇପାରେ ?" ବୋଧହୁଏ ଏଥିପାଇଁ ତା ମନରେ ଅପମାନ ଲାଗିଛି । ତା ଦ୍ୱାରା ଏଡ଼େ ଅସମ୍ଭବ କଥାଟା ସମ୍ଭବ ହେବ କିପରି ?

ସୋନିଆ ତାର ମୁହଁ ଲୁଖାଇଦେଇ ନାତାଶା ପାଖକୁ ଚାଲିଯାଇ ତା ମୁହଁକୁ ନିକୁଟି ନିକୁଟି ଚାହିଁଲା ।

"ନାତାଶା" ସେ ଡାକିଲା, ତା ସ୍ୱର ଅତି ଧୀରେ ଶୁଭୁଥାଏ କି ନ ଶୁଭୁଥାଏ ।

ନାତାଶାର ନିଦ ଭାଙ୍ଗିଗଲା । ସେ ସୋନିଆକୁ ଦେଖିଲା । "ଓଃ, ତୁମେ ଚାଲି ଆସିଲଣି କି ?"

ନିଦଭାଙ୍ଗିଲା ମୁହୂର୍ତ୍ତରେ ଯେପରି ମନରେ ଗୋଟିଏ ନିଷ୍ପତ୍ତି ଭାବ ଥାଏ ଓ କୋମଳତା ଥାଏ ନାତାଶା ମୁହଁରେ ସେହିପରି ଭାବଥାଏ । ସେ ତାର ବନ୍ଧୁକୁ କୁଣ୍ଢେଇ ପକାଇଲା, କିନ୍ତୁ ସୋନିଆର ମୁହଁରେ ବିବ୍ରତ ଭଙ୍ଗୀ ଦେଖି ତା ମୁହଁରେ ଅପ୍ରସ୍ତୁତ ବିବ୍ରତ ଓ ସନ୍ଦେହର ଭଙ୍ଗୀ ଫୁଟି ଉଠିଲା ।

"ସୋନିଆ ତୁମେ ସେ ଚିଠିଟା ପଢ଼ିଲକି ?"

ସୋନିଆ ଚୁପ୍ ଚୁପ୍ ହୋଇ କହିଲା "ହଁ" ।

ନାତାଶା ଅତି ଆନନ୍ଦରେ ହସି ଉଠିଲା ।

ସେ କହିଲା, "ନାଇଁ ସୋନିଆ, ମୋର ସହି ନାହିଁ । ମୁଁ ଆଉ ତୁମ ଠାରୁ ଏକଥା ଛପାଇ ରଖି ପାରିବି ନାହିଁ । ତୁମେ ଜାଣିଛ, ଆମେ ଦୁହେଁ ପରସ୍ପରର ପ୍ରେମରେ ପଡ଼ି ଯାଇଛୁ···ସୋନିଆ, ମୋ ସୁନା, ସେ ଲେଖିଛନ୍ତି ସୋନିଆ···"

ସୋନିଆ ବଡ଼ ବଡ଼ ଆଖିରେ ନାତାଶାକୁ ଅନାଇଁ ରହିଲା ସେ ଯେପରି କି ସେ ନିଜ କାନକୁ ବିଶ୍ୱାସ କରିପାରୁ ନାହିଁ ।

ସେ କହିଲା "ଆଉ ପ୍ରିନ୍ସ ଆନ୍ଦ୍ରେ ବଲ୍‌କନସ୍କି ?"

ନାତାଶା କହିଲା, "ହେ ସୋନିଆ, ମତେ କି ଆନନ୍ଦ ଲାଗୁଛି, ଜାଣିନକି ତୁମେ···ତୁମେ ଜାଣିନା ପ୍ରେମ କଣ···"

"ନାତାଶା, ନାତାଶା, ତୁମେ ମୋତେ ଏକଥା ତ କହୁନା ଯେ ସେସବୁ ଆଗର କଥା ସରିଗଲଣି ବୋଲି ।"

ନାତାଶା ତାର ବଡ଼ ବଡ଼ ଉଜ୍ଜ୍ୱଳ ଆଖିରେ ସୋନିଆକୁ ଚାହିଁ ରହିଲା, ସତେ କି ସେ ତାର କଥା ବୁଝି ପାରୁନାହିଁ ।

ସୋନିଆ ପଚାରିଲା "ତେବେ ତୁମେ କଣ ପ୍ରିନ୍ସ ଆନ୍ଦ୍ରେଙ୍କ ସଙ୍ଗେ ତୁମର ବିବାହର ଭାଙ୍ଗି ଦେବାକୁ ବସିଛ ନାତାଶା ?"

ଟିକିଏ ବିରକ୍ତ ହୋଇ ନାତାଶା କହିଲା, "ଆରେ ତୁମେ ମୋତେ ବୁଝିପାରୁନାହଁ, ଏଣୁ ତେଣୁ ଗୁଡ଼ାଏ କହୁନାହିଁ । ମୁଁ କଣ କରୁଛି ଶୁଣ ।"

ସୋନିଆ କହିଲା, "ନାଁ ନାଁ ମୁଁ ଏକଥା ଜମା ବିଶ୍ୱାସ କରିପାରୁ ନାହିଁ । ମୁଁ ଏ କଥା ବୁଝିପାରୁ ନାହିଁ । ଏ କି କଥା । ଗୋଟାଏ ବର୍ଷ ହେଲା ତୁମେ ଗୋଟାଏ ଲୋକକୁ ପ୍ରେମ କରୁଥିଲ ଆଉ ହଠାତ୍... କି ଆଶ୍ଚର୍ଯ୍ୟ କଥା । ତୁମେ ମୋଟେ ତାକୁ ତିନିଥର ଦେଖିଛ । ନାହିଁ ନାତାଶା ତୁମ କଥାରେ ମୋର ବିଶ୍ୱାସ ହେଉନାହିଁ । ତୁମେ ଥଟ୍ଟାରେ କହୁଛ । ତିନିଟା ଦିନରେ ସବୁ ପାଶୋରି ଯାଇ ଏମିତିଆ ଗୋଟାଏ..."

ନାତାଶା କହିଲା, "ତିନିଦିନ କଣ ? ମୋତେ ତ ଲାଗୁଛି ମୁଁ ତାକୁ ଶହେ ବର୍ଷ ହେଲା ଭଲ ପାଉଛି । ମତେ ତ ଲାଗୁଛି ତାକୁ ଭଲ ପାଇବା ଆଗରୁ ମୁଁ ଆଉ କାହାରିକି କେବେ ଭଲ ପାଇ ନାହିଁ । ତୁମେ ବୁଝିପାରିବ ନାହିଁ ସୋନିଆ । ସୋନିଆ ତୁମେ ବସ ଏଠି ।" ନାତାଶା ତାକୁ କୁଣ୍ଢାଇ ପକାଇ ଗେଲକରି କହିଲା 'ଲୋକେ ମତେ କହିଛନ୍ତି ଏମିତି ସବୁ ଘଟେ, ତୁମେ ବି ଶୁଣିଥିବ ନିଶ୍ଚୟ, କିନ୍ତୁ କେବଳ ଏଇ ବର୍ତ୍ତମାନ ହିଁ ପ୍ରେମ କଣ ମୁଁ ତା ବୁଝିଲି । ମୁଁ ଆଗେ ଯାହା ଅନୁଭବ କରୁଥିଲି ସେ ସେମିତି ନୁହେଁ । ମୁଁ ଯେମିତି ତାକୁ ଦେଖି ପକାଇଲି ମୋତେ ଲାଗିଲା ସେ ମୋର ରଜା ଆଉ ମୁଁ ତାଙ୍କର ଦାସୀ ଆଉ ମୁଁ ତାକୁ ଭଲ ନ ପାଇ ରହିପାରିବି ନାହିଁ । ହଁ ସତେ ସୋନିଆ, ତାଙ୍କର ଦାସୀ । ସେ ମୋତେ ଯାହା କରିବାକୁ କହିବେ ମୁଁ ତା କରିବି । ତୁମେ ବୁଝି ପାରୁନା ଏ କଥା । ତେବେ ମୁଁ କଣ କରିବି ? କଣ କରିବି ସୋନିଆ ? ନାତାଶାର ମୁହଁରେ ଉଭୟ ଆନନ୍ଦ ଓ ଉଦ୍ବେଗ ଭାବ ଫୁଟି ଉଠିଲା ।

ସୋନିଆ କହିଲା 'ଟିକିଏ ଭାବ ନାତାଶା ତୁମେ ସେ କଣ କରୁଛ ଏ କଥାକୁ ଏଇଠି ମୁଁ ଛାଡ଼ି ଦେଇ ଯିବିନାହିଁ । ଏହି ସବୁ ଗୁପ୍ତ ଚିଠି... କେମିତି ଏତେ ବାଟ ଯିବାକୁ ତୁମେ ତାକୁ ମୁହଁ ଦେଲ ?' ତାକୁ ଘୃଣା

ଲାଗୁଥାଏ, ଭୟ ବି ଲାଗୁଥାଏ, ସେ ଅତି କଷ୍ଟରେ ତାର ମନୋଭାବ ଲୁଚାଇ ରଖିବାକୁ ଚେଷ୍ଟା କରୁଥାଏ ।

ମୁଁ ତ ତୁମକୁ କହି ଦେଇଛି ନାତାଶା, ମୋ ନିଜର ଆଉ ଖବର ନାହିଁ । ତୁମେ କେମିତି ଏକଥା ବୁଝି ପାରୁନାହିଁ ? ମୁଁ ତ ତାକୁ ଭଲ ପାଏଁ ।"

ନାତାଶା କହିଲା "ତେବେ ଏ କଥା ଏମିତି ଏଇଠି ବନ୍ଦ ହୋଇ ନ ପାରେ, ମୁଁ କହିଦେବ ।" ସୋନିଆ କାନ୍ଦ ପକାଇଲା ।

"ଏଁ", ନାତାଶା କହିଲା, "...ଦେଖ ତୁମକୁ ଭଗବାନଙ୍କ ରାଣ...ଯଦି କହିଦେବ ତେବେ ତୁମେ ମୋର ଶତ୍ରୁ...ତୁମେ ଆମ ଦିଜଣଙ୍କୁ ଅଲଗା କରାଇ ରଖିବାକୁ ଖୋଜୁଛ । ତୁମେ ମୋର ଜୀବନକୁ ଦୁଃଖମୟ କରିବାକୁ ଖୋଜୁଚ ।"

ନାତାଶାର ଆତଙ୍କ ଦେଖି ସୋନିଆ କାନ୍ଦି ପକାଇଲା । ତାର ତା ଉପରୁ ପ୍ରତି ଦୟା ଆସିଲା ।

ସେ ପଚାରିଲା "ତା ହେଲେ ତୁମ ଦୁହିଁଙ୍କ ଭିତରେ କଣ ଘଟଣା ଘଟିଛି କହିଲ ? ସେ ତୁମକୁ କଣ ସବୁ କହିଛି ? ସେ ଏ ଘରକୁ ଆସୁନାହିଁ କାହିଁକ ?"

ନାତାଶା ତାର ପ୍ରଶ୍ନର ଉତ୍ତର ଦେଲା ନାହିଁ । ନାତାଶା ତାକୁ ଅନୁନୟ କରି କହିଲା "ତମକୁ ଭଗବାନଙ୍କ ରାଣ ସୋନିଆ । କାହାରି ଆଗରେ କହିବ ନାହିଁ । ମତେ ଯନ୍ତ୍ରଣା ଦିଅନାହିଁ । ମନେରଖ, ଏଭଳି କଥାରେ ମୁଣ୍ଡ ଖେଳାଇବା ଉଚିତ ନୁହେଁ । ମୁଁ ତୁମ ଆଗରେ କହିଛି..."

ସୋନିଆ କହିଲା "ତେବେ ଏତେ ଲୁଚ ଛପା କାହିଁକ ? ସେ କାହିଁକ ଏ ଘରକୁ ନ ଆସୁଛନ୍ତି ? ସେ ସିଧା ସଳଖେ ତୁମକୁ ବିଭା ହେବା ପ୍ରସ୍ତାବ ନ ପକାଉଛନ୍ତି କାହିଁକ ! ତୁମେ ତ ଜାଣିଛ ଯଦି ଏପରି ହୁଏ ତେବେ ପ୍ରିନ୍‌ସ ଆନ୍ଦ୍ରେ ତୁମକୁ ପୂର୍ଣ୍ଣ ସ୍ୱାଧୀନତା ଦେଇଯାଇଛନ୍ତି । ମୋର

ଏ କଥାରେ ବିଶ୍ୱାସ ହେଉନାହିଁ ନାତାଶା । ଗୁପ୍ତ କାରଣ ମାନ କଣ ହୋଇପାରେ ଭାବିବ ସେ କଥା ଠିକଏ......?"

ନାତାଶା ଆଶ୍ଚର୍ଯ୍ୟ ହେଲାପରି ଆଖି କରି ସୋନିଆକୁ ଚାହିଁଲା । ଲାଗୁଥାଏ ଏଇ ପ୍ରଥମ ଥରକ ଏ ପ୍ରଶ୍ନ ତା ଆଗରେ ଆସି ଉଭା ହୋଇଛି ଓ ଏ ପ୍ରଶ୍ନର ସେ କି ଉତ୍ତର ଦେବ ସେ ଜାଣିପାରୁ ନାହିଁ ।

"କାହିଁକି ସେ ଆସୁ ନାହାଁନ୍ତି । ସିଧା ସଳଖ ପ୍ରସ୍ତାବ ପକାଉ ନାହାଁନ୍ତି, ସେ କାରଣ ମୋତେ ଜଣା ନାହିଁ । ତେବେ କାରଣ ନିଶ୍ଚୟ ଥିବ ।"

ସୋନିଆ ଦୀର୍ଘ ନିଃଶ୍ୱାସ ପକାଇ ଅବିଶ୍ୱାସରେ ମୁଣ୍ଡ ହଲେଇଲା ।

ସେ କହି ଆସୁଥିଲା "ଯଦି ସେପରି କିଛି କାରଣ ଥାନ୍ତା..." କିନ୍ତୁ ନାତାଶା ତାର ସନ୍ଦେହ ଦେଖି ଆତଙ୍କରେ ତା କଥା ମଝିରୁ ଅଟକାଇ ଦେଲା ।

ପାଟିକଲା, "ସୋନିଆ ! ତୁମେ ତାଙ୍କୁ ସନ୍ଦେହ କରିବନାହିଁ । କେବେ ସନ୍ଦେହ କରିବ ନାହିଁ । କେବେ ନୁହଁ । କେବେ ନୁହଁ ବୁଝିଲ ?"

"ସେ ତମକୁ ଭଲ ପାଆନ୍ତି ତ ?" ତାର ବନ୍ଧୁର ମୋଟା ବୁଦ୍ଧିରେ କଥାଟା ଚଳୁ ନାହିଁ ଏଥିପାଇଁ ଦୟାରେ ପୁଣି ମୁରୁକି ହସି ନାତାଶା କହିଲା, "କଣ କହିଲ ? ମତେ ଭଲ ପାଆନ୍ତି ତ ! କାହିଁକି ? ତୁମେ ପରି ତାଙ୍କ ଚିଠିଟା ପଢିଲ । ପଢିନା ? ତୁମେ ତାଙ୍କୁ ଦେଖିଛ ତ ? "କିନ୍ତୁ ସେ ଯଦି ଗୋଟାଏ ଅସଚ୍ଚରିତ୍ର ଲୋକ ହୋଇଥିବ, ତେବେ ?" "ସେ ! ଗୋଟାଏ ଅସଚ୍ଚରିତ୍ର ଲୋକ । ଏ କଣ କହୁଛ ସୋନିଆ ! ତୁମେ ଜାଣିଥାନ୍ତ କି ।"

ସୋନିଆ ଦୃଢ଼ପ୍ରତିଜ୍ଞ ହୋଇ କହିଲା "ଦେଖ, ସେ ଯଦି ପ୍ରକୃତରେ ଜଣେ ଚରିତ୍ରବାନ୍ ଲୋକ ତେବେ ସେ ତାଙ୍କ ଉଦ୍ଦେଶ୍ୟ ପ୍ରକାଶ କରିବା ଉଚିତ, ନହେଲେ ତୁମକୁ ଆଉ କେବେହେଲେ ନ-ଦେଖନ୍ତୁ ।

ତୁମେ ଯେବେ ତା ନକର ତେବେ ମୁଁ ନିଶ୍ଚୟ କରିବି । ମୁଁ ତାଙ୍କ ପାଖକୁ ଚିଠି ଲେଖିବି । ମୁଁ ବାପାଙ୍କୁ କହିଦେବି ।"

ନାତାଶା ଚିତ୍କାର କଲା "ମୁଁ ତାଙ୍କୁ ଛାଡ଼ି ରହିପାରିବି ନାହିଁ ଯେ ! ସେ ପାଟି କଲା, "ମୁଁ କାହାରିକି ଖାତିର କରେ ନାହିଁ । ମୁଁ ତାଙ୍କ ଛଡ଼ା କାହାରିକି ଭଲ ପାଏ ନାହିଁ । କି ସାହସରେ ତୁମେ ତାଙ୍କୁ ଅସଚ୍ଚରିତ୍ର ବୋଲି କହୁଛ ? ତୁମେ କଣ ଜାଣନା ଯେ ମୁଁ ତାଙ୍କୁ ଭଲ ପାଏ ? ଯାଅ ବାହାରି ସୋନିଆ, ମୁଁ ତୁମ ସଙ୍ଗେ କଜିଆ କରିବାକୁ ଚାହୁଁ ନାହିଁ । ତୁମେ ଚାଲିଯା ।" ଦାବି ରଖିଥିବା ନୈରାଶ୍ୟ ଓ ବିରକ୍ତିର ସ୍ୱରରେ ସୋନିଆ ଚଡ଼ି ଉଠି କହିଲା, "ଯାଅ ନାତାଶା, ଦେଖିପାରୁ ନା ମୁଁ କେଡ଼େ ଦୁର୍ଦ୍ଦଶାରେ ପଡ଼ିଛି ?" ସୋନିଆ କହିଁ କହିଁ ହୋଇ କାନ୍ଦି ଉଠି ସେ ଘରୁ ବାହାରି ଚାଲିଗଲା ।

ନାତାଶା ଟେବୁଲ ପାଖକୁ ଉଠିଗଲା ଓ ପ୍ରିନସେସ୍ ମେରିଆଙ୍କ ପାଖକୁ ଚିଠି ଲେଖିଲା । ସକାଳଠୁ ଯାକ ଯାହା ଲେଖିବାକୁ ଯାଇ ତା ହାତ ଚଳୁ ନଥିଲା ସେ ମୁହୂର୍ତ୍ତରେ ଚିନ୍ତା ନକରି ତାହା ଲେଖି ପକାଇଲା ସେ ତା ଚିଠିରେ ଅଳ୍ପକେ ପ୍ରିନ୍‌ସେସ୍ ମେରିଆଙ୍କୁ ଲେଖିଦେଲା ଯେ ତାଙ୍କ ଭିତରେ ଯେତେ ଯାହା ମନୋମାଳିନ୍ୟ ହୋଇଯାଇଥିଲା ସେ ସବୁ ସରିଗଲା । ସେ ଅନୁରୋଧ କଲା ଯେ ଯଦି କୌଣସି କଥାରେ ତାର କେବେ କିଛି ଭୁଲ ହୋଇଥିବ ସେ ସବୁ ସେ ଭୁଲିଯିବେ ଓ ତାକୁ କ୍ଷମା କରିବେ । ପ୍ରିନ୍‌ସ ଆନ୍ଦ୍ରେ ଗଲାବେଳେ ତାକୁ ସ୍ୱାଧୀନତା ଦେଇ ଯାଇଥିଲେ । ତାଙ୍କର ଉଦାରତାର ସୁଯୋଗ ନେଇ ସେ ଜଣାଇ ଦେଉଛି ଯେ ସେ ତାଙ୍କର ସ୍ତ୍ରୀ ହୋଇ ପାରିବ ନାହିଁ । ସେତେବେଳେ ଏସବୁ ତାକୁ କେଡ଼େ ସରଳ ସହଜ ଆଉ ପରିଷ୍କାର ଲାଗୁଥାଏ ।

ଶୁକ୍ରବାର ଦିନ ରୋଷ୍ଟଭ ପରିବାର ମଫସଲକୁ ଲେଉଟି ଯିବାର କଥା କଲୁ ବୁଧବାର ଦିନ କାଉଣ୍ଟ ମସ୍କୋ ପାଖରେ ଥିବା ତାଙ୍କ ଇଲାକାକୁ ଗଲେ । ସେ ଇଲାକାକୁ ଯେ କିଣିବାକୁ କହିଥିଲେ ତାଙ୍କୁ ସାଙ୍ଗରେ ଘେନି ସେ ଗଲେ ।

ଯେଉଁଦିନ କାଉଣ୍ଟ ଗଲେ ସେଦିନ ଜୁଲ କରଗିନ୍ ଘରେ ନାତାଶା ସୋନଆ ଦୁହିଁଙ୍କର ନିମନ୍ତ୍ରଣ ଥାଏ । ମେରିଆ ମିର୍ଜିଯେଭ୍ନ ସେ ଦୁହିଁଙ୍କୁ ସଙ୍ଗରେ ନେଇଗଲେ । ସେହି ଭୋଜିରେ ପୁଣି ନାତାଶା ଆନାତୋଲକୁ ଦେଖିଲା । ସୋନିଆ ଦେଖିଲା ସେଠି ନାତାଶା ଆନା-ତୋଲକୁ ଚୁପ୍ ଚାପ୍ କିଛି କଣ କହୁଛି ଯେମିତି ଆଉ କେହି ଶୁଣି ନପାରିବେ । ଆଉ ସେଦିନ ଭୋଜିବେଳେ ନାତାଶାର ଉତ୍ତେଜନା ଆଗଠାରୁ ଆହୁରି ଅଧିକ ବଢି ଯାଇଥାଏ । ସେମାନେ ଯେମିତି ଘରକୁ ଫେରିଲେ ସେମିତି ନାତାଶା ସେହି ବିଷୟରେ କଥାବାର୍ତ୍ତା ଆରମ୍ଭ କରିଦେଲା ଯେଉଁ ବିଷୟ ଶୁଣିବାକୁ ତାର ବନ୍ଧୁ ସଙ୍ଗାତ ଅପେକ୍ଷା କରିଥିଲେ ।

ପିଲାଏ ପ୍ରଶଂସା ପାଇବାକୁ ମନ କରି ଯେପରି ସ୍ୱରରେ କଥାଭାଷା କରନ୍ତି ସେମିତି ନିଶ୍ୱାସ ସ୍ୱରରେ ନାତାଶା କହିଲା "ତୁମେ ତ ତାଙ୍କ ନାଁରେ କେତେ କେତେ କଥା କହୁଥିଲ, ମୁଁ ଆଜି ତାଙ୍କଠୁଁ ସବୁକଥା ବାହାର କଲି ।"

"ସତେ ? ସେ କଣ କହିଲେ ? କହ କହ ସେ କଣ କହିଲେ । ତୁମେ ମୋ ଉପରେ ରାଗିନା ସେଥିପାଇଁ ମୋତେ ଭାରି ଖୁସି ଲାଗୁଛି । ମୋ ଆଗରେ ସବୁ ଖୋଲି କହିଦିଅ । ସବୁ ସତ ସତ କହ । ସେ କଣ କହିଲେ ?"

ନାତାଶା ଚିନ୍ତିତା ହୋଇ ରହିଲା ।

"ଓଃ ! ସୋନିଆ ! ମୁଁ ସେ ମଣିଷକୁ ଯେମିତି ଚିହ୍ନିଛି ତୁମେ ଭଲା ଚିହ୍ନିଥାନ୍ତ ସେମିତି ! ସେ କହିଲେ···ସେ ପଚାରିଲେ ମୁଁ ବଲକନସ୍କିଙ୍କ ପାଖରେ କି ପ୍ରତିଶ୍ରୁତି ଦେଇଛି । ମୁଁ ଯେତେବେଳେ କହିଲି ମୋ ମନ ହେଲେ ମୁଁ ବଲକନସ୍କିଙ୍କ ପ୍ରସ୍ତାବ ଭାଙ୍ଗି ଦେଇପାରେ ସେ ଏଡ଼େ ଖୁସି ହେଲେ ତା ଶୁଣି···"

ସୋନିଆ ହତାଶ ହୋଇ ଦୀର୍ଘଶ୍ୱାସ ପକାଇଲା । କହିଲା "ତୁମେ ତ ବଲକନସ୍କିଙ୍କୁ ମନାକରି ଦେଇନା ? ନା ଦେଇଚ ?"

"ଧର ମୁଁ ଏବେ ତାଙ୍କୁ ମନା କରଦେଇଛି । ଧର ସେ କଥା ଶେଷ ହୋଇଗଲାଣି । ତା କଣ ହେଲା ? ସେଥିପାଇଁ ମୋ ଉପରେ ତୁମର ଖରାପ ଧାରଣା ହେବ କାହିଁକ ?"

"ମୁଁ କଛି ଧାରଣା କରୁନାହିଁ ଯେ, ମୁଁ ଖାଲ ଏକଥା ବୁଝିପାରୁ ନାହିଁ ।"

"ଅଯୁ ଧର ସୋନଆ, ତୁମେ ସବୁ କଥା ବୁଝି ପାରବ । ତୁମେ ନଜେ ବୁଝି ପାରବ ସେ କପର ମଣିଷ । ତାଙ୍କ ବଷୟରେ କ ମୋ ବଷୟରେ ତୁମେ ଖରାପ ଧାରଣା ରଖ ନାହିଁ ।"

"ମୁଁ କାହାର ବଷୟରେ ମନ୍ଦ ଧାରଣା କରେ ନାହିଁ । ମୁଁ ସମସ୍ତଙ୍କୁ ଭଲପାଏ ସମସ୍ତଙ୍କ ଦୁଃଖରେ ଦୁଃଖୀ ହୁଏ । ତେବେ ମୁ କଣ କରବ ?"

ନାତାଶା ତାକୁ ଯେଉଁ ସ୍ନେହ ସ୍ୱରରେ କଥା କହିଲା ସୋନଆ ସେଥିରେ ଭୁଲଗଲା ନାହିଁ । ନାତାଶାର ମୁହଁ ଯେପର କଅଁଳ ଆଉ ସ୍ନେହୀ ହୋଇ ଦଶୁଥାଏ ସୋନଆର ମୁହଁ ସେପର କଠିନ ଆଉ ଗମ୍ଭୀର ହୋଇ ଯାଉଥାଏ ।

ସେ କହିଲା "ନାତାଶା, ତୁମେ ମତେ ମନା କରଥିଲ ତୁମ ସଙ୍ଗରେ କଥା କହିବାକୁ, ତେଣୁ ମୁଁ କିଛି କହିନାହିଁ । ବର୍ତ୍ତମାନ ତୁମେ ଆରମ୍ଭ କରଦେଲ । ନାତାଶା, ମୋର ତାଙ୍କୁ ବଶ୍ୱାସ ନାହିଁ । ଏ ଚୁପ୍ ଚୁପ କାହିଁକି ନାତାଶା ?"

ନାତାଶା ବାଧା ଦେଇ କହିଲା, "ଫେର୍ ସେଇକଥା ? ଫେର୍ ?"

"ନାତାଶା ତମୁକୁ ମତେ ଡର ମାଡୁଛି ।

ଏଥିରେ ଡରବାର କଣ ଅଛି ?"

ସୋନଆଁ ଦୃଢ଼ ପ୍ରତଜ୍ଞ ହୋଇ କହିଲା "ନାତାଶା, ମୋତେ ଡର ମାଡୁଚ, ତମର ସର୍ବନାଶ ହୋଇଯିବ ।" ସେ ନଜେ କଣ କହୁଛି

ଏଥିରେ ସେ ନିଜେ ଡରିଗଲା । ନାତାଶାର ମୁହଁରେ ପୁଣି ରଗ ଚଢ଼ିଗଲା ।

କହିଲା, "ବେଶ୍ ହେଲା, ଭଲ ହେଲା, ମୋର ମୁଁ ସର୍ବନାଶ ହୋଇଯିବ, ନଷ୍ଟପ୍ରାୟ ହେବ । ମୁଁ ଚଞ୍ଚଳ ଯେମିତି ସର୍ବନାଶ ହୋଇଯିବି ସେ କଥା କରିବି । ସେଥିରେ ତମର କଣ ଗଲା ? ତୁମେ କାହିଁକି ସେଥିରେ ମୁଣ୍ଡ ପୁରାଉଚ ? ତୁମେ ତୁମ ନିଜକଥା ବୁଝ । ସେଥିପାଇଁ ତୁମେ ତ କଷ୍ଟ ଭୋଗିବ ନାହିଁ, ଭୋଗିବି ମୁଁ । ତୁମେ ମୋ ପାଖରୁ ଚାଲିଯା । ଯା ତମକୁ ମୁଁ ଘୃଣା କରେ ।

ସୋନିଆ ଉତ୍ତରରେ ତାକୁ ମିନତି କରି କହିଲା—"ନାତାଶା"

"ମୁଁ ତମକୁ ଘୃଣା କରେ । ମୁଁ ତମକୁ ଘୃଣା କରେ । ତୁମେ ମୋର ଶତ୍ରୁ । ଚିରଦିନ ପାଇଁ ମୋର ଶତ୍ରୁ ।"

ନାତାଶା ସେ ଘରୁ ଦୌଡ଼ି ପଳାଇଲା ।

ନାତାଶା ସୋନିଆକୁ ଏଡ଼ିଏଡ଼ି ଚାଲିଲା, ଆଉ ତା ସଙ୍ଗରେ କଥାଭାଷା ହେଲା ନାହିଁ । ତା ମୁହଁରେ ସେହି ଆଶ୍ଚର୍ଯ୍ୟ ଭାବଥାଏ, ସେହି ଉତ୍ତେଜନା ଥାଏ, ସେହି ଭାବଥାଏ ଯାହା ଦୋଷ କରିଥିଲେ ମୁହଁରେ ଫୁଟି ଉଠେ । ସେ ସେମିତି ମୁହଁ କରି ଏଘରୁ ସେଘର ବୁଲୁଥାଏ । କେତେବେଳେ କେଉଁ କାମ କରିବ ବୋଲି ଧରେ ପୁଣି ତାକୁ ଫୋପାଡ଼ି ଦିଏ ।

ସୋନିଆକୁ ଯେତେ କଷ୍ଟ ଲାଗୁ ପଛେ ସେ ତା ସଙ୍ଗାତକୁ ନିଘାରେ ରଖିଥାଏ, ଆଖିରୁ ଅନ୍ତର କରିଦିଏ ନାହିଁ ।

କାଉଣ୍ଟ ଯେଉଁ ଦିନ ଫେରି ଆସିବେ ତା ଆଗ ଦିନ ସୋନିଆ ନିଘା କଲା ଯେ ନାତାଶା ବୈଠକଖାନା ଘର ଝରକା ପାଖେ ବସି ରହିଥାଏ । ଯେପରିକି ସେ କେଉଁ କଥାକୁ ଅପେକ୍ଷା କରି ବସିଛି । ଆଉ ସେ ନିଘା କଲା ଯେ ସେବାଟେ ଚାଲି ଯାଉଥିବା ଜଣେ ଅଫିସର ଆଡ଼କୁ ହାତ ଠାରି ନାତାଶା କଣ ସଙ୍କେତ କଲା । ସୋନିଆକୁ ଲାଗିଲା ସେ ଅଫିସର ଜଣକ ଆନାତୋଲ ।

ସୋନଆ ଆହୁର ତୀକ୍ଷ୍ଣ ଦୃଷ୍ଟିରେ ତା ବନ୍ଧୁକୁ ନଜରକର ଦେଖିଥାଏ । ସେ ଦେଖିଲା ଯେ ଗତ ଖାଇଲାବେଳେ ଆଜ ସଞ୍ଜ ଗୋଟାକଯାକ ନାତାଶା ଏକ ପ୍ରକାର ଅତି ଅସ୍ୱାଭାବିକ ଅବସ୍ଥାରେ ରହୁଛି, ଏମିତ ସେ କେବେ ହୁଏନାହିଁ, ତାକୁ ଯାହା ପଚାରିଲେ ସେ ଅବାନ୍ତର ଉତ୍ତର ଦିଏ । ସେ ବାକ୍ୟଟିଏ ଆରମ୍ଭ କର ତାକୁ ଆଉ ଶେଷ କରେ ନାହିଁ । ସବୁ କଥାକୁ ହସେ ।

ରୁଟି ଖାଇସାରିଲାପରେ ସୋନଆ ଦେଖିଲା ଯେ ନାତାଶାର ଘର ଦୁଆର ମୁହଁ ଆଗରେ ଭିତରକୁ ଯିବ ବୋଲି ଚାକରାଣୀ ଭଯ୍ୟରେ ଅପେକ୍ଷା କରୁଛି । ସେ ଚାକରାଣୀଟି ଭିତରକୁ ଯିବାକୁ ଛାଡ଼ଦେଇ କବାଟରେ କାନ ପାରିଲା । ସେ ବୁଝିଲା ଯେ ନାତାଶାକୁ ପୁଣି ଗୋଟେ ଚିଠି ଦିଆ ସରିଛି । ହଠାତ୍ ତା ଆଖି ଆଗରେ ସବୁ ପରିଷ୍କାର ହୋଇ ଦିଶିଗଲା । ସେ ଜାଣିଲା ଯେ ସେ ରାତିରେ କଣ ଗୋଟାଏ ଭୟଙ୍କର କାମ କରିବ ବୋଲି ନାତାଶା ଠିକଣା କରୁଛି । ସୋନଆ କବାଟ ବାଡେଇଲା । ନାତାଶା ତାକୁ ଭିତରକୁ ଛାଡ଼ଦେଲା ନାହିଁ ।

ସୋନଆ ଭାବିଲା, "ସେ ତା ସଙ୍ଗରେ ପଳାଇଯିବ ବୋଲି ବସିଛି । ସେସବୁ କରିପାରିବ । ଆଜ ତା ମୁହଁରେ ବିଶେଷ କରି ଯେପରିକ ଏକ କରୁଣ ଅଥଚ ଦୃଢ଼ ପ୍ରତିଜ୍ଞା ଭାବ ଦିଶୁଥିଲା । ମଉସାକୁ ଦଣ୍ଡବତ କର ତାଙ୍କଠୁଁ ବିଦା ହେଲାବେଳେ ସେ କାନ୍ଦି ପକାଇଲା ।" ସୋନଆ ସେକଥା ମନେ ପକାଇଲା । ଭାବିଲା ହଁ, "ନିଶ୍ଚୟ କଥା । ସେ ଲୋକଟା ସଙ୍ଗେ ପଳାଇ ଯିବାକୁ ବସିଛି । ତେବେ ମୁଁ କଣ କରିପାରିବ ?" ଯେତେ ଚିହ୍ନ ଯେତେ ପ୍ରମାଣରୁ ଜଣାପଡ଼ୁଥିଲା ଯେ ନାତାଶା ଗୋଟାଏ ଭୟଙ୍କର କାମ କରିବାକୁ ବସିଛି । ସବୁ ଏକାଠି କରି ସୋନଆ ଭାବିଲା ଯେ ସେ କ'ଣ କରିପାରିବ । କାଉଣ୍ଟ ତ ଏଠି ନାହାନ୍ତି । ମୁଁ କ'ଣ କରିବ ? କ'ଣ କୁରାଗିନ୍‌କୁ ଚିଠି ଲେଖି ତା କୈଫିୟତ ମାଗିବ ? କନ୍ତୁ ତାକୁ ଜବାବ୍ ଦେବାକୁ ବାଧ କରିବ କିଏସେ ? ଆଉ କ'ଣ ପିଏରେ ପାଖକୁ ଚିଠି ଲେଖିବ ? ପ୍ରିନସ ଆନ୍ଦ୍ରେ ଗଲାବେଳେ କହି ଯାଇଥିଲେ ବିପଦ ଆପଦକୁ ପିଏରେକୁ ଡାକିବାକୁ···ବୋଧହୁଏ ସତରେ ସେ ବଲ୍‌କନସ୍କିଙ୍କୁ ମନା କରିଦେଇଛି (ବୋଲି ତ ସେ

ପ୍ରିନ୍‌ସେସ୍ ମେରିଆଙ୍କ ପାଖକୁ ଗୋଟାଏ ଚିଠି ପଠାଇ ଦେଲେ) । ମଜୁସା ବି ଏଠି ନାହାନ୍ତି । ତେବେ କଣ ?”

ମେରିଆ ମିସ୍ୟେଭ୍ କୁ କହିବାକୁ ତାଙ୍କୁ ସାହାସ ହେଲାନାହିଁ । ସେ ଭାବିଲା ତାଙ୍କର ନାତାଶା ଉପରେ ଏତେ ବିଶ୍ୱାସ ତାଙ୍କୁ କହିଲେ ଭୟାନକ କଥା ହେବ ।

କିନ୍ତୁ ସେହି ଅନ୍ଧାର ବାରଣ୍ଡାରେ ଠିଆ ହୋଇ ସେ ଭାବିଲା “ଏପାଖ ହେଉକି ସେପାଖ ହେଉ, ଯାହା କରିବି ବର୍ତ୍ତମାନ କରିବି ନହେଲେ କେବେ କରିପାରିବି ନାହିଁ । ଏ ପରିବାରରୁ ମୁଁ ଯେତେ ଉପକାର ପାଇଛି ମୁଁ ତା ଭୁଲିନାହିଁ । ମୁଁ ଯେ ନିକୋଲେଇକୁ ପ୍ରେମ କରେ ତାର ପ୍ରମାଣ ବର୍ତ୍ତମାନ ଦେଖାଇବି । ପଛେ ତିନିରାତି ମୋତେ ନିଦ ହେଉ ମୁଁ ଏ ବାରଣ୍ଡାରୁ କଦାପି ଘୁଞ୍ଚିବି ନାହିଁ । ସେ ଏବାଟେ ଯିବାକୁ ଚାହିଁଲେ ମୁଁ ତାଙ୍କୁ ଜୋର୍ କରି ଅଟକାଇବି ସିନା ଏ ପରିବାର ଉପରେ କଳଙ୍କ ଆସିବାକୁ କଦାପି ମୁଁ ଦେବି ନାହିଁ ।” ଏମିତି ସେ ଭାବୁଥାଏ ।

ଅଳ୍ପଦିନ ହେଲା ଆନାତୋଲ ଡୋଲୋହଭ୍‌ର ବସାକୁ ଉଠି ଯାଇଥାଏ । ନାତାଶା ରୋସ୍ତଭ୍‌କୁ ଘରୁ ହରଣ କରି ନେବାପାଇଁ ବହୁତ ଦିନ ଆଗରୁ ଫନ୍ଦି ହୋଇଥାଏ । ଡୋଲୋହଭ ସେ ଫନ୍ଦି କରିଥାଏ । ଯେଉଁଦିନ ସୋନିଆ ନାତାଶା କୋଠରୀ କବାଟରେ କାନ ଦେଇ କଥା ଶୁଣିଲା ସେହିଦିନ ଏ ଦୁଷ୍କର୍ମ କାର୍ଯ୍ୟରେ ପରିଣତ ହେବାର କଥା । ନାତାଶା କଥା ଦେଇଥାଏ ଯେ ରାତି ଠିକ୍ ଦଶଟାବେଳେ ସେ ଘରର ବାରି କବାଟବାଟେ ବାହାରିଯାଇ କୁରଗିନ୍‌କୁ ଭେଟିବ । କୁରଗିନ୍ ଗୋଟାଏ ସ୍ଲେଜଗାଡ଼ି ଠିକଣା କରି ରଖିଥିବ । ସେଥିରେ ତିନୋଟା ଘୋଡ଼ା ଲାଗିଥିବ । ନାତାଶାକୁ ସେ ଗାଡ଼ିରେ ବସାଇ ମସ୍କୋକୁ ଷାଠିଏ ଭର୍ଷ୍ଟ ଦୂରରେ କାମେନ୍‌କା [illegible] ଗାଁକୁ ଠିକ୍ କୁରଗିନ୍ ନେଇଯିବ । ସେମାନଙ୍କୁ ସେହି କାମେନ୍‌କା ଗାଁରେ ବିଭା କରାଇଦେବାପାଇଁ ଗୋଟାଏ ପୁରୋହିତ ବି ଠିକଣା କରି ରଖା ହୋଇଥାଏ । କାମେନ୍‌କାରେ ଆଉ ଘୋଡ଼ା ରଖାହୋଇଥାନ୍ତି । ସେ ଘୋଡ଼ାରେ ସେମାନେ ୱାରସ୍ ଯିବା

*

ସଡ଼କଯାକେ ଚ୍ଛଲି ଯାଇଥାନ୍ତେ । ସେଇଠାରୁ ଡାକ ଘୋଡ଼ାରେ ବସି ସେମାନେ ସ୍ୱଦେଶକୁ ପଳାନ୍ତେ ।

ସ୍ୱଦେଶ ଯିବାର ପ୍ରବେଶ ପତ୍ର ଆନାତୋଲ ପାଖରେ ଥାଏ । ଡାକ ଘୋଡ଼ା ବ୍ୟବହାର କରିବାକୁ ଆଦେଶନାମା ତାଠାରେ ସ୍ୱ ଥାଏ । ସେ ତା ଭଉଣୀଠାରୁ ଦଶହଜାର ରୁବଲ ଧାର ନେଇଥାଏ ଓ ଦୋଲେହଭ୍‌ର ସାହାଯ୍ୟରେ ଆହୁରି ଦଶହଜାର ରୁବ୍‌ଲ୍ ଯୋଗାଡ଼ କରି ରଖିଥାଏ ।

ଦୋଲେହଭ ବସିଥାଏ ତାର ବଡ଼ ଚଟ୍ଟାଘର ବଖରାରେ । କାନ୍ଥରୁ ଛାତଯାକେ ସେ ଘରଯାକ ପାରସ୍ୟ ଦେଶର କମ୍ବଳ, ଭାଲୁ ଛାଲ ଓ ଅସ୍ତ୍ରଶସ୍ତ୍ରରେ ସଜାହୋଇ ରହିଥାଏ । ସ୍ୱଦେଶ ବାହାରିଲେ ଯେଉଁ ପୋଷାକ ପିନ୍ଧନ୍ତି ଦୋଲେହଭ ସେହି ପୋଷାକରୁ ଗୋଟାଏ ପିନ୍ଧିଥାଏ । ଗୋଡ଼ରେ ଲେଙ୍ଗା ଚଉଙ୍ଗା ବୁଟ୍ ଜୋତା ମାଡ଼ିଥାଏ । ତା ସାମ୍ନାରେ ଗୋଟାଏ ସାନ ଆଲମାରି । ସେଇଟା ଖୋଲା ରହିଥାଏ । ଆଲମାରି ଉପରେ ବଡ଼ା ବଡ଼ା ହୋଇ ହିସାବପତ୍ର ଆଉ ନୋଟ ପଡ଼ିଥାଏ । ଆନାତୋଲ୍ ତାର ସ୍ୱର୍ଗୀୟ ପୋଷାକଟା ପିନ୍ଧିଥାଏ ଯେ ଚର୍ମରେ ବୋତାମ ଲାଗିନଥାଏ । ତାର ଫରାସୀ ଚାକର ଆଉ ଅନ୍ୟାନ୍ୟ ଚାକରମାନେ ମିଶି ଗୋଟାଏ ଘରେ ଜିନିଷପତ୍ର ବନ୍ଧାବନ୍ଧି କରୁଥାନ୍ତି । ଯେ ସବୁ ବନ୍ଧା ସରି ଆଉ ଅଳ୍ପ କାମ ବାକିଥାଏ । ଆନାତୋଲ ସେ ଘରୁ ଏ ଘରକୁ ଯିବାଆସିବା ହେଉଥାଏ । ଦୋଲେହଭ ପଇସା ଗଣି ଗଣି ହିସାବ ଲେଖୁଥାଏ ।

ଦୋଲେହଭ ପଇସାକୁ ଥୋଇଦେଲା । ଯାତ୍ରା ଆରମ୍ଭ କରିବା ଆଗରୁ କିଛି ଖାଇବାକୁ ପିଇବାକୁ ଆଣି ଦେଇଯିବାକୁ ହୁକୁମ ଦେବାପାଇଁ ଗୋଟାଏ ଚାକରକୁ ଡାକଦେଇ ସେ ଖାଇବା ଘରକୁ ଗଲା ।

ଆନାତୋଲ ପଢ଼ା ଘରେ ଖଟ ଉପରେ ଗଡ଼ୁଥାଏ । କହୁଣୀରେ ଭରାଦେଇ ଟେକି ହୋଇ ରହି ସେ ଶଙ୍କିତ ଭାବରେ ମୁରୁକି ମୁରୁକି ହସି ଗଦ ଗଦ ହୋଇ ଆପଣାକୁ କ'ଣ ଭୁଟୁରୁ ଭୁଟୁରୁ ହୋଇ କହୁଥାଏ ।

ଆଉ ଘରୁ ଡୋଲୋହଭ୍ ତାକୁ ପାଟିକଲା "ଆସ କ'ଣ ଖାଇବ ହୋ । ହେଇ ନଅ, ମଦ ଟିକିଏ ପିଅ ।"

ଆନାତୋଲ ଯେମିତି ମୂରୁକ ହସି କହିଲା "ମୋର ଇଚ୍ଛା ହେଉ ନାହିଁ ।"

"ଆସ ମ, ଏଠି ବାଲ୍ଗା ବସିଛନ୍ତି ଯେ ।"

ଆନାତୋଲ ଉଠିପଡ଼ି ଖାଇବା ଘରକୁ ଗଲା । ବାଲଗା ଜଣେ ଜଣାଶୁଣା ଘୋଡ଼ାଗାଡ଼ି ଚାଳକ । ସେ ଗଲା ଛ' ବର୍ଷ ହେଲା ଡୋଲହଭ୍ ଓ ଆନାତୋଲକୁ ଗାଡ଼ିରେ ବସାଇ କେତେଥର ନେଇଛି । ତାର ଗୋଟାଏ ହାଲୁକା ଗାଡ଼ି ବରଫ ଉପରେ ଚାଲେ । ସେଥିରେ ତିନୋଟା ଘୋଡ଼ା । ଆନାତୋଲର ସୈନ୍ୟ ଦଳ ଯେତେବେଳେ ଟ୍ୱେର ସହରରେ ଛାଉଣି ପକାଇ ଥାଆନ୍ତି ସେତେବେଳେ ଥରକରୁ ବେଶୀ ସେ ତାକୁ ଗାଡ଼ିରେ ବସାଇ ସଞ୍ଜରେ ଟ୍ୱେର ସହରରୁ ବାହାରି ପାହାନ୍ତା ଆଗରୁ ମସ୍କୋ ସହରରେ ପହଞ୍ଚାଇ ଦେଇ ପୁଣି ଆଉ ରାତିକ ଟ୍ୱେରରେ ଆଣି ପହଞ୍ଚାଇ ଦେଇଛି । ଥରକରୁ ବେଶୀ ଯେତେବେଳେ ଡୋଲହଭ୍‌ର ପଛେ ପଛେ ଲୋକେ ତାକୁ ଧରିବାକୁ ଗୋଡ଼ାଇ ଥାନ୍ତି, ସେତେବେଳେ ସେ ତାକୁ ଗାଡ଼ିରେ ବସାଇ ଉଡ଼ାଇ ନେଇ ଚାଲିଯାଇଛି । ଅନେକ ଥର ସେମାନେ ଯେତେବେଳେ ତା ଗାଡ଼ିରେ କେଳୁଣୀମାନଙ୍କ ସଙ୍ଗରେ, ଆଉ ଯେଉଁ ମାନଙ୍କୁ ସେ କହେ 'ମଉଜ ମାଇପେ' ସେମାନଙ୍କ ସଙ୍ଗରେ ବସିଥାନ୍ତି ସେତେବେଳେ ମଧ୍ୟ ସେ ସହରସାରା ବୁଲାଇଛି । ଥରକରୁ ବେଶୀ ସେ ଘୋଡ଼ା ଦୌଡ଼େଇ ଦୌଡ଼େଇ ଅନେକ ଘୋଡ଼ାକୁ ନଷ୍ଟ କରି ଦେଇଛି । ଥରକରୁ ବେଶୀ ସେ ମସ୍କୋ ସହରରେ ମଣିଷଙ୍କ ଉପରେ ଗାଡ଼ି ମଡ଼େଇ ଦେଇଛି । ଅନ୍ୟ ଗାଡ଼ି ମଧ୍ୟ ଓଲଟେଇ ଦେଇଛି । ଆଉ ସବୁଥର ଏଇମାନେ, ଯାହାକୁ ସେ କହେ ତାର 'ଭଦ୍ରଲୋକ ମାନେ' ସେମାନେ ତାକୁ ଅନେକ ବିପଦରୁ ଉଦ୍ଧାର କରିଛନ୍ତି । ଅନେକ ଥର ସେମାନେ ତାକୁ ମାଡ଼ ଚଢ଼େଇଛନ୍ତି, ତାକୁ ସ୍ୟାମ୍ପେନ୍ ଓ ମାଦିରା ମଦ ଖୁଆଇ ମାତାଲ ମଧ୍ୟ କରାଇଛନ୍ତି । ସେ ମାଦିରା ମଦକୁ ଭାରି ଭଲ ପାଏ । ଆଉ ସେ ଦୁଇଜଣଙ୍କର

ଗୋଟାକରୁ ବେଶୀ କାଣ୍ଡ ଜାଣିଛୁ ଯନ୍ତ୍ରିରେ ସାଧାରଣ ଲୋକ ହୋଇଥିଲେ କେଉଁ କାଳୁ ସେ ନିର୍ବାସନ ଦଣ୍ଡ ପାଇ ସାଇବେରିଆ ଯାଇସାରନ୍ତାଣି । ସେମାନେ ଦଳ ହୋଇ ଏକାଠି ଯେତେବେଳେ ମଦଖାଇ ଫୁର୍ତ୍ତି କରନ୍ତି ସେତେବେଳେ ଅନେକ ଥର ସେମାନେ ବାଲ୍‌ଗାକୁ ସେଠିକି ଡାକି ଆଣନ୍ତି । ତାକୁ ମଦ ପିଆଇ କେଜୁଣୀ ଝିଅ ମାନଙ୍କ ସଙ୍ଗରେ ନାଚ କରନ୍ତି ଆଉ ତାଙ୍କର ହଜାର ହଜାର ରୁବଲ ତା ହାତରେ ଖର୍ଚ୍ଚ କରନ୍ତି । ତାଙ୍କ କାମ କରି ବର୍ଷ ଭିତରେ କୋଡ଼ିଏ ଥର ସେ ତା ଜୀବନକୁ ପାଣି ଛଡ଼ାଇ ଦେଇଛି । ଆଉ ତାର ଘୋଡ଼ା ତାଙ୍କ କାମକରି ନଷ୍ଟ ହେଇଗଲେ ସେମାନେ ତାକୁ ସେ ଘୋଡ଼ାର ଦାମ ବାବଦରେ ଯେତେ ଟଙ୍କା ଦିଅନ୍ତି ତା'ଠୁ ବହୁତ ଅଧିକ ଘୋଡ଼ା ତାଙ୍କର କାର୍ଯ୍ୟ କରିବାକୁ ଯାଇ ନଷ୍ଟ ହୋଇଯାଇଛି । ତଥାପି ସେମାନଙ୍କୁ ସେ ଭଲ ପାଉଥିଲା । ସେମାନଙ୍କ ଲାଗି ଅତି ପ୍ରବଳ ବେଗରେ ଗାଡ଼ି ଦୌଡ଼େଇ ଦେବାକୁ ସେ ପାଉଥିଲା । ଗାଡ଼ି ଚାଳକମାନଙ୍କୁ ଓଲଟେଇ ପକାଇବାକୁ ସେ ମଧ ଭଲ ପାଉଥିଲା । ପାଦରେ ଚାଲି ଚାଲି ମସ୍କୋ ସହରର ରାସ୍ତାରେ ଚାଲିଥିବା ମଣିଷଙ୍କ ଉପରେ ଗାଡ଼ି ମଡ଼ାଇ ଦେବାକୁ ତାକୁ ଭଲ ଲାଗୁଥିଲା, ଆଉ ମସ୍କୋ ସହରର ସଡ଼କ ବାଟେ ସେ ଗାଡ଼ି ଚଳେଇ ଗଲାବେଳେ, ସେ ସବୁବେଳେ ଘୋଡ଼ାଗୁଡ଼ାଙ୍କୁ ପୁରା ଦମ୍‌ରେ କଦମ୍ ଛୁଟାଇ ଗାଡ଼ିକି ଉଡ଼େଇ ଉଡ଼େଇ ନେଉଥିଲା । ଆଉ ସେ ଗାଡ଼ି ଦଉଡ଼େଇଲାବେଳେ ଯେତେବେଳେ ତାଠୁ ଆଉ ଅଧିକ ଜୋରରେ ଯିବା ଅସମ୍ଭବ ସେତେବେଳେ ତା ପଛଆଡ଼ୁ ମଦୁଆ କଣ୍ଠରେ ଯେଉଁ ପାଟି ତା କାନରେ ବାଜେ "ହଁ ଆହୁରି ବେଗୀ, ଆହୁରି ଜଲ୍‌ଦି" ସେ ପାଟି ଶୁଣିବାକୁ ତାକୁ ଭଲଲାଗେ । ଆଉ ତା ଯିବା ବାଟରେ ଯେତେବେଳେ କୌଣସି ଚଷା ଆସି ହାବୁଡ଼େ ସେ ବଚରା ଭୟରେ ଅର୍ଦ୍ଧପ୍ରାଣ ହୋଇ ତା ବାଟରୁ ଦୌଡ଼ି ପଳେଇ ଗଲାବେଳେ, ବାଲଗା ତା ବେକରେ ଘୋଡ଼ା ଚାବୁକରେ ପିଟି ଦେବାକୁ ବି ଭଲପାଏ । ସେମାନେ "ପ୍ରକୃତ ଭଦ୍ରଲୋକ" ସେ ଭାବେ ।

ବାଲଗା ନିଜେ ଜଣେ କୃଷକ । ତାର ବୟସ ସତେଇଶି । ତା ମୁଣ୍ଡବାଳ ଅଳ୍ପ ହଳଦିଆ । ଆକୃତିରେ ସେ ଗେଡ଼େକା ହୋଇ ମୋଟା ସୋଟା ବାଙ୍ଗର ମଣିଷଟିଏ । ତା ନାକ ଚେପଟା । ତା ମୁହଁଟି ନାଲିଆ ।

ତା ବେକ ବଚଶଷରେ ନାଲିଆ ଆଉ ମୋଟା । ତା ଆଖି ଯୋଡ଼ାକ ସାନ ସାନ କିନ୍ତୁ ଉଜ୍ଜଳ । ତାର ମୁହଁରେ ସାମାନ୍ୟ ଦାଢ଼ୀ । ସେ ସବୁ ପୁରୁ କୋଟ ପିନ୍ଧିଥାଏ । ସେ କୋଟ୍‌ର ଭିତରେ ପଟେ ସିଲ୍‌କ୍ କନା ଦିଆହୋଇଥାଏ । କୋଟ୍ ତଳେ ରୁମରେ ତିଆରି ପୋଷାକ ।

ଆଉ ଜଣକୁ ମୁହଁ କରି ସେ ଭଗବାନଙ୍କ ଉଦ୍ଦେଶ୍ୟରେ ହାତ ଛକ କରି ପ୍ରଣାମ ଜଣାଇଲା । ତାପରେ ଦୋଲହଭ ପାଖକୁ ଯାଇ ତାର ସାନ କାଳିଆ ହାତଖଣ୍ଟା ବଢ଼ାଇ ଦେଇ କହିଲା "ଆପଣଙ୍କୁ ପ୍ରଣାମ, ଫ୍ୟାଦର ଇଭ୍ରୟେଭିଚ୍ ।"

"ପ୍ରଣାମ ଭାଇ ପ୍ରଣାମ । ହେଇ ତ ସେ ଆସିଗଲେଣି ।" ଆନାତୋଲ ଆସିବା ମାତ୍ରେ ସେ ତା ଆଡ଼କୁ ହାତ ବଢ଼ାଇ ଦେଇ କହିଲା ପ୍ରଣାମ "ହଜୁର ।"

ତା କାନ୍ଧରେ ହାତ ପକାଇ ଦେଇ ଆନାତୋଲ କହିଲା "ହେଇ ଶୁଣ ବାଲଣା, ମୋଠି ତୁମର ଲୋଭ ଅଛି ନା ନାହିଁ ? କହ ଯଦି କିଛି ଉପକାର କରିବ ତ ବର୍ତ୍ତମାନ ବେଳ ଆସିଛି । ବୁଝିଲ...କେମିତିକା ଘୋଡ଼ା ଆଣିଚ ଦେଖେଁ ?

ବାଲଶା କହିଲା "ହଜୁର ଯାହାକୁ ମୋଠାକୁ ପଠେଇ ଥିଲେ ସେ ମୋତେ ଯେମିତିକା କହିଲା ସେମିତିକା ଆଣିଚ । ସେଇ ଘୋଡ଼ା, ହଜୁର ଯାହାକୁ ବେଶୀ ପସନ୍ଦ କରନ୍ତି ସେଇଆକୁ ଆଣିଚ ।"

ନାତାଶା କହିଲା "ଶୁଣ ବାଲଶା, ସେ ତିନଟାଯାକ ଘୋଡ଼ା ପଛେ ଦୌଡ଼ି ଦୌଡ଼ି ମରିଯାଆନ୍ତୁ ସେଠି ତିନ ଘଣ୍ଟାରେ ନେଇ ପହଞ୍ଚିବା ଦରକାର ।"

ଆନାତୋଲ ସେ ଘରୁ ବାହାରିଗଲା । ଅଳ୍ପ କେତୋଟି ମିନିଟ ଭିତରେ ସେ ଫେରି ଆସିଲା । ସେ ଗୋଟାଏ ରୁମ ତିଆରି ପୋଷାକ ପିନ୍ଧିଥାଏ, ଅଣ୍ଟାରେ ରୂପାର କମରପଟି, ମୁଣ୍ଡରେ କଳା ରୁମର ଗୋଟାଏ ଟୋପି ଭରି ଛାଁଟରେ ଗୋଟାଏ କରକୁ ଢ଼ଳାଇ ଦେଇ ଲଗାଇଥାଏ ଯେ, ତାର ସୁନ୍ଦର ମୁହଁକୁ ଭାରି ମାନୁଥାଏ ।

ପାହାଚ ତଳେ ଠିଆ ହୋଇଥାଏ ଗୋଟାଏ ତିନି ଘୋଡ଼ା ଲଗି ଥିବା ସ୍ଲେଜ ଗାଡ଼ି । ଜଣେ ଭାରି ବଳୁଆ ଘୋଡ଼ା ଗାଡ଼ି ଚାଳକ ତାକୁ ଧରି ଠିଆ ହୋଇଥାଏ । ବାଲଗା ଯାଇ ତା ବସିବା ଜାଗାରେ ବସି ପଡ଼ିଲା । ସେ କହୁଣୀକି ଉପରକୁ ଟେକି ଘୋଡ଼ାଙ୍କ ଲଗାମଗୁଡ଼ାକୁ ନଚେଇ ନଚେଇ ତା ହାତରେ ସଜାଡ଼ିବାକୁ ଲାଗିଲା । ଆନାତୋଲ ଓ ଦୋଲହଭ ତା ପାଖରେ ବସିପଡ଼ିଲେ ।

"ସମସ୍ତେ ଠିକ ହୋଇ ବସିଲେତ ?" ବାଲଗା ପଚାରିଲା । ତା ହାତରେ ଲଗାମଗୁଡ଼ାକୁ ମୋଡ଼ି ଧରି ସେ ରଡ଼ି ଛାଡ଼ିଲା "ଚାଲ ।" ତାପରେ ନକଜଟସ୍କି ବୁଲେଭାଡ଼ି ସଡ଼କ ଧାରରେ ତୋଫାନ ବେଗରେ ସ୍ଲେଜ ଗାଡ଼ି ଧାଇଁଲା ।

ବାଲଗା ଆଉ କଚୁଆନ୍ ବାକ୍ସରେ ଯେଉଁ ଟୋକା ଗାଡ଼ୁଆନ ହୋଇ ବସିଥାଏ ସେ ବଡ଼ପାଟିକ ବାରମ୍ବାର ପାଟି କରୁଥାନ୍ତି "ଟପ୍ରୁ ! ହେଇ ! ...ଟପ୍ରୁ !"

ଆରବାଟସ୍କି ଛକରେ ଘୋଡ଼ା ଗାଡ଼ି ସଙ୍ଗରେ ସ୍ଲେଜ ଗାଡ଼ିର ଧକ୍‌କା ଲାଗିଲା । କ'ଣ ଭାଙ୍ଗିଲା ପରି ଚୂ କରି ଗୋଟାଏ ଶବ୍ଦ ହେଲା । ଲୋକଙ୍କ ପାଟି ଶୁଭିଲା କିନ୍ତୁ ସ୍ଲେଜ ଗାଡ଼ି ଆରବାଟସ୍କି ସଡ଼କେ ସଡ଼କେ ଚାଲିଗଲା । ପଦ୍‌ନୋଭିନସ୍କି ସଡ଼କର ଦୁଥର ମୋଡ଼ ନେଇ ବାଲଗା ଗାଡ଼ିକୁ ଧିମେଇ ଦେଇ ପଛକୁ ବୁଲାଇ ପୁରୁଣା ଏକେଭି ଛକ ପାଖରେ ଗାଡ଼ି ଠିଆ କଲା ।

ଯୁବକ ଗାଡ଼ୁଆନ ଘୋଡ଼ାମାନଙ୍କ ଲଗାମ ଧରି ଠିଆ ହେବ ବୋଲି ଗାଡ଼ିରୁ ଡେଇଁ ପଡ଼ିଲା । ଆନାତୋଲ ଓ ଦୋଲହଭ ରାସ୍ତା କରେ କରେ ଚାଲି ଚାଲି ଗଲେ । ଘରର ଫାଟକ ହେବାରୁ ଦୋଲହଭ ସିଟି ମାରିଲା । ତେଣୁ ସେ ସିଟିର ଉତ୍ତରରେ ଗୋଟାଏ ଦାସୀ ଦୌଡ଼ି ଦୌଡ଼ି ଆସିଲା ।

ସେ କହିଲା "ଝଟ୍ଟା ଭିତରେ ଅଗଣାକୁ ଆସନ୍ତୁ ନହେଲେ ଲୋକେ ଆପଣଙ୍କୁ ଦେଖି ପକାଇବେ । ସେ ଏଇ ମିନିଟିକ୍ ଭିତରେ ଆସି ପହଞ୍ଚୁଛନ୍ତି ।"

ଡୋଲହଭ ଫାଟକ ପାଖରେ ରହିଲା । ଆନାଡୋଲ ସେ ଡାସୀ ପଛେ ପଛେ ଅଗଣା ଭିତରକୁ ଗଲା । ଆଉ ବାଙ୍କ ବୁଲିପଡ଼ି ପାହାଚେ ପାହାଚେ ଦୌଡ଼ିଗଲା ।

ମେରିଆ ମିତ୍ୟେଭ୍ନାଙ୍କ ପ୍ରକାଣ୍ଡ ଆକାର ଦରୁଆନ ଆସି ତା ପାଖରେ ପହଞ୍ଚିଗଲା ।

ଦୁଆର ମୁହଁରେ ବାଟ ଓଗାଳିଦେଇ ସେ ତାର ଘାଗଡା ପାଟିରେ କହିଲା "ଏବାଟେ ଆସନ୍ତୁ । ସାଆନ୍ତାଣୀଙ୍କ ପାଖକୁ ଯିବେ ।"

ଆନାଟୋଲ ଅଣନିଶ୍ୱାସୀ ହୋଇ ଫୁସ ଫୁସ କରି କହିଲା "କେଉଁ ସାଆନ୍ତାଣୀ ! ତୁମେ କିଏ ?"

"ଭିତରକୁ ଆସନ୍ତୁ । ମତେ ହୁକୁମ ଅଛି ଆପଣଙ୍କୁ ଭିତରକୁ ନେଇ ଯିବାକୁ ।"

ଦୋଲହଭ୍ ପାଟିକଲା "କୁରଗିନ୍ ! ପଳାଇ ଆସ । ବିଶ୍ୱାସ ଘାତକତା ହୋଇଛି । ପଳାଇଆସ କୁରଗିନ୍ ।"

ଆନାଟୋଲ ଦୌଡ଼ିପଳାଇ ଆସୁଥିବା ବେଳେ ତାର ପଳାଇଯିବା ବାଟ ବନ୍ଦ କରିଦେବା ଉଦ୍ଦେଶ୍ୟରେ ଜଣେ ଦରୁଆନ୍ ବାରିଆଡ଼ର ସାନ ଫାଟକର କବାଟ କିଳି ଦେବାକୁ ଚେଷ୍ଟା କରୁଥିବା-ବେଳେ ଦୋଲହଭ୍ ତା ସଙ୍ଗରେ ଧସ୍ତା ଧସ୍ତି ଲଗାଇଥାଏ । ବହୁତ କଷ୍ଟରେ ବଳ ଖର୍ଚ୍ଚକରି ଦୋଲହଭ ଦରୁଆନକୁ ପେଲି ଦେଇ ଆନାଟୋଲକୁ ଧରି ଫାଟକ ବାଟେ ପଦାକୁ ଓଟାରି ନେଇ ସ୍ଲେଜ୍ ଗାଡ଼ି ଆଡ଼କୁ ଦୌଡ଼ି ପଳାଇଗଲା ।

ମେରିଆ ମିତ୍ୟେଭ୍ନା ଆସି ଦେଖିପକାଇଲେ ସୋନିଆ ପିଣ୍ଡାରେ ବସି କାନ୍ଦୁଛି । ସୋନିଆକୁ ବାଧ୍ୟ କରିବାରୁ ସେ ସବୁକଥା ମାନିଗଲା । ନାତାଶାର ଚିଠିଟାକୁ ଉଠାଇ ନେଇ ପଢ଼ିଦେଇ ଚିଠିଟି ହାତରେ ଧରି ମେରିଆ ମିତ୍ୟେଭ୍ନା ନାତାଶା ପାଖକୁ ଚାଲିଗଲେ । ତାକୁ କହିଲେ "ବଦମାସ୍ ଟୋକୀ । ନିର୍ଲଜ୍ଜ ଛତଖି । ମୁଁ ତୋର କଥା ଶୁଣିବି ନାହିଁ ।" ନାତାଶା ଆଶ୍ଚର୍ଯ୍ୟ ହୋଇ ତାଙ୍କୁ ଅନାଇଁ ଥାଏ,

ତା ଆଖିରେ ଲୁହ ନ ଥାଏ । ସେ ତାକୁ ଘର ଭିତରକୁ ଠେଲିଦେଇ ଘର କବାଟରେ ତାଲା ବନ୍ଦ କରିଦେଲେ । ଫାଟକରେ ଦରୁଆନ୍‌କୁ ଡାକି ହୁକୁମ ଦେଲେ ଯେ ସେଦିନ ସଞ୍ଜରେ ଯେଉଁମାନେ ଆସିବେ ତାଙ୍କୁ ଭିତରକୁ ଆଣିବାକୁ ପଡ଼ିବ । କିନ୍ତୁ ପୁଣି ପଦାକୁ ଚାଲିଯିବାକୁ ଛାଡ଼ି ଦିଆଯିବ ନାହିଁ । ଦରୁଆନ୍‌ମାନଙ୍କୁ ହୁକୁମ୍ ଦେଲେ ଯେ କେହି ଯଦି ଆସନ୍ତି ତେବେ ତାଙ୍କୁ ତାଙ୍କ ପାଖକୁ ଯେନ ଆସିବେ । ତାପରେ ଯେଉଁମାନେ ବାଳିକା ହରଣ କରିନେବାକୁ ଆସିବେ ସେମାନେ ତାଙ୍କ ବୈଠକ ଖାନା ଘରେ ଅପେକ୍ଷା କରି ବସି ରହିବେ ।

ଗାଭ୍ରିଲୋ ଯେତେବେଳେ ଆସି ତାଙ୍କୁ କହିଲା ଯେ ଯେଉଁ ଲୋକ ଗୁଡ଼ାକ ଆସିଥିଲେ ସେମାନେ ଦୌଡ଼ି ପଳାଇ ଗଲେ । ମେରିଆ ମିତ୍ରେୟଭ୍ନା ଭ୍ରୂକୁଟୀ ଦେଖାଇ ଉଠିପଡ଼ି ପିଠିଆଡ଼େ ହାତରେ ହାତ ଯୋଡ଼ି ବହୁତ ବେଳଯାଏ ଏଘର ସେଘର ହୋଇ ବୁଲୁଥାନ୍ତି, କ'ଣ କରିବେ ବୋଲି ଭାବୁଥାନ୍ତି । ଅଧରାତିବେଳେ ସେ ନାତାଶା ବଖରାକୁ ଗଲେ । ଆଗ ହାତମାରି ଦେଖିନେଲେ ଯେ ଚାବି ତାଙ୍କ ପକେଟରେ ଅଛି । ସୋନିଆ ପିଣ୍ଡାରେ ବସି କାନ୍ଦୁଥାଏ । ସେ କହିଲା 'ମେରିଆ ମିତ୍ରେୟଭ୍ନା ! ଦୟାକରି ମୋତେ ତା'ପାଖକୁ ଯିବାକୁ ଛାଡ଼ି ଦିଅନ୍ତୁ, ଆପଣଙ୍କୁ ଭଗବାନଙ୍କ ରାଣ' ।

ମେରିଆ ମିତ୍ରେୟଭ୍ନା କିଛି ଜବାବ ନ ଦେଇ ଘର କବାଟ ଖୋଲି ଭିତରେ ପଶିଲେ । ସେ ତାଙ୍କ ରାଗ କମାଇବାକୁ ଚେଷ୍ଟା କରି ମନେ ମନେ ଭାବୁଥାନ୍ତି 'କେଡ଼େ ଘୃଣାର କଥା ! କେଡ଼େ ଲଜ୍ଜାର କଥା ! ପୁଣି ମୋ ଘରେ ! ଗୋଟାଏ [illegible] ଛତରା ଟୋକିଟିଏ ଅଛି । ଖାଲି ତା' ବାପା ଲାଗି ମୋ ମନରେ ଦୁଃଖ ହେଉଛି । ଯେତେ କଷ୍ଟ ହେଉ ପଛେ ଏ କଥା କାହାରି ଆଗେ କହିବାକୁ ମୁଁ ସମସ୍ତଙ୍କୁ ମନା କରିଦେବି । କାଉଣ୍ଟଙ୍କ ଠାରୁ ମୁଁ ଲୁଚାଇବି ।' ମେରିଆ ମିତ୍ରେୟଭ୍ନା [illegible] [illegible] ବୁଲି ବୁଲି ଘର ଭିତରେ ପଶିଲେ ।

ନାତାଶା ଖଟରେ ଶୋଇଥାଏ । ସେ ଦୁଇ ହାତରେ ମୁହଁକୁ ଲୁଚାଇଥାଏ । ହଲ୍‌ଚଲ୍ ବି ହେଉନଥାଏ । ମେରିଆ ମିତ୍ରେୟଭ୍ନା ତାକୁ

ଛାଡ଼ ଦେଇ ଗଲାବେଳେ ସେ ଯେମିତି ପଡ଼ି ରହିଥିଲା ସେମିତି ପଡ଼ିଥାଏ ।

ମେରିଆ ମିତ୍ର୍ୟେଭ୍ନା ତାକୁ କହିଲେ 'ତୁ ଗୋଟିଏ ଭଲ ପିଲାଟିଏ । ମୋ ଘରେ ପ୍ରେମିକମାନଙ୍କ ସଙ୍ଗରେ ଭେଟ ହେବାକୁ ଘଟଣା କରିଦେଉଛୁ । ମତେ ଆଉ ଫାଙ୍କି ଦେଇ କଥା କହିବାକୁ ଚେଷ୍ଟାକରନା, ମୁଁ କଥା କହିଲେ ମୋ କଥା ଶୁଣ । ତୁ ଗୋଟାଏ ସବୁଠୁ ଅଧମ ପତିତା ମାଇକିନିଆ ପରି ନିଜ ମୁହଁରେ କଳଙ୍କ ବୋଳି ସାରିଲୁଣି, ତତେ କ'ଣ ଯେ କରନ୍ତି, ମୋ ମନ ଯାହା ହଉଚି । ଖାଲି ତୋ ବାପା ଲାଗି ମତେ ଦୁଃଖ ଲାଗୁଛି । ମୁଁ ଏକଥା ତାଙ୍କଠୁଁ ଲୁଚେଇ ରଖିବି ।''

ନାତାଶା ଯେମିତି ପଡ଼ିଥିଲା ସେମିତି ପଡ଼ିରହିଲା । ଖାଲି ନିଃଶ୍ୱାସ ବନ୍ଦ ହୋଇଯାଉଥିବା ନିଃଶବ୍ଦ କାନ୍ଦଣାରେ ତାର ଦେହ ଯାକ ଥର ଥର ହୋଇ କମ୍ପି ଉଠିଲା ।

ସେ ତାଙ୍କ କର୍କଶ ସ୍ୱରରେ କହିଲେ ''ତୋ କପାଳ ଭଲ ଯେ ସେ ମୋ ହାତୁଡ଼ରୁ ଆଜ ଖସି ପଳେଇଲା । ସେ ଯିବ କୁଆଡ଼େ, ମୁଁ ତାକୁ ଯେମିତି ହେଲେ ଧରି ପକେଇବି ନା କ'ଣ ଛାଡ଼ଦେବି ? ଶୁଣୁଚୁ ମୁଁ କ'ଣ କହୁଚି ? ହଇଲେ !'' ସେ ନାତାଶାର ମୁହଁ ତଳେ ତାଙ୍କର ବଡ଼ ପାପୁଲିଟାକୁ ଗେଞ୍ଜିଦେଇ ତା ମୁହଁକୁ ତାଙ୍କ ଆଡ଼କୁ ବୁଲାଇ-ଦେଲେ । ନାତାଶାର ମୁହଁ ଦେଖି ସୋନିଆ ଆଉ ମେରିଆ ମିତ୍ର୍ୟେଭ୍ନା ଉଭୟେ ସମ୍ମୋହିତ ହୋଇଗଲେ । ତା ଆଖି ଦୁଇଟା ଶୁଖିଲା ଦିଶୁଥାଏ । ଚକ୍ ଚକ୍ ଦିଶୁଥାଏ । ତା ହାଉଠ ଜୋର୍‌ରେ ଚାପି ପଡ଼ି ଯାଇଥାଏ । ତା ଗାଲ ପଶିଲା ପଶିଲା ଦିଶୁଥାଏ ।

ସେ ରାଗରେ ଟାଣି ଉଠାଉ ହୋଇ କହିଲା ''ଛାଡ଼ ମୋତେ ଛାଡ଼...ମୋର ମୁଁ ଯାହା କରେଁ...ମୁଁ ମରିବି ।'' ସେ ମେରିଆ ମିତ୍ର୍ୟେଭ୍ନାଙ୍କ ହାତରୁ ଭିଡ଼ ଉଠାଉ ହୋଇ ନିଜକୁ ଛଡ଼ାଇ ନେଇ ଆଗେ ଯେମିତି ପଡ଼ିଥିଲା ସେମିତି ପଡ଼ି ରହିଲା । ମେରିଆ ମିତ୍ର୍ୟେଭ୍ନା କହିଲେ ''ନାତାଶା । ତୋର ଯେମିତି ଭଲହେବ ମୁଁ ସେଇଆ ଭାବୁଛି ମା । ଥିର ହୋଇ ଶୋଇଥା । ହଉ, ସେମିତି ତୋର ତୁ ଥିର ହୋଇ

ଶୋଇଥା ମୁଁ ପଛେ ତତେ ଛୁଇଁବ ନାହିଁ । ଶୁଣ···ତୁ ଯାହା କରୁଚୁ କେଡ଼େ ଖରାପ କାମ କରୁଚୁ, ମୁଁ ସେ ବିଷୟରେ ତତେ କିଛି କହୁନାହିଁ । ତୁ ସେ କଥା ନିଜେ ବୁଝୁଚୁ । ତେବେ କାଲିତ ତୋ ବାପା ଆସି ପହଞ୍ଚିବେ, ତାଙ୍କ ଆଗରେ ମୁଁ କ'ଣ କହିବ ମତେ କହ । ଏଁ ।"

ପୁଣି ନାତାଶାର ଦେହ ଉପରେ କାନ୍ଦଣାର ଢେଉ ଖେଳିଗଲା । "ବେଶ । ସେମାନେ ଏ କଥା ଶୁଣିବେ । ତୋ ଭାଇ । ତୋ ବାଗ୍‌ଦତ୍ତ" ନାତାଶା ପାଟିକଲା, "ମୋର ବାଗ୍‌ଦତ୍ତ ହୋଇ କେହି ନାହିଁ, ମୁଁ ତାଙ୍କୁ ମନା କରିଦେଇଚି" ମେରିଆ ମିତ୍ରୋଭ୍‌ନା କହିଲେ "ସେଥିରେ କିଛି ଯାଏ ଆସେ ନାହିଁ । ହଉ, ସେମାନେ ଏ କଥା ଶୁଣିବେ । ତୁ ଭାବୁଚୁ ଏ କଥା ଏଇଠି ସରିବ ? ଧର ଯଦି ସେ—ତୋ ବାପା,—ମୁଁ ତ ତାଙ୍କୁ ଚିହ୍ନିଚି,—ଧର ଯଦି ସେ, ଲୋକଟାକୁ ଡାକିବେ ତାଙ୍କ ସଙ୍ଗରେ ଦ୍ୱନ୍ଦ ଯୁଦ୍ଧକୁ ଓହ୍ଲାଇବାକୁ ତେବେ କ'ଣ ଏକଥା ଠିକ୍ ହବ ? କ'ଣ କହୁଚୁ ?"

ନାତାଶା ଖଟ ଉପରୁ ଉଠିପଡ଼ି ମେରିଆ ମିତ୍ରୋଭ୍‌ନାଙ୍କ ଆଡ଼କୁ ରାଗରେ ଅନାଇଁ ପାଟିକଲା "ଆପଣ ମୋ ସଙ୍ଗରେ ଲାଗନ୍ତୁନାହିଁ କହୁଚି । କାହିଁକି ଆପଣ ସବୁ କଥାରେ ପ୍ରତିବନ୍ଧକ କଲେ ? କାହିଁକି କଲେ ? କାହିଁକି ? କିଏ ସେ ଏମିତି କହିବାକୁ କହିଥିଲା ?"

ପୁଣି ଚାଡ଼ପାଇ ମେରିଆ ମିତ୍ରୋଭ୍‌ନା ଚିଡ଼ିଉଠିଲେ "ତୁ କ'ଣ କରିବୁ ବୋଲି ବସିଥିଲୁ ? କାହିଁକି ? କିଏ ତୋତେ ଘରେ କୋଳପ ପକାଇ ରଖିଥିଲା କି ? ନା କ'ଣ ? ଏ ଘରକୁ ଆସିବାକୁ କିଏ ତାଙ୍କୁ ମନା କରିଥିଲା କି ? କାହିଁକି ତେବେ ତତେ ଗୋଟାଏ କେଉଁଣୀ ଝୋଟାକ ବୋଲି ନେଲାପରି ତତେ ସେ ଉଠେଇ ନେଇ ପଳେଇବାକୁ ବସିଥିଲା ? ···ତୁ ଭାବୁଚୁ ତତେ ସେ ନେଇ ପଳାଇଥିଲେ ସେମାନେ ତାଙ୍କୁ ଧରିନଥାନ୍ତେ ? ତୋ ବାପା କି ତୋ ଭାଇ କି ଯାହା ସଙ୍ଗରେ ତୋର ବାହାଘର ଠିକଣା ହୋଇଚି ସେ ? ସେଇଟା ପାଷାଣ୍ଡ, ଗୋଟାଏ ବଦ୍‌ମାସ୍ । ସେଇଆ ସେ—"

ନାତାଶା ଉଠିପଡ଼ି କହିଲା "ତମ ସମସ୍ତଙ୍କଠୁ ସେ ଭଲ । ତମେ ଯଦି ସବୁ ଭଣ୍ଡୁର କରି ଦେଇନଥାନ୍ତ (ହେ ଭଗବାନ ! କ'ଣ ସ୍ତ୍ରୀ ମାନେ ? ସୋନିଆ ତୁମେ କାହିଁକି ଏଭଳିଆ କଲ ? ଯାଅ ଚାଲି ଯାଅ –" । ଲୋକ ଯେତେବେଳେ ଦେଖନ୍ତି ସେମାନେ ନିଜେ ନିଜ ଉପରକୁ ଗୋଟାଏ ବିପତ୍ତି ଓଟାରି ଆଣିଛନ୍ତି ସେମାନେ ସେତେବେଳେ ହତାଶ ହୋଇ କାନ୍ଦନ୍ତି ସେ ସେମିତି ହତାଶ ହୋଇ କାନ୍ଦିଲା ।

ମେରିଆ ଦିମିତ୍ରିଏଭ୍ନା ଆଉ କିଛି କହିବାକୁ ଆରମ୍ଭ କରିବା ମାତ୍ରେ ନାତାଶା ଚିତ୍କାର କଲା । 'ଚାଲିଯା ଏଠୁ, ଚାଲିଯା, ତମେ ସମସ୍ତେ ମତେ ଘୃଣା କରୁଛ, ଅନାଦର କରୁଛ ।"

ପୁଣି ସେ ଖଟ ଉପରେ ଲେଉଟି ପଡ଼ିଲା ।

ଆହୁରି କେତେବେଳେ ପର୍ଯ୍ୟନ୍ତ ମେରିଆ ଦିମିତ୍ରିଏଭ୍ନା ନାତାଶା ଆଗରେ ବକ୍ତୃତା ଚଳେଇଲେ । ସେ ତାକୁ ବାରମ୍ବାର କହୁଥାନ୍ତି ଯେ, ଏ ସବୁ କଥା କାଉଣ୍ଟଙ୍କ ପାଖରୁ ଲୁଚେଇବାକୁ ପଡ଼ିବ, ନାତାଶା ନିଜେ ଯଦି ଏସବୁ କଥା ପାଶୋରି ପକାଇବାକୁ କିଛି ରାଜି ହେବ କି ଏଭଳି କିଛି ଘଟିଛି ବୋଲି କୌଣସି ଚିହ୍ନ ସଙ୍କେତ ନ ଦେଖାଇବ ତେବେ ଏ କଥା କେହି କିଛି ଜାଣି ପାରିବେ ନାହିଁ । ନାତାଶା କିଛି ଉତ୍ତର ଦେଲା ନାହିଁ । ସେ ଆଉ କାନ୍ଦୁ ନଥାଏ କିନ୍ତୁ ଛୁହାଇ ଛୁହାଇ ତା ଦେହ ଶୀତେଇ ଉଠୁଥାଏ । ତାର କମ୍ପ ଆସୁଥାଏ । ମେରିଆ ଦିମିତ୍ରିଏଭ୍ନା ତା ମୁଣ୍ଡତଳେ ଗୋଟାଏ ତକିଆ ଦେଇଦେଲେ, ତାକୁ ଦିଟା ଶେଯ ଘୋଡ଼ାଇ ଦେଲେ, ଆପଣା ହାତରେ ଲେମ୍ବୁ ପଡ଼ିଥିବା ପାଣି ମଦିଏ ତା ପାଇଁ ଆଣିଦେଲେ । କିନ୍ତୁ ସେ ତାକୁ କଥା କହିଲେ, ନାତାଶା କିଛି ଜବାବ ଦେଉ ନଥାଏ ।

ମେରିଆ ଦିମିତ୍ରିଏଭ୍ନା ଭାବିଲେ ସେ ଶୋଇପଡ଼ିଲା । ସେ ଘରୁ ଚାଲିଗଲା ବେଳେ ମେରିଆ ଦିମିତ୍ରିଏଭ୍ନା କହିଲେ "ହଉ, ସେ ଶୋଇଥାଉ କିନ୍ତୁ ନାତାଶା ଶୋଇ ନଥିଲା । ତାର ଶୁଖିଲା ମୁହଁରୁ ତାର ଆଖି ଯୋଡ଼ାକ ସାମ୍ନାକୁ ଡବ ଡବ କରି ଅନାଇଁ ରହିଥାଏ । ସେ ରାତିଯାକ ନାତାଶା ନିଦରେ ଶୋଇଲା ନାହିଁ କି ଆଉ କାନ୍ଦିଲା ନାହିଁ । ସୋନିଆ

ରାତ୍ରରେ କେତେଥର ଉଠି ତା ପାଖକୁ ଗଲା ସେ ସୋନିଆକୁ ପାଟି ଫିଟାଇଲା ନାହିଁ ।

ତହିଁ ଆରଦିନ ଦିପହରରେ ଖାଇଲା ବେଳକୁ କାଉଣ୍ଟ ମସ୍କୋ ଉପାନ୍ତରେ ଥିବା ତାଙ୍କ ଇଲାକାରୁ ଆସି ପହଞ୍ଚିଲେ । ସେ ଯେତକବେଳେ ଆସିବେ ବୋଲି କହିଥିଲେ ଠିକ ସେତକିବେଳେ ଆସି ପହଞ୍ଚିଲେ । ତାଙ୍କ ମନ ଖୁବ ଖୁସିଥାଏ । ଯେଉଁ ଲୋକ ତାଙ୍କ ଜମି କିଣିବ ବୋଲି କହିଥିଲା ତା ସଙ୍ଗରେ ତାଙ୍କର ଦରଦାମ ସବୁ ପଟି ଯାଇଥାଏ । ତେଣୁ ଏଣିକି ଆଉ ତାଙ୍କ କାଉଣ୍ଟେସଙ୍କୁ ଛାଡ଼ି ମସ୍କୋରେ ଅଟକି ରହିବାକୁ କୌଣସି କାରଣ ନଥିଲା । ସେ ତାଙ୍କ କାଉଣ୍ଟେସଙ୍କୁ ଛାଡ଼ି ଆସି ଝୁରି ହେଉଥାନ୍ତି । ମେରିଆ ମିସେସ୍ୱଗ୍ନ ତାଙ୍କୁ ଆସି ଦେଖାକରି କହିଲେ ଯେ ତା ପୂର୍ବଦିନ ନାତାଶାର ଦେହ ଭରି ଖରାପ ହେଲା, ସେମାନେ ଡାକ୍ତର ଡକାଇ ଆଣିଥିଲେ ।

ବର୍ତ୍ତମାନ ତା ଦେହ ଟିକିଏ ଭଲ ଅଛି । ସେଦିନ ସକାଳେ ନାତାଶା ଆଉ ତା ଘରୁ ବାହାରିଲା ନାହିଁ । ତା ଓଠକୁ ଓଠ ମାଡ଼ି ହୋଇ ରହିଥାଏ । ଓଠ ଶୁଖିଯାଇଥାଏ ତା ଆଖିରେ ପାଣି ନଥାଏ । ସେ ଝରକା ପାଖେ ବସି ରହିଥାଏ । ତା ଆଖିରେ ସତେକ ପଲକ ପଡୁନଥାଏ । ସଡ଼କରେ ଯଦି କିଏ ସେ ଘର ଭିତରେ ପଶିଲା ତେବେ ସେ ରଞ୍ଜନ ବୁଲି ପଡ଼ି ଦେଖୁଥାଏ । କୁରାଗିନଠୁଁ କିଛି ଖବର ପାଇବ ବୋଲି ସେ ପ୍ରତୀକ୍ଷାରେ ରହିଥିଲା ପରି ଜଣା ଯାଇଥାଏ, ଭାବୁଥାଏ, ସେ ନିଜେ ଆସିବ କି ଚିଠି ଲେଖି ପଠାଇବ । ଯେତେବେଳେ କାଉଣ୍ଟସ ତା ପାଖକୁ ଗଲେ ପୁରୁଷ ଲୋକର ପାଦ ଶବ୍ଦ ଶୁଣି ସେ ଡରି ଡରି ପଛକୁ ଅନେଇ ଦେଖିଲା । ପୁଣି ତା ମୁହଁରେ ସେହି ନିଷ୍ପାପ ଭାବ ବରଂ ରାଗର ଠାଣି ଦେଖାଗଲା । ସେ ତାଙ୍କୁ ଭେଟିବା ପାଇଁ ଠିଆ ବି ହେଲା ନାହିଁ ।

କାଉଣ୍ଟସ ପଚାରିଲେ ' କ'ଣ ହେଲା ଲୋ ମୋ ମା ? ତୋ ଦେହ ଖରାପ ହୋଇଛି ?''

ନାତାଶା ମୁହୂର୍ତ୍ତେ ତୁନି ହୋଇ ରହିଲା ।

"ହଁ ମୋ ଦେହ ଭଲ ନାହିଁ ।" ସେ କହିଲା । କାଉଣ୍ଟେସ ଯେତେବେଳେ ପଚାରିଲେ କାହିଁକି ତା ମନ ଶୁଖି ଯାଇଛି କି ତାର ବାଗ୍‌ଦତ୍ତ ପ୍ରିନ୍‌ସ ଆନ୍ଦ୍ରେଙ୍କର ସମ୍ପର୍କରେ କ'ଣ ହୋଇଛି କି ବୋଲି ସେ କହିଲେ, କାହିଁ କିଛି ହୋଇନାହିଁ ଆଉ ତାଙ୍କୁ କହିଲେ ସେ ତା ପାଇଁ ବ୍ୟସ୍ତ ହୁଅନ୍ତୁ ନାହିଁ । ମେରିଆ ମିତ୍ରୋଫ୍‌ନ ଵ ନାତାଶା କଥାକୁ ସମର୍ଥନ କରି କହିଲେ ଯେ ନାହିଁ କିଛି ହୋଇ ନାହିଁ । କାଉଣ୍ଟେସ ଦେଖିଲେ ଯେ ତାଙ୍କ ଝିଅ ବେମାର ହେଇନ ପେଖେନା କରୁଛି । ତାଙ୍କ ଝିଅର ମୁହଁର ଉତ୍ତେଜନା ପୂରି ରହିଛି । ସୋନିଆ ଓ ମେରିଆ ମିତ୍ରୋଫ୍‌ନଙ୍କ ମୁହଁ ଚିନ୍ତିତ ପରି ଦିଶୁଛି । ସେ ପରିଷ୍କାର ଜାଣିପାରିଲା ଯେ ସେ ନଥିଲାବେଳେ କ'ଣ ଗୋଟାଏ ଘଟି ଯାଇଛି । କିନ୍ତୁ ତାଙ୍କ ପ୍ରିୟତମା ଝିଅର କାଳେ କିଛି ଗୋଟାଏ ସମ୍ମାନହାନକର କ'ଣ ଘଟିଥିବ ଏକଥା ଭାବିଲା ବେଳକୁ ତାଙ୍କୁ ଅତି ଭୟଙ୍କର ଲାଗିଲା, ଆଉ ତା ଛଡ଼ା ତାଙ୍କ ନିଜ ମନର ପ୍ରଫୁଲ ପ୍ରସନ୍ନତାକୁ ଅତୁଟ ରଖିବାକୁ ସେ ଭାରି ଭଲ ପାଉଥିଲେ, ତେଣୁ ଏ ବିଷୟରେ ସେ ଆଉ କିଛି ପଚାରି ପଚାରି କଲେ ନାହିଁ । ଆଉ ସେ ତାଙ୍କ ଆପଣା ମନକୁ ବୁଝାଇ ଆଶ୍ୱାସ ଦେଲେ ଯେ ସେମିତି କିଛି ଗୋଟାଏ ବିଘଟନ ଘଟିନାହିଁ । ତାଙ୍କ ମନରେ ଏତକି ଦୁଃଖ ହେଲା ଯେ ତାଙ୍କ ଝିଅର ଦେହ ଖରାପ ହେବାରୁ ଗାଁକୁ ଫେରିବାଟା ଆଉ ଟିକିଏ ଡେରି ହୋଇଯିବ ।

ଯେଉଁଦିନୁ ପିଏରେର ସ୍ତ୍ରୀ ଆସି ମସ୍କୋରେ ପହଞ୍ଚିଲା ସେଦିନୁ ପିଏରେର ମନ ହେଲାଣି ସେ ଆଉ କୁଆଡେ ଚାଲିଯିବ । ଅନ୍ତତଃ ତା ସ୍ତ୍ରୀ ପାଖରେ ଯେମିତି ସେ ନ ରହନ୍ତା । ରୋସ୍ତଭ ପରିବାର ମସ୍କୋରେ ଆସି ପହଞ୍ଚିବାର ପଛେ ପଛେ ନାତାଶା ତା ମନ ଉପରେ ଯେଉଁ ପ୍ରଭାବ ପକାଇଲା ସେଥିରେ ସେ ଶୀଘ୍ର ତା ଉଦ୍ଦେଶ୍ୟକୁ କାର୍ଯ୍ୟରେ ପରିଣତ କରିବାକୁ ତାର ମନ ହେଲା ।

ପିଏରେ ଯେମିତି ମସ୍କୋକୁ ଫେରି ଆସିଲା ସେମିତି ମେରିଆ ମିତ୍ରୋଫ୍‌ନଙ୍କ ପାଖରୁ ଖଣ୍ଡିଏ ଚିଠି ପାଇଲା । ସେ ଚିଠିରେ ଲେଖିଥିଲେ ଯେ ପ୍ରିନ୍‌ସ ଆନ୍ଦ୍ରେ ବଲକନ୍‌ସ୍କି ଓ ତାଙ୍କର ବାଗଦତ୍ତା ବିଷୟରେ ତା

ସଙ୍ଗରେ ତାଙ୍କର ଘର ଜରୁରୀ କଥା ଅଛି ତେଣୁ ସେ ତାଙ୍କ ପାଖକୁ ଯେମିତି ଆସିବ । ତାଙ୍କୁ ଲାଗିଲା ଯେ ଜଣେ ବଡ଼ ହେଲା ଲୋକ ତାର ବାଗଦତ୍ତା ପ୍ରତି ଯେପରି ମନୋଭାବ ରଖିବାର କଥା ତାର ମନରେ ନାତାଶା ପ୍ରତି ତା ଅପେକ୍ଷା ଅଧିକ ଆସକ୍ତି ଜନ୍ମିଛି ଆଉ ଭାଗ୍ୟ ଯେପରିକି ସବୁବେଳେ ତାକୁ ନାତାଶା ପାଖକୁ ଟାଣିନେଉଛି ।

ମେରିଆ ମିତ୍ରୋଭନାଙ୍କ ପାଖକୁ ଯିବ ବୋଲି ପୋଷାକ ପିନ୍ଧୁ ପିନ୍ଧୁ ସେ ଭାବିଲା "କ'ଣ ଫେର୍ ହେଲା ? ମୋ ସଙ୍ଗରେ ସେମାନଙ୍କର କି କାମ ଅଛି ? ପ୍ରିନ୍ସ ଆନ୍ଦ୍ରେ ଯଦି ଟିକିଏ ଚଞ୍ଚଳ ଘରକୁ ଲେଉଟି ତାଙ୍କୁ ବାହା ହୋଇ ପଡନ୍ତେ ଭଲ ।" ପିଏରେ ତାଙ୍କ ଘରକୁ ଯାଉ ଯାଉ ଏପରି ଭାବୁଥାଏ ।

"କି ପିଏରେ ! କେବଠୁ ଆସିଲଣି ?" ଗୋଟାଏ ଚିହ୍ନାପାଟିରେ କିଏ ତାକୁ ଡାକିଲା । ପିଏରେ ମୁଣ୍ଡ ଟେକିଲେ । ଦେଖିଲେ ଆନାଟୋଲ୍ ଯେ ସବୁବେଳେ ତା ପାଖରେ ଥାଏ ସେଇ ଦୋଲହଭ ଏ ଦୁହେଁ ଗୋଟାଏ ସ୍ଲେଜ ଗାଡ଼ିରେ ବସି ଚାଲିଯାଉଛନ୍ତି । ଗାଡ଼ିରେ ଦୁଇଟା ସୁନ୍ଦର ଘୋଡ଼ା ଲାଗିଛନ୍ତି, ସେମାନେ ଧାଇଁଛନ୍ତି ଯେ ସ୍ଲେଜରେ ସାମ୍ନାପଟେ ତାଙ୍କ ଖୁରାମାଡ଼ରୁ ଭୂଇଁରୁ ଉଠୁଥିବା ବରଫ ଗୁଣ୍ଡା ଉଡୁଛି । ଫିଟ୍‌ଫାଟ୍ ସାମରିକ ଲୋକେ ଯେଉଁ ଠାଣିରେ ବସିଥାନ୍ତି ଆନାଟୋଲ୍ ସେଇ ଠାଣିରେ ବସି ରହିଛି । ସେ ଏକ ଜଣା ଶୁଣା ପ୍ରସିଦ୍ଧ ଠାଣି ତା ମୁହଁରେ ତଳ ପାଖଟା ଓଭର ରୁମର କଲମ ଭିତରେ ଲୁଚି ଯାଇଛି । ତା ମୁଣ୍ଡଟା ଟିକିଏ ଆଗକୁ ଢଳି ରହିଛି । ତା ମୁହଁ ସତେଜ ଦିଶୁଥାଏ ଗୋଲାପ ଫୁଲର ରଙ୍ଗ ପରି ତା ମୁହଁର ବର୍ଣ୍ଣ ଦିଶୁଥାଏ । ତା ଟୋପି ଗୋଟାଏ କଡ଼କୁ ଢଳିଥାଏ, ସେଥିରେ ଧଳା ପକ୍ଷୀଟିଏ ମରହୋଇଥାଏ । ତାର କୁଞ୍ଚୁ କୁଞ୍ଚିଆ ପୋମେଡ଼ ବୋଳା ବାଳ ଦିଶୁଥାଏ । ବାଳ ଉପରେ ସରୁ ସରୁ ବରଫ ଗୁଣ୍ଡା ବସି ହୋଇଥାଏ ।

ପିଏରେ ଭାବିଲା "ବାସ୍ତବିକ, ୟାକୁହିଁ କହିବ ପ୍ରକୃତ ଦାର୍ଶନିକ କେବଳ ତା ଏଇ ମୁହୂର୍ତ୍ତରେ ଦେହ ସୁଖ ଛଡ଼ା ଆଉ ତାଠୁଁ ଦୂରକୁ

ସେ ଦେଖି ନାହାଁ । ତା ମନରେ ଚିନ୍ତା କି ଦୁଃଖ କଷ୍ଟ ଲାଗିପାରୁ ନାହିଁ । ତେଣୁ ତାକୁ ଯେତେବେଳେ ଦେଖିବ ସେ ସବୁବେଳେ ପ୍ରଫୁଲ୍ଲ ଅଛି ସନ୍ତୁଷ୍ଟ ଅଛି, ପ୍ରସନ୍ନ ଅଛି । ପିଏରେ ହିଂସାରେ ଭାବିଲା "ତା ଭଳିଆ ମୁଁ ଯଦି ହୋଇ ପାରନ୍ତି ସେଥିପାଇଁ କ'ଣ ମୁଁ ନ ଦିଅନ୍ତି ?"

ସେ ମେରିଆ ମିତ୍ରୋଫାନୋଭ୍ନାଙ୍କ ଘର ଭିତରେ ପଶି ତାଙ୍କୁ ପଚାରିଲା "କ'ଣ ହୋଇଛି ?"

ମେରିଆ ମିତ୍ରୋଫାନୋଭ୍ନା କହିଲେ "କହିବା ଯେଉଁ କାଣ୍ଡକାରଖାନା ! ଏ ସଂସାରରେ ମୁଁ ଆସି ଅଠାବନ ବର୍ଷ ବିତେଇଲଣି ମୁଁ କେବେ ଏମିତିଆ ଅମର୍ଯ୍ୟାଦା କଥା ଦେଖିନାହିଁ ।" ସେ ଆଗ ପିଏରେକୁ ରଣ ନିୟମ ପକାଇ ତାଠୁଁ ପ୍ରତିଶ୍ରୁତି ନେଇଗଲେ ଯେ ସେ ତାକୁ ଯାହା କହିବେ ସେ କାହାରି ଆଗରେ ସେ କଥା କହିବ ନାହିଁ । ତାପରେ ସେ ତାକୁ କହିଲେ ଯେ ତା ବାପ ମା ଜାଣନ୍ତି ନାହିଁ । ଏଣେ ନାତାଶା ପ୍ରିନ୍ସ ଆନ୍ଦ୍ରେଙ୍କ ସଙ୍ଗରେ ତାର ବିବାହ ସମ୍ବନ୍ଧ ଭାଙ୍ଗିଦେଇ ବସିଛି, ତାର କାରଣ ଆନାତୋଲ କୁରାଗିନ୍ ଯାହା ସଙ୍ଗରେ ପିଏରେର ଭାରିଯା ତାକୁ ନେଇ ଏକାଠି କରାଇଥିଲା, ପୁଣି ତା ସଙ୍ଗରେ ଲୁଚି କରି ବାହା ହୋଇ ପଡ଼ିବ ବୋଲି ନାତାଶା କି ତା ବାପ ଘରେ ଥିବା ସମୟରେ ତା ସଙ୍ଗରେ ପଳେଇବାକୁ ବସିଥିଲା ।

ମେରିଆ ମିତ୍ରୋଭ୍ନା ଯାହା କହିଯାଉ ଥାନ୍ତି ପିଏରେ କାନ୍ଧକୁ ଟେକିକୁ ପାରିଦେଇ ପାଟି ଆଁ କରି ସେସବୁ ଶୁଣିଯାଉଥାଏ । ଆପଣା କାନକୁ ବିଶ୍ୱାସ କରିପାରୁନଥାଏ, ପିଏର ଆଦୌ ବୁଝିପାରୁନଥାଏ କି କଳ୍ପନା ସୁଦ୍ଧା କରିପାରୁନଥାଏ ଯେ ସେଇ ନାତାଶା ରୋସ୍ତଭ୍, ଯେ ପ୍ରିନସ୍ ଆନ୍ଦ୍ରେଙ୍କର ବାଗଦତ୍ତା, ଯାହାକୁ ସେ ଜୀବନ ପ୍ରାଣ ଦେଇ ଭଲ ପାଆନ୍ତି । ଏପର୍ଯ୍ୟନ୍ତ ଯେ ଏଡ଼େ ଚମତ୍କାର ପିଲାଟିଏ ହୋଇଥିଲା ! ସେ ପ୍ରିନ୍ସ ବଲକନସ୍କିଙ୍କୁ ଛାଡ଼ିଦେବ ଅଥଚ ସେ ବଦମାସ ଆନାତୋଲ ଟାକୁ ପସନ୍ଦ କରିବ । ଏଣେ ଆନାତୋଲଟା ଗୋଟାଏ ବିବାହିତ ଲୋକ (ପିଏରେ ତାର ଗୁପ୍ତ ବିବାହ କଥା ଜାଣି ଥିଲା) ଆଉ ଆନାତୋଲ ପ୍ରତି ତାର ଏତେ ପ୍ରେମ ଉପୁଜି ପଡ଼ିବ ! ଯେ ସେ ତା ସଙ୍ଗରେ ଘରୁ

ପଳାଇବାକୁ ବ ରାଜ ହେବ । ନାତାଶାକୁ ସେ ପିଲାଦନୁ ଚହ୍ନିନଥିଲା । ତା ବଷୟରେ ତାର ଅନ୍ତର ଭିତରେ ଏକ ମଧୁର ସ୍ମୃତି ରହିଯାଇଥିଲା । ସେଇ ନାତାଶା ସଙ୍ଗେ ତାର ଏ ମାଚରା, ମୂର୍ଖତା ଆଉ ନଷ୍ଟୁରତାର ଧାରଣାକୁ ସେ ଏକାଠି ମିଳାଇ ପାରିଲା ନାହିଁ । ସେ ତାର ଭାରଜା କଥା ମନେ ପକେଇଲା । ସେ ମନେ ମନେ ଭାବିଲା, "ସେ ଗୁଡ଼ା ସମସ୍ତେ ଗୋଟିଏ କାଠର ।" ତଥାପି ପ୍ରିନସ୍ ଆନ୍ଦ୍ରେଙ୍କ ପାଇଁ ଆଉ ତାଙ୍କ ମର୍ଯ୍ୟାଦା ପାଇଁ ତା ମନରେ ଯେଉଁ ଦୁଃଖ ହେଲା ସେଥିରେ ତାକୁ କାନ୍ଦ ମାଡ଼ୁଥାଏ । ସେ ଯେତିକ ତା ବନ୍ଧୁ ପ୍ରୀତି ସହାନୁଭୂତିରେ ଭାଙ୍ଗୁଥାଏ ସେତିକ ନାତାଶା ପ୍ରୀତି ତାର ସାନ ଧାରଣା ଆସୁଥାଏ ବରଂ ଘୃଣାହିଁ ଆସୁଥାଏ । ସେ ଯେଉଁ ନାତାଶା ଘର ପଥୁରିଆ ମର୍ଯ୍ୟଦାବନ୍ତ ଠାଣିରେ ଟିକିଏ ଆଗରୁ ତା ସୀମାବାଟେ ଗ୍ଭଲଗଲା । ସେ ଜାଣି ପାରିଲା ନାହିଁ ଯେ ନାତାଶାର ହୃଦୟ ଭିତରେ ନୈରାଶ୍ୟ, ଲଜ୍ଜା, ଅପମାନ ପୂରି ରହିଥାଏ କ ତାର ମୁହଁରେ ଯେଉଁ କଠିନ ପଣ କ ମର୍ଯ୍ୟଦାର ଠାଣି ଫୁଟି ଉଠିଥାଏ ସେଥିରେ ତାର କଛି ଦୋଷ ନଥିବା ଜଣାଉଥାଏ ।

ପିଏରେ ମେରିଆ ମିତ୍ୟେଭ୍ନା କଥା ଶୁଣି ପାଟିକର ଉଠିଲେ, "କ'ଣ ହେଲା, ବଭା ହେବ କେମିତି ? ସେତ ବଭା ହୋଇଛି । ଆଉତ ବଭା ହୋଇପାରିବ ନାହିଁ ।"

"ସେତିକ ନୁହେଁ । ଆହୁରି ଦୁଃଖର କଥା । ସେଣ୍ଟର ଭଲ ଟୋକାଟିଏ କନା । ଯାହାକୁ କହନ୍ତି ପୂରା ବଦ୍‌ମାଶ୍ । ନାତାଶା ତାକୁ ଅପେକ୍ଷା କରିଛି । ଆଜକ ଦ ଦନ ହେଲା ଅପେକ୍ଷା କରିଛି । ଆମେ ତାକୁ କହିଦେବା, ଅନ୍ତତଃ ସେ ଆସିବ ବୋଲି ସେ ଆଉ ଅପେକ୍ଷା ନ କରୁ ।"

ଆନାତୋଲର ବଭାଘର କାହାଣୀର ସମୁଦାୟ ବଷୟ ପିଏରେଠୁଁ ଶୁଣି ତା ବରୁଦ୍ଧରେ ତାଙ୍କର ରାଗକୁ ଗାଳ ବାଟେ ପ୍ରକାଶ କର ସେ କାହିଁକ ପିଏରେକୁ ଡକାଇ ଆଣିଛନ୍ତି ସେ କଥା ସେ ତାକୁ କହିଲେ । ସେ କହିଲେ ଯେ ବଲ୍‌କନସ୍କି ଯେ କୌଣସି ମୁହୂର୍ତ୍ତରେ ଆସି

ପଡ଼ନ୍ତିବେ । କାଳେ କାଉଣ୍ଟେସ କି ବଲ୍‌କନସ୍କି ଏକଥା ଶୁଣି ଡକାଇବେ ସେଥିପାଇଁ ତାଙ୍କୁ ଡର ମାଡ଼ୁଛି । ସେ କହିଲେ ଯେ ସେ ନିଜେଟି ସେମାନଙ୍କଠୁଁ ଏକଥା ଲୁଚାଇରଖିବାକୁ ମନ କରିଛନ୍ତି । କିନ୍ତୁ ଯଦି ସେମାନେ ଶୁଣି ପକେଇବେ ତେବେ କୁରଗିନ୍‌କୁ ତାଙ୍କ ସଙ୍ଗରେ ଦ୍ୱନ୍ଦ୍ୱଯୁଦ୍ଧ ଲଢ଼ିବାକୁ କହିପାରନ୍ତି । ତେଣୁ ସେ ପିଏରେକୁ କହିଲେ ଯେ ସେ ତାଙ୍କର ନା କହି ତାଙ୍କ ଶଳାକୁ କହିଦେବ ଯେ ସେ ମସ୍କୋ ଛାଡ଼ି ଚାଲିଯାଉ ଓ ତାଙ୍କ ଆଗକୁ ଆସିବାକୁ କେବେ ସାହସ ନକରୁ । ସେତେବେଳେ ପିଏର ବୁଝିଲେ ଯେ ବୁଢ଼ା କାଉଣ୍ଟ ନିକୋଲେ ଓ ପ୍ରିନ୍‌ସ ଆଣ୍ଡ୍ରେଙ୍କର କେଡ଼େ ବିପଦ ଅଛି । ସେ ତାଙ୍କୁ ଯେମିତି କହିଲେ ସେ ସେପରି କରିବ ବୋଲି ପ୍ରତିଜ୍ଞା କଲା । ତାଙ୍କର କ'ଣ ଇଚ୍ଛା ସେ କଥା ସେ ତାଙ୍କୁ ଅଳ୍ପ କଥାରେ ବୁଝାଇ ଦେଇ ବୈଠକ ଖାନା ଘରକୁ ଯିବାକୁ ତାଙ୍କୁ ଛାଡ଼ିଦେଲେ ।

କହିଲେ ହସିଆର । କାଉଣ୍ଟେସ ଯେମିତି ଏ କଥାର ବିନ୍ଦୁ ବିସର୍ଗ କିଛି ନଜାଣନ୍ତି । ତୁମେ ଯେମିତି କିଛି ଜାଣିନା ସେମିତି ଦେଖାଇ ହେବ । ମୁଁ ଯାଇ ନାତାଶାକୁ ବୁଝାଇ ଦେବି ଯେ କୁରଗିନ ଆସିବ ବୋଲି ତାର ପ୍ରତୀକ୍ଷା କରି ରହିବା ବୃଥା । ଇଚ୍ଛା ହେଉଛି ତ ରହିଥା ଏଠି, ଖାଇଦେଇ ଯିବ ।'' ସେ ପିଏରେର ପଛରୁ ଡାକି କହିଲେ ।

ପିଏରେ ବୁଢ଼ା କାଉଣ୍ଟଙ୍କୁ ଦେଖିଲା । ତାଙ୍କ ମନ ଉଦ୍‌ବିଗ୍ନ ଥିଲା । ମନରେ ସୁଖ ନଥିଲା । ସେଦିନ ସକାଳେ ନାତାଶା ତାଙ୍କ ଆଗରେ କହିଦେଇଥିଲା ଯେ ବଲକନସ୍କିଙ୍କ ସଙ୍ଗରେ ତାର ବାହାଘର ସମ୍ବନ୍ଧ ସେ ଭାଙ୍ଗିଦେଇଛି ।

ସେ ପିଏରେକୁ କହିଲେ "ମୁଁ ହଇରାଣରେ ପଡ଼ିଯାଇଛି ହୋ ବାବୁ, ଘରି ହଇରାଣରେ ପଡ଼ିଛି ସେ ଝିଅ ଗୋଡ଼ାଙ୍କୁ ନେଇ, ତାଙ୍କ ମା' ନାହାନ୍ତି ବୋଲି । ମୁଁ ଯେ କାହିଁକି ଏଠିକି ଆସିଲି ମୋତେ କି ବୁଦ୍ଧି ଦିଶିଲା ସେଥିପାଇଁ ମୁଁ ବର୍ତ୍ତମାନ ପସ୍ତେଇ ହେଉଛି । ମୁଁ ତମକୁ ସବୁ ଖୋଲିକରି କହିବି । ଶୁଣିଲଣି ସେ କାହାରିକି ପଚାରେ ନପଚାରି ବାହାଘର ସମ୍ବନ୍ଧଟାକୁ ଭାଙ୍ଗିଦେଇ ସାରିଲାଣି ? ସତ କହିବାକୁ ହେଲେ ମୁଁ ଯେ ସେ ବାହାଘର

ହେବବୋଲି ଭାରି ଖୁସି ହେଉଥିଲି ତା ନୁହେଁ । ଅବଶ୍ୟ ଲୋକ ହିସାବରେ ସେ ଜଣେ ଭାରି ଚମତ୍କାର ମଣିଷ, ତେବେ ବାପାର ଯେତେବେଳେ ଇଚ୍ଛା ନାହିଁ ସେଠି ଆଉ କି ସୁଖଟା ମିଳିଥାନ୍ତା ? ଆଉ ନାତାଶା ପାଇଁ ବି କୋଉ ପାତ୍ର ଅଭାବ ରହିବ ଯେ । ତେବେ କଥାଟା ଏତେକାଳ ହେଲି ଚାଲିଥିଲି କି ନା, ତା ଛଡ଼ା ତା ବାପାକୁ କହିନାହିଁ ବୋଉକୁ କହିନାହିଁ କାହାରିକି ଜଣାନାହିଁ ପୁଚ୍ଛା ନାହିଁ ଏଭଳି କାମଟା କରିଦେଲି । ଆଉ ବର୍ତ୍ତମାନ ସେ ବେମାର ହୋଇଛି । ଭଗବାନ ଜାଣନ୍ତି ତାର କ'ଣ ହୋଇଛିଯେ ଏଇଟା ଖରାପ ହେଲି । କାଉଣ୍ଟ, ମା ଠୁ ଝିଅକୁ ଦୂରେଇ ରଖିବାଟା ଖରାପ ହେଲି । କାଉଣ୍ଟ...ପିଏରେ ଦେଖିଲି ଯେ କାଉଣ୍ଟଙ୍କ ମନରେ ଭାରି ଦୁଃଖ, ତେଣୁ କଥା ଭାଷାଟାକୁ ସେ ଅନ୍ୟ ବିଷୟ ଆଡ଼କୁ ବୁଲାଇ ଦେବାକୁ ଚେଷ୍ଟାକଲେ, କିନ୍ତୁ କାଉଣ୍ଟ ପୁଣି ତାଙ୍କ ଦୁଃଖ କଥାକୁ ଲେଉଟି ଗଲେ ।

ସୋନିଆ ଉତ୍ତେଜିତ ମୁହଁ କରି ବୈଠକ ଖାନା ଘରକୁ ଆସି ପହଞ୍ଚିଲା ।

"ନାତାଶା ଦେହ ସେତେ ଭଲନାହିଁ । ସେ ତା ବଖରାରେ ଅଛି, ଆପଣଙ୍କୁ ଦେଖିବ ବୋଲି ଡାକୁଛି । ମେରିଆ ମିତ୍ରୋଭନା ବି ସେଇଠି ତା ପାଖରେ ଅଛନ୍ତି ସେ ବି କହି ପଠାଇଛନ୍ତି ଆପଣଙ୍କୁ ସେଠିକି ଯିବାକୁ ।"

"ହଁ ସତେତ । ତୁମେ ବଲ୍‌କନସ୍କିର ଏତେ ବଡ଼ ବନ୍ଧୁ । ବୋଧହୁଏ ସେ ତୁମ ହାତରେ ତାଙ୍କ ପାଖକୁ କ'ଣ ଖବର ପଠାଇବେ କି କ'ଣ" କାଉଣ୍ଟ କହିଲେ । କହିଲେ "ହା ଭଗବାନ ! ସବୁ କେଡ଼େ ସୁଖରେ ହେଇଥିଲି । ତାଙ୍କ ମୁଣ୍ଡରେ ବାଳ ପାଚିଲା ହୋଇଆସିଥିଲା । ସେ ସେ ବାଳକୁ ମୁଠାଇ ଧରି ସେ ଘରୁ ବାହାରି ଚାଲିଗଲେ ।

ମେରିଆ ମିତ୍ରୋଭନା ନାତାଶା ଆଗରେ କହିଥିଲେ ଯେ ଆନାତୋଲ ବିଭାହୋଇ ସାରିଛି କିନ୍ତୁ ନାତାଶା ତାଙ୍କ କଥାରେ ବିଶ୍ୱାସ କଲାନାହିଁ । ସେ ଜିଦ୍ ଧରିଥାଏ ଯେ ଏ କଥା ସତ କି ମିଛ ତା ପିଏରେ

କହୁ । ସୋନଆ ପିଣ୍ଡାବାଟେ ପିଏରେକୁ ନାତାଶା ଘର ଆଡ଼କୁ ବାଟ କଢ଼େଇ ନେଲାବେଳେ ତା ଆଗରେ ଏହିପରି କହିଲା ।

ନାତାଶା ମେଋଆ ମିହ୍ୟେଭ୍ନାଙ୍କ ପାଖରେ ବସିଥାଏ । ସେ ନରକଆ ଦିଶୁଥାଏ । ତାର ଭଙ୍ଗୀ ଦିଶୁଥାଏ କଠୋର, ଗମ୍ଭୀର । ପିଏରେ ଦୁଆର ମୁହଁରେ ଆସି ପହଞ୍ଚିଲା ମାତ୍ରେ ସେ ତାକୁ ଅନାଇଲା । ଜରୁଆ ରୋଗୀର ଆଖିପରି ତା ଆଖି ଉଦ୍ଧ ଉଦ୍ଧ ଦିଶୁଥାଏ । ସେ ଆଖିରେ ପ୍ରଶ୍ନ ଥାଏ । ସେ ପିଏରେକୁ ଦେଖି ମୁରୁକି ମୁରୁକି ହସିଲା ନାହିଁ କି ମୁଣ୍ଡ ହଲେଇଲା ନାହିଁ । ସେ ଖାଲି ତାଆଡ଼କୁ କଟମଟ କରି ଅନେଇଲା । ତାର ସେହି ଦୃଷ୍ଟି ଯେପରିକି ତାକୁ ସିଧା ସଳଖେ ପଚାରିଲା ଯେ, ଆନାତୋଲ ବିଷୟ ଯେମନ୍ତେ ତାର ବନ୍ଧୁ ନା ଅନ୍ୟ ସମସ୍ତେ ଯେଉଁଭଳି ସେହିପରି ସେବି ତାର ଶତ୍ରୁ । ସତେ କି ତା ଆଖିରେ ପିଏରେର ନିଜର ବୋଲି କେହି ନଥିଲା ।

ମେଋଆ ମିହ୍ୟେଭ୍ନା ନାତାଶାକୁ କହିଲେ "ସେ ସବୁ କଥା ଜାଣିଛନ୍ତି । ସେ କହନ୍ତୁ ମୁଁ ତତେ ଯାହା କହୁଛି ତା ସତ ନା ମିଛ ।"

ଶୀକାର ବେଳେ ଗୋଟାଏ ଜନ୍ତୁ ଦେହରେ ଗୁଳି ବାଜିଥିଲେ ସେ ଯେମିତି ଚାରିଆଡ଼ୁ ପାଖକୁ ପାଖ ଲାଗିଆସୁ ଥିବା କୁକୁର ଗୋଡ଼ାକୁ ଆଉ ଶୀକାରୀ ମାନଙ୍କ ଆଡ଼କୁ ଅନାଇଁ ରହେ ନାତାଶା ସେମିତି ଜଣ ଜଣ ଜଣ କରି ସେମାନଙ୍କୁ ଚାହିଁ ରହିଲା ।

ପିଏରେ ତଳକୁ ଦେଖିଲା । ନାତାଶା ପ୍ରତି ତାକୁ ଦୟା ଲାଗିଲା । ତାକୁ ଯେଉଁ କାର୍ଯ୍ୟଟା ବର୍ତ୍ତମାନ କରିବାକୁ ପଡ଼ିବ ସେଥିପାଇଁ ଆପଣା ଉପରେ ତାକୁ ଘୃଣା ଲାଗିଲା ।

ସେ କହିଲା "ନାତାଲିଆ ଇଲିନଚ୍ନା । ସେ କଥା ସତ କି ମିଛ ସେଥିରେ ଆପଣଙ୍କର କିଛି ଆଉ ଯାଏଆସେ ନାହିଁ କାରଣ..."

"ତାହାହେଲେ ସେ ବିଭା ହୋଇଛନ୍ତି ଏକଥା ସତ ନୁହେଁ ?"

"ହଁ । ସେ କଥା ସତ ।"

ନାତାଶା ପଚାରିଲା "ସେ କ'ଣ ବେଶି ଦିନ ବନ୍ଦୀ ହେଲେଣି ? ଆପଣ ଶପଥ କରି କହିବେ ?" ପିଏରେ ଶପଥ କରି ସେ କଥା କହିଲା ।

ନାତାଶା ତରତର କରି ସେ କଥା ପଚାରିଲା "ସେ କ'ଣ ଏବେବି ଏଠି ଅଛନ୍ତି ?"

'ହଁ ମୁଁ ତ ବର୍ତ୍ତମାନ ତାଙ୍କୁ ଦେଖିଆସିଲି ।"

ନାତାଶା ଆଉ କଥା କହିପାରୁନଥାଏ । ଜଣାଯାଉଥାଏ ସେ ହାତଠାରି ସେମାନଙ୍କୁ ଜଣାଇଦେଲା ସେମାନେ ତା ପାଖରୁ ଚାଲିଯାଆନ୍ତୁ, ସେ ଏକୁଟିଆ ରହିବ ।

ନାତାଶା ଘରୁ ବାହାରି ପିଏରେ ସଙ୍ଗେ ସଙ୍ଗେ ଚାଲିଗଲା ସେ ଆଉ ଖାଇବାକୁ ରହିଲା ନାହିଁ । ଆନାତୋଲ କୁରାଗିନ୍‌କୁ ଖୋଜି ଖୋଜିକା ସେ ସହର ଯାକ ଗାଡ଼ିରେ ବୁଲିଲା । ତା କଥା ମନେ ପଡ଼ିବା ମାତ୍ରେ ପିଏରେର ମୁଣ୍ଡକୁ ରକ୍ତ ଛୁଟି ଆସୁଥାଏ । ସେ ନିଶ୍ୱାସ ନେଇପାରୁନଥାଏ । ସେ ବରଫ ପାହାଡ଼ ମାନଙ୍କରେ ଖୋଜିଲା, କେଲୁଣୀ ମାନଙ୍କ ଘରେ ଖୋଜିଲା, ସେ ସୋମୋନନ ସାହିରେ ଖୋଜିଲା, ଆନାତୋଲ ମିଳିନଥାଏ । ପିଏରେ କ୍ଲବ୍ ଘରକୁ ଗଲା । କ୍ଲବଘରେ ଯେମିତି ଯାହାହୁଏ ସେହିପରି ଚାଲିଥାଏ । ଯେଉଁ ସଭ୍ୟମାନେ ଖାଇବେ ବୋଲି ଆସିଥିଲେ ସେମାନେ ଜଳ ଜଳ ହୋଇ ବସିଥାନ୍ତି । ସେମାନେ ପିଏରେଙ୍କ ସଙ୍ଗେ ସମ୍ଭାଷଣ କରି ସହରର ହାଲ୍‌ଚାଲ୍ କଥା ପକାଇଲେ । ପିଏରେର ସାଙ୍ଗ ଯେଉଁମାନେ ତାର ରୁଚି କ'ଣ ସେସବୁ କ୍ଲବ ଘରର ଦରୁଆନ ଜାଣିଥିଲା । ସେ ପିଏରେକୁ ପ୍ରଣାମ କରି କହିଲା ଯେ ଖାଇବା ଘରେ ତା ପାଇଁ ଗୋଟିଏ ଯାଗା ଖାଲି ଅଛି, ପ୍ରିନ୍‌ସ ମିହାଇଲ୍ ଜାହାରିଚ ଲାଇବ୍ରେରୀରେ ଅଛନ୍ତି, ଆଉ ପାଭେଲ୍ ଟିକୋପିଚ ଏପର୍ଯ୍ୟନ୍ତ ଆସି ପହଞ୍ଚି ନାହାଁନ୍ତି । ପାଗ କେମିତି ହୋଇଛି ସେ ବିଷୟରେ ସେମାନେ କଥା ଭାଷା ହେଉ ହେଉ ଜଣେ ତାଙ୍କୁ ପଚାରିଲା ଯେ, କୁରାଗିନ୍ ନାତାଲି ରେସ୍ତଭଙ୍କୁ ନେଇ ପଳାଇ ଯାଇଥିବା ଏକଥା ସେ ଶୁଣିଛି କି ନାହିଁ, ସହରଯାକ ସମସ୍ତେ ସେଇଆ କଥାଭାଷା ହେଉଛନ୍ତି, ସେ କଥା ସତ କି

ମିଛ । ପିଏତ୍ରେ ହସି ହସି କହିଲା ଯେ ସେସବୁ ବାଜେ କଥା, କାରଣ ସେ କହିଲା ସେ ତ ସେହିକ୍ଷଣି ରୋଷ୍ଟଭ୍ ପରିବାରଙ୍କ ଘରୁ ଆସୁଛି । ଆନାତୋଲ କାହିଁ ବୋଲି ସେ ଗୋଟି ଗୋଟି କରି ସମସ୍ତଙ୍କୁ ପଚାରିଲା । ଜଣେ କହିଲା ସେ ସେତେବେଳେ ଯାଏ ଆସିନାହିଁ । ଆଉ ଜଣେ କହିଲା ସେ ସେଠିକି ଖାଇବାକୁ ଆସିବ । ସେହି ୍ଏରେ ଯେତେବେଳେ ସେହି ଲୋକମାନଙ୍କୁ ଦେଖୁଥାଏ । ସେମାନେ କେମିତି ଶାନ୍ତ ଉଦାସୀ ହୋଇ ରହିଛନ୍ତି ଦେଖୁଥାଏ ଏବଂ ବଡ଼ ଆଶ୍ଚର୍ଯ୍ୟ ମଧ୍ୟ ଲାଗୁଥାଏ । ତା ଆତ୍ମା ଭିତରେ କଣ ହୋଇ ଯାଉଛି ସେମାନେ ଜାଣିପାରୁ ନଥାନ୍ତି। ସେ ଘରଯାକ ବୁଲୁଥାଏ ସମସ୍ତେ ଆସିଯିବା ଯାଏଁ ଅପେକ୍ଷା କଲା, ତଥାପି ଆନାତୋଲ ଆସିଲା ନାହିଁ । ତଥାପି ସେ କିଛି ନଖାଇ ସେ ଗାଡ଼ିରେ ବସି ଘରକୁ ଚାଲିଗଲା ।

ସେ ଦିନ ଆନାତୋଲ ଦୋଲୋହଭ୍ ସଙ୍ଗରେ ଖାଇ ବସିଥାଏ ଫନ୍ଦିଟା ତ ପସର ଫାଟିଗଲା, ପୁଣି କି ଉପାୟ କଲେ ସେ କାମ ସଫଳ ହେବ ସେ ବିଷୟରେ ସେ ଦୋଲୋହଭ୍ ସଙ୍ଗେ ପରାମର୍ଶ କରୁଥାଏ । ତାକୁ ଲାଗୁଥାଏ ଯେ ନାତାଶା ସଙ୍ଗରେ ଦେଖାକରିବା ନିହାତି ଦରକାର । ସଞ୍ଜବେଳେ ସେ ତା ଭଉଣୀ ପାଖକୁ ଗଲା । କି ଉପାୟ କଲେ ନାତାଶା ଓ ସେ ଏକାଠି ଭେଟା ଭେଟି ହୋଇ ପାରିବେ ସେହିକଥା ତା ଭଉଣୀ ସଙ୍ଗରେ ସେ ଆଲୋଚନା କରିବାକୁ ଗଲା । ପିଏରେ ବୃଥାଟାରେ ମସ୍କୋ ସହର ଯାକ ବୁଲି ବୁଲି ଘରକୁ ଲେଉଟିବା ପରେ ତାକୁ ତା ଗୁମାସ୍ତା କହିଲା ଯେ ପ୍ରିନ୍ସ ଆନାତୋଲ ଭାସିଲେଭିଚ୍ ଆସିଛନ୍ତି ଆଉ କାଉଣ୍ଟେସଙ୍କ ପାଖରେ ଅଛନ୍ତି । କାଉଣ୍ଟେସଙ୍କ ବୈଠକ ଖାନାରେ କୁଣିଆଁ ମାନେ ଭର୍ତ୍ତି ହୋଇଛନ୍ତି । ପିଏରେ ଫେରିଲା ପରେ ତା ସ୍ତ୍ରୀକୁ ଦେଖିନଥିଲା, କି ତା ସ୍ତ୍ରୀକୁ ସେ ଦେବ ପାଟି ଫିଟାଇଲା ନାହିଁ । ( ତା ସ୍ତ୍ରୀକୁ ଦେଖି ତାକୁ ଆଗରୁ ବେଶୀ ଘୃଣା ଲାଗୁଥାଏ । ) ସେ ବୈଠକ ଖାନା ଘର ଭିତରକୁ ପଶିଗଲା, ଆନତୋଲକୁ ଦେଖି ସିଧା ତା ପାଖକୁ ଚାଲିଗଲା ।

ସ୍ୱାମୀଙ୍କ ପାଖକୁ ଚାଲିଯାଇ କାଉଣ୍ଟେସ କହିଲେ "ହେଇତ ପିଏରେ" । ଆମ ଆନାତୋଲ ବିଚାରି ଯେଉଁ ଅବସ୍ଥାରେ ଅଛି...

"ତାପରେ ସେ ଯେମିତ ତାଙ୍କ ସ୍ୱାମୀଙ୍କ ହାବଭାବ ଦେଖିଲେ ସେମିତ ଭୁନ୍ନ ହୋଇଗଲେ । ସେ ଦେଖିଲେ ପିଏରେ ମୁଣ୍ଡକୁ ତଳକୁ ଭାଙ୍ଗି ଦେଇଛୁ । ତା ଆଖି ଜଳୁଛୁ । ଗ୍ଭଲି ଦମ୍ଭ ଦଗୁଛୁ ଯେପରିକ ମନରେ କଣ ପ୍ରତଜ୍ଞା ଥିବାରୁ ସେ ଏମିତ ଗ୍ଭଲୁଛୁ । ଏସବୁ ହାବଭାବରୁ ତାର ପ୍ରବଳ ରାଗ ଆଉ ଦେହବଳ ବାର ହୋଇ ପଡ଼ୁଛୁ । ଡ଼ୋଲୋହଭ୍ ସଙ୍ଗରେ ଦ୍ୱନ୍ଦ ଯୁଦ୍ଧ କରସାର ସେ ଯେଉଁ ଦନ ଫେରଥିଲା ସେଦନ ବ ତା ମୂର୍ତ୍ତି ଏମିତ ଦଶୁଥିଲ । ସେ ବଷୟରେ ତାର ଆଗରୁ ଅଭଜ୍ଞତା ଥିଲା ।

ପିଏରେ ତାକୁ କହଲା "ତୁମେ ଯେଉଁଠି ଥିବ ସେଠି ପାପ ଥିବ ସେଠି ବଦମାସି ଥିବ ।" ସେ ଫରସି ଭାଷାରେ କହଲା "ଆଇଲ୍ ଆନାତୋଲ୍ । ତମ ସାଙ୍ଗରେ ପଦେ କଥା ଅଛୁ ।" ଆନାତୋଲ୍ ବୁଲପଡ଼ି ତା ଭଉଣୀକୁ ଅନାଇଲା, ଆଜ୍ଞାକାରୀପର ଠିଆ ହୋଇପଡ଼ି ପିଏରେ ପଛେ ପଛେ ଯିବାକୁ ବାହାରଲା ।

ପିଏରେ ତାର ବାହାକୁ ଧର ପକାଇ ନଜ ଆଡ଼କୁ ଓଟାର ନେଇ ଘରୁ ପଦାକୁ ଗ୍ଭଲଗଲା ।

ଏଲେନ୍ ଫୁସଫୁସ କର କହଲା "ତୁମେ ଯଦ ମୋ ବୈଠକ-ଖାନା ଘରକୁ ମନକୁ ମନ ଗ୍ଭଲି ଆସିବ ତେବେ......" କନ୍ତୁ ପିଏରେ ତାକୁ କଛୁ ଜବାବ ନ ଦେଇ ଘରୁ ବାହାରି ଗ୍ଭଲଗଲା ।

ଆନାତୋଲ୍ ତା ପଛେ ପଛେ ଗଲା । ସେ ସବୁଦନେ ଯେମିତ ଦର୍ପ ଦେଖାଇ ଗ୍ଭଲେ ସେମିତ ଗ୍ଭଲଥାଏ । କନ୍ତୁ ତାକୁ ଡର ଲାଗୁଥାଏ, ଏକଥା ତା ମୁହଁ ଦେଖି ଜଣାପଡ଼ି ଯାଉଥାଏ । ପିଏରେ ତା ଘର ଭତରେ ପଶିଯାଇ କବାଟ ବନ୍ଦ କରଦେଲା । ଆନାତୋଲ୍ ଆଡ଼କୁ ନ ଦେଖି କହଲା "ତୁମେ କାଉଣ୍ଟେସ୍ ରୋସ୍ତଭଙ୍କୁ ଜବାବ୍ ଦେଇଥିଲ ତାଙ୍କୁ ବଭା ହେବ ବୋଲି ? ତୁମେ ତାଙ୍କୁ ନେଇ ପଳାଇ ଯିବାକୁ ଚେଷ୍ଟା କରଥିଲ ?"

ଆନାତୋଲ୍ ଫରାସୀ ଭାଷାରେ ଉତ୍ତର ଦେଲା (କଥାଭାଷାଟା ଫରାସୀ ଭାଷାରେ ହିଁ ଗ୍ଭଲଥାଏ) "ବୁଝିଲ ବାବୁ, ମତେ ସେଭଳି ତାନମାନ ଦେଖାଇ କଥା କହଲେ ମୁଁ ଉତ୍ତର ଦେବାକୁ ବାଧ ନୁହେଁ ବୋଲି ମତେ ଲାଗୁଛୁ ।"

ପିଏରେର ମୁହଁରେ ରକ୍ତ ନଥିଲା । ଏକଥା ଶୁଣି କ୍ରୋଧରେ ତାର ମୁହଁ ଲେଉଟକୋଉଟ ହୋଇଗଲା । ସେ ତାର ପ୍ରକାଣ୍ଡ ହାତ ପାପୁଲିରେ ଆନାତୋଲର ସାମରିକ ପୋଷାକର ବେକ ପାଖରୁ ଧରି ପକାଇଲା ଓ ଆନାତୋଲର ମୁହଁର ଭଙ୍ଗି ଉପରେ ଚିହ୍ନ ବହୁ ପରିମାଣରେ ଦେଖାଯିବା ପର୍ଯ୍ୟନ୍ତ ତାକୁ ଖାଲି ଏପାଖରୁ ସେପାଖ ଝାଙ୍କି ହଲାଇ ଦେଉଥାଏ ।

ପିଏରେ ଫେର କହିଲା "ମୁଁ କହୁଛି ତୁମ ସଙ୍ଗରେ ମୋର ପଦେକଥା ଅଛି, ଫେର......"

ଆନାତୋଲ ତା ପୋଷାକର ବେକ ପାଖରେ ବୋତାମ୍‌ଟାକୁ ଆଙ୍ଗୁଠିରେ ଆଉଁସୁଥାଏ, କନାରୁ ଖଣ୍ଡେ ଛିଣ୍ଡିଯାଇ ତା ସାଙ୍ଗରେ ବୋତାମଟା ବି ଛିଣ୍ଡି ଯାଇଥାଏ । କହିଲା "ଏଁ ? ସେ କଣ ? ସେତ ଭାରି ଖରାପ କଥା ।"

ତୁ ଗୋଟେ ବଦ୍‌ମାସ୍ ଗୋଟାଏ ସଇତାନ୍ । ଏଥିରେ ମୁଁ ତୋ ମୁଣ୍ଡକୁ ଛେଚି, ତୋ ମୁଣ୍ଡର ଦହି ବାହାର କରି ପକାଇଲେ ମୋ ମନ କେତେ ଖୁସି ହୁଅନ୍ତା ମୁଁ ତାହା କାହିଁକି ନ କରି ଅଟକି ଯାଉଛି କେଜାଣି ମୁଁ ବୁଝିପାରୁନାହିଁ । ହେଇ ଦେଖ—"ପିଏରେ ଫରାସୀ ଭାଷାରେ କଥା କହୁଥାଏ ବୋଲି ଏମିତି ଅସ୍ୱାଭାବିକ ଭାବେ ତରତର କରି କଥା କହି ପାରୁଥାଏ । ସେ ଗୋଟାଏ ଓଜନ କାଗଜ ଚପା ଉଠେଇ ନେଇ ତା ମୁଣ୍ଡକୁ ଉଞ୍ଚେଇଲା, ସତେ ଯେପରିକି ତା ମୁଣ୍ଡକୁ ଛେଚି ପକାଇବ, ପୁଣି ସେଇଟା ଯେଉଁଠି ଥିଲା ତାକୁ ସେଠି ଥୋଇଦେଇ କହିଲା "ତାକୁ ତୁ ବିଭାହେବୁ ବୋଲି କଥା ଦେଇଥିଲୁ ?"

ମୁଁ...ମୁଁ..ମୁଁ...ଭାବି ନଥିଲି...ମୁଁ କଥା ଦେଇନଥିଲି, କେବଳ...ଏଇ କାରଣରୁ ଯେ..."

ପିଏରେ ତାକୁ ଆଉ କୁହାଇ ଦେଲାନାହିଁ ।

"ତାର ଚିଠି କଣ ରଖିଛୁ ? ରଖିଛୁ ତା ଚିଠି ?" ପିଏରେ ପୁଣି କହିଲା । ଆନାତୋଲ ଆଉକୁ ସେ ମାଡ଼ିଆସିଲା । ଆନାତୋଲ୍ ତାକୁ ଅନାଇଦେଇ ସଙ୍ଗେ ସଙ୍ଗେ ପକେଟ ଭିତରେ ହାତ ପୂରାଇ ଗୋଟାଏ ନୋଟ୍‌ବୁକ୍ ବାହାରକଲା ।

ସେ ତାକୁ ଯେଉଁ ଶଠି ଦେଲା, ପିଏରେ ସେ ଶଠି ନେଲା । ତା ଆଗରେ ଗୋଟାଏ ଟେବୁଲ୍ ଥାଏ । ସେଇଟାକୁ ଠେଲିଦେଇ ପିଏରେ ଗୋଟାଏ ଖଟ ଉପରେ ନଥିକିନା ବସିପଡ଼ିଲା । ଆନାତୋଲିର ଆତଙ୍କମୟ ଭାବଭଙ୍ଗି ଦେଖି ପିଏରେ କହିଲା "ଡରନା", ମୁଁ ତୋତେ ମାରିବି ନାହିଁ । ମନକୁ ମନ ପାଠ ମୁଖସ୍ଥ କଲାପରି ପିଏରେ କହିଲା— "ଏକରେ ଶଠିତଙ୍କ" ଦୁଇରେ ଟିକେ ଚୁପ ହୋଇ ପୁଣି ଠିଆ ହୋଇପଡ଼ି ବୁଲି ବୁଲି ପିଏରେ କହିଲା "କାଲି ତମକୁ ମସ୍କୋରୁ ଚାଲିଯିବାକୁ ପଡ଼ିବ ।"

"କେମିତି ଯିବ ?"

ତା କଥାରେ କାନ ନଦେଇ ପିଏରେ କହିଲା "ଦ୍ୱିତୀୟରେ ତୁମରି ଆଉ ସେ ଯୁବତୀ କାଉଣ୍ଟେସ୍ ଭିତରେ ଯାହା ଯାହା ଘଟିଛି ସେ ବିଷୟରେ ତୁମେ ପଦେ କୁଆଡ଼େ ଖାଲି ପିଟେଇ ପାରିବ ନାହିଁ । ମୁଁ ଜାଣେ ଯେ, ତୁମେ ତାହା ପଦାରେ ନ କହିବ ବୋଲି ମୁଁ ବନ୍ଦ କରିପାରିବି ନାହିଁ । କିନ୍ତୁ ତୁମର ଯଦି କାଣ୍ଡିଆଏ ହେଲେ ବିବେକ ଥିବ......" ପିଏରେ ବହୁତ ବେଳ ବୁଲି ବୁଲି ସେ ଘରେ ବସିପଡ଼ିଲା । ଆନାତୋଲି ଟେବୁଲ୍ ପାଖରେ ବସିଥାଏ । ଭ୍ରୂକୁଟୀ କରୁଥାଏ । ଓଠକୁ ଦାନ୍ତରେ କାମୁଡ଼ୁଥାଏ । "ତୁମେ ବୁଝିବାକୁ ବାଧ୍ୟ ଯେ ତୁମ ମଉଜ୍ ଛଡ଼ା ଅନ୍ୟ ଲୋକଙ୍କର ବି ସୁଖ ଆନନ୍ଦ ରହିଛି ।" ଅଥଚ ଖାଲି ତୁମେ ଟିକିଏ ମଉଜ୍ କରିବ ବୋଲି ତୁମେ ଜଣଙ୍କର ସମୁଦାୟ ଜୀବନ ଛାରଖାର କରିଦେଉଛ । ମୋ ଭାରିଜା ଭଳି ମାଇକିନିଆ ପାଇଲେ ତୁମେ ମନଇଚ୍ଛା ଆମୋଦ କର । ସେମିତି ମାଇକିନିଆଙ୍କ ପାଖରେ ମଉଜ କରିବାକୁ ତୁମର ତ ଅଧିକାର ଅଛି । ତୁମର ତାଙ୍କ ପାଖରୁ କଣ ଦରକାର ସେମାନେ ତାହା ଜାଣନ୍ତି । ତୁମପରି ତାଙ୍କର ବି ପାପ ବିଷୟରେ ଅଭିଜ୍ଞତା ଅଛି । ତେଣୁ ତୁମେ ତାଙ୍କର ଅଧିକା କିଛି କରିପାରିବ ନାହିଁ । କିନ୍ତୁ ଗୋଟିଏ ବାଳିକାକୁ ବାହା ହେବ ବୋଲି କହିବା...ଠକାଠକିବା, ଫୁସୁଲେଇବା... ତୁମେ ନିଶ୍ଚୟ ଦେଖିପାରୁଥିବ ଯେ, ଗୋଟିଏ ବୁଢ଼ାକୁ କି ଗୋଟିଏ ଛୋଟ ପିଲାକୁ ଆକ୍ରମଣ କରିବା ଯେତିକି ଦଣ୍ଡନୀୟ କର୍ମ ଏ କାମ ସେତିକି ହୀନକର୍ମ... ।

ପିଏରେ ଅଟକିଯାଇ ଆନାତୋଲକୁ ଅନାଇଲା । ସେ ରାଗରେ ଚେପେଡ଼ ନ ଅନାଇଲା, ପର୍ଯ୍ୟନ୍ତ ପର ଅନାଇଲା ।

ପିଏରେ ତା ରାଗ ସମ୍ଭାଳି ନେବାରୁ ଆନାତୋଲର ସାହାସ ବଢ଼ିଲା । ସେ କହିଲା "ସେସବୁ କଥା ମତେ ଜଣାନାହିଁ କି ମୁଁ ଜାଣିବାକୁ ଚାହୁଁ ନାହିଁ । ସେ ପିଏରେକୁ ନ ଅନାଇ ଅନ୍ୟଆଡ଼େ ଅନାଇଲା । ତାର ତଳଓଠଟି ଥରିଉଠିଲା, କହିଲା "ତୁମେ ମତେ ଅପମାନିଆ କଥା କହୁଚ, ମୁଁ ଜାଣେ, ଏମିତି ସେମିତି କହୁଚ । ମୋର ସମ୍ମାନ ଅଛି । ମୁଁ କୌଣସି ଲୋକକୁ ମତେ ଏମିତି କଥା କହିବାକୁ ଦେବନାହିଁ ।"

ପିଏରେ ଆଶ୍ଚର୍ଯ୍ୟ ହୋଇ ତାକୁ ଅନାଇଲା, ସେ କଣ କହୁଛି ସେ ବୁଝିପାରିଲା ନାହିଁ ।

ଆନାତୋଲ୍ କହୁଥାଏ, "ଯଦିଚ ଏକଥା ଆଜି କେହି ଶୁଣି ନାହିଁ ତଥାପି ମୁଁ ଏହି କଥାମାନ ସହିବାକୁ ରାଜି ନୁହେଁ ।"

ପିଏରେ ବ୍ୟଙ୍ଗରେ କହିଲେ "ତାମାନେ ତୁମେ କଣ ଖୋଜୁଛ ଯେ ଏକଥା ପାଇଁ ମୋ ସଙ୍ଗରେ ଦ୍ୱନ୍ଦ୍ୱ ଲଢ଼ିବ ଇଜ୍ଜତ ପାଇଁ ନା କଣ ?"

"ସେ ଯାହାହେଉ ଏସବୁ କଥା ତୁମେ ଲେଉଟାଇ ନେଇପାର । ବୁଝିଲ, ଯଦି ତୁମେ କହୁଛ ମୁଁ ସେଇଆ କରିବ ବୋଲି ତୁମେ ଚାହୁଁଛ, ତେବେ ଏକଥାଗୁଡ଼ାକ ତୁମେ ପ୍ରତ୍ୟାହାର କରିନେବା ଦରକାର । ବୁଝିଲ ।"

ପିଏରେ କହିଲା "ମୁଁ ପ୍ରତ୍ୟାହାର କରିନେବି । କ୍ଷମା ମାଗୁଛି ।"

ତାର ଉପୁଡ଼ି ପଡ଼ୁଥିବା ବୋତାମ ଆଡ଼କୁ ପିଏରର ଦୃଷ୍ଟି ନପଡ଼ି ରହିପାରିଲା ନାହିଁ । ସେ କହିଲା "ଆଜ ଏଇ ଟଙ୍କା ନିଅ, ତୁମର ଯିବାପାଇଁ ଟଙ୍କା ଦରକାର ପଡ଼ପାରେ ।"

ଆନାତୋଲ ମୁରୁକି ମୁରୁକି ହସିଲା ।

ସେଇ ମାଚ ଖୁସାମତିଆ ହସକୁ ତା ସ୍ତ୍ରୀଠି ବି ଦେଖି ଭଲକରି ଚିହ୍ନି ଯାଇଥିଲା । ଆନାଟୋଲର ଅବିକଳ ସେହି ହସ ଦେଖି ତାର ବ୍ରହ୍ମ ଜଳି ଉଠିଲା । ସେ ଚିତ୍କାର କଲା "ଆରେ ତୁମେ ସଇତାନ ନିଷ୍ଠୁର ଗୋଷ୍ଠି ।" ଆଉ ସେ ଘରୁ ବାହାରି ଚାଲିଗଲା ।

ତହିଁ ଆରଦିନ ଆନାଟୋଲ ମସ୍କୋ ଛାଡ଼ି ପିଟର୍ସବର୍ଗ ଗଲା ।

ପିଏରେ ଗାଡ଼ିରେ ଚଢ଼ି ମେରିଆ ମିତ୍ରୋଏଭ୍ନାଙ୍କ ଘରକୁ ଗଲା । ତାଙ୍କ ଆଦେଶାନୁସାରେ କୁରାଗିନ୍‌କୁ ମସ୍କୋରୁ ତଡ଼ି ଦିଆଯାଇଛି । ସେହି କଥା ସେ ତାଙ୍କୁ କହିବାକୁ ଗଲା । ଘରଯାକ ସମସ୍ତେ ଭାରି ଉଦବିଗ୍ନ ଭାରି ଚୁନିଆ ଦିଶୁଥାନ୍ତି । ନାତାଶା ଭାରି ବେମାର । ମେରିଆ ମିତ୍ରୋଏଭ୍ନା ଠୁ ଘଟନା ଲୁଚାଇ ରଖିବାକୁ ପଡ଼ିବ ।

ପ୍ରିନସ ଆନ୍ଦ୍ରେ କେବେ ଫେରିବେ ସେହିଦିନଟା କଥା ସେ ଡରି ଡରି ଭାବୁଥାଏ ଆଉ ସବୁଦିନେ ତା ବାପାଙ୍କ ପାଖକୁ ଗାଡ଼ିରେ ଚଢ଼ି ପ୍ରିନ୍‌ସ ଆନ୍ଦ୍ରେ କେବେ ଆସୁଛନ୍ତି, ଖବର ଆସିଛି କି ନା ବୁଝିଆସେ ।

ସହରରେ କ'ଣ ସବୁ ହପ୍‌ପା ଉଠିଛି ସେକଥା ମାଦାମୋଆଜେଲ ବୁରିମାଙ୍କଠାରୁ ପ୍ରିନ୍‌ସ ବକୋଲେ ଆନ୍ଦ୍ରେଇର୍ ଖବର ପାଆନ୍ତି । ଆଉ ପ୍ରିନ୍‌ସେସ୍ ମେରିଆଙ୍କ ପାଖକୁ ଯେଉଁ ଚିଠି ଲେଖି ନାତାଶା ତାର ବିବାହ ପ୍ରସ୍ତାବ ଭାଙ୍ଗି ଦେଇଥିଲା ସେ ଚିଠିଟା ସେ ବି ପଢ଼ିଥିଲେ । ସେ ସାଧାରଣତଃ ଯେତିକି ସତେଜ ଥାଆନ୍ତି ତାଠୁଁ ଅଧିକ ସତେଜ ଥିଲେ ଓ କେବେ ତାଙ୍କ ପୁଅ ଫେରିବେ ବୋଲି ସେ ଭାରି ଅଧୀର ହୋଇ-ଯାଉଥାନ୍ତି ।

ଆନାତୋଲ ଚାଲିଯିବାର କେତେଦିନ ଉତ୍ତାରୁ ପିଏରେ ପ୍ରିନ୍‌ସ ଆନ୍ଦ୍ରେଙ୍କ ପାଖରୁ ଚିଠି ପାଇଲା ଯେ ସେ ଆସିଛନ୍ତି ଆଉ ତାକୁ ଯିବାକୁ କହିଛନ୍ତି ।

ପ୍ରିନ୍‌ସ ଆନ୍ଦ୍ରେ ଯେମିତି ଆସି ମସ୍କୋରେ ପହଞ୍ଚିଛନ୍ତି ଠିକ୍ ସେହି ମୁହୂର୍ତ୍ତରେ ନାତାଶା ପ୍ରିନ୍‌ସେସ୍ ମେରିଆଙ୍କ ପାଖକୁ ଲେଖିଥିବା ଚିଠିକୁ

ତାଙ୍କ ବାପା ଆଣି ତାଙ୍କୁ ବଢ଼ାଇଦେଲେ । ସେ ଚିଠିରେ ସେ ତା ବିବାହ ଭାଙ୍ଗିଯିବା କଥା ଲେଖିଥିଲା । (ଚିଠିଟା ପ୍ରିନ୍‌ସେସ୍ ମେରିଆଙ୍କ ପାଖରୁ ମାତାମୋଆ ଜେଲ୍ ବରୁମ୍ନା ଗ୍ଲେରେଇ ଆଣି ତାଙ୍କ ବାପାଙ୍କୁ ଦେଇଥାନ୍ତି) ନାତାଶା କେମିତି ଘରୁ ପଳାଇବାକୁ ବସିଥିଲା ସେସବୁ କାହାଣୀ ସେ ନିଜେ ତାଙ୍କ ବାପାଙ୍କ ତୁଣ୍ଡରୁ ଶୁଣିଲେ, ସେ କାହାଣୀରେ ଆହୁରି ଲଗାଇ ଯୋଡ଼ି ତାକୁ ଅତିରଞ୍ଜିତ କରାହୋଇଥାଏ ।

ପ୍ରିନ୍‌ସ ଆନ୍ଦ୍ରେ ସଞ୍ଜରେ ଆସି ପହଞ୍ଚିଥାନ୍ତି । ତହିଁ ଆରଦିନ ସକାଳେ ପିଏରେ ଆସିଲା ତାଙ୍କୁ ଦେଖିବାକୁ । ପ୍ରିନ୍‌ସ ଆନ୍ଦ୍ରେ ପିଏରେ ହାତ ଧରିପକାଇଲେ । ରହିବାପାଇଁ ଯେଉଁ ଘରଟି ତାଙ୍କୁ ଦିଆ ହୋଇଥିଲା ସେ ପିଏରେକୁ ଡାକି ନେଇଗଲେ । ସେ ଘରେ ଗୋଟାଏ ଖଟ ପଡ଼ିଥାଏ । ସେଇଟାକୁ ଭାଙ୍ଗିଭୁଙ୍ଗି ହେବ । ଆଉ ସେ ଘରେ ଟ୍ରଙ୍କ୍ ବାକ୍‌ସମାନ ଖୋଲାହୋଇ ପଡ଼ିଥାଏ । ପ୍ରିନ୍‌ସ ଆନ୍ଦ୍ରେ ସେଥିରୁ ଗୋଟାକ ପାଖକୁ ଯାଇ ତା ଭିତରୁ ଗୋଟିଏ ପେଡ଼ି କାଢ଼ିଲେ । ସେ ପେଡ଼ି ଭିତରୁ ସେ ପୁଳାଏ ଚିଠି ବାହାର କଲେ । ସେ ଏସବୁ ତୁନି ତାନି ହୋଇ ଭାରି ତରତର କରି କରୁଥାନ୍ତି । ସେ ପୁଣି ଠିଆ ହୋଇପଡ଼ି ଗଳା ଖଙ୍କାରିଲେ । ତାଙ୍କ ମୁହଁରେ ଭ୍ରୁକୁଟି ଦିଶୁଥାଏ । ଓଠ ଦିଟା ଓଦା ଦିଶୁଥାଏ ।

"ମୁଁ ଯଦି ତମକୁ ହଇରାଣ କରୁଛି । ମତେ କ୍ଷମା କରିବ···" ସେ କହିଲା । ସେ ଦେଖିପାରିଲା ଯେ ପ୍ରିନ୍‌ସ ଆନ୍ଦ୍ରେ ନାତାଶା କଥା କହିବାକୁ ଯାଉଛନ୍ତି । ତାର ଓସାର ମୁହଁରେ ଦୟା ଓ ସହାନୁଭୂତି ଫୁଟି ଉଠିଲା । ତା ମୁହଁରେ ଏ ଭଙ୍ଗୀ ଦେଖି ପ୍ରିନ୍‌ସ ଆନ୍ଦ୍ରେ ଅତି ବିରକ୍ତ ହୋଇ ଉଠିଲେ ।

ଦୃଢ଼ ପ୍ରତିଭନ୍ନ ହୋଇ ପରିଷ୍କାର ସ୍ୱରରେ ଅପ୍ରିୟ ଭାବରେ ସେ କହିଲେ, "କାଉଣ୍ଟେସ୍ ରୋସ୍ତଭ୍ ମତେ ବିଭାହେବେ ନାହିଁ ବୋଲି ମନା କରି ଖଣ୍ଡେ ଚିଠି ଲେଖିଥିଲେ, ମୁଁ ତା ପାଇଛି । ଅଉ ମୁଁ ଜନରବମାନ ଶୁଣିଲି ଯେ ତୁମର ଶଳା କୁଆଡ଼େ ତାଙ୍କୁ ବିଭା ହେବାକୁ ପ୍ରସ୍ତାବ କରିଛନ୍ତି, ଯେ ଏମିତିଆ ସବୁ କ'ଣ । ଏ କ'ଣ ସତକଥା ?"

ପିଏରେ କହିବାକୁ ଆରମ୍ଭ କରଦେଇ କହିଲା "ସତ ମିଛ ଭଗବାନ୍ ।" ପ୍ରିନ୍‌ସ ଆନ୍ଦ୍ରେ ତା କଥା ମଝିରେ କଥା କହିଲେ "ହେଇ ଏଇଥିରେ ତାଙ୍କର ଛବି ଅଛି, ଚିଠିଯାକ ଅଛି ।" ସେ ବଣ୍ଡଲ୍‌ଟା ଟେବୁଲରୁ ନେଇ ପିଏରେକୁ ଦେଲେ ।

"ସେଇଟା କାଉଣ୍ଟେସ୍‌ଙ୍କୁ ଟିକିଏ ଦେଇଦେବେ·····ଯଦି ସେ ଦେଖାଦେବେ ।"

ପିଏରେ କହିଲା "ସେ ଭାରି ବେମାର ।"

ପ୍ରିନ୍‌ସ ଆନ୍ଦ୍ରେ କହିଲେ "ତାହେଲେ ସେ ଏ ପର୍ଯ୍ୟନ୍ତ ଏଠି ଅଛନ୍ତି ? ସେ ଚଞ୍ଚଳ ପଚାରିଲେ" ଆଉ ପ୍ରିନ୍‌ସ କୁରଗିନ୍ କେଉଁଠି ?

"ସେତ ବହୁତ ଦିନୁଁ ଚାଲିଗଲେଣି । ଏ ମରିଯାଇଥାନ୍ତେ, ବଞ୍ଚିଗଲେ ।"

ପ୍ରିନ୍‌ସ ଆନ୍ଦ୍ରେ କହିଲେ "ସେ ବେମାର ଅଛନ୍ତି ଶୁଣି ମୁଁ ଅତ୍ୟନ୍ତ ଦୁଃଖିତ ହେଲି ।"

ତାଙ୍କ ବାପା ଯେପରି ହସନ୍ତି ସେହିପରି ସେ ଗୋଟାଏ ଅସ୍ନେହୀ କୁଟିଳ ଅପ୍ରୀତିକର ହସ ହସିଲେ ।

"ତାହେଲେ କ'ଣ ମ୍ସିୟୁ କୁରଗିନ୍ କାଉଣ୍ଟେସ୍ ରୋସ୍ତଭଙ୍କୁ ବିଭା ହେବାକୁ ଇଚ୍ଛା କଲେ ନାହିଁ ?"

ପିଏରେ କହିଲା "ସେ ତାଙ୍କୁ ବିଭା ହୋଇ ପାରନଥାନ୍ତା । ସେତ ଆଗରୁ ବିଭାହୋଇ ସାରିଛି ।"

ପ୍ରିନ୍‌ସ ଆନ୍ଦ୍ରେ ସେହି ଅପ୍ରୀତିକର ହସଟା ହସିଲେ, ହସଟା ତାଙ୍କ ବାପାଙ୍କ ହସ ମନେ ପକାଇ ଦେଉଥାଏ ।

"କେଉଁଠି ସେ ଅଛନ୍ତି ? ତମ ଶଳା ! ପଚାରି ପାରେକି ?" ପିଏରେ କହିଲା "ସେ ଗଲେ ପିଟର୍ସ·····ତେବେ ପ୍ରକୃତରେ, ମୁଁ ଜାଣିନାହିଁ ।"

ପ୍ରିନ୍‌ସ ଆନ୍ଦ୍ରେ କହିଲେ "ହଉ, ହେଥିରେ କ'ଣ ଅଛି ? ମୁଁ କହୁଛି ବୋଲି କାଉଣ୍ଟେସ୍‌ଙ୍କୁ କହିଦେବ ଯେ ସେ ଆଗେ ବି ସ୍ୱାଧୀନ ଥିଲେ ଏବେବି ସ୍ୱାଧୀନ ଅଛନ୍ତି । ଆଉ ମୁଁ ତାଙ୍କର ମଙ୍ଗଳ କାମନା କରୁଛି ।"

ପ୍ରିନ୍‌ସ ଆନ୍ଦ୍ରେଙ୍କ କଥାନୁସାରେ କାମ କରିବାଲାଗି ପିଏରେ ସେଦିନ ସଞ୍ଜରେ ରୋଷ୍ଟଭ୍ ପରିବାରଙ୍କ ଘରକୁ ଗଲା । ନାତାଶା ଶୋଇଥାଏ । ପିଏରେ ଚିଠିଟିକ ସୋନିଆକୁ ଦେଇଦେଇ ମେରିଆ ମିତ୍ରୋୟିଭ୍ନାଙ୍କ ପାଖକୁ ଗଲା । ଖବରଟା ପାଇ ପ୍ରିନ୍‌ସ ଆନ୍ଦ୍ରେ କେମିତି ହେଲେ ସେଇଆ ଜାଣିବାକୁ ମେରିଆ ମିତ୍ରୋୟିଭ୍ନାଙ୍କର କୌତୁହଳ ହେଉଥାଏ । ଦଶମିନଟ୍ ପରେ ସୋନିଆ ମେରିଆ ମିତ୍ରୋୟିଭ୍ନାଙ୍କ ବଖରାକୁ ଆସି କହିଲା ।

"ନାତାଶା ବାରମ୍ବାର କରି କହୁଛି କାଉଣ୍ଟ ପ୍ୟୋତର କିରିଲିଚ୍ ତା ସଙ୍ଗରେ ଦେଖାକରି ଯିବେ ।"

ମେରିଆ ମିତ୍ରୋୟିଭ୍ନା କହିଲେ "କଣ କହୁଚୁ, ତାଙ୍କୁ ସେ ଘରକୁ ଆମେ ନେଇକରି ଯିବା ବୋଲି ? ସେ ଘରେ ସବୁତ ଅଡୁଆ ହୋଇ ରହିଚି ।" ସୋନିଆ କହିଲା "ନାଇଁ, ସେ ପୋଷାକ ପିନ୍ଧି ବୈଠକଖାନାକୁ ଗଲାଣି ।"

ମେରିଆ ମିତ୍ରୋୟିଭ୍ନା ନାଚାର ହେବା ଭଙ୍ଗୀରେ କାନ୍ଧ ଥରେଇଲେ ପିଏରେକୁ କହିଲେ "କେବେ ସେ କାଉଣ୍ଟେସ୍ ଆସିବେ କେଜାଣି ? ମୁଁ ତ ଘୋଳ ହୋଇ ପଡ଼ିଲେଣି । ଆଉ ମୁଁ ପାରୁନାହିଁ । ଶୁଣ, ତାକୁ କିଛି କହିବ ନାହିଁ । ସେ ବିଚାରୀ ଏମିତି ବିକଳ ଦିଶୁଛି, ତାକୁ ଗାଳି ଦେବାକୁ କାହାର ଏମିତି ହୃଦୟ ହେବ ।" ବୈଠକଖାନା ଘରର ମଝିରେ ନାତାଶା ଠିଆ ହୋଇଥାଏ । ତା ମୁହଁ ଆହୁରି ସରୁ ହେଲାପରି ଦିଶୁଥାଏ । ନିରକ୍ତିଆ ଦିଶୁଥାଏ । ମୁହଁରେ ଏକପ୍ରକାର ଭଙ୍ଗୀ (ପରିବର୍ତ୍ତନ ନାହିଁ, କିନ୍ତୁ ପିଏରେ ଯାହା ଭାବିଥିଲା ଯେ ସେ ଲାଜରେ ସଢ଼ୁଥିବ ସେମିତି ମୋଟେ ନୁହେଁ । ) ପିଏରେ ଦୁଆର ମୁହଁରେ ଦେଖା ପଡ଼ିବା ମାତ୍ରେ

ସେ ହଠାତ୍ ଚାଲିଲାପରି ହେଲା, ଜଣାଯାଉଥାଏ ଯେ ତା ପାଖକୁ ଚାଲିଯିବ ନା ପିଏରେ ଆସିବାଯାକେ ସେଇଠି ଠିଆ ହୋଇଥିବ ସେ ତାହା ନିଷ୍ପତ୍ତି କରି ପାରୁନାହିଁ ।

ପିଏରେ ତରତର ହୋଇ ତା ପାଖକୁ ଗଲା । ସେ ଭାବିଥିଲା ସବୁଦିନ ପରି ଏବେବି ତା ଆଡ଼କୁ ହାତଟି ବଢ଼ାଇ ଦେବ, କିନ୍ତୁ ନାତାଶା ତା ପାଖକୁ ଆସି ଅଟକିଗଲା । ଘରି ଘରି ନିଃଶ୍ୱାସ ଛାଡ଼ୁଥାଏ, ଠିଆ ହୋଇଯାଇ ହାତକୁ ତଳକୁ ଝୁଲାଇ ଦେଲା । ଗୀତ ବୋଲିବା ପାଇଁ ସେ ଘର ମଝିରେ ସେ ଯେମିତି ଯେଉଁ ଠାଣିରେ ଠିଆ ହୁଏ, ସେମିତି ନାତାଶା ଠିଆ ହୋଇଥାଏ, କିନ୍ତୁ ତାର ଭଙ୍ଗୀ ସମ୍ପୂର୍ଣ୍ଣ ଅଲଗା ।

ଟାଉଟାଉ କରି ସେ କହିଗଲା "ପ୍ୟୋତର କିରିଲିଚ୍, ପ୍ରିନ୍ସ ବଲ୍‌କନସ୍କି ଆପଣଙ୍କ ବନ୍ଧୁ ଥିଲେ—" ସେ ପୁଣି ଆପଣା ଭୁଲ୍‌କୁ ସୁଧାରିଦେଇ କହିଲା 'ଆପଣଙ୍କ ବନ୍ଧୁ ସେ । (ତାକୁ ଲାଗୁଥାଏ ଯେ ଯାହାଥିଲା ସେ ଅତୀତରେ ହିଁ ଥିଲା, ଏବେ ସବୁ ବଦଳି ଯାଇଛି ।) ସେ ମତେ କହିଯାଇଥିଲେ ଆପଣଙ୍କ ସାହାଯ୍ୟ ଲୋଡ଼ିବାକୁ ।"

ପିଏରେ ମୂକପରି ତାକୁ ଅନାଇଁ ରହିଥାଏ, ଯେପରି ତାର ତଣ୍ଟି ବନ୍ଦ ହୋଇ ଯାଉଥାଏ । ସେ ପର୍ଯ୍ୟନ୍ତ ସେ ତା ଭିତରେ ନାତାଶାକୁ ଦୋଷ ଦେଉଥିଲା, କିନ୍ତୁ ବର୍ତ୍ତମାନ ତାପାଇଁ ତା ମନରେ ଦୁଃଖ ହେଲା, ଆଉ ତା ହୃଦୟରେ ତାକୁ ଦୋଷ ଦେବାକୁ ସ୍ଥାନ ରହିଲା ନାହିଁ ।

"ସେ ବର୍ତ୍ତମାନ ଏଠି ଅଛନ୍ତି । ତାଙ୍କୁ କହିଦେବେ······ସେ ମୋ ଦୋଷ କ୍ଷମା କରିବେ ।" ସେ କଥା ମଝିରେ ଅଟକିଗଲା, ଆହୁରି ତରତର ହୋଇ ନିଶ୍ୱାସ ମାରିଲା । କିନ୍ତୁ ସେ କାନ୍ଦିଲା ନାହିଁ ।

ପିଏରେ କହିଲା "ହିଁ··· ମୁଁ କହିଦେବି; କିନ୍ତୁ·····"

ତାପରେ ଆଉ କଣ କହିବ ସେ ବୁଝିପାରିଲା ନାହିଁ । ପିଏରେ ଯେଉଁ ବିଷୟଟା ଭାବୁଥିଲା, ନାତାଶା ସେକଥା ଭାବି କ୍ଷୋଭରେ ଅଭିଭୂତ ହୋଇଗଲା ପରି ଦିଶୁଥାଏ ।

ସେ ଚଞ୍ଚଳ କହିଲା "ନା, ସବୁ ସରିଯାଇଛି ମୁଁ ଜାଣିଛି । ଆଉ ସେ ହେବ ନାହିଁ । ମୁଁ ତାଙ୍କ ପାଖରେ ଅପରାଧ କରିଛି, ସେଥିପାଇଁ ଭାବି ଭାବି ମୁଁ ସନ୍ତପ୍ତ ହେଉଛି । ଖାଲି ତାଙ୍କୁ ଏତିକି କହିଦେବେ । ତାଙ୍କୁ ମୁଁ ପ୍ରାର୍ଥନା କରି ମାଗୁଣି କରୁଛି, ମତେ କ୍ଷମା କରିବେ । ଯାହା ଘଟିଯାଇଛି ସେଥିପାଇଁ ମତେ କ୍ଷମା କରିବେ ।" ତାର ଦେହ ଗୋଟାକଯାକ ପ୍ରବଳ ଭାବେ କମ୍ପି ଉଠୁଥାଏ । ସେ ଗୋଟାଏ ଚୌକିରେ ବସିପଡ଼ିଲା । ପିଏରେର ହୃଦୟ ଭିତରେ ଏପରି ଗୋଟାଏ କରୁଣାର ଭାବ ବଢ଼ି ଫାଣି ପରି ମାଡ଼ିଗଲା ଯେ ଆଗେ ସେ କେବେ ଏପରି ଅନୁଭବ କରିନଥିଲା ।

ପିଏରେ କହିଲା "ମୁଁ ତାଙ୍କୁ କହିବି । ମୁଁ ପୁଣି ଆଉଥରେ ତାଙ୍କୁ କହିବି । କିନ୍ତୁ·····ମୁଁ ଗୋଟାଏ କଥା ଜାଣିବାକୁ ଚାହେଁ···"

"କି କଥା ?" ନାତାଶାର ଆଖି ଯୋଡ଼ିକ ତାକୁ ପଚାରିଲା । "ମୁଁ ଜାଣିବାକୁ ଚାହୁଁଛି ଯେ ଆପଣ କଣ ତାକୁ ଭଲ ପାଉଥିଲେ ।"

"ପିଏରେ ଆନାତୋଲକୁ କଣ ବୋଲି କହିବ ତା ଭାବିପାରିଲା ନାହିଁ, ତା କଥା ମନେ ପଡ଼ିବାରୁ ସେ ନାଲି ପଡ଼ିଗଲା । କହିଲା, 'ଆପଣ କଣ ସେ ଖରାପ ଲୋକଟାକୁ ଭଲ ପାଉଥିଲେ ?'

ନାତାଶା କହିଲା ' ତାଙ୍କୁ ଖରାପ କହନ୍ତୁ ନାହିଁ । ·····ତେବେ ମୁଁ ଜାଣିନାହିଁ·····ମୁଁ ଜାଣିନାହିଁ ଯେ····· " ସେ ପୁଣି କାନ୍ଦିଲା, ଆଉ ପିଏରେ ଆହୁରି ବେଶି ବେଶି କରୁଣା ସହାନୁଭୂତି ଆଉ ସ୍ନେହରେ ଅଭିଭୂତ ହୋଇଗଲା । ସେ ଜାଣିପାରିଲା, ତା ଚଷମା ତଳେ ତଳେ କେଉଁ କେଉଁ ଲୁହ ବୋହି ଯାଉଛି, ଭାବିଲା ନାତାଶା ତା ଲୁହ ନ ଦେଖି ରହି ପାରିବ ନାହିଁ ।

"ଆମେ ସେକଥା ଆଉ ପକାଇବା ନାହିଁ, ସୁନାଟି ପରି," ସେ କହିଲା । ସେ ଯେପରି କଅଁଳ ହୋଇ ସ୍ନେହ ସହାନୁଭୂତି ମିଶା ସ୍ୱରରେ କଥା କହିଲା, ତା ଶୁଣି ହଠାତ୍ ନାତାଶାକୁ ଭାରି ଆଶ୍ଚର୍ଯ୍ୟ ଲାଗିଲା । "ଆମେ ଆଉ ସେସବୁ କଥା ପକାଇବା ନାହିଁ, ମୋ ସୁନାଟି ! ମୁଁ ତାଙ୍କୁ ସବୁକଥା ବୁଝାଇ କହିଦେବି । କିନ୍ତୁ ଗୋଟିଏ ଅନୁରୋଧ ମୁଁ ଆପଣଙ୍କୁ କରୁଛି । ମୋତେ ଆପଣଙ୍କ ବନ୍ଧୁ ବୋଲି ଭାବିବେ । ଯଦି ଆପଣଙ୍କର

ସାହାଯ୍ୟ କି ପରାମର୍ଶ କେବେ ଦରକାର ହେବ କି ଯଦି ଆପଣ ଚାହିଁବେ କେବଳ କାହା ଆଗରେ ହୃଦୟପୃଷ୍ଠାକୁ ଖୋଲି ଦେବାକୁ,—ବର୍ତ୍ତମାନ ନୁହେଁ, ପରେ ଯେତେବେଳେ ଆପଣଙ୍କ ହୃଦୟ ଭିତର ଅଡୁଆ ସଫା ହୋଇ ଯାଇଥିବ, ସେତେବେଳେ ମତେ ମନେପକାଇବେ । "ସେ ତାର ହାତ ଉଠାଇ ନେଇ ଚୁମ୍ବନ କଲା" କହିଲି ମୁଁ ଖୁବ ଖୁସି ହେବି । "ଯଦି ମୋ ଦେଇ······" ପିଏରେର ମୁଣ୍ଡ ଗୋଳମାଳ ହୋଇଗଲା ।

ନାତାଶା ଚିତ୍କାର କରି ଉଠିଲା "ମତେ ଏପରି କୁହନ୍ତୁ ନାହିଁ, ମୁଁ ଏକଥା ଶୁଣିବାକୁ ଯୋଗ୍ୟ ନୁହେଁ ।" ସେ ସେଠାରୁ ପଳାଇ ଯାଇଥାନ୍ତା, କିନ୍ତୁ ପିଏରେ ତାର ହାତ ଧରିଥାଏ । ତାକୁ ଲାଗୁଥାଏ ତାର ଆହୁରି କିଛି ତାକୁ କହିବାକୁ ବାକି ଅଛି, କିନ୍ତୁ ଯେତେବେଳେ ସେ ତା କହିଲା ସେ ନିଜ କଥା ଶୁଣି ଆଶ୍ଚର୍ଯ୍ୟ ହୋଇଗଲା ।

କହିଲା 'ଛି । ସେମିତି କୁହନ୍ତୁ ନାହିଁ । ଆପଣଙ୍କର ଆଗରେ ସମଗ୍ର ଜୀବନ ପଡ଼ିଛି ।"

ନାତାଶା ଲଜ୍ଜା ଅପମାନରେ ସଢ଼ିଯାଇ କହିଲା "ମୋ ଆଗରେ ନା, ମୋର ସବୁ ସରିଯାଇଛି ।" ପିଏରେ କହିଲା "ସବୁ ସରିଯାଇଛି । ମୁଁ ଯଦି ମୁଁ ନ ହୋଇ ଏ ପୃଥିବୀରେ ସବୁଠୁ ରୂପମନ୍ତ, ବୁଦ୍ଧିମନ୍ତ ସବୁଠୁ ଉତ୍ତମଲୋକ ହୋଇଥାନ୍ତି, ଯଦି ମୋର ସ୍ୱାଧୀନତା ଥାଆନ୍ତା ତେବେ ଏଇଠି ଏଇ ମୁହୂର୍ତ୍ତରେ ଆପଣଙ୍କ ଆଗରେ ଆଣ୍ଠୁ ମାଡ଼ି ବସି ଆପଣଙ୍କ ପାଣି ଗ୍ରହଣ କରିବା ପାଇଁ, ଆପଣଙ୍କ ପ୍ରେମ ପାଇବାପାଇଁ ଭିକ୍ଷା ମାଗନ୍ତି ।"

ବହୁତ ଦିନରେ ସେହି ପହିଲି ଥର ନାତାଶା କୃତଜ୍ଞତାରେ ଓ କଅଁଳ ମନରେ କାନ୍ଦିଲା, ପିଏରେ ଆଡ଼କୁ ଅନାଇ ଦେଇ ସେ ସେଠାରୁ ବାହାରି ଚାଲିଗଲା ।

ପିଏରେ ତା ପଛେ ପଛେ ଗଲା, ବାହାର ଘରକୁ ସେ ପ୍ରାୟ ଦୌଡ଼ି ଦୌଡ଼ି ଗଲା । ସ୍ନେହ ଓ ସୁଖରେ ତାକୁ କାନ୍ଦ ମାଡ଼ୁଥାଏ, ତଣ୍ଟି ବନ୍ଦ ହୋଇ ଆସୁଥାଏ । ବହୁ କଷ୍ଟରେ ସେ ଲୁହ ବନ୍ଦ କଲା । ତାର ଗରମ କୋଟରେ ହାତ ଗଳାଇବାକୁ କଣା କେଉଁଠି ଅଛି ନ ପାଇପାରି ସେ ସେହି ରୁମ ଢଆଳ କୋଟଟାକୁ ଦେହରେ ପକାଇଦେଲା, ତାପରେ ଗାଡ଼ିରେ ଚଢ଼ିଗଲା ।

ଗାଡ଼ି ଚାଳକ ପଚାରିଲା "ବର୍ତ୍ତମାନ କୁଆଡ଼େ ଯିବା ହଜୁର ?" ପିଏରେ ନିଜକୁ ପଚାରିଲା । 'କୁଆଡ଼େ ? କୁଆଡ଼େ ବର୍ତ୍ତମାନ ମୁଁ ଯାଇପାରେ କ୍ଳବ୍‌କୁ ତ ମୁଁ ଯିବିନାହିଁ କି କାହା ଘରକୁ ବୁଲି ଯିବିନାହିଁ । କୁଆଡ଼େ ? ତେବେ ?'' ତା ହୃଦୟରେ ଯେଉଁ କରୁଣା ଓ ସ୍ନେହ ପୂରିଥିଲା, ଗଲାବେଳେ ସେହି ଶେଷମୁହୂର୍ତ୍ତରେ ନାତାଶା ଲୁହ ଭିତରୁ ତାକୁ ଯେମିତି ସ୍ନେହରେ କୃତଜ୍ଞତାରେ ଚାହିଁ ଦେଇଥିଲା ତା ତୁଳନାରେ ସବୁ ମଣିଷ ତାକୁ ଜଣାପଡୁଥିଲେ ଅତି ଦୀନ, କରୁଣାର ପାତ୍ର ।

ଗୁଣ୍ଡା ବରଫ ପଡ଼ୁ ପାଗ ଏତେ ଥଣ୍ଡା ହୋଇଥାଏ ଯେ ପବନର ଉଷ୍ମତା ଥାଏ ମୋଟେ ଦଶଡ଼ିଗ୍ରୀ । ତଥାପି ପିଏରେ ତାର ଭାଲୁଚମର କୋର୍ଟକୁ ଫିଟାଇ ଛାତି ଉପରେ ଖୋଲା ପକାଇଦେଲା । ତାର ଓସାର ଛାତି ଅତି ଆନନ୍ଦରେ ନିଃଶ୍ୱାସ ନେଉଥାଏ । କହିଲା "ଘରକୁ ଯିବା ।"

ପାଗ ସଫାଥାଏ । ହାଲୁକା ଗୁଣ୍ଡା ବରଫ ଝଡ଼ୁଥାଏ । ଅଧ-ଅନ୍ଧାରୁଆ ଅସନା ସଡ଼କଗୁଡ଼ାକ ଉପରେ ଆଉ କଳା କଳା ଘର ଛାତ ଉପରେ ଥାଏ ତାରା ଝିଲ୍‌ ଝିଲ୍‌ ଅନ୍ଧାର ଆକାଶ ।

ପିଏରେର ଆତ୍ମା ଏତେ ଉପରକୁ ଉଠିଯାଇଥାଏ ଯେ, ତାହା ତୁଳନାରେ ଏ ପୃଥିବୀର ସବୁକଥା ତାକୁ ଲାଗୁଥାଏ ଅତି ହେୟ, ଅତି ନୀଚ । କେବଳ ଆକାଶକୁ ଚାହିଁ ରହିଲେ ସେ ଏହି ନିଦାରୁଣ ନୀଚତାକୁ ମନରୁ ପାଶୋରି ପାରୁଥାଏ । ପିଏରେର ଗାଡ଼ି ଯେମିତି ଆରବାତ୍ସ୍କି ଛକରେ ପହଞ୍ଚିଲା ପିଏରେ ଦେଖିଲା ତାହା ଆଖି ଆଗରେ ତାରାଫୁଟା ଅନ୍ଧାର ଆକାଶ ଖୋଲା ହୋଇ ପଡ଼ିରହିଛି । ପ୍ରେଚିଷ୍ଟେନ୍‌ସ୍କି ସଡ଼କ ଉପରେ ଆକାଶର ପ୍ରାୟ ମଝାମଝି ୧୮୧୨ ସାଲର ପ୍ରକାଣ୍ଡ ଉଜ୍ଜ୍ୱଳ ଧୂମକେତୁ ଦାଉ ଦାଉ ଝଟକୁଥାଏ । ତାର ଚାରିପାଖେ ତାରାମାନେ ବେଢ଼ି ଥାଆନ୍ତି, କିନ୍ତୁ ସେ ପୃଥିବୀଠାରୁ ପାଖରେ ଥାଏ, ତାର ଆଲୁଅ ଧଳା ଦିଶୁଥାଏ, ତାର ଲାଞ୍ଜ ଉପରକୁ ଟେକା ହୋଇଥାଏ; ତେଣୁ ସେ ସବୁ ତାରାଙ୍କ ଭିତରେ ବାରି ହୋଇ ପଡୁଥାଏ । ଲୋକେ କହୁଥାନ୍ତି ସେହି ଧୂମକେତୁ ନାନା ଭୟାବହ ବିଭୀଷିକା ହୋଇ ପୃଥିବୀ ଧ୍ୱଂସ ହେବ ତାହାର ସଙ୍କେତ । କିନ୍ତୁ ସେହି ଯେଉଁ ଉଜ୍ଜ୍ୱଳ ଧୂମକେତୁର ଆଲୁଅ

ଝଲଝଲ ଲମ୍ବା ଲାଞ୍ଜ ଥାଏ ସେ ପିଏରେର ମନରେ ଭୟ ଲେଶମାତ୍ର ଉପୁଜାଇ ପାରିଲା ନାହିଁ । ବରଂ ଲୁହଭରା ଓଦା ଆଖିରେ ପିଏରେ ହର୍ଷରେ ସେହି ଉଜ୍ଜ୍ୱଳ ଧୂମକେତୁକୁ ଚାହିଁଲା, ଆଉ ତାକୁ ଲାଗିଲା ଯେପରି ଅସୀମ ଶୂନ୍ୟ ଭିତରେ ଅକଳ୍ପନୀୟ ବେଗରେ ଧନୁ ମାର୍ଗରେ ଉଡ଼ି ଯାଉ ଯାଉ ଭୂଇଁରେ ଗଳିଯାଇ ଲାଗି ରହିଲା, ଶରପରି ସେ ସେହି ଆକାଶରେ କେଉଁ ନିର୍ଦ୍ଦିଷ୍ଟ ବିନ୍ଦୁରେ ଲାଗି ରହିଯାଇଛି । ସେଇଠି ଲାଗି ରହି ପ୍ରବଳ ବେଗରେ ସେ ତାର ଲାଞ୍ଜକୁ ଘୁଞ୍ଚୁଛି, ଆଉ ଅସଂଖ୍ୟ ମିଟିମିଟି ତାରାମାନଙ୍କ ଗହଣରେ ଥାଇ ତାର ଧଳା ଆଲୁଅ ପକାଇ ଖେଳ ଖେଳୁଛି । ପିଏରେକୁ ଲାଗିଲା ଯେ ନରମି ଯାଇଥିବା ଭରସା ପୂରିଥିବା ତାର ହୃଦୟ ଭିତରେ ଯେଉଁ ଭାବ ଉଠିଛି, ଯେଉଁ ଭାବ ନୂଆ ବଳପାଇ ନୂଆ ଜୀବନରେ କୁସୁମିତ ହେବାକୁ ଉଦ୍ୟତ ହେଉଛି ତାହା ଏଇ ଉଜ୍ଜ୍ୱଳ ଧୂମକେତୁର ସମାନ ଛନ୍ଦ ।

୧୮୧୧ ସାଲର ଶେଷ ଆଡ଼କୁ ପଶ୍ଚିମ ୟୁରୋପରେ ସୈନ୍ୟ ସଂଗ୍ରହ କରିବା ଓ ସୈନ୍ୟ ସଂଗ୍ରହ କରି ଏକାଠି ଠୁଳ କରିବା କାର୍ଯ୍ୟରେ ତତ୍ପରତା ବଢ଼ିଗଲା ଓ ୧୮୧୨ ସାଲରେ ଏହି ସୈନ୍ୟମାନେ—ଜିନିଷ ବୋହିବା ଓ ସୈନ୍ୟଙ୍କୁ ଖୁଆଇବା କାର୍ଯ୍ୟରେ ଯେଉଁମାନେ ଲାଗିଥିଲେ ତାଙ୍କୁ ମିଶାଇଲେ ନିୟୁତ ନିୟୁତ ସୈନ୍ୟ ପଶ୍ଚିମଆଡ଼ୁ ପୂର୍ବ ଆଡ଼କୁ ଅର୍ଥାତ୍ ଋଷ୍ ଦେଶର ସୀମାନ୍ତ ପ୍ରାନ୍ତକୁ ମାଡ଼ି ଚାଲିଲେ । ସେ ପ୍ରାନ୍ତରେ ୧୮୧୧ ସାଲରୁ ଆରମ୍ଭ କରି ସେହିପରି ଋଷ୍ ସୈନ୍ୟମାନଙ୍କର ସମାବେଶ ହୋଇଥିଲା । ଜୁନ୍ ମାସର ୧୨ ତାରିଖ ଦିନ ପଶ୍ଚିମ ୟୁରୋପର ସେନାବାହିନୀ ସୀମାନ୍ତ ଟପିଗଲେ ଅ.ଜ ଯୁଦ୍ଧ ଆରମ୍ଭ ହୋଇଗଲା ।

ମସ୍କୋରେ ପିଏରେ ସଙ୍ଗେ ଦେଖା ହୋଇସାରିଲା ପରେ ପ୍ରିନ୍ସ ପିଟର୍ସବର୍ଗକୁ ଚାଲିଗଲେ । ସେ ତାଙ୍କ ପରିବାରର ଲୋକଙ୍କୁ କହିଗଲେ ଯେ ସେଠାରେ ତାଙ୍କର କାମ ଅଛି । ପ୍ରକୃତରେ ତାଙ୍କର ଉଦ୍ଦେଶ୍ୟ ଥିଲା ସେଠାରେ କୁରାଗିନ୍‌କୁ ଯାଇ ଭେଟିବ । ସେ ପିଟର୍ସବର୍ଗରେ ପହଞ୍ଚି ବୁଝିଲେ ଯେ କୁରାଗିନ୍ ଆଉ ସେଠାରେ ନାହିଁ । ପିଏରେ ତାର ଶଳାକୁ ଜଣାଇ ଦେଇଥିଲା ଯେ, ପ୍ରିନ୍ସ ଆନ୍ଦ୍ରେ ତାର ଖୋଜ କରୁଛନ୍ତି । ସଙ୍ଗେ ସଙ୍ଗେ ଆନାତୋଲ କୁରାଗିନ୍‌ଯୁଦ୍ଧ ବିଭାଗର ମନ୍ତ୍ରୀଙ୍କଠାରୁ ଖଣ୍ଡିଏ ବ୍ଦକଶ ଯୋଗାଡ଼ କରିନେଇ ମୋଲ୍ଡାଭିଆରେ ସେନାବାହିନୀରେ ମିଶିବ ବୋଲି ଚାଲି-ଯାଇଥାଏ । ପ୍ରିନ୍ସବର୍ଗରେ ଥିଲାବେଳେ ପ୍ରିନ୍ସ ଆନ୍ଦ୍ରେଙ୍କର ବୃଦ୍ଧ ସେନାପତି କୁତୁଜଭଙ୍କ ସଙ୍ଗେ ସଙ୍ଗେ ଦେଖା ହୋଇଥିଲା । କୁତୁଜଭ ପ୍ରସ୍ତାବ କଲେ

ଯେ ସେ ତାଙ୍କ ସଙ୍ଗରେ ମୋଲାକାତ କରିବାକୁ ଯାଆନ୍ତି । ବୃଦ୍ଧ ସେନାପତିଙ୍କୁ ସୈନ୍ୟବାହିନୀର ସେନାପତିତ୍ୱ କରିବା ସକାଶେ ମୋଲ୍‌ଦାଭିଆ ପଠା ହୋଇଥାଏ । ସେନାପତିଙ୍କ ଗହଣରେ ଥିବା ଉଚ୍ଚପଦସ୍ଥ କର୍ମଚାରୀମାନଙ୍କ ସାଙ୍ଗରେ ପ୍ରିନ୍‌ସ ଆନ୍ଦ୍ରେ ମଧ୍ୟ ଜଣେ କର୍ମଚାରୀ ହୋଇ ନିଯୁକ୍ତ ପାଇ ତୁର୍କି ଚାଲିଗଲେ ।

କୁରାଗିନ୍‌କୁ ଚିଠି ଲେଖି ଦ୍ୱନ୍ଦ ଯୁଦ୍ଧ ଲଢ଼ିବାକୁ ଡାକିବା ଉଚିତ ହେବ ନାହିଁ ବୋଲି ପ୍ରିନ୍‌ସ ଆନ୍ଦ୍ରେ ଭାବିଲେ । ସେ ଭାବିଲେ ଯେ ଦ୍ୱନ୍ଦଯୁଦ୍ଧ ଲଢ଼ିବାପାଇଁ ଅନ୍ୟ କୌଣସି ଆଳ ନଥିବା ସ୍ଥଳେ ସେ ଯଦି ତାକୁ ଯୁଦ୍ଧପାଇଁ ଆହ୍ୱାନ କରିଦେବେ ତେବେ ଯୁବତୀ କାଉଣ୍ଟେସ୍ ରୋଷ୍ଟୋଭଙ୍କ ନାମରେ ଅପବାଦ ରଟିବ । ତେଣୁ ସେ ନିଜେ କୁରାଗିନ୍‌କୁ ଖୋଜୁଥାନ୍ତି ଯେ ତା ସାଙ୍ଗରେ ଦେଖାହେଲେ ସେ ତା ସଙ୍ଗରେ ଉପରେ ପଡ଼ି କଳି ଆରମ୍ଭ କରିଦେଇ ତାପରେ ଦ୍ୱନ୍ଦଯୁଦ୍ଧ ଲଢ଼ିବାପାଇଁ ଗୋଟିଏ ପନ୍ଥା ପାଇପାରିବେ । କିନ୍ତୁ ତୁର୍କି ସୈନ୍ୟବାହିନୀରେ ମଧ୍ୟ ପ୍ରିନ୍‌ସ ଆନ୍ଦ୍ରେ କୁରାଗିନ୍‌କୁ ଭେଟି ପାଇଲେ ନାହିଁ । ପ୍ରିନ୍‌ସ ଆନ୍ଦ୍ରେ ତୁର୍କି ସୈନ୍ୟ-ବାହିନୀରେ ପହଞ୍ଚିବାର ଅଳ୍ପଦିନ ପରେ କୁରାଗିନ୍ ରୁଷ୍ ଦେଶକୁ ଫେରି ଆସିଥିଲା । ନୂଆ ଦେଶରେ ନୂଆ ପରିବେଷ୍ଟନୀରେ ପ୍ରିନ୍‌ସ ଆନ୍ଦ୍ରେଙ୍କୁ ଜୀବନର ଭାର ସେତେ ଦୁର୍ବହ ଲାଗିଲା ନାହିଁ । ତାଙ୍କର ବାଗ୍‌ଦତ୍ତା ତାଙ୍କ ପ୍ରତି ଅବିଶ୍ୱାସୀ ଆଚରଣ କଲା ବୋଲି ତାଙ୍କ ମନରେ ଦୁଃଖ ଯେତିକି ତୀବ୍ର ହେଉଥାଏ ସେତିକି ସେ ପ୍ରାଣପଣେ ଚେଷ୍ଟା କରୁଥାନ୍ତି, ଯେପରିକି ସେହି ତୀବ୍ର ଯନ୍ତ୍ରଣାର ଚିହ୍ନ ଉପରେ ପ୍ରଭାବ ସେ ଅନ୍ୟମାନଙ୍କ ଆଖିରୁ ଲୁଚାଇ ରଖିବେ । ଜୀବନର ଯେଉଁ ପରିସ୍ଥିତିରେ ରହି ପୂର୍ବେ ସେ ସୁଖୀ ହୋଇ ପାରିଥିଲେ ତାଙ୍କର ବରଦରେ ତାଙ୍କୁ ପ୍ରତ୍ୟାଖ୍ୟାନ କରିବା ପରେ ସେ ଅବସ୍ଥାକୁ ସହିବା ବି ତାଙ୍କୁ ଅତି କଷ୍ଟ ଲାଗୁଥାଏ । ଆଗେ ତାଙ୍କୁ ଯେଉଁ ମୁକ୍ତି ଓ ସ୍ୱାଧୀନତା ଲାଗୁଥିଲା ସବୁଠୁ ବେଶି ମୂଲ୍ୟବାନ ବୋଲି ସେ ଏଣିକି ତାଙ୍କୁ ଅତି କ୍ଲାନ୍ତିକର ଲାଗୁଥାଏ ।

ଯେତେବେଳେ ଯେତେପ୍ରକାର ବୃତ୍ତି ତାଙ୍କୁ ମିଳି ଯାଉଥାଏ ତହିଁ ଭିତରୁ ସବୁଠୁଁ ସରଳ ଓ ତାଙ୍କର ସବୁଠୁ ବେଶି ଖୋଲା ହେଉଛି ସୈନ୍ୟ ବାହିନୀରେ ଚାକିରୀ କରିବା କାମ । କୁତୁଜଭଙ୍କ କର୍ମଚାରୀଙ୍କ ଗହଣରେ

ସେ ଜଣେ ସେନାପତି ହୋଇ ରହିଲେ । ସେ ଏଭଳି ଉତ୍ସାହ ସହିତ ଅଧ୍ୟବସାୟ ସହକାରେ କାମ କଲେ ଯେ କାମ କରିବାକୁ ତାଙ୍କର ଆଗ୍ରହ ଓ ତାଙ୍କ ନିଷ୍ଠା ଓ ବିବେଚନା ଦେଖି ନିଜେ କୁତୁଜୋଭ ବିସ୍ମିତ ହୋଇ ଯାଉଥାନ୍ତି । ତୁର୍କିରେ କୁରାଗିନ୍‌କୁ ନ ଦେଖିବାରୁ ପୁଣି ତାକୁ— ଖୋଜିବାକୁ ଘୋଡ଼ା ଦଉଡ଼େଇ ରୁଷ୍ ଦେଶକୁ ଲେଉଟି ଆସିବା ପ୍ରିନ୍‌ସ ଆନ୍ଦ୍ରେ ଆବଶ୍ୟକ ବୋଲି ଭାବିଲେ ନାହିଁ । ତଥାପି, କୁରାଗିନ୍ ପ୍ରତି ତାଙ୍କର ଯେତେ ଘୃଣା ଥାଉ ପଛେ, ସେ ନିଜ ଆଗରେ ଯୁକ୍ତି ବାଢ଼ୁଥାନ୍ତି ଯେ କୁରାଗିନ୍ ଟା ଏତେ ଇତର ଲୋକଟାଏ ଯେ ଲୋକଟାଏ ଯେ ସେ ନିଜେ ତଳକୁ ନଇଁପଡ଼ି ତା ସଙ୍ଗରେ କଜିଆ କରିବା ପାଇଁ ସେ ଯୋଗ୍ୟ ନୁହେଁ । ସେ ଜାଣିଥିଲେ ସେ କୁରାଗିନ୍‌କୁ ଭେଟୁ ଭେଟୁ ଯେତେ ଦିନ ଯାଉ ପଛେ ଥରେ ଯେତେବେଳେ ତା ସଙ୍ଗରେ କେଉଁଠି ଦେଖା ହୋଇଯିବ ସେତେବେଳେ ଦ୍ୱନ୍ଦ୍ୱ ଯୁଦ୍ଧରେ ଲଢ଼ିବା ପାଇଁ ତାକୁ ନ ଡ଼ାକିବା ତାଙ୍କ ପକ୍ଷରେ ଅସମ୍ଭବ ହେବ, ଯେମିତି ଭୋକ ଉପାସରେ ମରି ଯାଉଥିବା ଲୋକ ଖାଦ୍ୟ ପଦାର୍ଥ ଦେଖିଲେ ତାକୁ ଖାଇବାକୁ ଦୌଡ଼ିବା ହିଁ ଦୌଡ଼ିବ, ସେହିପରି ତୁର୍କିରେ ସେ ଜାଣିଶୁଣି କାର୍ଯ୍ୟରେ ବ୍ୟସ୍ତ ରହୁଥିଲେ, ବହୁତ ଶକ୍ତି ଖର୍ଚ୍ଚକରି କାର୍ଯ୍ୟ କରୁଥିଲେ ଓ ତାଙ୍କ ଗୃହକାର୍ଯ୍ୟରେ ବି ତାଙ୍କର ଏକ ପ୍ରକାର ଉଚ୍ଚାଶା ରହିଥିଲା । ତେଣୁ ଟାଣି ଓଟାରି ସେ ଗୋଟାଏ ପ୍ରକାର ସଂଯତ ହୋଇ ପ୍ରଶାନ୍ତ ହୋଇ ରହୁଥିଲେ । କିନ୍ତୁ ସେହି ପ୍ରଶଂସା ବି ବିଷାକ୍ତ ହୋଇ ପଡୁଥିଲା । ଯେତେବେଳେ ମନେ ପଡ଼ି ଯାଉଥିଲା ଯେ ଅପମାନର ପ୍ରତିଶୋଧ ନିଆଁ ହୋଇ ନାହିଁ କି ତାଙ୍କ ରାଗବି ଝଡ଼େଇ ହୋଇ ନାହିଁ, ବରଂ ତାଙ୍କ ହୃଦୟ ଭିତରେ ସଞ୍ଚିତ ହୋଇ ରହିଛି ସେତେବେଳେ ଏ ପ୍ରଶାନ୍ତି ଭାଙ୍ଗି ଯାଉଥିଲା ।

ନେପୋଲିଆନଙ୍କ ସଙ୍ଗରେ ଯୁଦ୍ଧ ଲାଗିଗଲା ବୋଲି ୧୮୧୨ ସାଲରେ ବୁକାରେଷ୍ଟ ସହରରେ ଖବର ପହଞ୍ଚିଗଲା ।

ବୁକାରେଷ୍ଟ ସହରରେ ସେତେବେଳକୁ କୁତୁଜୋଭ ଚଉଦ ମାସ କାଳ ରହିଲେଣି, କି ଦିନ କି ରାତି ତାଙ୍କର ଓ୍ୟାଲାଚ ଦେଶର ରକ୍ଷିତା ସଙ୍ଗରେ କଟୁଥାଏ । ଯୁଦ୍ଧ ଲାଗିଲା ବୋଲି ଖବର ଆସିବାରୁ

ପ୍ରିନ୍‌ସ ଆନ୍ଦ୍ରେ କୁଟୁଜଭଙ୍କୁ ଅନୁରୋଧ କଲେ ଯେ ତାଙ୍କୁ ପଶ୍ଚିମ ସୈନ୍ୟ ବାହିନୀକୁ ବଦଳି କରାଯାଉ । କୁଟୁଜଭ ସେତେବେଳକୁ ପ୍ରିନ୍‌ସ ଆନ୍ଦ୍ରେଙ୍କର କାର୍ଯ୍ୟ କରିବା ଶକ୍ତି ଦେଖି ବିରକ୍ତ ହେଲେଣି । ସେ ନିଜେ ତ ମଠୁଆ, କାରଣ ପ୍ରିନ୍‌ସ ଆନ୍ଦ୍ରେ ଏତେ ଖଟି ପାରୁଛନ୍ତି ଦେଖିଲେ ସେଇଟା ଯେପରିକି ତାଙ୍କ ନିଜ ଉପରେ ଗୋଟାଏ ଭର୍ତ୍ସନା ପରି ଲାଗେ । ତେଣୁ ପ୍ରିନ୍‌ସ ଆନ୍ଦ୍ରେଙ୍କୁ ନିଜ ପାଖରୁ ଦୂରରେ ପଠାଇ ଦେବାକୁ ସେ ସବୁବେଳେ ପ୍ରସ୍ତୁତ ଥାଆନ୍ତି । ସେ ତାଙ୍କୁ ଡାକିଲେ ଜେ୍ୟାତଲିଙ୍କ ପାଖକୁ ଗୋଟିଏ ଦାୟିତ୍ୱ ଦେଇ ପଠାଇ ଦେଲେ ।

ଜୁନ ମାସ ଶେଷରେ ପ୍ରିନସ ଆନ୍ଦ୍ରେ ସେନାବାହିନୀର ପେଣ୍ଠରେ ପହଞ୍ଚିଲେ । ଋଷ ସମ୍ରାଟ ଥାଆନ୍ତି ପ୍ରଥମ ସେନା ବାହିନୀରେ ।

ଡ୍ରିସା ସହରରେ ଗୋଟିଏ ସୁରକ୍ଷିତ ଶିବିରରେ ସେ ସୈନ୍ୟ ବାହିନୀ ଥାଏ । ଦ୍ୱିତୀୟ ସୈନ୍ୟ ବାହିନୀ ପଛକୁ ହଟି ଯାଉଥାଏ ଆଉ ପ୍ରଥମ ସୈନ୍ୟବାହିନୀ ସଙ୍ଗରେ ମିଶିବାକୁ ଚେଷ୍ଟା କରୁଥାଏ । ଲୋକେ କହୁଥାନ୍ତି ଯେ ଏକ ପ୍ରକାଣ୍ଡ ଫରାସୀ ସୈନ୍ୟ ବାହିନୀ ଆସି ପ୍ରଥମ ସୈନ୍ୟ ବାହିନୀ ଓ ଦ୍ୱିତୀୟ ସୈନ୍ୟ ବାହିନୀ ମଝିରେ ରହିଯାଇ ଦ୍ୱିତୀୟ ସୈନ୍ୟ ବାହିନୀର ପ୍ରଥମ ସୈନ୍ୟବାହିନୀ ସଙ୍ଗରେ ମିଶିବା ବାଟ କାଟି ଦେଇଥାଏ । ଋଷ ସୈନ୍ୟବାହିନୀର ଯାହା ହାଲଚାଲ ସେଥିରେ ସମସ୍ତେ ଅସନ୍ତୁଷ୍ଟ ହୋଇ ପଡ଼ୁଥାନ୍ତି କିନ୍ତୁ କେହି ସ୍ୱପ୍ନରେ ସୁଦ୍ଧା ଭାବି ନଥାନ୍ତି ଯେ ଋଷ ସୈନ୍ୟ ଭିତରକୁ ଫରାସୀ ସୈନ୍ୟ ଆକ୍ରମଣ କରି ପଶି ଆସିବେ ବୋଲି କୌଣସି ବିପଦ ଅଛି । କେହି କେବେ କଳ୍ପନା କରି ନଥାନ୍ତି ଯେ ପୋଲାଣ୍ଡର ପଶ୍ଚିମ ଅଞ୍ଚଳ ଟପି ଯୁଦ୍ଧ ପୁଣି ଆହୁରି ପୂର୍ବକୁ ମାଡ଼ି ଆସିବ ।

ଯେଉଁ ବାର୍କ୍‌ଲେ ଜେ୍ୟାତଲିଙ୍କ ପାଖକୁ ପ୍ରିନ୍‌ସ ଆନ୍ଦ୍ରେଙ୍କୁ ପଠାଇ ଥିଲେ ପ୍ରିନ୍‌ସ ଆନ୍ଦ୍ରେ ଆସି ଦେଖିଲେ ଯେ ସେ ଆସି ଡ୍ରିସାନଦୀ କୂଳରେ ଛାଉଣୀ ପକାଇ ରହିଛନ୍ତି । ଶିବିର ଅନ୍ୟ ପାଖରେ ଗୋଟାଏ ବଡ଼ ଗାଁ କି ବଡ଼ ବସ୍ତି ବି ନଥିଲା । ତେଣୁ ସୈନ୍ୟବାହିନୀ ସଙ୍ଗରେ ଯେଉଁ ଅସଂଖ୍ୟ ସେନାପତି ଓ ରାଜପରିବାର ଆସିଥିଲେ ସେମାନେ

ଶିବିର ଦୁଇପଟେ ଦଶ ମାଇଲ ସ୍ଥାନ ଆଶାନ୍ତରେ ଯେଉଁଠି ଯେଉଁଠି ଗାଁ ମାନଙ୍କର ଭଲ ଭଲ ଘର ମିଳିଲା ସେଠାରେ ବଛେଇ ହୋଇ ରହିଥାନ୍ତି। ବାର୍କଲେ ଜେ୍ୟାଡଲିଙ୍କ ଋଷ ସମ୍ରାଟଙ୍କ ଠାରୁ ଚାରି ଭର୍ଷ୍ଟ ଦୂରରେ ରହି ଥାନ୍ତି । ସେ ବଲକନସ୍କିଙ୍କୁ ଦେଖି ଯେପରି ଅଭ୍ୟର୍ଥନା କଲେ ସେଥିରେ ସ୍ନେହ ସୌହାର୍ଦ୍ଦ୍ୟ ନଥିଲା । ତାଙ୍କ ଜର୍ମାନ ଉଚ୍ଚାରଣରେ କଥା କହି ସେ କହିଲେ ଯେ ସେ ସମ୍ରାଟଙ୍କୁ ତାଙ୍କ ବିଷୟ କହିବେ । ତାହାଲେ ତାଙ୍କୁ କୌଣସି ଏକ ନିର୍ଦ୍ଦିଷ୍ଟ ନିଯୁକ୍ତି ଦିଆଯିବ । ସେ ପର୍ଯ୍ୟନ୍ତ ସେ ତାଙ୍କୁ ତାଙ୍କ ନିଜ ଗହଣରେ ଥିବା କର୍ମଚାରୀମାନଙ୍କ ସଙ୍ଗରେ ଚାଲିବାକୁ କହିଲେ ।

ଜୁଲାଇ ମାସ ଗୋଟାକ ଯାକ ବୃଦ୍ଧ ପ୍ରିନ୍‌ସ ବଲକନସ୍କି ବହୁତ କାର୍ଯ୍ୟ ତତ୍ପର ଥିଲେ । ସେ ସତେଜ ବି ଥିଲେ । ସେ ତାଙ୍କ ଚାକର ମାନଙ୍କ ପାଇଁ ଧାଡ଼ିଏ ନୂଆ ଘର ତୋଳାଇ ଦେଲେ ଓ ଗୋଟିଏ ନୂଆ ବଗିଚା ଆରମ୍ଭ କରିଦେଲେ । ତାଙ୍କ ବିଷୟରେ ଗୋଟିଏ କଥା ପ୍ରିନ୍‌ସେସ ମନକୁ ଗୁଡ଼ୁଗୁଡ଼ୁ କରୁଥାଏ ଯେ, ତାଙ୍କୁ ଭଲ ନିଦ ହେଉନଥାଏ । ତାଙ୍କ ପଢ଼ା ଘରର ଶୋଇବା ଯେ ତାଙ୍କର ପୁରୁଣା ଅଭ୍ୟାସ ହୋଇଯାଇଥିଲା ସେ ଅଭ୍ୟାସ ଛାଡ଼ିଦେବାପରେ ପ୍ରତିଦିନ ନୂଆ ନୂଆ ଯାଗାରେ ବିଛଣା ପକାଇ ଶୋଉଥିଲେ । ରାତିଏ ସେ ତାଙ୍କ ବାଟୋଇ ଖଟକୁ ଛବି ଘରେ ପୂରାଇ ଶୋଇବେ, ତହିଁଆର ଦିନ ରାତିରେ ଦିନ ପିନ୍ଧା ପୋଷାକ ନ ଫିଟାଇ ବୈଠକଖାନା ଘରେ ଖଟୁଲି ଉପରେ ନହେଲେ ଆରାମ ଚୌକିରେ ପଡ଼ି ଢୁଳଉଥିବେ, ତାପରେ ସେ ଖାଇବା ଘରେ ରାତିଟା କଟାଇବାକୁ ଚେଷ୍ଟା କରିବେ ଏହିପରି ।

ପହିଲା ଅଗଷ୍ଟ ଦିନ ପ୍ରିନସ ଆନ୍ଦ୍ରେଙ୍କ ପାଖରୁ ଗୋଟିଏ ଚିଠି ଆସିଲା । ଫରାସୀମାନେ ଭିଟେବସ୍କ ଅଧିକାର କଲାପରେ ସେଇଠି ସେ ଚିଠି ଲେଖା ହୋଇଥିଲା । ସେ ଚିଠିରେ ସମୁଦାୟ ଯୁଦ୍ଧରେ ଗୋଟିଏ ସଂକ୍ଷିପ୍ତ ବିବରଣୀ ଲେଖା ହୋଇଥିଲା । ତାକୁ ବୁଝାଇବାକୁ ଗୋଟିଏ ନକ୍‌ସା ଟଣା ହୋଇ ପଠାହୋଇଥିଲା ଓ ଭବିଷ୍ୟତରେ ଯୁଦ୍ଧର ଗତି କେଉଁ ଆଡ଼କୁ ଯିବା ସମ୍ଭାବନା ସେ ବିଷୟରେ ସେ ମନେ ମନେ ଯାହା ଭାବୁଥିଲେ ତାହା ଲେଖା ହୋଇଥିଲା । ସେଇ ଚିଠିରେ ପ୍ରିନ୍‌ସ ଆନ୍ଦ୍ରେ

ତାଙ୍କ ବାପାଙ୍କ ପାଖକୁ ଲେଖିଥିଲେ ଯେ ତାଙ୍କ ବାପା ଯେଉଁ ଜାଗାରେ ରହୁଛନ୍ତି ସେ ଯାଗାଟା ଯୁଦ୍ଧ ଭୂଇଁଠୁଁ ଅତି ପାଖରେ ଓ ଶତ୍ରୁ ଯେଉଁ ଆଡ଼କୁ ମାଡ଼ି ଆସୁଛନ୍ତି ସେ ଜାଗାଟା ଠିକ ତାଙ୍କ ସିଧା ବାଟରେ । ଅତଏବ ସେ ଯାଗାଟା ଆଉ ରହିବା ପକ୍ଷେ ସୁବିଧା ନୁହେଁ । ତେଣୁ ତାଙ୍କ ବାପା ସେଠୁ ଗୁଡ଼ି ମସ୍କୋ ଚାଲି ଯାଆନ୍ତୁ ବୋଲି ସେ ବାପାଙ୍କୁ ପରାମର୍ଶ ଦେଇ ଲେଖିଥିଲେ ।

ସେଦିନ ଖାଇ ବସିବା ବେଳେ ପ୍ରିନ୍ସଙ୍କ ଘରଚୋଳା କାଗଗର କହିଲେ ଯେ ସେ ଶୁଣି ଆସିଛନ୍ତି ଯେ ଫରାସୀ ସେନା ଭିଟେବସ୍କ ସହର ଭିତରେ ପଶି ସାରିଲେଣି । ସେଥିରୁ ବୁଢ଼ା ପ୍ରିନ୍ସଙ୍କର ତାଙ୍କ ପୁଅଙ୍କ ଚିଠି କଥା ମନେ ପଡ଼ିଲା ।

ସେ ପ୍ରିନ୍ସେସ୍ ମେରିଆଙ୍କୁ କହିଲେ "ଆଜ ମୁଁ ପ୍ରିନ୍ସ ଆନ୍ଦ୍ରେଙ୍କ ଠାରୁ ଖବର ପାଇଛି । ତୁ ତା ଚିଠି ପଢ଼ିଛୁ ?"

ଡରି ଡରି ପ୍ରିନ୍ସେସ କହିଲେ "ନାହିଁ ତ ବାପା ।" ସେ ଚିଠି ସେ ପଢ଼ିଥିବା ସମ୍ଭବ ନଥିଲା, ସେ ଚିଠି କଥା ସେହି ମୁହୂର୍ତ୍ତରେ ସେ ଶୁଣିଲେ ।

ଚାଲିଥିବା ଯୁଦ୍ଧ ବିଷୟରେ କିଛି କହିଲାବେଳେ ପ୍ରିନ୍ସଙ୍କ ମୁହଁରେ ବିଦ୍ରୁପ ଭଙ୍ଗିରେ ଯେଉଁ ସ୍ମିତ ହସ ଫୁଟି ଉଠେ ସେ ସେହିପରି ହସି କହିଲେ "ଏ ଯୁଦ୍ଧ ବିଷୟରେ ସେ ଲେଖିଛି ।" ସେମାନେ ବୈଠକ ଖାନାକୁ ଉଠିଗଲା ଉତାରୁ ସେ ଚିଠିକୁ ପ୍ରିନ୍ସେସ ମେରିଆଙ୍କ ହାତକୁ ବଢ଼ାଇ ଦେଲେ । ତାଙ୍କର ଯେଉଁ ନୂଆ ଘରମାନ ତୋଳା ହେଉଥାଏ ତାର ନକସାକୁ ସାମ୍ନାରେ ମେଲାଇ ଦେଇ ସେ ସେହି ନକ୍ସାରେ ଦୃଷ୍ଟି ଯୋଖିଦେଇ ପ୍ରିନ୍ସେସ୍ ମେରିଆଁକୁ କହିଲେ ଚିଠିଟାକୁ ବଡ଼ପାଟିରେ ପଢ଼ିବାକୁ ।

ଚିଠି ପଢ଼ିସାରି ପଚାରିଲା ଭଳି ଚାହାଣିରେ ପ୍ରିନ୍ସେସ୍ ମେରିଆ ତାଙ୍କ ବାପାଙ୍କ ଆଡ଼କୁ ଚାହିଁଲେ । ସେ ସେହି କୋଠା ବାଡ଼ିର ନକ୍ସା ଆଡ଼କୁ ଏକ ଦୃଷ୍ଟିରେ ଚାହିଁ ଥାନ୍ତି, ଜଣାଯାଉଥାଏ ସେ ତାଙ୍କ ନିଜ ଚିନ୍ତାରେ ମଗ୍ନ ।

ଦେସାଲେ ଭରସି ଭରସି ପଚାରିଲେ, "ଆପଣଙ୍କର ସେ ବିଷୟରେ ମତ କଣ ପ୍ରିନ୍‌ସ ?

ଯେପରି କି ଗୋଟାଏ ଯନ୍ତ୍ରଣା ଦାୟକ ପରିଶ୍ରମ କରି ପ୍ରିନ୍‌ସ ଆପଣାକୁ ଚାହାଁଇ ଦେଉଛନ୍ତି ସେହିପରି ଉଠିପଡ଼ି ସେ କହିଲେ, "ମୁଁ ? ମୋ କଥା ପଚାରୁଛ ?......" ତାଙ୍କ ଦୃଷ୍ଟି ତଥାପି ସେହି ନକ୍‌ସାରେ ଲାଗି ରହିଥାଏ ।

"ଯୁଦ୍ଧଭୂଇଁ ଆମର ଅତି ପାଖକୁ ଘୁଞ୍ଚିଆସିବା ଖୁବ୍ କମ୍ ସମ୍ଭବ ।" ପ୍ରିନ୍‌ସ ହସି କହିଲେ, ହା-ହା-ହା ? ଯୁଦ୍ଧଭୂଇଁ ନିଶ୍ଚୟ ପୋଲାଣ୍ଡ ଦେଶରେ ହିଁ ହେବ । ଆଉ ଶତ୍ରୁପକ୍ଷ ନିମେନ ନଦୀ ଟପି ମାଡ଼ି ଆସିପାରିବେ ନାହିଁ । ଦେଶାଲେ ଆଶ୍ଚର୍ଯ୍ୟ ହୋଇ ପ୍ରିନ୍‌ସଙ୍କ ମୁହଁକୁ ଚାହିଁଲେ । ଶତ୍ରୁ ଆସି ନୀପର ନଦୀ କୂଳରେ ହେଲେଣି ଏଣେ ସେ କହୁଛନ୍ତି ନିମେନ୍ ନଦୀ କଥା ।

କିନ୍ତୁ ନିମେନ୍‌ର ଭୌଗଳିକ ଅବସ୍ଥିତିଟା କେଉଁଠି ଭୂଲିଯାଇ ପ୍ରିନ୍‌ସେସ୍ ମେରିଆ ଭାବିଲେ ଯେ ତାଙ୍କ ବାପା ଯାହା କହିଛନ୍ତି ସେହି କଥାହିଁ ଠିକ୍ ।

"ଯେତେବେଳେ ବରଫ ତରଳିବ ସେତେବେଳେ ପୋଲାଣ୍ଡର ପଙ୍କୁଆ ବିଲମାନଙ୍କରେ ଶତ୍ରୁ ବୁଡ଼ି ମରିବେ । ଖାଲି ଏତକ କଥା ଯେ ସେକଥା ତାଙ୍କୁ ଆଖିକି ଦିଶୁନାହିଁ ।" ବୁଢ଼ା ପ୍ରିନ୍‌ସ କହିଲା । ଲାଗୁଥାଏ ଯେ ସେ ସେତେବେଳକୁ ୧୮୦୭ ସାଲର ଯୁଦ୍ଧ କଥା ଭାବୁଛନ୍ତି । ସେଇଟା ତାଙ୍କୁ ସେତେବେଳର କଥାପରି ମନେ ହେଉଥାଏ । ସେ କହିଲେ "ବେନିଗ୍‌ସେନ ଆହୁରି ଆଗରୁ ପ୍ରୁସିଅ ଦେଶ ଭିତରେ ପଶିବା ଉଚିତ୍ ଥିଲା । ତାହେଲେ ଘଟନାର କ୍ରମ ଭିନ୍ନ ପ୍ରକାର ହୋଇଥାନ୍ତା ।"

ଦେସାଲେ ଡରି ଡରି କହିଲେ 'ସେ କଣ କହୁଛନ୍ତି ପ୍ରିନ୍‌ସ । ଚିଠିରେ ପରା ଭିଟେବସ୍କ କଥା ଲେଖା ହୋଇଛି ।"

ବିରକ୍ତ ହୋଇ ପ୍ରିନ୍ସ କହିଲେ "ଓହୋ ! ସେ ଚିଠିଟା ନା ! ହିଁ...ହିଁ..." ହଠାତ୍ ତାଙ୍କ ମୁହଁ ବିଷାଦରେ ଢ଼ାଙ୍କି ହୋଇଗଲା । ସେ ଅଟକିଗଲେ । କହିଲେ "ହିଁ ହିଁ । ସେ ଲେଖୁଛନ୍ତି ପତ୍ର, ଫରାସୀମାନେ ହାରିଗଲେ । କେଉଁ ନଈ ପାଖରେ ସେ ଯୁଦ୍ଧଟା ହେଲଚି ?"

ଦେସାଲେ ତଳକୁ ମୁହଁ ପୋତିଲେ । କଣ କହିଲେ "ପ୍ରିନସ ସେକଥା କହୁନାହାନ୍ତି ।" "ଏଁ ! କହୁନାହାନ୍ତି ! ତେବେ ? ତମେ ସବୁ କଣ ଭାବୁଛ ମୁଁ ଏସବୁ ମନରୁ ଫାନ୍ଦ କହୁଚ ?"

ସମସ୍ତେ ବହୁତ ବେଳଯାଏ ତୁନି ପଡ଼ି ରହିଗଲେ । ହଠାତ୍ ପ୍ରିନ୍ସ ମୁଣ୍ଡ ଟେକିଲେ । ଘରର ନକ୍ସା ଆଡ଼କୁ ହାତ ଦେଖାଇ କହିଲେ, "ହିଁ......ହିଁ......ହଉ, ମିହାଇଲ ଇଭାନିଚ, ସେଇଟା କେମିତି ବଦଳାଇ ଦେବ ବୋଲି ତୁମେ ଭାବଚ ମତେ ବୁଝେଇଲ ।"

ମିହାଇଲ୍ ଇଭାନିଚ ନକସା ପାଖକୁ ଚାଲିଗଲା । ସେହି ବିଷୟରେ ତା ସଙ୍ଗରେ କଥା କହି କହି ବୁଢ଼ା ପ୍ରିନ୍ସ ମଧ୍ୟ ତାଙ୍କ ନିଜ ବଖରାକୁ ଚାଲିଗଲେ ।

ଗଲାବେଳେ ସେ ପ୍ରିନ୍ସେସ୍ ମେରିଆ ଓ ଦେସାଲେଙ୍କ ଆଡ଼କୁ କୋପଦୃଷ୍ଟି ପକାଇ ଗଲେ ।

ଦେସାଲେ ତାଙ୍କ ବାପାଙ୍କ ଆଡ଼କୁ ଚାହିଁଲା ବେଳେ କେମିତି ଆବା କାବା ହୋଇ ରହିଥିଲେ, ପ୍ରିନ୍ସେସ୍ ମେରିଆ ତାହା ଦେଖିଲେ । ଦେସାଲେ କେମିତି ଚୁପ୍ ହୋଇ ରହିଲେ ତା ବି ସେ ନଜର କଲେ । ଆଉ ଦେଖିଲେ ଯେ ବାପା ପୁଅର ଚିଠିକୁ ପାଶୋରିଦେଇ ବୈଠକଖାନା ଘର ଟେବୁଲ୍ ଉପରେ ଛାଡ଼ିଦେଇ ଯାଇଛନ୍ତି । କିନ୍ତୁ ସେ ବିଷୟରେ ପାଠ ଫିଟାଇବାକୁ କି କାହିଁକି ଦେସାଲେ ଏମିତି ବୋକା ଭଳି ହୋଇ ତୁନି ହୋଇଗଲେ, ତାର କାରଣ ପଚାରିବାକୁ କି ସେ ବିଷୟରେ ଆଦୌ ଭାବିବାକୁ ତାଙ୍କୁ ଡର ମାଡ଼ୁଥାଏ ।

ସଞ୍ଜବୁଡ଼େ ପ୍ରିନ୍‌ସ ପ୍ରିନ୍‌ସେସ୍‌ ମେରିଆଙ୍କ ପାଖକୁ ମିହାଇଲ୍‌ ଇଭାନଚ କୁ ପଠାଇଲେ, ସେ ଯେଉଁ ଚିଠିଟା ସେ ଟେବୁଲ ଉପରେ ଛାଡ଼ିଦେଇ ଆସିଛନ୍ତି ସେ ଚିଠିଟାକୁ ଯାଇ ନେଇ ଆସିବାକୁ । ପ୍ରିନ୍‌ସେସ୍‌ ମେରିଆ ତାଙ୍କୁ ସେ ଚିଠିଟା ଦେଇଦେଲେ ।

ପଚାରିବାକୁ ଖରାପ ଲାଗୁଥାଏ, ତଥାପି ସେ ସାହାସ କରି ପଚାରିଲେ "ବାପା କ'ଣ କରୁଛନ୍ତି କି ?"

ମିହାଇଲ୍‌ ଇଭାନଚ୍‌ କହିଲା "ତଥାପି ଭାରି କାର୍ଯ୍ୟବ୍ୟସ୍ତ ଅଛନ୍ତି ।" ମିହାଇଲ୍‌ ଇଭାନଚ୍‌ଙ୍କ ସ୍ୱରରେ ମର୍ଯ୍ୟାଦା ଥିଲେବି ବିଦ୍ରୂପ ମିଶିଥିଲା, ପ୍ରିନ୍‌ସ ମେରିଆଙ୍କ ମୁହଁ ବିବର୍ଣ୍ଣ ପଡ଼ିଗଲା । ମିହାଇଲ ଇଭାନଚ୍‌ କହିଲେ "ସେ ନୂଆ ଘରଢ଼ିଟା କେଉଁ ପ୍ରକାର ହେବ ସେହିକଥା ଭାବି ଭାବି ସେ ଭାରି ବ୍ୟସ୍ତ । ଆଗେ କିଛି ବହିପତ୍ର ହେଲେ ପଢ଼ୁଥିଲେ ସିନା, ଏବେତ—" ମିହାଇଲ୍‌ ଇଭାନଚ୍‌ ସ୍ୱର ନୂଆଇଁ କହିଲେ "ମତେ ଲାଗୁଛି ସେ ତାଙ୍କ ଆଲମାରି ପାଖରେ ରହି ତାଙ୍କ ଉଇଲ୍‌ ଖୋଜୁଛନ୍ତି ।" ପ୍ରିନ୍‌ସ ମଲାବେଳେ ଯେଉଁ କାଗଜପତ୍ର ସବୁ ଛାଡ଼ିଦେଇ ଯିବେ ବୋଲି ଭାବୁଥାନ୍ତି ତାଙ୍କୁ କହୁଥାନ୍ତି ଏଇଟା ତାଙ୍କ ଉଇଲ୍‌ । ଦିନ କେତେ ହେଲା ତାଙ୍କର ପ୍ରଧାନ କାମ ହୋଇଥିଲା ସେହିସବୁ କାଗଜ-ଗୁଡ଼ାକ ଘାଣ୍ଟି ଘାଣ୍ଟି ଦେଖିବା ।

ପ୍ରିନ୍‌ସେସ ମେରିଆ ପଚାରିଲେ "ଆଲ୍‌ପାଭିଚ୍‌କୁ ସ୍ମୋଲେନ୍‌ସ୍କ ପଠା ହେଉଛି ?"

"ନିଶ୍ଚୟ । ସେ ତ ବହୁତବେଳୁ ହୁକୁମକୁ ଅପେକ୍ଷା କରିଛି ।" ମିହାଇଲ୍‌ ଇଭାନଚ୍‌ ସେ ଚିଠି ନେଇ ଯେତେବେଳେ ପ୍ରିନ୍‌ସ ପଢ଼ାଘରେ ଯାଇ ପହଞ୍ଚିଲେ ସେତେବେଳେ ବୁଢ଼ା ପ୍ରିନ୍‌ସ ତାଙ୍କ ଖୋଲା ଆଲ୍‌ମାରି ପାଖରେ ଚଷମା ପିନ୍ଧି ବସିଥାନ୍ତି, ଆଖିକୁ ଛାଇ କରିବାକୁ ଆଲୁଅରେ ଢାଙ୍କୁଣି ଦେଇଥାନ୍ତି, ଘରର ମହମବତୀଗୁଡ଼ାକ ଉପରେ ବି ଢାଙ୍କୁଣି ଦିଆ ହୋଇଥାଏ ।

ତାଙ୍କ ସ୍କୁରପାଖେ କାଗଜପତ୍ର ଥୁଆ ହୋଇଥାଏ । ସେ କାଗଜକୁ ନିଜଠୁଁ ବହୁତ ଦୂରେଇ ଦୂରେଇ ଧରିଥାନ୍ତି । ସେ ଘର ଗମ୍ଭୀର ଠାଣିରେ ବସି ରହିଥାନ୍ତି । ଆଜି ସେ ମରିଗଲେ ରୁଷ ସମ୍ରାଟଙ୍କୁ ତାଙ୍କର ଯେଉଁ କାଗଜପତ୍ର (ସେ ତାକୁ କହନ୍ତି ତାଙ୍କ ମନ୍ତବ୍ୟ) ଦିଆହେବ ସେହିଗୁଡ଼ାକ ପଢ଼ୁଥାନ୍ତି ।

ଯେତେବେଳେ ମିହାଇଲ୍ ଇଭାନିଚ୍ ଯାଇ ପହଞ୍ଚିଗଲେ ସେତେବେଳେ ବୁଢ଼ା ପ୍ରିନ୍ସଙ୍କ ଆଖିରେ ଲୁହ ଥିଲା । ଯେଉଁ କାଗଜ ସେ ପଢ଼ୁଥାନ୍ତି ତାକୁ ସେ ଯେଉଁ ସମୟରେ ଲେଖିଥିଲେ ସେହି ସମୟର କଥାମାନ ମନେକୋଇ ତାଙ୍କ ଆଖିରୁ ଲୁହ ବୋହୁଥାଏ । ସେ ମିହାଇଲ୍ ଇଭାନିଚ୍‌ଙ୍କ ହାତରୁ ଚିଠିଟି ନେଇଯାଇ ପକେଟ୍‌ରେ ପୁରାଇଦେଲେ । କାଗଜପତ୍ର ଗୋଟାଇ ପୋଟାଇ ଭଙ୍ଗିଭୁଙ୍ଗି ଦେଲେ । ତାପରେ ତାଙ୍କ ଗୁମାସ୍ତା ଆଲ୍‌ପାତିଚ୍ ଯେ ବହୁତବେଳୁ ଅପେକ୍ଷା କରିଥିଲା ତାକୁ ଡକାଇଲେ ।

ସ୍ମୋଲେନ୍‌ସ୍କ ସହରରେ ତାଙ୍କର କ'ଣ କ'ଣ ଦରକାର ସେକଥା ସେ ଗୋଟିଏ କାଗଜରେ ଲେଖି ଦେଇଥିଲେ । ଆଲ୍‌ପାତିଚ୍ କବାଟ ଦୁଆରମୁହଁରେ ଠିଆ ହୋଇଥାଏ । କ'ଣ କ'ଣ କରିବାକୁ ହେବ ତାକୁ ନିର୍ଦ୍ଦେଶ ଦେଲାବେଳେ ସେ ନିଜେ ଏମୁଣ୍ଡ ସେମୁଣ୍ଡ ବୁଲୁଥାନ୍ତି ।

"ଆଗ ଆଣିବୁ ଚିଠିଲେଖା କାଗଜ, ବୁଝିଲୁ, ଆଠହସ୍ତା ଆଣିବୁ । ହେଲେ ଦେଖିବୁ, ହେଇ ଏମିତିକା ଆଣିବୁ, କଡ଼ରେ ସୁନେଲିବର୍ଣ୍ଣ ହୋଇଥିବ । ···ଏଇଟାକୁ ନେଇଯା ଯେ ସ୍ଥା ସାଙ୍ଗରେ ମିଳେଇ ଆଣିବୁ ······ବାର୍ଣ୍ଣିସ ଆସିବ, ଜିଉ ଆସିବ, ଜିଉମୁଦ କରିବାକୁ ଜିଉ— ମିହାଇଲ୍ ଇଭାନିଚ୍ ଯେଉଁ ତାଲିକା କରିଛନ୍ତି ସେହି ମାଫିକେ ଆସିବ ।"

ସେ ଏକର ସେକର ବୁଲୁଥାନ୍ତି, ଆଜି ଗୋଟାଏ ଦରଖାସ୍ତ ଲେଖିଥାନ୍ତି ସେଇଟା ଆଡ଼କୁ ଚାହିଁଥାନ୍ତି । ତାପରେ କହିଲେ ନିଜେ ଯାଇ ଲାଟ୍ ସାହେବଙ୍କ ହାତରେ ଏ ଚିଠିଟା ଦେଇଦେବୁ । ସୈନ୍ୟ ବିଭାଗରେ ମିଶିବାପାଇଁ ଯେଉଁ ଚିଠି ଦେଇଚୋଟାକ ଏଇ ।

ତାପରେ ସେ କହିଲେ, ସେ ଯେଉଁ ନୂଆ କୋଠା ହେବ ତା ଘର କବାଟ ବନ୍ଦ କରିବାପାଇଁ ଯେଉଁ ଛିଟିକଣି ଲାଗିବ ସେଗୁଡ଼ାକ ମଧ୍ୟ ଆଣିବାକୁ ହେବ । ସେଗୁଡ଼ାକ ନୂଆ ପ୍ରକାରେ ହେବା ଦରକାର, ସେ ନିଜେ ଯେଉଁ ପ୍ରକାର ହେବ ବୋଲି ନକ୍‌ସା କରିଛନ୍ତି ସେମିତିଆ । ସେଉଠୁ ସେ କହିଲେ ତାଙ୍କ ଉଇଲ୍ ରଖିବାକୁ ଗୋଟାଏ ସିନ୍ଦୁକ ଦରକାର, ସେଥିରେ ଲୁହା ଗୋବ ଲାଗିଥିବ ।

ଆଲ୍‌ପାତିଚ୍‌କୁ ସବୁ ନିର୍ଦ୍ଦେଶ ଦେଉ ଦେଉ ଦୁଇଘଣ୍ଟା ଲାଗିଗଲା । ତଥାପି ପ୍ରିନ୍‌ସ ତାକୁ ଯିବାକୁ ଛାଡ଼ିଲେ ନାହିଁ । ପ୍ରିନ୍‌ସ ବସିପଡ଼ିଲେ, ଚିନ୍ତାମଗ୍ନ ହେଲେ, ଆଖି ବୁଜିଦେଇ ଢୁଳେଇଲେ । ଆଲ୍‌ପାତିଚ୍ ଟିକିଏ ହଲ୍‌ଚଲ୍ ହେଲେ ।

ବୁଢ଼ା ପ୍ରିନ୍‌ସ କହିଲେ "ହଉ ଯା, ଯା ବାହାରି । କିଛି ଦରକାର ପଡ଼ିଲେ ମୁଁ ଡକେଇବି ଯେ ।"

ଆଲ୍‌ପାତିଚ୍ ଚାଲିଗଲା । ପ୍ରିନ୍‌ସ ପୁଣି ଆଲମାରି ପାଖକୁ ଫେରିଗଲେ । ତା ଭିତରୁ ଦେଖି ଦେଖି ସେ ତାଙ୍କ କାଗଜପତ୍ର ଉପରେ ହାତ ବୁଲେଇ ଆଣିଲେ । ପୁଣି ଆଲମାରି ବନ୍ଦକଲେ, ଟେବୁଲ୍ ପାଖେ ବସିପଡ଼ି ଲାଟ୍ ସାହେବଙ୍କ ପାଖକୁ ଚିଠି ଲେଖିଲେ ।

ସେ ଚିଠି ଲେଖିସାରି ବନ୍ଦକରି ଜଉମୁଦ ଦେଉ ଦେଉ ବହୁତ ଡେରି ହୋଇ ଯାଇଥାଏ । କିନ୍ତୁ ସେ ଜାଣିଥିଲେ ତାଙ୍କୁ ନିଦ ମାଡ଼ିବ ନାହିଁ । ଆଉ ବିଛଣାରେ ପଡ଼ିଲେ ତାଙ୍କ ମୁଣ୍ଡକୁ ଖାଲି ଦୁଃଖର ଚିନ୍ତାଗୁଡ଼ାଏ ମାଡ଼ିଆସିବ । ସେ ଟିହନକୁ ଡାକି ତା ସଙ୍ଗରେ ସବୁ ଘରେ ବୁଲି ବୁଲି ଦେଖିଲେ । ସେ ରାତିରେ କେଉଁଘରେ ତାଙ୍କ ପାଇଁ ବିଛଣା ପଡ଼ିବ ସେ ତାକୁ ପଚାରୁଥାନ୍ତି ।

ସେ ଖାଲି ବୁଲୁଥାନ୍ତି, ସବୁ କଣ ମାପି ମାପି ଦେଖୁଥାନ୍ତି । କୌଣସି ଜାଗାରେ ବିଛଣା ହେବାକୁ ତାଙ୍କୁ ଶାନ୍ତ ଲାଗିଲା ନାହିଁ । ସବୁଠୁ ବେଶି ଖରାପ ଲାଗିଲା ପଢ଼ିବା ଘରେ ଯେଉଁ ପଲଙ୍କଟା ପଡ଼ିଥିଲା ସେଇଟା । ସେଇ ପଲଙ୍କରେ ଆଗେ ଶୋଇବା ତାଙ୍କର ଅଭ୍ୟାସ ହୋଇ ଯାଇଥିଲା,

କିନ୍ତୁ ତାଙ୍କୁ ଦେଖିଲେ ଡର ମାଡ଼ୁଥିଲା । ବୋଧହୁଏ ସେ ପଲଙ୍କରେ ଶୋଇଲେ ସେ ଯେଉଁ ଦୁଃଖଦାୟକ କଥାମାନ ଭାବନ୍ତି ସେଇଥିପାଇଁ । କୌଣସି ଜାଗା ତାଙ୍କୁ ଉପଯୁକ୍ତ ଜଣାଗଲା ନାହିଁ । କିନ୍ତୁ ପିଆନେ ବାଜା ଯେଉଁଠି ଥିଲା ତା ପଛଆଡ଼େ ବସିବା ଘରର ସେହି କଣଟା ତାଙ୍କୁ ସବୁଠୁ ଭଲ ଜଣାପଡ଼ୁଥାଏ । ସେଠି ସେ ଏପର୍ଯ୍ୟନ୍ତ ଶୋଇନଥିଲେ ।

ଦରୁଆନ୍‌ମାନଙ୍କ ସଙ୍ଗରେ ଧରାଧରି କରି ଟିହନ୍ ସେଠିକି ପଲଙ୍କଟାକୁ ବୋହିଆଣି ବିଛଣା ପାରିବାକୁ ବନ୍ଦୋବସ୍ତ କଲେ ।

"ସେ ଠିକ୍ ହେଲା ନାହିଁ, ସେ ଠିକ୍‌ହେଲା ନାହିଁ । ବୁଢ଼ା ପ୍ରିନ୍‌ସ ପାଟିକରି ଉଠିଲେ । ତାପରେ ନିଜ ହାତରେ ସେ ଖଟଟାକୁ କଣରୁ ଇଞ୍ଚେ ଠେଲି ଦେଲେ, ପୁଣି କଣ ଆଡ଼କୁ ଘୁଞ୍ଚାଇ ଦେଇ ଭାବିଲେ "ହଉ, ଯାହା କରିବାର ସବୁ ମୁଁ କରିସାରିଛି । ଏଥର ମୁଁ ବିଶ୍ରାମ କରିବି । ତାଙ୍କ ଦେହରୁ ପୋଷାକ ଓହ୍ଲାଇବା କାମ ସେ ଟିହନକୁ କରିବାକୁ ଛାଡ଼ିଦେଲେ ।

କୋଟ ପ୍ୟାଣ୍ଟ ଓହ୍ଲାଇବାକୁ ତାଙ୍କୁ ଯେଉଁ ପରିଶ୍ରମ କରିବାକୁ ପଡ଼ୁଥାଏ ସେଥିପାଇଁ ବୁଢ଼ା ପ୍ରିନସ ଭ୍ରୂକୁଟି କରୁଥାନ୍ତି । ତାପରେ ସେ ଲୁଗାପଟା ଖୋଲିଦେଲେ । ତାଙ୍କ ବିଛଣା ଉପରେ ବସିପଡ଼ି ମୁଣ୍ଡକୁ ତଳକୁ ଓହଳାଇ ଦେଲେ, ସତେକି ତାଙ୍କର ହଳଦିଆ ପଡ଼ିଯାଇଥିବା ସରୁ ସରୁ ଗୋଡ଼ ଦିଟାକୁ ଚେକି ସେ ବଡ଼ ଆବେଗରେ ଗୃହିଁ ରହି ଭାବନାରେ ବୁଡ଼ି ଯାଇଛନ୍ତି । ପ୍ରକୃତରେ ସେ କିଛି ଭାବୁନଥିଲେ, ଖାଲି ଗୋଡ଼ ଦିଟାକୁ ଟେକି ବିଛଣା ଉପରେ ଥୋଇବାକୁ ଯେତିକି ପରିଶ୍ରମ ଦରକାର ସେତିକି କରିବା ଆଗରୁ ଦମ୍ ନେଉଥାନ୍ତି । ସେ ଭାବିଲେ "ଆଃ ! ମତେ କେଡ଼େ ଅସହ୍ୟ ହେଲାଣି ! ଏ ପରିଶ୍ରମ ଚଞ୍ଚଳ ସରିଯାଆନ୍ତା କି । ଖାଲି ତୁମେ ଯଦି ମତେ ଯିବାକୁ ଦିଅନ୍ତ !" ଓଠରେ ଓଠକୁ ଟାଣିକରି ଚିପି କୋଡ଼ିଏ ହଜାର ଥରକି ସେ ସେହି ପରିଶ୍ରମ କରି ବିଛଣାରେ ପଡ଼ିଗଲେ । କିନ୍ତୁ ସେ ଯେମିତି ବିଛଣାରେ ପଡ଼ିଗଲେ ତାଙ୍କୁ ଲାଗିଲା ଯେ ବିଛଣାଟା ଥରେ ଏପାଖ ଥରେ ସେପାଖ ହୋଇ ବାରମ୍ବାର

ଖାଲି ଦୋହଲୁଛି, ଲାଗୁଥାଏ ସତେକି ବିଛଣାଟା ଉଠୁଛିପଡ଼ୁଛି, ଝାଙ୍କି ହେଉଛି । ତାଙ୍କ ଆଖି ଗୁଁ ଗୁଁ ଏ ବୁଜିହୋଇ ଯାଉଥାଏ । ସେ ଆଖି ଖୋଲିଲେ ।

କେଉଁ ଅଜଣା ଲୋକଙ୍କ ଉପରେ ମନେ ମନେ ରଗିଯାଇ ସେ କହିଲେ "ଆଚ୍ଛା ମଣିଷଗୁଡ଼ାକ ! ମଣିଷଙ୍କୁ ଟିକିଏ ହେଲେ ଶାନ୍ତି ଦେଲେ ନାହିଁ । ହଁ ହଁ । କ'ଣ ଗୋଟାଏ ଭାରି ଗୁରୁତର କଥା ଥିଲାପରି । କ'ଣ ଗୋଟାଏ ଭାରି ଗୁରୁତର କଥା ମୁଁ ମନେ ମନେ ରଖିଥିଲି ବିଛଣାରେ ପଡ଼ି ଭାବିବି ବୋଲି । ବୋଲଟ କଥା ! ନା, ମୁଁ ତ ସେକଥା କହୁଛି ! ନା ବୈଠକଖାନାରେ କ'ଣ କଥା ପଡ଼ିଥିଲା । ପ୍ରିନ୍‌ସ ମେରିଆ କଣ ବାଜେକଥା କହୁଥିଲା । ଦେସାଲେ—ସେଇଟା ଗୋଟାଏ ମୂର୍ଖ - ସେଇ କ'ଣ କହିଦେଲା, ମୋ ପକେଟ୍‌ରେ କଣଟାଏ ମୁଁ ରଖିଛି — ନା, ମନେପଡ଼ିଲା ନାହିଁ ।"

"ଟିଖୋ, ଖାଇ ବସିଲାବେଳେ ଆମେ କେଉଁ କଥା ପକାଇଥିଲୁଟି ?

"ପ୍ରିନ୍‌ସ ମିହାଇଲ୍—"

"ଆରେ ରହିଥା ରହିଥା—" ପ୍ରିନ୍‌ସ ଟେବୁଲ୍ ଉପରେ ହାତ ବାଡ଼େଇ କହିଲେ "ହଁ। ମୋର ମନେଅଛି, ପ୍ରିନ୍‌ସ ଆନ୍ଦ୍ରେ ଚିଠି ଲେଖିଛନ୍ତି । ପ୍ରିନସେସ୍ ମେରିଆ ତାକୁ ପଢ଼ିଲା । ଦେସାଲେ ଭିଟେବ୍‌ସ୍କ ବିଷୟ କ'ଣ କହୁଥିଲା । ମୁଁ ବର୍ତ୍ତମାନ ତାକୁ ପଢ଼େ ।"

ତାଙ୍କ ପକେଟ୍ ଭିତରୁ ଚିଠିଟା ବାହାର କରି ଦେବାକୁ ସେ ଟିହନ୍‌କୁ କହିଲେ, ଯେଉଁ ସାନ ଟେବୁଲ୍ ଉପରେ ତାଙ୍କର ଲେମ୍ବୁ ସରବତ୍ ଥୁଆହୋଇଛି, ବାଙ୍କୁଲି ପାପଦାଣ୍ଡି ଉପରେ ମହମବତୀ ଥୁଆ-ହୋଇ ଜଳୁଛି ସେ ଟେବୁଲ୍‌ଟାକୁ ଆଉ ଟିକିଏ ତାଙ୍କ ପାଖକୁ ଘୁଞ୍ଚାଇ ଆଣିବୁ କହିଲେ । ତାପରେ ଚଷମା ପିନ୍ଧି ସେ ପଢ଼ିବାକୁ ଆରମ୍ଭ କଲେ । ଶାଗୁଆ ଢାଙ୍କୁଣି ତଳେ କ୍ଷୀଣ ଆଲୁଅ ପଡ଼ୁଥାଏ, ସେହି ଆଲୁଅରେ ନଶା

ରାତର ସ୍ତବ୍ଧତା ଭିତରେ ସେତେବେଳେ ସେ ଚିଠିଟି ପଢ଼ିଲେ, ସେତିକିବେଳେ ମୁହୂର୍ତ୍ତକ ପାଇଁ ପ୍ରଥମଥର ହୋଇ ସେ ସେହି ଚିଠିର ଉତ୍ତର ବୁଝିପାରିଲେ । ସେ କହିଲେ "ଫରାସୀ ସୈନ୍ୟ ଆସି ଭିଟେବସ୍କରେ ଅଛନ୍ତି, ଗୃହବଦନ ଚାଲିଲେ ସେମାନେ ଆସି ସ୍ମାଲେନ୍‌ସକ୍ ପହଞ୍ଚିବେ । ହୁଏତ ଏତେବେଳକୁ ସେଠି ପହଞ୍ଚି ସାରିବେଣି । କିନ୍ତୁ—କିହନ ଡ଼ିଆଁ ଟାଏ ମାରିଲେ । ସେ ପାଟିକଲେ "ନାହିଁ, କିଚ୍ଛି ନାହିଁ, କିଚ୍ଛି ନାହିଁ ।"

ସେ ଚିଠିଟିକୁ ଘାପଦାଣ୍ଡି ତଳେ ଥୋଇଦେଇ ଆଖି ବୁଜିଦେଲେ । ତାଙ୍କର ସ୍ମରଣରେ ଭାସିଉଠିଲା ଦାନ୍ୟୁବ ନଈ, ଉଜ୍ଜ୍ୱଳ ଦ୍ୱିପ୍ରହର, ନଈ କୂଳରେ ବେଣାବୁଦା, ଋଷ୍ ସୈନ୍ୟଙ୍କ ଗୁଞ୍ଜଣି, ସେ ନିଜେ ସେତେବେଳେ ଜଣେ ତରୁଣ ସେନାପତି, ଚନ୍ଦ୍ରାର ଗାରଟିଏ ବି ନାହିଁ, ସେତେବେଳେ ସାହସ ଥିଲା, ମନ ପ୍ରଫୁଲ୍ଲ ଥିଲା, ଦେହ ତେଜ ଥିଲା । ଦଶିଯାଉଥାଏ, ପଟ୍ଟୋମକିନ୍‌ଙ୍କ ତମ୍ବୁ, ତାର ସୁନ୍ଦର ରଙ୍ଗ, ସେହି ତମ୍ବୁ ଭିତରକୁ ସେ ପଶିଯାଉଥାନ୍ତି, ମହାରାଣୀଙ୍କର ପ୍ରିୟପାତ୍ର ପଟ୍ଟୋମ୍‌କିନ୍‌ଙ୍କ ପ୍ରତି ଈର୍ଷାରେ ତାଙ୍କ ଅନ୍ତର ସେତେବେଳେ ଜଳି ଯାଉଥାଏ, ଏବେହି ସେତିକି ତୀବ୍ର ହୋଇ ଜଳି ଉଠିଲାପରି ଲାଗୁଛି । ପ୍ରଟ୍ଟୋମ୍‌କିନ୍‌ଙ୍କ ସଙ୍ଗରେ ସେହି ପ୍ରଥମ ସାକ୍ଷାତ୍ ବେଳର ସବୁକଥା ଗୋଟି ଗୋଟି ହୋଇ ତାଙ୍କର ମନେ ପଡ଼ିଯାଉଛି । ତାପରେ ଦଶିଯାଉଛି ଗୋଟିଏ ମୋଟି ବାଙ୍ଗର ସ୍ତ୍ରୀଲୋକ ତାଙ୍କର ମାଉଁସିଆ କାଉଁଦା ମୁହଁ ସେ ସମ୍ରାଟଙ୍କ ମା, ମହାରାଣୀ । ମନେପଡ଼ୁଛି ସେ ପ୍ରଥମେ ତାଙ୍କୁ ଦେଖା କରିବାକୁ ଗଲାବେଳକୁ ସେ କେମିତି ମୁରୁକି ମୁରୁକି ହସି ତାଙ୍କୁ ଅଭ୍ୟର୍ଥନା କରିଥିଲେ; କଣ ସେ କହିଥିଲେ, ତାପରେ ସେ ଯେତେବେଳେ ଶବଧାର ଉପରେ ମରି ଶୋଇଥିଲେ ସେତେବେଳେ ତାଙ୍କ ମୁହଁ ଯେପରି ଦିଶୁଥିଲା, ମନେ ପଡ଼ୁଯାଉଛି ତାଙ୍କୁ କଫିନ୍‌ରେ ଲଦିଲାବେଳେ କିଏ ତାଙ୍କ ହାତରେ ଚୁମ୍ବନ ଦେବ ସେଥିପାଇଁ ଜୁବଓଁକ ସଙ୍ଗରେ ତାଙ୍କର ସେ କଳି ।

"ଓଃ । ଚଞ୍ଚଳ । ଚଞ୍ଚଳ ପଳାଇଯାଆନ୍ତି କି ସେହି ଅତୀତକୁ । ଏଇ ବର୍ତ୍ତମାନଟା କେମିତି ଚଞ୍ଚଳ ସରିଯାଆନ୍ତାକି ! ସେମାନେ ମତେ ନିଶ୍ଚିନ୍ତରେ ରହିବାକୁ ଛାଡ଼ି ଦିଅନ୍ତେ କି !"

ପ୍ରିନ୍ସ ନିକୋଲେ ଆନ୍ଦ୍ରେଇଚ୍ ବଲ୍କନ୍ସ୍କିଙ୍କ ଜମିଦାରୀଟି, ଯାହା ନାଁ 'ଲଣ୍ଡା ପାହାଡ଼,' ସେଇଟା ସ୍ମୋଲେନସ୍କ ସହରର ଟିକିଏ ପଛ ଆଡ଼କୁ ହୋଇ ସେଠୁ ଷାଠିଏ ଭର୍ସ ବାଟ । ମସ୍କୋକୁ ଯିବା ବଡ଼ ସଡ଼କଠାରୁ ତିନି ଭର୍ସ ଦୂର ।

ଯେଉଁ ଦିନ ସଞ୍ଜରେ ପ୍ରିନ୍ସ ତାଙ୍କର ନିର୍ଦ୍ଦେଶ ମାନ ବଢ଼ାଇ ଆଲ୍ ପାଭିଚକୁ ସ୍ମୋଲେନ୍ସ୍କକୁ ପଠାଇଲେ, ସେଇ ସଞ୍ଜରେ ଦେସାଲି ପ୍ରିନ୍ସ ମେରିଆଙ୍କ ସାଙ୍ଗରେ ବିପଦ କଥା ହେବାକୁ ଅନୁମତି ମାଗି ତାଙ୍କୁ କହିଲେ ଯେ ପ୍ରିନ୍ସଙ୍କ ଦେହ ଭଲ ନାହିଁ କି ନିଜକୁ ନିରାପଦରେ ରଖିବାକୁ ସେ କୌଣସି ଉପାୟ କରୁନାହାନ୍ତି ଅଥଚ ପ୍ରିନ୍ସ ଆନ୍ଦ୍ରେ ତାଙ୍କ ଚିଠିରେ ଲେଖିଛନ୍ତି ଯେ "ଲଣ୍ଡା ପାହାଡ଼ରେ" ରହିଥିଲେ ସେ ବିପଦରୁ ମୁକ୍ତ ହେବେ ନାହିଁ । ଆଲ ପାଭିଚ୍ ତେଣୁ ପ୍ରିନ୍ସେସଙ୍କୁ ସମ୍ମାନ ସହକାରେ ନିବେଦନ କରେ ଯେ ନିଜ ହାତରେ ଖଣ୍ଡେ ଚିଠି ଲେଖି ସେ ସ୍ମୋଲେନସ୍କର ଲାଟସାହେବଙ୍କୁ ପଠାନ୍ତୁ, ତାଙ୍କୁ ପଚାରନ୍ତୁ ଘଟଣା କ'ଣ ହୋଇଛି ଓ "ଲଣ୍ଡା ପାହାଡ଼ରେ" ପଡ଼ି ରହିବା ଦ୍ୱାରା କେତେବେଳେ କେଉଁ ବିପଦ ଆସିବ ସେ ବିଷୟରେ ମଧ୍ୟ ଲାଟ୍ ସାହେବଙ୍କୁ ଚିଠିଲେଖି ପଚାରନ୍ତୁ । ପ୍ରିନ୍ସେସ୍ ମେରିଆଙ୍କ ପାଇଁ ଦେସାଲେ ଲାଟ୍ସାହେବଙ୍କ ପାଖକୁ ଖଣ୍ଡିଏ ଚିଠି ଲେଖିଦେଇ, ପ୍ରିନସେସ୍ ତାକୁ ଦସ୍ତଖତ କଲେ । ସେ ଚିଠିଟା ଆଲପାଭିଚ୍କୁ ଦିଆ ହେଲା । ତାକୁ କୁହାଗଲା ଯେ ଚିଠିକୁ ସେ ଲାଟ ସାହେବଙ୍କୁ ଦେଇ ଦେବ ଓ ଯଦି ବିପଦ ଅଛି ଦେଖିବ ତାହାହେଲେ ଯେତେ ଚଞ୍ଚଳ ପାରେ ସେତେ ଚଞ୍ଚଳ ସେ ଧାଇଁ ପଳାଇ ଆସିବ ।

ତାକୁ ଯେତେ ନିର୍ଦ୍ଦେଶ ଦେବାକଥା ସବୁକଥା କୁହାଗଲାପରେ ଆଲପାଭିଚ୍ ବାହାରିଲା । ପ୍ରିନ୍ସ ତାକୁ ଚମଡ଼ର ଲୋମ ଥିଆର ମୂଲ୍ୟବାନ୍ ଟୋପିଟିଏ ଦେଇଥିଲେ । ତାକୁ ସେ ମୁଣ୍ଡରେ ଗଳେଇଲା । ବାଡ଼ି ଖଣ୍ଡିଏ ଧରିଲା । ନିଜେ ଗୋଟିଏ ପ୍ରିନସ ପରି ସେ ବାହାରି ଚାଲିଗଲା । ତା ପଛେ ପଛେ ଘର ବଉଁଶ ସାକ ସମସ୍ତେ ଚାଲିଥାନ୍ତି । ଚମଡ଼ାର ଛତକଥା ଗାଡ଼ିଟିଏ ସଜା ହୋଇଥାଏ । ସେଥିରେ ତିନୋଟି

ଘୋଡ଼ା ଲାଗିଥାନ୍ତି । ତିନି ଘୋଡ଼ାଙ୍କର ଚିକକ୍‌ଣ ଦେହ, ଦେହର ବର୍ଣ୍ଣ ନାଲିଆ ବାଦାମି, ତା ଉପରେ ଧଳା ପାଉଁଶିଆ ଟୋପା ଟୋପା ହୋଇ ଛିଟିଛିଟିକା ।

ଘୋଡ଼ାଙ୍କ ବେକର ଘଣ୍ଟି ଭିତରେ କାଗଜ ପୁରାଇ ଘଣ୍ଟିକୁ ବାନ୍ଧି ଦିଆଗଲା । ଯେମିତି ସେଗୁଡ଼ାକ ନ ବାଜିବ । ଘଣ୍ଟି ଟୁଣୁ ଟୁଣୁ କରି କାହାରିକି "ଲଣ୍ଡା ପାହାଡ଼" ଇଲାକାରେ ଘୋଡ଼ା ଗାଡ଼ିରେ ଯିବାକୁ ପ୍ରିନ୍‌ସ ଅନୁମତି ଦେଉନଥିଲେ । କିନ୍ତୁ ଲମ୍ବା ରାସ୍ତାରେ ଗାଡ଼ିରେ ଯାଉଥିଲାବେଳେ ଘଣ୍ଟି ଟୁଣୁ ଟୁଣୁ ଶୁଣିବାକୁ ଆଲପାତିଚକୁ ଭାରି ଭଲଲାଗେ । ଆଲପାତିଚର ସବୁ ଚଳଆ କର୍ମଚାରୀ ପଇସାପତ୍ରର ହିସାବ ଯେଉଁ ଘରେ ରହେ ସେ ଘରର କିରାଣି ବାବୁ, ଚାକରମାନଙ୍କ ସୁଆର, ବଡ଼ ସୁଆର, ଦିଜଣ ବୁଢ଼ୀ, ଗୋଟିଏ ଚାକର ଟୋକା, ଜଣେ ଗାଡ଼ିଆନ୍, ଆହୁରି ଅନେକ ଚାକର, ଆଲପାତିଚ୍ ଗଲାବେଳେ ଏ ସମସ୍ତେ ତାକୁ ବିଦାୟ କରିବାକୁ ଆସି ରୁଣ୍ଡ ହୋଇଥିଲେ ।

ଅଗଷ୍ଟ ୪ ତାରିଖ ଦିନ ସଞ୍ଜରେ ସ୍ମାଲେନସ୍କଠାରେ ପହଞ୍ଚି ଆଲପାତିଚ ଗୋଟିଏ ହୋଟେଲରେ ରହିଲା । ଗଲା ତିରିଶ୍ ବର୍ଷ ହେଲା ଯେବେ ସ୍ମାଲେନସ୍କ ଗଲେ ସେ ସେଇଠି ରହେ । ହୋଟେଲ୍‌ଟି ଯାହାର ସେ ଲୋକଟି ଆଗେ ବଡ଼ ଲୋକଙ୍କ ଘରେ ଦରୁଆନ୍ କାମ କରୁଥିଲା । ସେ ଲୋକ ନା ଫେରାପୋଣ୍ଟୋଭ । ନୀପର ନଈ ଆରପାରି ଗାଡ଼ବେନସ୍କି ପାହାରେ ସେ ହୋଟେଲଟି ।

ରାତିଯାକ ସେ ହୋଟେଲ ପାଖ ଦେଇ ସଡ଼କରେ ସୈନ୍ୟମାନେ ଚାଲିଥାନ୍ତି । ତହିଁଆରଦିନ ଆଲପତିଚ୍ ଗୋଟାଏ ପୋଷାକ ପିନ୍ଧିଲା । ସହରକୁଗଲେ ସେ ପୋଷାକଟି ସେ ପିନ୍ଧିବ ବୋଲି ସାଇତିରଖିଥାଏ । ତାପରେ ତାକୁ ଯେଉଁ ଯେଉଁ କାମ କରିବାକୁ ପଡ଼ିବ ସେ କାମ କରିବ ବୋଲି ବାହାରିପଡ଼ିଲା । ସକାଳେ ଖରା ଖରା ପଡ଼ୁଥାଏ, ଆଠଟା ବେଳକୁ ଗରମ ହେଉଥାଏ ।

ଆଲପାତିଚ୍ ଭାବୁଥାଏ "ଫସଲ ଅମଳ କରିବାକୁ ଆଜ ଭାରି ଭଲ ପାଗ ହୋଇଛି ।" ସକାଳୁ ସହର ସେ କଡ଼ୁ ଗୁଳି ମାଡ଼ର ଶବ୍ଦ ଶୁଭୁଥାଏ ।

ସକାଳ ଆଠଟା ବେଳେ ବନ୍ଧୁକରୁ ଠାଇ ଠାଇ ଶବ୍ଦ ସଙ୍ଗରେ ତୋପର ଗୁମ୍ ଗୁମ୍ ଶବ୍ଦ ମିଶିଗଲା । ସଡ଼କରେ ଲୋକଙ୍କ ଭିଡ଼ ହୋଇଥାଏ, ତାଙ୍କ ଭିତରେ ସୈନ୍ୟମାନେ ବି ଥାଆନ୍ତି । ଲୋକେ ତର ତର ହୋଇ ଚାଲିଥାନ୍ତି । ତଥାପି ଗାଡ଼ିବାଲାମାନେ ଭଡ଼ାରେ ଗାଡ଼ି ନେଉଥାନ୍ତି, ଦୋକାନୀମାନେ ତାଙ୍କ ଦୋକାନମାନଙ୍କରେ ଠିଆ ହୋଇଥାନ୍ତି, ଗିର୍ଜାଘରେ ସବୁଦିନ ପରି ପ୍ରାର୍ଥନା ମଧ୍ୟ ଚାଲିଥାଏ । ଆଲପାଟିଚ୍ ଦୋକାନମାନଙ୍କୁ ଗଲା । ସରକାରୀ ଅଫିସମାନଙ୍କୁ, ଥାନାକୁ ଆଉ ଲଟ ସାହେବଙ୍କ ଘରକୁ ଗଲା । ସେ ଯୁଆଡ଼େ ଯାଉଥାଏ ସମସ୍ତେ ଯୁଦ୍ଧ କଥା କହୁଥାନ୍ତି, ଆଉ ଶତ୍ରୁ ସୈନ୍ୟଙ୍କ କଥା ମଧ୍ୟ କହୁଥାନ୍ତି ଶତ୍ରୁ ସୈନ୍ୟ ସେତେବେଳେ ସ୍ମୋଲେନସ୍କ ସହର ଆକ୍ରମଣ କରୁଥାନ୍ତି । କ'ଣ କରାଯିବ, କ'ଣ କରାଯିବ ବୋଲି ଜଣେ ଆଉ ଜଣଙ୍କୁ ପଚାରୁଥାନ୍ତି ଓ ପରସ୍ପରର ଭୟ ଶାନ୍ତ କରିବାକୁ ଚେଷ୍ଟା କରୁଥାନ୍ତି ।

ଲଟ୍ ସାହେବଙ୍କ ଘରେ ଆଲପାଟିଚ ବହୁତ ଲୋକଙ୍କୁ ଦେଖିଲା । କୋଚୋଆନମାନଙ୍କୁ ଦେଖିଲା, ଆଉ ଦେଖିଲା ଲଟ୍ ସାହେବଙ୍କ ଗାଡ଼ି ଦୁଆର ମୁହଁରେ ଠିଆ ହୋଇଛି ।

ଲଟ୍ ସାହେବଙ୍କ ବୈଠକ ଖାନାରେ ଖାଲି ମଣିଷ ଭର୍ତ୍ତି । ସୌଦାଗରମାନେ, ସ୍ତ୍ରୀ ଲୋକମାନେ କିରାଣୀମାନେ ସେଠି ରୁଣ୍ଡ ହୋଇଥାନ୍ତି । ପାଟି ନ ଫିଟାଇ ମୂକ ହୋଇ ମୁହଁ ଚାହିଁା ଚାହିଁ ହେଉଥାନ୍ତି । ଲଟ୍ ସାହେବଙ୍କ ବଖରା କବାଟ ଖୋଲି ଗଲା, ସମସ୍ତେ ଆଗକୁ ଚାଲିଲେ । ଜଣେ କିରାଣୀ ସେ ଘରୁ ଦୌଡ଼ି ପଳାଇଗଲା । ସେ ଯାଇ ଜଣେ ସୌଦାଗରକୁ କ'ଣ କହିଲା । ଜଣେ ମୋଟା କର୍ମଚାରୀ ଥାଆନ୍ତି ଯେ ତାଙ୍କ ବେକରୁ ଗୋଟିଏ ଛକ ଚିହ୍ନ ଓହଳିଥାଏ । କିରାଣୀ ତାଙ୍କୁ ଡାକି ତା ପଛେ ପଛେ ଯିବାକୁ କହିଲା । ଅନ୍ୟମାନେ ତା ଆଡ଼କୁ ଚାହିଁରହିଥାନ୍ତି ତାକୁ ପ୍ରଶ୍ନ ପଚାରୁଥାନ୍ତି । ସେ ସେମାନଙ୍କୁ ଆଡ଼େଇ ଚାଲିବାକୁ ଚେଷ୍ଟା କରୁଥାଏ । ଆଲପାଟିଚ୍ ଆଗକୁ ଗଲା । ଆଉଥରେ ଯେମିତି ସେ କିରାଣୀ ଆସିଲା ସେମିତି ସେ ତାର ବୋତାମ ବନ୍ଦ ହୋଇଥିବା କୋଟ୍ ଭିତରେ

ହାତ ପୂରାଇ ତା ସଙ୍ଗରେ କଥା କହିଲା ଓ ତାହାକୁ ସେ ଚିଠି ଦୁଇଟି ବଢ଼ାଇ ଦେଲା ।

"ପ୍ରଧାନ ସେନାପତି ପ୍ରିନ୍ସ ବଲକନ୍‌ସ୍କିଙ୍କ ସମୀପରୁ ମଣିମା ବ୍ୟାରେନ୍ ଆଣଙ୍କ ନିକଟରେ ସେ ଏଭଳି ଗୁରୁଗମ୍ଭୀର ଓ ଅର୍ଥପୂର୍ଣ୍ଣ ସ୍ୱରରେ ଗର୍ଜନ କଲା ଯେ କରାଣୀ ତା ଆଡ଼କୁ ବୁଲିପଡ଼ି ତା ହାତରୁ ଚିଠି ଗୁଡ଼ିକ ନେଲା । ଅଳ୍ପ ସମୟପରେ ଆଲପାତିଚ୍‌କୁ ଲର୍ଡ୍ ସାହେବଙ୍କ ଆଗକୁ ଡାକି ନିଆହେଲା ।

ଲର୍ଡ୍ ସାହେବ ତାକୁ ତରତର କରି କହିଲେ, "ପ୍ରିନ୍ସ ଓ ପ୍ରିନ୍‌ସେସ୍‌ଙ୍କୁ କହିଦେବେ ମୁଁ ଏସବୁ କଥା କିଛି ଜାଣିନଥିଲି । ମତେ ଉଚ୍ଚତମ କର୍ମଚାରୀମାନଙ୍କ ଠାରୁ ଯେପରି ନିର୍ଦ୍ଦେଶ ଆସିଲା ମୁଁ ସେହିପରି କଲି । ହେଉ ନିଅନ୍ତୁ—"

ସେ ଆଲପାତିଚ୍‌କୁ ଗୋଟିଏ ଚିଠି ଦେଲେ । 'ତଥାପି ପ୍ରିନ୍ସ ଯେତେବେଳେ ଅସୁସ୍ଥ ଅଛନ୍ତି ତାଙ୍କୁ ମୋର ଉପଦେଶ ଯେ ସେ ମସ୍କୋ ଚାଲିଯାଆନ୍ତୁ । ମୁଁ ନିଜେ ବାହାରି ପଡ଼ିଲି । ତାଙ୍କୁ କହିଦେବେ—'କିନ୍ତୁ ଲର୍ଡ୍ ସାହେବ କଥା ଶେଷ କରିପାରିଲେ ନାହିଁ । ଧୂଳି ଆଉ ଝାଳ ସରସର ହୋଇ ସେ ଘରକୁ ଜଣେ କର୍ମଚାରୀ ପଶି ଆସି ଫରାସୀ ଭାଷାରେ ତାଙ୍କୁ କ'ଣ କହିଲେ । ଲର୍ଡ୍ ସାହେବଙ୍କ ମୁହଁରେ ଆତଙ୍କ ଖେଳିଗଲା । ଆଲପାତିଚ୍ ଆଡ଼କୁ ମୁଣ୍ଡ ହଲାଇ ସେ କହିଲେ ହଉ ଆପଣ ଯାଆନ୍ତୁ । ସେ ସେହି କର୍ମଚାରୀଙ୍କୁ କଣସବୁ ପଚାରିଲେ । ଆଲପାତିଚ୍ ଲର୍ଡ୍ ସାହେବଙ୍କ ବଖରାରୁ ବାହାରି ଆସିଲା ମାତ୍ରେ ବ୍ୟଗ୍ର ଆତଙ୍କିତ ଅସହାୟ ଦୃଷ୍ଟିମାନ ତା'ଉପରେ ପଡ଼ିଲା । ଏଥର ଆଲପାତିଚ୍ ଗୁଳିମାଡ଼ ଶବ୍ଦକୁ କାନ ନଡେରି ରହି ପାରିଲେ ନାହିଁ । ସେ ଯେତେବେଳେ ହୋଟେଲ ଆଡ଼କୁ ଆସୁଥାଏ ସେତେବେଳେ ଗୁଳି ଶବ୍ଦ ପାଖକୁ ପାଖ ହୋଇ ଲାଗି ଆସୁଥାଏ । ଏହା ଆହୁରି ବଢ଼ି ବଢ଼ି ଉଠୁଥାଏ । ଆଲପାତିଚ ହାତରେ ଲର୍ଡ୍ ସାହେବ ଯେଉଁ ଚିଠିଟି ଦେଇଥାନ୍ତି ସେଥିରେ ଏହିପରି ଲେଖାଥିଲା ।

"ମୁଁ ଅଭୟ ଦେଉଛି ଯେ ସ୍ମୋଲେନସ୍କ ସହରକୁ ତିଳେମାତ୍ର ବିପଦ ନାହିଁ, ଓ ସହର କୌଣସିମତେ ଆକ୍ରାନ୍ତହେବା ଅସମ୍ଭବ । ଗୋଟାଏ ପାଖରୁ ମୁଁ ଓ ଆର ପାଖରୁ ପ୍ରିନ୍ସ ବାଗ୍ରାତିଅନ ଆମ ସୈନ୍ୟ ବାହିନୀମାନଙ୍କୁ ଘେନି ଆଗକୁ ମାଡ଼ିଯାଇ ଏ ମାସର ୨୨ ତାରିଖ ଦିନ ଏକାଠି ହେବୁଁ । ତାପରେ ଆମେ ଏହି ମିଳିତ ସୈନ୍ୟବାହିନୀ ନେଇ ଆପଣଙ୍କ ଶାସନ ଅଧୀନରେ ଥିବା ପ୍ରଦେଶରେ ଦେଶପ୍ରେମୀ ସୈନ୍ୟମାନଙ୍କୁ ରକ୍ଷା କରିବାକୁ ଅଗ୍ରସର ହେଉଥିବୁଁ । ଯେଉଁବେଳ ପର୍ଯ୍ୟନ୍ତ ଆମ ଦେଶର ଶତ୍ରୁ ପରାସ୍ତ ବିତାଡ଼ିତ ନ ହୋଇଛି ଅଥବା ଯେଉଁ ପର୍ଯ୍ୟନ୍ତ ଦେଶର ବୀର ସୈନିକମାନଙ୍କ ମଧ୍ୟରେ ଶେଷ ସୈନିକ ଯୁଦ୍ଧ କରି ଜୀବନ ନ ଦେଇ ସାରିଛି, ସେତେବେଳ ଯାଏ ଆମେ ଅଗ୍ରସର ହେଉଥିବୁ । ଆପଣ ଏଥିରୁ ବୁଝିପାରିବେ ଯେ ସ୍ମୋଲେନ୍ସ୍କର ଅଧିବାସୀମାନଙ୍କୁ ଅଭୟ ଦେବାକୁ ଆପଣଙ୍କର ପୂର୍ଣ୍ଣ ଅଧିକାର ଅଛି ଯେହେତୁ ଦୁଇଟି ବୀର ସେନାବାହିନୀ ସେମାନଙ୍କୁ ସାହାଯ୍ୟ ସଦା କରୁଛନ୍ତି ଅଛନ୍ତି ଓ ବିଜୟ ଯେ ସୁନିଶ୍ଚିତ ସେଥିରେ ସେମାନେ ନିଃସନ୍ଦେହ ହୋଇପାରନ୍ତି ।"

(ସ୍ମୋଲେନସ୍କର ବେସାମରିକ ଶାସକଙ୍କ ନିକଟକୁ ସେନାପତି ବାର୍କଲେ ଦ୍ୟୋତଲିଙ୍କ ଆଦେଶ କ୍ରମେ ଏ ଚିଠାଉ । ବ୍ୟାରନ୍ ଆଶ୍ ୧୮୧୨)

ଦଳଦଳ ହୋଇ ଲୋକେ ଅସ୍ତବ୍ୟସ୍ତ ହୋଇ ରାସ୍ତାଯାକ ବୁଲୁଥାନ୍ତି । ଘର ଫାଟକମାନଙ୍କରୁ ବୋଝେଇ ଗାଡ଼ି ବାରମ୍ବାର ବାହାରୁଥାଏ । ଘରକରଣା ଜିନିଷ, ବାସନକୁସନ, ଚୌକି ଆଲମାରି ଇତ୍ୟାଦି ବୋଝାଇ ହୋଇଥାଏ, ଗାଡ଼ିଗୁଡ଼ାକ ସଡ଼କରେ ଚାଲିଯାଉଥାଏ । ଫେରି ପୋନ୍ତଭର୍ ହୋଟେଲ ଆରପାଖ ଘର ଦୁଆରମୁହଁରେ ଘୋଡ଼ାଗାଡ଼ି ଗୁଡ଼ାଏ ଠିଆ ହୋଇଥାଏ । ମାଇପେ ବାହୁନୁଥାନ୍ତି ଆଉ ବିବାଦ ହେଉଥାନ୍ତି । ଘର ଅଗଣାରେ କୁକୁରଟାଏ ଘୋଡ଼ା ଚାରିପାଖେ ଡେଇଁ ଡେଇଁ ଭୁକୁଥାଏ ।

ଆଲ୍ପାତିଚ୍ ଯେତେବେଳେ ତା ଘର ଅଗଣାକୁ ପଶିଆସି ଚାଲି ଚାଲେ ଚାଲେ ସିଧା ତା ଘୋଡ଼ାମାନଙ୍କ ପାଖକୁ ଆଉ ଗାଡ଼ି ପାଖକୁ ଚାଲିଗଲା ତା'ର ଚାଲି ସେତେବେଳେ ହିଁ ତରତର ଥିଲା । ଗାଡ଼ିଚାଳକ

ଶୋଇ ପଡ଼ିଥିଲା । ସେ ତାକୁ ଉଠାଇଦେଇ ଘୋଡ଼ା ଯୋଚିବାକୁ କହିଲା । ତା'ପରେ ଘରର ଦାଣ୍ଡ ବଖୁରିକୁ ଚଲା । ତା ପରବାର ଯେଉଁଘରେ ରହିଥିଲେ ଆଲ୍‌ପାଟଚ ଶୁଣିଲା ସେଘରୁ ଝିଅଙ୍କ ବୋବାଳି ଶୁଭୁଛି । ଆଉ ଶୁଭୁଛି ଫେରାପୋନ୍ଟେ ଘାଗଡ଼ା ପାଟିରେ ରାଗରେ ଗର୍ଜନ କରୁଛି । ଆଲ୍‌ପାଟଚ୍ ସେ ଘର ଭିତରକୁ ପଶିଆସିଲା ବେଳକୁ ଦେଖିଲା ଯାଇ କୁକୁଡ଼ା ଛୁଆ ହେଲେ ଯେମିତି ଫଡଫଡ଼ ହୋଇ ଧାଏଁ ରାନ୍ଧୁଣୀ ସ୍ତ୍ରୀ ଲୋକଟି ସେମିତି ଦୌଡ଼ି ଦୌଡ଼ି ଆସିକହିଲା ।

"ତାଙ୍କୁ ପିଟିପିଟି ମାରି ପକାଉଛି—ସାଆନ୍ତାମାଙ୍କୁ ପିଟୁଛି ! ଏମିତି ମାଡ଼ ଦେଲାଣି ଓଃ—"

"କାହିଁକି ?" ଆଲ୍‌ପାଟଚ୍ ପଚାରିଲା ।

"ସେ ଅଳିକଲେ ବାହାରି ଯିବେ ବୋଲି । ମାଇପି ମନ ତ । ସେ କହିଲେ ମତେ ନେଇଯାଅ । ଛୁଆଙ୍କ ସଙ୍ଗରେ ମୋତେ ସର୍ବନାଶ ହେବାକୁ ଏଠି ରଖିଯାଅ ନାହିଁ । ସମସ୍ତେ ଚାଲିଗଲେଣି ଆମେ ଏଠି କାହିଁକି ପଡ଼ିଛୁଁ ? ଏତିକି ସେ କହିଛନ୍ତି ସେଇଠୁ ସେ ମାଡ଼ ଚଢ଼େଇଲା । ଆଉ କ'ଣ······ମାଡ଼ ଦଉଚି । ବାଡ଼ରେ ବାଡ଼େଇ ପକାଉଚି ପରା—"

ଆଲ୍‌ପାଟଚ୍ ମୁଣ୍ଡ ହଲାଇଲା । ସତେ ଯେମିତି ତା କଥାକୁ ସମର୍ଥନ କଲା । ଆଉ କଥା ଶୁଣିବାକୁ ମନ ନକରି ଆରପାଖେ ଯେଉଁ ଦୁଆରମୁହଁ ବାଟେ ଆରଘରକୁ ଯିବାକୁ ବାଟ ପଡ଼ିଥିଲା ଯେଉଁଠାରେ କି ସେ ତା ସଉଦାପତ୍ର ରଖିଦେଇ ଆସିଛି ସେହି ଦୁଆରମୁହଁ ଆଡ଼କୁ ଚାଲିଲା ।

ଠିକ୍ ସେତିକିବେଳେ ପିଲାଟିଏ କାଖେଇ ଖାଲି ମୁଣ୍ଡରେ ଗୋଟିଏ ସରୁଆ ନରକୁଆ ମାଇପିଟିଏ ସେ ଘର ଭିତରକୁ ଦୌଡ଼ି ଆସିଲା । ତା ମୁଣ୍ଡରେ ବନ୍ଧା ହୋଇଥିବା ରୁମାଲଟା ଓଟରା ହୋଇ-ଯାଇଛି । ସେ ପାଟି କରୁଥାଏ "ସତ୍ୟାନାଶିଆ ! ବାଡ଼ପଶା !"

ସେ ପାହାଚେ ପାହାଚେ ଦୌଡ଼ି ଦୌଡ଼ି ଅଗଣାକୁ ଗଲା । ଫେରାପୋନ୍ଟାଭ୍ ତାକୁ ଗୋଡ଼େଇବାକୁ ଯାଉଥାଏ; କିନ୍ତୁ ଆଲ୍‌ପାଟଚ୍‌କୁ

ଦେଖିପକାଇ ତାର ତଳିପେଟକୁ ତଳକୁ ଭିଡ଼ିଦେଲା । ମୁଣ୍ଡବାଳ ସାଉଁଳିଲା, ହାଇ ମାରିଲା ଆଉ ଆଲ୍‌ପାତିଚ୍ ପଛେ ପଛେ ସେ ବଖରାରୁ ପଦାକୁ ଗଲା ।

ପଚାରିଲା "କଣ ଏଇ ବାହାରେ ପଡ଼ିଲ କି ?" ତା କଥାର ଉତ୍ତର ନଦେଇ କି ତା ଆଡ଼କୁ ନ ଚାହିଁ ଆଲପାତିଚ୍ ତା ଜିନଷକୁ ଗୋଟେଇ ଏକାଠି କଲା ଆଉ ତାକୁ ପଚାରିଲା ତାର କେତେ ପଇସା ବାକି ଅଛି ?

ଫେରାପୋନ୍ତଭ କହିଲା "ହଉ ହିସାବ କରିଦେବା । ଲାଟ୍-ସାହେବଙ୍କ ଘରକୁ ଯାଇଥିଲ ପରା, କ'ଣ ଶୁଣିଆସିଲ ?" ଆଲପାତିଚ୍ କହିଲା ଯେ ଲାଟସାହେବ ତାକୁ ଠିକଣା କରି କିଛି କହିଲେ ନାହିଁ ।

ଫେରାପୋନ୍ତଭ୍ କହିଲା "ଆମେ ଆମ ଜିନଷ ବନ୍ଦୋବସ୍ତ କରି ଆମ କାମ କରିବା କେମିତି ? ଦୋରୋଗା ବୁଜକୁ ଯିବାକୁ ହେଲେ ସାତ ରୁବଲ୍ ଭଡ଼ା ନେଉଛନ୍ତି । ମୁଁ କଣ କହୁଛି କି ଏମାନଙ୍କର ହିତାହିତ ଜ୍ଞାନ ନାହିଁ । ଶୁକ୍ରବାର ଦିନ ସେଲିଭଲେ ଭଲ ଲାଭ କରିନେଲା । ବସ୍ତାକ ନ ରୁବଲ୍ କରି ସୈନ୍ୟବାହିନୀକୁ ମଇଦା ବିକିଲା । ଚାହା ଟିକିଏ ଖିଆଯାଉ, ନା କ'ଣ କହୁଛ ?" ଘୋଡ଼ା ଯୋଚା ହେଉଥିଲା ବେଳେ ଆଲ୍‌ପାତିଚ୍ ଆଉ ଫେରାପୋନ୍ତଭ ଏକାଠି ଚାହା ପିଇ ପିଇ ଗହମର ଭାଉ, ଫସଲର ଅବସ୍ଥା, ଅମଳ ପାଇଁ ଭଲପାଗ ହୋଇଛି ଏମିତି ସବୁ କଥାଭାଷା ହେଉଥାନ୍ତି ।

ତିନ କପ୍ ଚା ପିଇସାରି ଫେରାପୋନ୍ତଭ୍ ଉଠିପଡ଼ି କହିଲା ଆଜିଠୁ କେମିତି ଶୁନଶାନ ହୋଇ ପଡ଼ିଆସୁଛି ପରା ।

ମତେ ଲାଗୁଛି ଆମ ପଟଟା ଜିଣିଯାଇଛି । ଲୋକେ କହୁଛନ୍ତି ଶତ୍ରୁପକ୍ଷକୁ ଆମ ସୈନ୍ୟମାନେ ପୂରାଇ ଦେବେ ନାହିଁ । ତେଣୁ ଲାଗୁଛି ଆମ ପଟର ବଳ ଅଛି, ଦମ୍ଭ ଅଛି······ସେଦିନ ଲୋକେ ତ କହୁଥିଲେ ଶୁଣିଥିଲି ଯେ ମାଡ୍‌ଭେ ଇଭାନଚ୍ ପ୍ଲାଟଭ୍ ଶତ୍ରୁପକ୍ଷକୁ ମାରିନା ନଈ

ଆଡ଼କୁ ତଡ଼ି ନେଇଗଲା ଯେ ଏକା ଦିନକେ ତାଙ୍କର ଅଠର ହଜାର ସୈନ୍ୟ ବୁଡ଼ିମଲେ ।

ଆଲ୍‌ପାଭିଚ୍‌ ତା ଜିନିଷପତ୍ର ଗୋଟେଇ ପୋଟାଇ ଘୋଡ଼ାଗାଡ଼ି ବାଲାକୁ ବଢ଼େଇ ଦେଇ ଫେରପୋଣ୍ଟଭ୍‌ ସଙ୍ଗରେ ହିସାବପତ୍ର ତୁଟେଇ ଦେଲା । ଚକ ଆଉ ଘୋଡ଼ା ଟାପୁର ଶବ୍ଦ ଶୁଭିଲା ।

ଘଣ୍ଟି ଠେଠେଣ ଶୁଭୁଥାଏ । ଦି ଚକିଆ ଘୋଡ଼ାଗାଡ଼ି ଫାଟକ ଟପି ପଦାକୁ ଚାଲିଗଲା । ସେତେବେଳକୁ ଦିପ୍ରହର ଗଡ଼ିଯାଇ ବହୁତବେଳ ହୋଇଥାଏ । ସଡ଼କର ଅନ୍ୟ ପାଖରେ ଖରା ପଡ଼ିଥାଏ ତ ଆଉ ଗୋଟେ ପଟରେ ଛାଇ । ଆଲ୍‌ପାଭିଚ୍‌ ଝରକାବାଟେ ପଦାକୁ ଚାହିଁ କବାଟ ପାଖକୁ ଗଲା । ହଠାତ୍‌ ଗୋଟାଏ ଅଖାଡ଼ୁଆ ଶବ୍ଦ ହେଲା । ଯେପରିକି ବହୁତ ଦୂରରେ କିଏ ସଁ ସଁ ହେଉଛି ତାପରେ ଦୁମ୍‌କରି ଶୁଭୁଛି । ତାପରେ ପଛେ ପଛେ ତୋପମାନଙ୍କର ଗୁମ୍‌ ଗୁମ୍‌ ଶବ୍ଦ ଶୁଭିଲା, ସବୁ ମିଶିଯାଇ ଗୋଟାଏ ଅସ୍ପଷ୍ଟ ଗର୍ଜନ ଶୁଭିଲା ଯେ ସେଥିରେ ଝରକା-ଗୁଡ଼ାକ ବି ଖଡ଼ଖଡ଼ ହୋଇଗଲା । ଆଲ୍‌ପାଭିଚ୍‌ ସଡ଼କକୁ ଚାଲିଗଲା । ସଡ଼କବାଟେ ଦି ଜଣ ଲୋକ ପୋଲଆଡ଼କୁ ଦୌଡ଼ି ଦୌଡ଼ି ଯାଉଥାନ୍ତି । ବହୁତଆଡ଼ୁ ତୋପ ଗୁଳିର ସାଇଁ ସାଇଁ ଦୁମ୍‌ ଦୁମ୍‌ ଶବ୍ଦ ଶୁଭୁଥାଏ । ହାତବୋମା ଫୁଟିବା ଶବ୍ଦ ହେଉଥାଏ । ସେଗୁଡ଼ାକ ସହର ଭିତରେ ଆସି ପଡ଼ୁଥାଏ । କିନ୍ତୁ ସହର ସେପଟେ ତୋପମାନଙ୍କରୁ ଯେଉଁ ଗୁମ୍‌ ଗୁମ୍‌ ଶବ୍ଦ ଶୁଭୁଥାଏ ସେଥିରେ ଏସବୁ ଶବ୍ଦ ପ୍ରାୟ ଶୁଭୁଥାଏ । ନେପୋଲିଅନ୍‌ ସହର ଉପରକୁ ଚାରିଟାବେଳେ ଆକ୍ରମଣ କରି ଶହେ ତିରିଶଟା ତୋପରୁ ଗୁଳି ଚାଲିବ ବୋଲି ଯେଉଁ ଆଦେଶ ଦେଇଥିଲେ ତାହା ଯେ ଏହି ତୋପମାନଙ୍କର ଶବ୍ଦ ଲୋକେ ଆଗେ ବୁଝିପାରିନଥିଲେ ।

ହାତବୋମା ଆଉ ତୋପ ଗୁଳି ପଡ଼ିବାର ଶବ୍ଦ ପ୍ରଥମେ ପ୍ରଥମେ କେବଳ ଲୋକଙ୍କ କୌତୁହଳ ଉଦ୍ଦୀପନା କରିଥିଲା । ଫେରାପୋଣ୍ଟଭର ସ୍ତ୍ରୀ ସେ ପର୍ଯ୍ୟନ୍ତ ବନ୍ଦଶାଳରେ ପଡ଼ି କାନ୍ଦୁଥିଲା ସେ ସେ ଚୁପ୍‌ହେଲା । ସେ

ପିଲ୍‌ଟିକ କାନ୍ଧେଇ ଫାଟକ ପାଖକୁ ଯାଇ ଭୂନଦ୍ୱାର ଲୋକଙ୍କୁ ଗୃହ୍ଣି ରହିଲା ଆଉ ଶବ୍ଦକୁ କାନେଇଲା ।

ସ୍ୱାମୀ ଆଉ ଦୋକାନୀ ଫାଟକ ପାଖକୁ ଚାଲିଆସିଲେ ।

ତାଙ୍କ ମୁଣ୍ଡ ଉପରେ ଯେଉଁ ଗୁଳିଗୁଡ଼ାକ ହୁଡ଼ି ପଳାଉଥାଏ ସେଗୁଡ଼ିକ କିପରି ଦେଖିବାକୁ ବ୍ୟଗ୍ର ଆଉ କୁତୁହଳରେ ସମସ୍ତେ ଚେଷ୍ଟା କରୁଥାନ୍ତି । ବହୁତ ଲୋକ ଆଗ୍ରହରେ ଗପ କରି କରି ସଡ଼କର ବାଙ୍କବାଟେ ଆସି ପହଞ୍ଚି ଗଲେ ।

ଜଣେ କହୁଥାଏ, "ବାପରେ ! କେତେ ଜୋର ! ଛାତ ଫାଟ ସବୁ ଏକାଥରକେ କୁଟ୍‌କୁଟା ହୋଇଗଲା ।" ଆଉ ଜଣେ କହିଲା "ଯେମିତି ଘୁଷୁରି ମାଟିକୁ ଖୋଳିପକାଏ ହୋ ? ସେମିତି ଆସି ଗବଗଲା ପରା ।" ହସି ଦେଇ ସେ କହିଲା "ଭାରି ମଜା ନୁହେଁ । ନାଦ ଭଙ୍ଗେଇ ଦଉଚ ।"

"ଆରେ ବାବୁ ତମ କପାଳ ଭଲ । ଡ଼ିଆଁ ମାରି ପଳାଇ ଆସିଲ ନହେଲେ ଚଟାକରି ଦେଇଥାନ୍ତା ତମକୁ ମଧ୍ୟ ।"

ଅନ୍ୟମାନେ ବି ସେମାନଙ୍କ ସଙ୍ଗେ ମିଶିଗଲେ । ସେମାନେ ଅଟକଳରହି କହିଲେ ଯେ କେମିତି ସେମାନେ ଯେଉଁଠି ଥିଲେ ତା' ପାଖରେ ଗୋଟାଏ ଘର ଉପରେ ଆସି ଗୋଟାଏ ତୋପ ଗୁଳି ପଡ଼ିଲା । ଗୃହ୍ଣି ଗୃହ୍ଣି ଆହୁରି କେତେ ସବୁ ଲୋକଙ୍କ ମୁଣ୍ଡ ଉପରଦେଇ ଚାଲିଗଲା । କେତେବେଳେ ତୋପ ଗୁଳିଟାଏ ତରତର ହୋଇ ଭୟଙ୍କର ସୁ ସୁ ଶବ୍ଦ କରି ଉଡ଼ିଯାଉଥାଏ । କେତେବେଳେ କେଡ଼େ ସୁନ୍ଦର ସିଟି ମାରିଲା ପରି ବୋମା ପଡ଼ୁଥାଏ । ଲାଗି ରହୁଥାଏ ଜମା ବନ୍ଦ ନାହିଁ କିନ୍ତୁ ଗୋଟାଏ ହେଲେ ପାଖରେ ପଡ଼ିଲା ନାହିଁ, ସବୁ ଉଡ଼ି ଚାଲିଗଲା । ଆଲ୍‌ପାତିଚ୍‌ ତା' ଗାଡ଼ିରେ ବସିଲା । ଫେରାପୋନ୍ତଭ୍‌ ଫାଟକ ପାଖରେ ଠିଆ ହୋଇଥାଏ ।

ସେ ସ୍ୱାମୀଙ୍କୁ ପାଟି କରୁଥାଏ, "ଏଁ ଆଁ କରି ଛିଡ଼ା ହୋଇଥିବା ତୋର ସରବ କି ନାହିଁ ମୁଁ ପଚାରୁଛି ?" ସ୍ୱାମୀ ନାଲି

ପେଟିକୋଟ ପିନ୍ଧିଥାଏ । କୋଟର ହାତକୁ ଉପରକୁ ଖୋଲି ଦେଇଥାଏ । କହୁଣୀଠୁ ତଳଯାକେ ଖାଲିଥାଏ, ଝୁଲୁଥାଏ । ସେ ଗୋଟିଏ ପାଖେ କଣରେ ଠିଆ ହୋଇ କଥା କହୁଥାଏ ।

ସେ କହୁଥାଏ "ଏତ କେଡ଼େ ଆଚମ୍ବିତ କଥାଟି !" କିନ୍ତୁ ଖାମିଦର ପାଟିଶୁଣି ସେ ତା ଅଙ୍ଗୀକୁ ତଳକୁ ଓଟାରିଦେଇ ଚାଲିଆସିଲି । ପୁଣି କଣ ସୁ ସୁ ଶୁଭିଲି କିନ୍ତୁ ଏଥର ଅତି ପାଖରେ, ଯେମିତିକି ଚଢ଼େଇଟାଏ ତଳକୁ ଝାମ୍ପ ମାରୁଛି ସେମିତି ଲଗିଲି । ସଡ଼କ ମଝିରେ ଝକ୍ କରି ନିଆଁ ଜଳି ଉଠିବାର ଦିଶିଲି । ଗୋଟାଏ ଗୁଳି ଶବ୍ଦ ଶୁଭିଲି । ସଡ଼କଯାକ ଧୂଆଁରେ ପୂରିଗଲି ।

ଫେରପୋନ୍ତଭ୍ ରାନ୍ଧୁଣୀ ପାଖକୁ ଦୌଡ଼ିଯାଇ ପାଟିକଲି । "ହେଇ ବଦ୍‌ମାସ୍, ତୁ କଣ କରୁଛୁ ?" ସେତିକିବେଳେ ମାଇକିନିଆଁ ମାନଙ୍କ ଭିତରୁ ଅତି ବିକଳ କାନ୍ଦଣା ଶୁଭିଲି । ଗୋଟିଏ ଗୋଟପିଲି ଛାନିଆହୋଇ କାନ୍ଦିବାକୁ ଆରମ୍ଭ କଲି ।

ରାନ୍ଧୁଣୀ ଚାରିପଟେ ଲୋକେ ଭିଡ଼ କଲେ, ସେମାନଙ୍କ ମୁହଁରେ ରକ୍ତ ନଥାଏ । ସେହି ଭିଡ଼ ଭିତରୁ ବିଚରା ରାନ୍ଧୁଣୀର କାନ୍ଦଣା ଆଉ ଚିତ୍କାର ଶୁଭୁଥାଏ । "ଓ ହୋ ହୋ ହୋ—ହୋ ଦୟାଳୁ ଲୋକ—ହୋ ମୋ ଶରଧା ଲୋକ—ମତେ ରକ୍ଷାକର · ମତେ ବଞ୍ଚାଅ । ମାରିବାକୁ ଦିଅନା ଲୋ—ହୋ ଧରମକାରିଆମାନେ !" ପାଞ୍ଚମିନଟ ଯାଉଣୁ ରାସ୍ତାରେ ଆଉ ମଣିଷ ନଥିଲେ । ବୋମା ଫାଟି ରାନ୍ଧୁଣୀ ଗୋଡ଼ ଭାଙ୍ଗି ଯାଇଥାଏ ସେ ତାକୁ ଟେକେଇ ଘରକୁ ଟେକି ନେଇଥାନ୍ତି । ଆଲ୍‌ପ୍ରାଭିଚ୍ ତା ଗାଡ଼ିଆନ୍, ଫେରପୋନ୍ତଭର ଭାରିଜା ଆଉ ପିଲାଏ ସାନ କୋଠରୀରେ ବସି କାନ ଡେରିଥାନ୍ତି । ତୋପର ଗର୍ଜନ, ତୋପ ଗୁଳିର ସୁ ସୁ ଶବ୍ଦ ଉପରେ ରାନ୍ଧୁଣୀର ଆକୁଳ ଚିତ୍କାର ଏସବୁ ମୁହୂର୍ତ୍ତେ ବି ଆସିଲି ନାହିଁ । ଫେରପୋନ୍ତଭର ଭାରିଜା ତାର କଅଁଳା ପିଲାକୁ କୋଳରେ ଧରି ଝୁଲେଉଥାଏ ପୁଣି ତାକୁ ବୁଝାଉଥାଏ । ଯେ ସେ କୋଠରୀ ଭିତରକୁ ଆସୁଥାଏ, ତାକୁ ଭୟରେ ଭୟରେ ଫୁସ୍‌ଫୁସ୍ କରି ପଚାରୁଥାଏ ଯେ ତା' ସ୍ୱାମୀ ସଡ଼କରେ ଥିଲି ଗଲି କୁଆଡ଼େ ? ଦୋକାନୀ·ତା' ଆଗରେ କହିଲି

ଯେ ଦଳକଯାକ ସମସ୍ତେ ଗିର୍ଜା ଘରକୁ ଗଲେ, ତା ସ୍ୱାମୀ ବି ତାଙ୍କ ସଙ୍ଗରେ ଗଲା । ସ୍ମୋଲେନସ୍କର ଛବିକୁ ସେମାନେ ସେଠି ଆକାଶକୁ ଟେକୁଛନ୍ତି, ସେ ଛବି ନାନା ଆଶ୍ଚର୍ଯ୍ୟ କାମ କରିପାରେ ତାର ସେମିତି ମହିମା ଅଛି ନା, ନାହିଁ ସେଇଥିପାଇଁ ।

ସଞ୍ଜବୁଡ଼ ଆଡ଼କୁ ତୋପମାଡ ଥମିଯିବାକୁ ଲାଗିଲା । ଆଲ୍‌ପାଟିଚ୍‌ କୋଠରି ଭିତରୁ ବାହାରି ଦୁଆର ମୁହଁରେ ଠିଆ ହେଲା । ପରିଷ୍କାର ସଞ୍ଜୁଆ ଆକାଶରେ ଧୂଆଁର ମେଘ ଘୋଡେଇ ଥାଏ । ସେହି ଧୂଆଁ ସେପାଖରୁ ଦିଶୁଥାଏ କେତେ ଉଚ୍ଚରେ ଅର୍ଦ୍ଧଚନ୍ଦ୍ର ଉଇଁଛି, ବଡ ବିଚିତ୍ର ଦିଶୁଛି । ତୋପ ମାଡର ଘଡଘଡ଼ ଶବ୍ଦ ବନ୍ଦ ହେଲାପରେ ସହର ଉପରେ ନିଃଶବ୍ଦତା ଢାଙ୍କିଯାଇଥାଏ । ମଝିରେ ମଝିରେ ନିଃଶବ୍ଦତା ଭାଙ୍ଗି ଦେଇ ପାଦ ଶବ୍ଦ ଶୁଭୁଥାଏ । ସହରଯାକ ଚାରିଆଡେ ଆର୍ତ୍ତନାଦ ଆଉ ଦୂରରେ କୁହାଟ ଶୁଭୁଥାଏ; ନିଆଁ ଜଳିବାର ଠୋ ଠୋ ଶବ୍ଦ ମଧ୍ୟ ଶୁଭୁଥାଏ । ରାନ୍ଧୁଣୀର ଆର୍ତ୍ତନାଦ ଏଥର ବନ୍ଦ ହୋଇଗଲା । ଦୁଇପଟେ ନିଆଁ ଉପରୁ କଳା ଧୂଆଁର ମେଘ ଆକାଶକୁ ଉଠି ଭାସି ଚାଲିଗଲା । ନାନାପ୍ରକାର ପୋଷାକ ପିନ୍ଧି ସୈନ୍ୟମାନେ ସଡକଯାକ ଏଣେତେଣେ ନାନା ଦିଗରେ ଦୌଡୁଥାନ୍ତି, ଚାଲୁଥାନ୍ତି । ସେମାନେ ପଂକ୍ତିରେ ନଥାନ୍ତି, ସତେ ଯେମିତିକ ଉଇହୁଙ୍କା ଭାଙ୍ଗି ଦେଲେ ଉଇମାନେ ଭୁରୁ ଭୁରୁ ହୋଇ ଚହଲିଯାଆନ୍ତି ସେମାନେ ସେମିତି ହେଉଥାନ୍ତି । ଆଲ୍‌ପାଟିଚ୍‌ ଚାହିଁଥାଏ ସେଥିରୁ ଦଳେ ଫେରାପୋନ୍ତଭ୍‌ର ଦୁଆରବାଟେ ଦୌଡ଼ିଗଲେ । ଗୋଟାଏ ସୈନ୍ୟଦଳ ଭିଡ ଲଗାଇ ତରତର ହୋଇ ପଛକୁ ହଟି ଗଲାବେଳେ ସଡକ ବନ୍ଦ ହୋଇ ଯାଇଥାଏ ।

ତାକୁ ଦେଖିପକାଇ ଜଣେ କର୍ମଚାରୀ କହିଲେ "ସହରଟା ଶତ୍ରୁର ଅଧିକାର ସ୍ୱୀକାର କରି ଆତ୍ମ ସମର୍ପଣ କରିଛି । ପଳାଇଯାଅ, ପଳାଇଯାଅ ।" ତାପରେ ସୈନ୍ୟମାନଙ୍କ ଆଡକୁ ବୁଲିପଡ଼ି ସେ କହିଲେ, "କେମିତି ତୁମେ ସଡକ ଯୁଡ଼ି ଘର ଅଗଣାବାଟେ ଦୌଡୁଛ । ତୁମକୁ ଉଚିତ୍ ଶାସ୍ତି ଦେବି ।"

ଆଲପାଟିଚ ଘରକୁ ଫେରି ଆସି ଗାଡ଼ୁଆନକୁ ଗାଡ଼ି ମେଲାଇ ଦେବାକୁ କହିଲା । ଆଲପାଟିଚ ଓ ଗାଡ଼ୁଆନ ପଛେ ପଛେ ଫେରାପୋଣ୍ଟୋଭର ଘର ଲୋକ ସମସ୍ତେ ପଦାକୁ ଆସିଲେ । ସେମାନେ ଯେମିତି ଧୂଆଁକୁ ଦେଖିଲେ ଆଉ ନିଆଁ ଲାଗିଥିବା ଘରଗୁଡ଼ାକୁ ଦେଖିଲେ—ଅନ୍ଧାର ହେବାରୁ ନିଆଁ ଜଳିବା ଦିଶୁଥାଏ । ମାଇପେ ଯାହା ଆଗରୁ ଚୁପଚାପ ହୋଇଥିଲେ ଏଥର ନିଆଁକୁ ଦେଖୁ ଦେଖୁ କାନ୍ଦଣା ଆରମ୍ଭ କରିଦେଲେ । ତାଙ୍କର ପଛ ଧରି ପର ପାଖର ଅନ୍ୟାନ୍ୟ ଯାଗାରୁ ସେମିତି କାନ୍ଦଣା ଶୁଭିଲା । ଥର ଥର ହାତରେ ଆଲପାଟିଚ୍ ଓ ଗାଡ଼ୁଆନ ଘୋଡ଼ାଶାଳରେ ଲଗାମ ଆଉ ଦୌଡ଼ି ଭିଡ଼ ଭଣ୍ଡ ଗୁଡ଼ାଇଲେ, ସେଗୁଡ଼ାକ ଅଡୁଆ ହୋଇ ଯାଇଥିଲା ।

ଆଲପାଟିଚ୍ ଫାଟକବାଟେ ଗାଡ଼ିରେ ବସି ଚାଲିଗଲା ସମୟରେ ଦେଖିଲା ଯେ ବାରଜଣ ଋଷ ସୈନ୍ୟ ଫେରାପୋଣ୍ଟୋଭର ମୁକୁଳା ପଡ଼ିଥିବା ଦୋକାନ ଆଗରେ ବଡ଼ ପାଟିରେ କଥାଭାଷା ହେଉଥାନ୍ତି । ସେମାନେ ତାଙ୍କ ଥଳରେ ଗହମ, ମଇଦା ଆଉ ସୂର୍ଯ୍ୟମୁଖୀ ଫୁଲ ମଞ୍ଜି ଭର୍ତ୍ତି କରୁଥାନ୍ତି । ସେତିକିବେଳେ ଫେରାପୋଣ୍ଟୋଭ ଲେଉଟି ଆସି ଦୋକାନକୁ ଚାଲି । ସୈନ୍ୟମାନଙ୍କୁ ଦେଖି ସେ ତାଙ୍କ ଉପରକୁ ପାଟି କରିବାକୁ ଯାଉଥିଲା କିନ୍ତୁ ହଠାତ୍ ଅଟକିଗଲା । ଆପଣା ମୁଣ୍ଡବାଳକୁ ମୁଠାଇ ଧରି ସେ ହସି ହସି କାନ୍ଦି ଉଠିଲା । ଆପେ ବସ୍ତା ଗୁଡ଼ାକ ନେଇ ସେ ଗୋଟା ଗୋଟା କରି ସଡ଼କ ଉପରକୁ ଫୋପାଡ଼ ଫୋପାଡ଼ ପାଟିକଲା "ବୋହି ନିଅ ପିଲେ ।" ଋଷସଗୁଡ଼ାକଙ୍କ ପାଇଁ ଆଉ ରହିଯାଅ ନାହିଁ । କେତେଜଣ ସୈନ୍ୟ ଡରି ପଳାଇଗଲେ, ଆଉ କେତେଜଣ ତାଙ୍କ ମୁଣି ଭର୍ତ୍ତି କରୁଥାନ୍ତି । ଆଲପାଟିଚକୁ ଦେଖି ଫେରାପୋଣ୍ଟୋଭ ତା ଆଡ଼କୁ ମୁହଁ ବୁଲାଇଲା ।

ସେ ପାଟି କରୁଥାଏ "ରୁଷର ସବୁ ସରିଗଲା । ଆଲପାଟିଚ । ସବୁ ଶେଷ ହୋଇଗଲା । ମୁଁ ନିଜେ ଏଥିରେ ନିଆଁ ଲଗାଇଦେବି । ସରିଗଲା……" ଫେରାପୋଣ୍ଟୋଭ ଘର ଭିତରକୁ ଦୌଡ଼ିଗଲା ।

ସମୁଦାୟ ସଡ଼କଯାକ ସୈନ୍ୟଙ୍କ ଅଚ୍ଛିଣ୍ଡା ସୁଅ ଲାଗିଯାଇ ବନ୍ଦ ହୋଇ ରହିଥାଏ । ତେଣୁ ଆଲପାଟିଚ ନଯାଇ ପାରି ବାଧ୍ୟହୋଇ

ଅପେକ୍ଷା କଲା । ଫେରପେଣ୍ଟୋଭର ପିଲା ଶ୍ରୀଶ୍ରୀଜା ବି ଆଉ ଗୋଟିଏ ଗାଡ଼ିରେ ବସି କେତେବେଳେ ଯାଇହେବ ସେଥିପାଇଁ ଅପେକ୍ଷା କରି ରହିଥାନ୍ତି ।

ସେତେବେଳକୁ ସମ୍ପୂର୍ଣ୍ଣ ଅନ୍ଧାର ପଡ଼ିଗଲାଣି । ଆକାଶରେ ତାରା ପଡ଼ିଥାନ୍ତି । ବେଳେବେଳେ ଧୂଆଁରେ ଓଢ଼ଣା ସନ୍ଧ୍ୟରେ ନୂଆ ଜହ୍ନ ଠିକ୍ ଠିକ୍ ଦିଶୁଥାଏ । ଧାଡ଼ ଧାଡ଼ ସୈନ୍ୟ ଓ ଅନ୍ୟାନ୍ୟ ଗାଡ଼ି କଡ଼େ କଡ଼େ ଆଲପାଟିଚର ଗାଡ଼ି ଓ ଫେରପେଣ୍ଟୋଭର ପରିବାର ଗାଡ଼ି ଧୀରେ ଧୀରେ ଚାଲିଥାଏ । ମାପର ନଈ ଆଡ଼କୁ ଯେଉଁ ଗଡ଼ାଣି ଭୂଇଁ ଲମ୍ବି ଯାଇଛି ସେ ଗଡ଼ାଣିରେ ସେମାନେ ଏକାଠି ଅଟକିଗଲେ । ଛକଠୁଁ ଅଳ୍ପ ଦୂରରେ ଯେଉଁଠି ଭିଡ଼ ଏକଦମ ଅଟକି ଠିଆ ହୋଇଥାଏ ସେଠି ଗୋଟାଏ ଗଳି ଭିତରେ ଦୋକାନ ଗୁଡ଼ାଏ ଆଉ ଗୋଟାଏ ଘର ମଧ୍ୟ ଜଳି ଯାଉଥାଏ । ନିଆଁଟା ସେତେବେଳକୁ ଜଳସାର ମଳିନ ହୋଇ ଆସିଲାଣି । ନିଆଁଟା ଲିଭିଯାଇ କଳା ଧୂଆଁରେ ଅନ୍ତର୍ହିତ ହୋଇଗଲା । ତାପରେ ଭୁସ୍ କରି ଜଳି ଉଠିଲା । ଛକ ପାଖରେ ଯେଉଁ ଲୋକ ଗହଳି କରିଥିଲେ ସେମାନଙ୍କ ମୁହଁଗୁଡ଼ାକ ପରିଷ୍କାର ହୋଇ ଝଲଝଲ ଦିଶିଲା । ନିଆଁ ଆଗରେ କଳା କଳା ରୂପ ସବୁ ଚରଚର ହୋଇ ଏକର ସେକର ହେଉଥାଏ । ନିଆଁରେ ଠୋ ଠୋ ଅବିରଳ ଲାଗି ରହିଥାଏ ଯେ ସେ ଶବ୍ଦ ଉପରେ ପୁଣି ମଣିଷଙ୍କ ବଡ଼ ପାଟି ଆଉ ଚିତ୍କାର ଶୁଭୁଥାଏ । ଆଲପାଟିଚ ଯେତେବେଳେ ଦେଖିଲା ଯେ ତାର ଗାଡ଼ି ଆଗକୁ ଯାଉ ଯାଉ ଆହୁରି ବେଳ ଯିବ ସେତେବେଳେ ସେ ଓହ୍ଲାଇ ପଡ଼ି ଗଳି ଭିତରେ ନିଆଁକୁ ଦେଖିବାକୁ ଗଲା । ନିଆଁ ଆଗରେ ସୈନ୍ୟମାନେ ଏକର ସେକର ଧାଁ ଧପଡ଼ କରୁଥାନ୍ତି । ଆଲପାଟିଚ ଦେଖିଲା ଯେ ଜଣେ ସୈନିକ ଓ ତାଙ୍କ ସଙ୍ଗରେ ମୋଟାଉଲର ଗରମ କୋଟ୍ ପିନ୍ଧିଥିବା ଆଉ ଜଣେ ଲୋକ ଏମିତି ଏ ତିନିଜଣ ଲୋକ ସେ ନିଆଁରୁ ଜଳନ୍ତା ସେଣିମାନ ବୋହି ନେଇ ସଡ଼କ ସେପାଖରେ ଆଉ ଗୋଟାଏ ଘରକୁ ବି ଯାଉଛନ୍ତି । ଆଉମାନେ ମଧ୍ୟ ସେଗୁଡ଼ାକୁ ବୋହି ନେଇଯାଉ ଥାନ୍ତି ।

ଗୋଟାଏ ଉଚ୍ଚ ଫାଏଲ ଗୋଲାରେ ନିଆଁ ଲାଗିଥାଏ ଯେ ବହୁତ ଲୋକ ରୁଣ୍ଡହୋଇ ଦେଖୁଥାନ୍ତି । କାନ୍ଥ ଗୋଡ଼ାକ ଜଳୁଥାଏ । ପଛ କାନ୍ଥଟା

ପଡ଼ଯାଇଥାଏ, ଉପରର ଫଟା ଛାତ ଫାଟି ପଡ଼ୁଥାଏ । ସେଣି ଗୁଡ଼ାକ ଦାଉ ଦାଉ ହୋଇ ଜଳୁଥାଏ । କେତେବେଳେ ଛାତଟା ପଡ଼ିଯିବ ଲୋକେ ସେଇ ମୁହୂର୍ତ୍ତଟା ପାଇଁ ଅପେକ୍ଷା କଲାପରି ଲାଗୁଥାଏ । ଆଲ୍‌ପାଥଚ୍‌ ବି ସେଇଆ ଦେଖିବାକୁ ଅପେକ୍ଷା କଲା ।

"ଆଲପାଥଚ୍‌ !" ବୁଢ଼ା ଆଲପାଥଚ ହଠାତ୍‌ ଚିହ୍ନା ସ୍ୱରରେ ଡାକ ଶୁଣିଲା ।

ସଙ୍ଗେ ସଙ୍ଗେ ଆଲପାଥଚ୍‌ ତାର ଯୁବକ ଖାଉନ୍ଦର ସ୍ୱର ବାରିଦେଇ କହିଲା "ମଣିମା ! ଆମକୁ ଭଗବାନ ଭରସା ।"

ପ୍ରିନ୍‌ସ ଆନ୍ଦ୍ରେ ଗୋଟାଏ ଲମ୍ବା କୋଟ ଗଳାଇ ଥାନ୍ତି ଆଉ ଗୋଟାଏ କଳା ଘୋଡ଼ାରେ ଚଢ଼ି ଥାନ୍ତି । ସେ ଲୋକ ଗହଳି ଭିତରେ ଥାଇ ଆଲପାଥଚ୍‌ ଆଡ଼କୁ ଚାହିଁ ଥାନ୍ତି ।

"ତୁମେ ଏଠିକି କେମିତି ଆସିଲ ?" ସେ ପଚାରିଲେ ।

"ହଜୁର ! ହଜୁର !" ଆଲପାଥଚ୍‌ କହିବାକୁ ଚେଷ୍ଟାକରି କହିଁ କହିଁ ହୋଇ କାନ୍ଦି ଉଠିଲା । କହିଲା "ହଜୁର ! ହଜୁର ! ସତେ କ'ଣ ଆମ ଅବସ୍ଥା ସରିଗଲା । ମୋ ଖାଉନ୍ଦ ।"

ପ୍ରିନ୍‌ସ ଆନ୍ଦ୍ରେ ପଚାରିଲେ "ତୁମେ ଏଠି ଅଛ କେମିତି ?" ମୁହୂର୍ତ୍ତକ ପାଇଁ ନିଆଁ ତେଜ ଉଠିଲା । ସେହି ଉଜ୍ଜଳ ଆଲୁଅରେ ଆଲପାଥଚ୍‌ ଦେଖିଲା ତାର ଖାଉନ୍ଦର ମୁହଁ ଶୁଖିଯାଇଛି, ବିରଙ୍ଗ ଦିଶୁଛି । ତାକୁ କେମିତି ସେ ସହରକୁ ପଠାଇଥିଲେ, ସେ ଲେଉଟି ଯିବାକୁ କେମିତି ସୁବିଧା ହେଲାନାହିଁ ସେସବୁ କଥା ଆଲପାଥଚ୍‌ ତାଙ୍କ ଆଗରେ କହିଲା ।

ଆଲପାଥଚ ପୁଣି ପଚାରିଲା "କ'ଣ କହୁଛନ୍ତି ହଜୁର ? "ଆମର ଅବସ୍ଥା ସରିଗଲା ?"

ପ୍ରିନ୍‌ସ ଆନ୍ଦ୍ରେ ଉତ୍ତର ଦେଲେ ନାହିଁ । ସେ ପକେଟରୁ ନୋଟ ବହି କାଢ଼ି ଆଣ୍ଠୁଟେକିଦେଇ ନୋଟ ବହିରୁ ଚିରି ନେଇଥିବା ଗୋଟିଏ

ପୃଷ୍ଠାରେ ପେନ୍‌ସିଲରେ ଗାରେଇ ପକାଇଲେ । ସେ ଭଉଣୀ ପାଖକୁ ଲେଖିଥାଆନ୍ତି ।

"ସ୍ମୋଲେନସ୍କ୍ ସହର ଶତ୍ରୁକୁ ଆତ୍ମସମର୍ପଣ କରିଛି । ସାତଦିନ ଭିତରେ ଶତ୍ରୁ 'ଲଣ୍ଡା ପାହାଡ଼' ଇଲାକା ଅଧିକାର କରିବ । ଏଇ ସଙ୍ଗେ ସଙ୍ଗେ ମସ୍କୋ ପଳାଅ । କେବେ ବାହାରୁଛ ସଙ୍ଗେ ସଙ୍ଗେ ମୋତେ ଖବର ଦେବ ।"

ଏତିକ କଥା ଲେଖିଦେଇ ସେ ଆଲ୍‌ପାତିଚ ହାତକୁ ବଢ଼ାଇ ଦେଲେ । ବୁଢ଼ା ପ୍ରିନ୍‌ସ, ପ୍ରିନ୍‌ସେସ, ତାଙ୍କ ପୁଅ ଓ ପୁଅର ମାଷ୍ଟର ଏମାନଙ୍କୁ ମସ୍କୋ ପଠାଇଦେବା ବିଷୟରେ ସେ ନିର୍ଦ୍ଦେଶ ଦେଲେ, ସେମାନେ ଯାଇସାରିବା ମାତ୍ରେ ତାଙ୍କୁ କେବେ କି ଉପାୟରେ ଖବର ଦେବାକୁ ପଡ଼ିବ ସେ କଥାବି କହିଲେ ।

"ତାଙ୍କୁ କହିଦେବ ଯେ ତାଙ୍କର ଜବାବ୍ ପାଇବା ପାଇଁ ମୁଁ ୧୦ ତାରିଖ ଯାଏଁ ଅପେକ୍ଷା କରିଥିବି, ଦଶ ତାରିଖ ଭିତରେ ଯଦି ମୁଁ ଖବର ନ ପାଇବି ତେବେ ସେମାନେ ଯାଇସାରିଲେଣି ବୋଲି ଭାବି ମୁଁ ବାଧ୍ୟହୋଇ ସବୁ ଫୋପାଡ଼ିଦେଇ ନିଜେ ଲଣ୍ଡା ପାହାଡ଼କୁ ଚାଲିଯିବି ।

ନିଆଁରେ କ'ଣ ଭସ୍‌କିରି ପଡ଼ିଲା । ମୁହୂର୍ତ୍ତକ ପାଇଁ ନିଆଁ ଲିଭିଗଲା । ଗୁହତଳେ ଧୂଆଁର କଳା କଳା ମେଘ ଲହଡ଼ି ଖେଳିଲା । ପୁଣି ଗୋଟାଏ ଭୟଙ୍କର ଶବ୍ଦ ହେଲା ଯେପରି ଭୂଷିକରି କ'ଣ ପଡ଼ିଲା । ଯେପରିକି ପ୍ରକାଣ୍ଡ ଓଜନର କ'ଣ ଗୋଟାଏ ଛିଣ୍ଡି ପଡ଼ିଲା ।

"ଉ—ରୁ—" ଲୋକେ ପାଟିକଲେ । ଗୋଲା ଘରର ଘୁଟଣ୍ଟା ଛିଣ୍ଡି ପଡ଼ିଥାଏ । ଜଳନ୍ତା ଗହମରୁ ପୋଡ଼ପିଠା ବାସ୍ନା ପରି ବାସ୍ନା ଉଠୁଥାଏ । ନିଆଁ ପୁଣି ତେଜିଲା । ତା ଚାରିଆଡ଼େ ଯେଉଁ ଲୋକମାନେ ବେଢିଥାନ୍ତି ନିଆଁ ଧାସରେ ତାଙ୍କ ମୁହଁଟି ମାନ ଦିଶୁଥାଏ । ଶରଣାର୍ଥୀ ମୁହଁ ଗୁଡ଼ିକ, ସେଥିରେ ଆନନ୍ଦ ଝଲକଉଥାଏ ।

ଯେଉଁ ଲୋକଟା ମୋଟା ଗରମ କୋଟ ପିନ୍ଧିଥାଏ ସେ ସେଥିରେ ହାତ ହଲାଇ ହଲାଇ ପାଟି କରୁଥାଏ ।

'ଭାରି ଚମତ୍କାର । ଏଥର ସେ ଆରମ୍ଭ କରିଦେଲା ପିଲ୍ଏ, ବାଃ ବାଃ ପିଲ୍ଏ, ଭାରି ଚମତ୍କାର ।

କେତେ ଲୋକ ଗୁଣୁ ଗୁଣୁ ହେଉଥାନ୍ତି । ଶୁଭୁଥାଏ "ସେ ନିଜେ ଘର ମାଲିକ" ପ୍ରିନ୍ସ ଆନ୍ଦ୍ରେ ଆଲପାତିଚ୍‌କୁ କହିଲେ "ହଉ ଯାହା ତୁମକୁ କହିଲି ସେ ସବୁ ତାଙ୍କୁ କହିଦେବ । ତାପରେ ସେ ଘୋଡ଼ାକୁ ଗୋଇଠିରେ କେଞ୍ଚିଦେଇ ଗଳି ଭିତରେ ଘୋଡ଼ା ଧାଉଁଡ଼େଇ ଚାଲିଗଲେ ।

ସ୍ମୋଲେନସ୍କରୁ ସୈନିକମାନେ ହଟି ଚାଲିଗଲେ । ତାଙ୍କ ପଛେ ପଛେ ଶତ୍ରୁ ଗୋଡ଼ାଉ ଥାଏ । ପ୍ରିନ୍ସ ଆନ୍ଦ୍ରେ ଯେଉଁ ସୈନ୍ୟମାନଙ୍କୁ ଚଳାଉଥାନ୍ତି ଅଗଷ୍ଟ ମାସ ୧୦ ତାରିଖ ଦିନ ସେହି ଦଳଟି ଲମ୍ବା ପାହାଡ଼କୁ ଯେଉଁ ସଡ଼କ ପଡ଼ିଛି ତାକୁ ଟପି ଯେଉଁ ବଡ଼ ରାସ୍ତା ଯାଇଛି ସେହି ରାସ୍ତାରେ ରାସ୍ତାରେ ଚାଲିଥାନ୍ତି । ତାତି ଆଉ ଅନାବୃଷ୍ଟି ତିନି ସପ୍ତାହରୁ ବେଶୀଦିନ ହେଲା ଲାଗି ରହିଥାଏ । ପ୍ରତିଦିନ ଆକାଶରେ ମୋଡ଼ ମୋଡ଼ ମେଘମାନ ଉଡ଼ି ଚାଲିଥାଆନ୍ତି । ଅତି କ୍ୱଚିତ୍ ସମୟରେ ମେଘ ଢାଙ୍କି ହୋଇ ସୂର୍ଯ୍ୟଦର୍ଶନ ନାହିଁ ।

କିନ୍ତୁ ସଞ୍ଜ ଆଡ଼କୁ ଆକାଶ ପରିଷ୍କାର ହୋଇଯାଏ ଓ ଜଳନ୍ତା ନାଲି କୁହୁଡ଼ି ଉହାଡ଼ରେ ସୂର୍ଯ୍ୟ ଅସ୍ତ ହୁଏ । କିନ୍ତୁ ରାତି ହେଲେ ବହଳ ହୋଇ କାକର ପଡ଼େ । ପୃଥିବୀ ଶୀତଳ ହୁଏ । କ୍ଷେତର ଯେଉଁ ଗହମ ଫସଲ ବାକି ରହିଯାଇଥାଏ ସେ ଶୁଖି ପୋଡ଼ି ଯାଇଥାଏ । କେଣ୍ଡା ସନ୍ଧିରୁ ଓହଳ ପଡ଼ିଥାଏ । ଝିଲମାନ ଶୁଖିଲା ଠାଓ ଠାଉ ହୋଇ ପଡ଼ିଥାଏ । ଗୋଚର ଜମି ଖରାରେ ପୋଡ଼ି ହୋଇଯାଇଥାଏ, ଗୋରୁଗାଈ ଚରିବାକୁ ନପାଇ ଭୋକରେ ହମାରଡ଼ି ଛାଡୁଥାନ୍ତି । ଖାଲି ଜଙ୍ଗଲରେ ଯେତେବେଳଯାଏ କାକର ପଡୁଥାଏ ସେତେବେଳ ପର୍ଯ୍ୟନ୍ତ ଶୀତଳ ରହୁଥାଏ । କିନ୍ତୁ ସଡ଼କରେ, ଯେଉଁ ବଡ଼ ସଡ଼କବାଟେ ସୈନ୍ୟମାନେ ମାର୍ଚ୍ଚ କରି ଯାଉଥାନ୍ତି, ସେଠି ରାତିରେ ବି ଶୀତଳ ଲାଗେ ନାହିଁ । ଯେଉଁଠି ସଡ଼କ ବଣ ଭିତରେ ପଡ଼ିଛି ସେଠିବି ଶୀତଳ ନଥାଏ । ସଡ଼କ ଉପରେ ଫୁଟେ ବହଳରେ ବାଲିଆ ଧୂଳି, ସେଥିରେ କାକର ପଡ଼ିଲେ ଆଖିକୁ ବି ଦିଶେ ନାହିଁ । ଯେମିତି ଦିନର ଆଲୁଅ ପଡ଼େ ଯେମିତି ସୈନ୍ୟମାନେ

ଚାଲନ୍ତି । ତୋପ ବୁହା ଗାଡ଼ି ଓ ଜିନଷ ବୁହା ଗାଡ଼ି ଆଖିପାକେ ଧୂଳିରେ ବୁଡ଼ିଯାଇ ଚାଲିଥାନ୍ତି, ଚାଲିଲାବେଳେ ଶବ୍ଦ ଶୁଭେ ନାହିଁ । ପଦାତିକ ସୈନିକଙ୍କ ଗୋଡ଼ର ବଳାଗଣ୍ଠି ଯାକ ସେହି ନରମ ଧୂଳିରେ ଗଳିଯାଏ, ଧୂଳି ନଆଁ ପରି ତାତିଯାଏ, ନିଶ୍ୱାସ ବନ୍ଦ କରିଦିଏ । ରାତି ହେଲେ ବି ଶୀତଳ ପଡ଼େ ନାହିଁ । ବାଲିଆ ଧୂଳି ତାଙ୍କ ଗୋଡରେ ଲାଗିରହେ, ଚକରେ ଲାଗିରହେ, ମେଘପରି ତାଙ୍କ ମୁଣ୍ଡ ଉପରକୁ ଉଡେ । ଯେତେ ମଣିଷ ଆଉ ପଶୁ ସେ ସଡକରେ ଚାଲିଥାନ୍ତି ତାଙ୍କ ଆଖିରେ ମୁଣ୍ଡ ବାଳରେ, ନାକପୁଡା ଭିତରେ, ଗଳା ଭିତରେ, ଫୁସଫୁସ୍ ଭିତରେ ଧୂଳି ପଶିଯାଏ । ସୂର୍ଯ୍ୟ ଯେତେ ଉପରକୁ ଉଠେ ଧୂଳିର ମେଘ ସେତିକି ସେତିକି ଉପରକୁ ଉଠେ । ଆଉ ସେଇ ସରୁ ତତଲା ଧୂଳି ଜହାଜରେ ମେଘନଥିବା ଆକାଶରେ ସୂର୍ଯ୍ୟ ଦିଶେ ଗୋଟାଏ ନାଲିଆ ପେଣ୍ଡୁପରି । ସୂର୍ଯ୍ୟକୁ ଚାହିଁଲେ ଆଖି ଝଲସିଯାଏ ନାହିଁ । ଟିକିଏ ବି ପବନ ନଥାଏ । ପବନ ବନ୍ଦ ହୋଇଯାଇ ଲୋକଙ୍କ ନିଶ୍ୱାସ ଅଟକିଯାଇ ସେମାନେ ହାଁ ହାଁ ହୋଇଯାଆନ୍ତି । ମୁହଁ ଉପରେ, ନାକ ଉପରେ, ରୁମାଲ ବାନ୍ଧିଦେଇ ସେମାନେ ମାର୍ଚ୍ଚ କରି ଯାଉଥାନ୍ତି । ଯେତେବେଳେ ସେମାନେ କେଉଁ ଗାଁ ପାଖରେ ପହଞ୍ଚନ୍ତି, ସଙ୍ଗେ ସଙ୍ଗେ କେଉଁଠି କୂଅ ଅଛି ସେଇଆଡକୁ ଲୋକେ ଦୌଡ଼ନ୍ତି । ପାଣି ପାଇଁ ସେମାନେ ପିଟାପିଟି ହୋଇ କାଦୁଅ ପଡ଼ିବାଯାକେ କୂଅରୁ ପାଣି ପିଇଯାଆନ୍ତି ।

ପ୍ରିନ୍ସ ଆନ୍ଦ୍ରେ ଗୋଟିଏ ସୈନ୍ୟଦଳରେ ସେନାପତି ହୋଇଥିବାରୁ ସୈନ୍ୟଦଳର ଚଳାଚଳ, ସେ ଦଳର ଲୋକଙ୍କ ଭଲମନ୍ଦ, କେତେବେଳେ କେଉଁ ଆଦେଶ ଦେବା ଦରକାର, ଏଇସବୁ କଥା ତାଙ୍କ ମନକୁ ଅଧିକାର କରିଥାଏ । ପ୍ରିନ୍ସ ଆନ୍ଦ୍ରେଙ୍କ ଜୀବନରେ ସ୍ମଲେନସ୍କ ସହର ପୋଡ଼ି ଓ ତାକୁ ଛାଡ଼ିଦେଇ ଚାଲିଯିବା ଯେ ହୋଇଥାଏ ଗୋଟିଏ ଅଧ୍ୟାୟ । ଶତ୍ରୁ ପ୍ରତି ପ୍ରବଳ ହିଂସା ତାଙ୍କ ମନରେ ଜଳି ଉଠୁଥାଏ । ଏ ଗୋଟିଏ ନୂଆ ଅନୁଭୂତି । ସେଥିରେ ତାଙ୍କର ନିଜର ଦୁଃଖ ଭୁଲି ହୋଇ ଯାଉଥାଏ । ତାଙ୍କ ସୈନ୍ୟଦଳର ସ୍ୱାର୍ଥ ରକ୍ଷା କରିବାକୁ ସେ ମନପ୍ରାଣ ଦେଇ ଲାଗିଥାନ୍ତି । କ'ଣ କଲେ ତାଙ୍କ ତଳେ ଥିବା ସୈନିକ ଓ କର୍ମଚାରୀମାନଙ୍କର ଭଲହେବ ସେଥିପ୍ରତି ସେ ଯତ୍ନ ନେଉଥାନ୍ତି ଓ

ସେମାନଙ୍କ ସହିତ ତାଙ୍କର ବ୍ୟବହାରରେ ବହୁତ ଆନ୍ତରିକତା ଥାଏ । ସେମାନେ ତାଙ୍କୁ କହୁଥିଲେ "ଆମ ପ୍ରିନ୍‌ସ" । ତାଙ୍କୁ ଯେତିକି ଗର୍ବ କରୁଥାନ୍ତି । ତାଙ୍କୁ ଗଭୀର ଶ୍ରଦ୍ଧା କରୁଥାନ୍ତି । କିନ୍ତୁ ସେ କେବଳ ତାଙ୍କର ଦଳ ଲୋକଙ୍କ ପ୍ରତି ଦୟାଳୁ ଓ ଶାନ୍ତ ସ୍ୱଭାବ ଦେଖାଉଥାନ୍ତି । ଆଉ ଟିମୋଖିନ୍ ପ୍ରତି କି ତାଙ୍କ ପରି ଅନ୍ୟମାନଙ୍କ ପ୍ରତି, କେତେ ଅଚିହ୍ନା ଲୋକଙ୍କ ପ୍ରତି ଯେଉଁମାନେ ତାଙ୍କଠୁଁ ଭିନ୍ନ ଦୁନିଆର ଲୋକ କି ଯେଉଁମାନେ ତାଙ୍କର ଅତୀତ ବିଷୟରେ କିଛି ଜାଣନ୍ତି ନାହିଁ ସେହିମାନଙ୍କ ପ୍ରତି ମଧ୍ୟ ଶାନ୍ତ ସ୍ୱଭାବ ଦେଖାଉଥାନ୍ତି । ଯଦି କେହି ପୁରୁଣା ଚିହ୍ନାଲୋକ ହାବୁଡ଼ିଯାଏ କି କେହି ଷ୍ଟାଫ୍ ଅଫିସର ପହଞ୍ଚିଯାଏ ହଠାତ୍ ତାଙ୍କ ରୁମ ଠିଆ ହୋଇଯାଏ । ସେତେବେଳେ ତାଙ୍କଠି ପ୍ରତିହିଂସା ପରାୟଣତା, ବ୍ୟଙ୍ଗ ବା ତାଚ୍ଛଲ୍ୟ ଫୁଟିଉଠେ । ଅତୀତ ସହିତ ଯେଉଁ କଥାରେ ସମ୍ପର୍କ ରହିଛି ସବୁ ତାଙ୍କୁ ଘୃଣ୍ୟ ଜଣାପଡ଼େ । ତେଣୁ ସେ ଦୁନିଆ ସହିତ ସମ୍ପର୍କ ରଖିବା ଦରକାର ହେଲେ ସେ କେବଳ ନିଜର କର୍ତ୍ତବ୍ୟ କରିବା କାର୍ଯ୍ୟରେ ଆବଦ୍ଧ ହୋଇ ରହନ୍ତି ଓ ଯେପରି ଅବିଚାର ନ କରିବେ ସେଥିପାଇଁ ଚେଷ୍ଟା କରନ୍ତି ।

ପ୍ରକୃତରେ ପ୍ରିନ୍‌ସ ଆନ୍ଦ୍ରେ ସବୁ କଥାକୁ ଅତି ନୈରାଶ୍ୟ ଓ ତିକ୍ତତା ସହିତ ଦେଖୁଥିଲେ । ବିଶେଷତଃ ସ୍ମୋଲେନସ୍କ ପରେ । ସେ ଭାବୁଥିଲେ ସ୍ମୋଲେନସ୍କ ସହରକୁ ରକ୍ଷା କରିବା ସମ୍ଭବ ହୋଇଥାଆନ୍ତା, ଅଥଚ ଅଗଷ୍ଟ ଛ ତାରିଖ ଦିନ ସେ ସହରକୁ ପରିତ୍ୟାଗ କରାଗଲା । ସେ ଆଉରି ମଧ୍ୟ ଭାବୁଥିଲେ ଯେ ତାଙ୍କର ଅକ୍ଷମ ଦୁର୍ବଳ ବାପା ଲିଶିପାହାଡ଼ ଘରକୁ ଛାଡ଼ି ମସ୍କୋ ପଳାଇବାକୁ ବାଧ୍ୟ ହୋଇଥିଲେ । ସେ ଘରକୁ ସେ ନିଜେ ମନଭରି ତୋଳାଇଥିଲେ । ତାକୁ ଏତେ ଭଲ ପାଉଥିଲେ, ସେଠି ନିଜ କୃଷୀମାନଙ୍କ ସଙ୍ଗେ ବସତି କରି ରହିଥିଲେ । ସ୍ମୋଲେନସ୍କକୁ ପରିତ୍ୟାଗ କରିହୋଇଥିବାରୁ ସେଇଠୁ ସେ ଇଲାକାରୁ ଶତ୍ରୁ ଦୂର କରିବାକୁ ଛାଡ଼ିଦେଇ ସେ ପଳାଇବାକୁ ବାଧ୍ୟ ହେଲେ । କିନ୍ତୁ ଏସବୁ ଚିନ୍ତା ସତ୍ତ୍ୱେ ତାଙ୍କ ସୈନ୍ୟ ଦଳର ଭଲମନ୍ଦ ଛଡ଼ା ପ୍ରିନ୍‌ସ ଆନ୍ଦ୍ରେ ତାଙ୍କର ପଦର କର୍ତ୍ତୃତ୍ୱ ଯୋଗୁଁ ଆହୁରି ଗୋଟିଏ କଥା ଭାବିବାକୁ ପଡ଼ୁଥିଲା । ଅଗଷ୍ଟ ଦଶ ତାରିଖ ଦିନ ଯେଉଁ ସୈନ୍ୟ-ବାହିନୀର ତାଙ୍କ ଦଳ ଗୋଟିଏ ଅଂଶ ହୋଇଥିଲା, ସେ ସୈନ୍ୟବାହିନୀ

ଲଣ୍ଡା ପାହାଡ଼କୁ ଯେଉଁ ବାଟ ପଡ଼ିଛି, ତାହାର ମୋଡ଼ ପାଖରେ ପହଞ୍ଚିଲା । ତାର ଦୁଇଦିନ ଆଗରୁ ପ୍ରିନ୍‌ସ ଆନ୍ଦ୍ରେଙ୍କ ପାଖରେ ଖବର ପହଞ୍ଚିଥାଏ ଯେ ତାଙ୍କ ବାପା, ତାଙ୍କ ପୁଅ ଓ ତାଙ୍କ ଭଉଣୀ ମସ୍କୋ ଚାଲିଯାଇ ସାରିଲେଣି । ପ୍ରିନ୍‌ସ ଆନ୍ଦ୍ରେଙ୍କର ଲଣ୍ଡାପାହାଡ଼ରେ କିଛି କାମ ନଥିଲା କିନ୍ତୁ ଆପଣା ଦୁଃଖ ବଢ଼ାଇବାକୁ ତାଙ୍କର ଏକ ସ୍ୱାଭାବିକ୍ ପ୍ରବୃତ୍ତି ହେଲା, ତେଣୁ ସେ ନିଷ୍ପତ୍ତି କଲେ ଯେ ସେ ଘୋଡ଼ା ଚଢ଼ି ସେଠିକି ଯାଇ ବୁଲି ଆସିବେ ।

ଘୋଡ଼ା ପିଠିରେ ଜିନ୍ ସଜାଇବାକୁ ସେ ହୁକୁମ୍ ଦେଲେ ଓ ସୈନ୍ୟବାହିନୀର ଧାର ଛାଡ଼ିଦେଇ ତାଙ୍କ ବାପାଙ୍କ ଘର ଆଡ଼କୁ ଚାଲିଲେ । ସେହି ଘରେ ସେ ଜନ୍ମ ହୋଇଥିଲେ । ସେଇଠି ସେ ତାଙ୍କ ପିଲାଦିନଟି କଟାଇଥିଲେ । ପୋଖରୀ କୂଳରେ କେହି ନାହାନ୍ତି । ଆଗେ ସେଇବାଟ ଦେଇ ଗଲାବେଳେ ସେ ଦେଖୁଥିଲେ ବହୁସଂଖ୍ୟାରେ ଚାଷୀ ଘର ମାଇପେ ଗପ କରୁଥାନ୍ତି, ଲୁଗା କାଚୁଥାନ୍ତି କି ଲୁଗା ସଫା କରିବା ଚଟୁରେ ଓଦାଲୁଗା ଉପରେ ପାହାର ପକାଉଥାନ୍ତି । ପ୍ରିନ୍‌ସ ଆନ୍ଦ୍ରେ ଦେଖିଲେ ଯେ ସେମାନେ ଯେଉଁ କାଠଭାଡ଼ ଉପରେ ଠିଆ ହୋଇଥିଲେ ସେଇଟା ପୋଖରୀ କୂଳରୁ ଓଟାରି ଛିଣ୍ଡାଇ ଦିଆହୋଇଛି ଯେ ଗୋଟାଏ କଡ଼କୁ ଅଣେଇଁପଡ଼ି ପୋଖରୀ ମଝିରେ ଅଧେ ପାଣିରେ ବୁଡ଼ି ଅଧେ ଟେକ ହୋଇ ଭାସୁଛି । ପ୍ରିନସ ଆନ୍ଦ୍ରେ ଜଗୁଆଳ କୋଠରୀପାକେ ଘୋଡ଼ା ଚଢ଼ିଗଲେ । ପଥର ଫାଟକ ପାଖରେ କେହି ନଥାଏ । ଫାଟକ ଖୋଲା ପଡ଼ିଥାଏ । ବଗିଚା ଭିତରର ରାସ୍ତାରେ ଅରମା ଉଠି ଯାଇଥାଏ । ଇଂରେଜ ପାର୍କ ବଗିଚା ଭିତରେ ଗୋରୁ ଆଉ ଘୋଡ଼ା ଚରୁଥାନ୍ତି । ପ୍ରିନ୍‌ସ ଆନ୍ଦ୍ରେ ବଗିଚା ଘର ପାଖକୁ ଗଲେ ।

ଝରକାର କାଚଗୁଡ଼ାକ ଭାଙ୍ଗି ଚୂନା କରି ଦିଆହୋଇଥାଏ । କୁଣ୍ଡ ଭିତରେ କେତେଗୁଡ଼ାଏ ଗଛ ଭଙ୍ଗାହୋଇ ପଡ଼ିଥାଏ, ଅନ୍ୟଗୁଡ଼ାକ ବିଲ୍‌କୁଲ୍ ଶୁଖି ଯାଇଥାଏ । ସେ ମାଳି ଡବାସ୍‌ର ନାଁ ଧରି ଡାକ ପକେଇଲେ । କେହି ଜବାବ ଦେଲେ ନାହିଁ ! ଗୁଡ ଉପରେ ଯେଉଁ ବଗିଚା ଘରଥିଲା ତା ଚାରିକଡ଼େ ବୁଲି ବୁଲି ସେ ଦେଖିଲେ ସରକାରର

ବାଡ ଭାଙ୍ଗି ଯାଇଛି, କୋଳଗଛଗୁଡ଼ିକ ଡାଳକୁ କୋଳ ସହିତେ କିଏ ଓଟାରି ଭାଙ୍ଗି ଦେଇଛି । ପିଲାଦିନେ ପ୍ରିନସ ଆନ୍ଦ୍ରେ ଗୋଟିଏ ବୁଢ଼ାଚାକରକୁ ଖୋଜୁଥିଲେ । ସେ ଦେଖିଲେ ସେହି ବୁଢ଼ାଟି ବଗିଚାର ଶାଗୁଆ ଆସନ ଉପରେ ବସି ଗଛ ପଟରେ ତଆରି ଯୋତାକୁ ବନାଉଥିଲା ।

ସେ ବୁଢ଼ାଟି କାଲ, ତେଣୁ ପ୍ରିନସ ଆନ୍ଦ୍ରେ ତା ପାଖକୁ ଆସିବା ଶବ୍ଦ ଶୁଣିପାରିଲା ନାହିଁ । ବୁଢ଼ା ପ୍ରିନ୍‌ସ ଯେଉଁ ଆସନରେ ବସିବାକୁ ଭଲ ପାଆନ୍ତି, ସେ ସେହି ଆସନରେ ବସିଥାଏ । ତା ପାଖରେ ଗୋଟାଏ ଶୁଖିଲା ଭଙ୍ଗା ମାଗନୋଲିଆ ଗଛଡାଳରେ ପଟୁକା ଯୋତା ଓହଳିଥାଏ ।

ପ୍ରିନ୍‌ସ ଆନ୍ଦ୍ରେ ଘୋଡ଼ାରେ ଚଢ଼ି ଘର ପର୍ଯ୍ୟନ୍ତ ଗଲେ । ପୁରୁଣା ବଗିଚାରେ ବହୁତ ଲେମ୍ବୁ ଗଛ ହଣାହୋଇ ଯାଇଥାଏ । ଘରର ଠିକ୍ ସାମ୍ନାରେ ଗୋଲାପ ଗଛର ବଗିଚା ଭିତରେ ଗୋଟାଏ ହରରଙ୍ଗୀ ଘୋଡ଼ୀ ଆଉ ତା ଛୁଆ ବୁଲୁଥାନ୍ତି । ଘରର ସବୁ ଝରକା ବନ୍ଦଥାଏ, ଖାଲି ତଳ ମହଲାରେ ଗୋଟାଏ ଝରକା ଖୋଲା ଥାଏ ।

ଗୋଟାଏ ଚାକର ଟୋକା ପ୍ରିନ୍‌ସ ଆନ୍ଦ୍ରେଙ୍କୁ ଦେଖି ପକାଇ ଘର ଭିତରକୁ ଦୌଡ଼ି ପଳାଇଲା ।

ଆଲପାଟିଚ୍ ତା ପରିବାରଙ୍କୁ ପଠାଇ ଦେଇ ନିଜେ ଲିଶ୍ରା ପାହାଡ଼ରେ ଏକୁଟିଆ ରହିଥାଏ । ସେ ଘର ଭିତରେ ବସି "ସିଦ୍ଧମାନଙ୍କ ଜୀବନୀ" ବହି ପଢ଼ୁଥାଏ, ପ୍ରିନ୍‌ସ ଆନ୍ଦ୍ରେ ଆସିଛନ୍ତି ବୋଲି ଖବର ପାଇ ସେ ପଦାକୁ ଦୌଡ଼ି ଆସିଲା । ନାକରେ ଚଷମା ଥାଏ । ତା ପୋଷାକର ବୋତାମ ଗୁଡ଼ାକ ଟିପିଦେଇ ସେ ପ୍ରିନ୍‌ସଙ୍କ ପାଖକୁ ଧାଇଁ ଆସିଲା, ତାଙ୍କ ଆଣ୍ଠୁ ଚୁମ୍ବନକରି ପଦେ କଥା ନ କହି ଭେଁ ଭେଁ କରି କାନ୍ଦି ପକାଇଲା ।

ତାପରେ ସେ ନିଜର ଦୁର୍ବଳତା ଦେଖି ନିଜେ ରାଗିଯାଇ ଘୁଞ୍ଚିଗଲା । ଆଉ ଯାହା ଯାହା ଘଟଣା ହୋଇ ଯାଇଛି ସବୁ ଗୋଟି ଗୋଟି କରି କହିଲା । ସେ କହିଲାଯେ, ଯାହାକିଛି ମୂଲ୍ୟବାନ ଜିନିଷ ଥିଲା ସବୁ ବୋଗୁଚାରୋଭକୁ ବୋହି ନିଆହୋଇଛି । ଶହେ ଭରଣ ହେବ ମକା

ବୋହୁ ନଆ ହୋଇଛି, କିନ୍ତୁ ଗହମ କଞ୍ଚା ଥିଲା, ତାକୁ ସୈନ୍ୟମାନେ କାଟି ବୋହିନେଇ ଗଲେ । ଆଲପାତିଚ କହିଲା ଯେ ସେ ସାଲରେ ଗହମ ଫସଲଟା ନାହିଁ ନଥିବାର ହୋଇଥିଲା । ସେ କହିଲା ଯେ ଚାଷୀ କୁଳ ସର୍ବନାଶ ହୋଇଗଲେ, କେତେଜଣ ତ ବୋଗୁଚାରୋଭୋ ଚାଲିଗଲେ । ଅଳ୍ପ କେତେଜଣ ରହିଗଲେ । ତା କଥାକୁ କାନ ନ ଦେଇ ପ୍ରିନ୍‌ସ ଆନ୍ଦ୍ରେ ପଚାରିଲେ "ବାପା ଆଉ ଅପା ଗଲେ କେବେ ?" ସେମାନେ ମସ୍କୋ କେବେ ଗଲେ ଏଇଆ ତାଙ୍କର ପଚାରିବା ଉଦ୍ଦେଶ୍ୟ । ଆଲପାତିଚ୍ ଭାବିଲା ଯେ ବୋଗୁଚାରୋଭକୁ କେବେ ବୁଢ଼ା ହେବା କଥା ସେ ପଚାରୁଛନ୍ତି, ସେ କହିଲା ଯେ ସେମାନେ ସବୁ ସାତ ତାରିଖରେ ଗଲେ, ତାପରେ ସେ ପୁଣି ଫସଲ ବିଷୟରେ ଠିକ ନଖି କରି କହିବାକୁ ଆରମ୍ଭ କରି ତାଙ୍କଠୁ ନିର୍ଦ୍ଦେଶ ମାଗିଲେ ।

ଆଲ୍‌ପାତିଚ ପଚାରିଲା "ହଜୁର କଣ ଅନୁମତି ଦେଉଛନ୍ତି ଯେ ସୈନ୍ୟ ବିଭାଗର କର୍ମଚାରୀଙ୍କଠୁ ରସିଦ ନେଇ ମୁଁ ତାଙ୍କୁ ଯବଧାନ ଚକ ଦେଇଦେବି ? ଆମର ଆହୁରି ଛ ଶହ ଭରଣ ଅଛି ।"

ପ୍ରିନ୍‌ସ ଆନ୍ଦ୍ରେ ଆଶ୍ଚର୍ଯ୍ୟ ହୋଇ ଭାବିଲେ "କଣ ମୁଁ ତାକୁ କହିବି ?" ସେ ଦେଖୁଥାନ୍ତି ତା ମୁଣ୍ଡ ଖପ୍ପରେ ଜକ ଜକ ଦିଶୁଛି ।

ତା ମୁହଁ ଦେଖି ଜଣା ଯାଉଥାଏ ଯେ ସେ ନିଜେ ବୁଝି ପାରୁଛି ଯେ ଏସବୁ ପ୍ରଶ୍ନ ଏ ସମୟ ପାଇଁ ନୁହେଁ, କିନ୍ତୁ ନିଜର ଦୁଃଖକୁ ଲୁଚାଇ ରଖିବା ପାଇଁ ସେ ଏଭଳି ପ୍ରଶ୍ନ ପଚାରୁଛି ।

"ହଁ ଦେଇଦିଅ," ସେ କହିଲେ । ଆଲ୍‌ପାତିଚ୍ କହିଲା ହଜୁର ଦେଖିଥିବେ ବଗିଚା ଟିକିଏ ଅଡ଼ୁଆ ହୋଇଯାଇଛି । ତାକୁ ଆଉ ବନ୍ଦ କରି ହେଲାନାହିଁ । ତିନିଟା ସୈନ୍ୟ ଦଳ ଏଠି ଆସି ରାତିରେ ରହିଥିଲେ । ଘୋଡ଼ାଚଢ଼ା ବନ୍ଧୁକ ଗୁଡ଼ାକ ସବୁଠୁ ଖରାପ । ମୁଁ ଫେରାଇ ଦେବି ବୋଲି ଦଳପତିଙ୍କ ନାମ ଆଉ ପଦବୀ ଟିପି ରଖିଛି ।

ପ୍ରିନ୍‌ସ ଆନ୍ଦ୍ରେ ତାକୁ ପଚାରିଲେ, "ତୁମେ କଣ କରିବ ବୋଲି ଭାବିଚ । ଶତ୍ରୁ ଯଦି ଏ ଯାଗା ଦଖଲ କରିବ ତେବେ ତୁମେ କଣ

ରହିଥିବ ?" ଆଲପାଟିଚ୍ ପ୍ରିନସ ଆନ୍ଦ୍ରେଙ୍କ ଆଡ଼କୁ ମୁଁହ ବୁଲାଇ ତାଙ୍କୁ ଗୁହିଁଲ । ହଠାତ୍ ଗମ୍ଭୀର ଭଙ୍ଗି କରି ସେ ଆକାଶକୁ ହାତ ଟେକିଲ । କହିଲ "ସେଇ ମୋର ରକ୍ଷାକର୍ତ୍ତା, ତାଙ୍କର ଇଚ୍ଛାପୂର୍ଣ୍ଣ ହେଉ ।" ଦଳେ ଚାଷୀ ମୂଲିଆ ପଡ଼ିଆ ଉପର ବାଟେ ଚାଲି ଆସୁଥାନ୍ତି, ପ୍ରିନ୍ସ ଆନ୍ଦ୍ରେଙ୍କ ପାଖ ହେଲରୁ ସେମାନେ ସମ୍ମାନ ଦେଖାଇ ମୁଣ୍ଡରେ ଲୁଗା ଦେଲେ । ପ୍ରିନସ ଆନ୍ଦ୍ରେ ଆଲପାଟିଚ୍ ଆଡ଼କୁ ନଇଁ ପଡ଼ି କହିଲେ, "ହଉ ବିଦାୟ ନିଅ । ତୁମେ ନିଜେ ଗ୍ଲଯାଅ । ଯାହା ପାରୁଚ ନେଇଯାଅ । ଚାଷୀମାନଙ୍କୁ କହି ରାଇଯାନ ମାହାଲକୁ ଗ୍ଲ ଯାଆନ୍ତୁ ନଚେତ୍ ମସ୍କୋ ପାଖରେ ଥିବା ମହାଲକୁ ଯାଆନ୍ତୁ ଭଲ ।" ଆଲପାଟିଚ୍ ତାଙ୍କର ଗୋଡ଼କୁ ଛାତିରେ ଯାକି ଧରି ଭେଁ ଭେଁ କରି କାନ୍ଦିଲ । ପ୍ରିନ୍ସ ଆନ୍ଦ୍ରେ ଆସ୍ତେ ତାକୁ ଘୁଞ୍ଚାଇ ଦେଲେ, ତାପରେ ଘୋଡ଼ାକୁ କେଞ୍ଚିଦେଇ ବଗିଚାର ରାସ୍ତାଏ ରାସ୍ତାଏ କଦମ ଛୁଟାଇ ଗ୍ଲଗଲେ ।

ପ୍ରିନ୍ସ ଆନ୍ଦ୍ରେ ଯାହା ଭାବୁଥିଲେ ସେ ପ୍ରିନ୍ସେସ ମେରିଆ ମସ୍କୋରେ ଅଛନ୍ତି ଓ ନିରାପଦରେ ଅଛନ୍ତି ସେ କଥା ସତ ନୁହେଁ । ଆଲ୍ପାଟିଚ୍ ସ୍ମୋଲେନସ୍କରୁ ଲେଉଟି ଆସିଲାପରେ ଜଣାଗଲ ସଚେତନ ବୁଢ଼ା ପ୍ରିନ୍ସ ହଠାତ୍ ନିଦରୁ ଉଠି ପଡ଼ିଛନ୍ତି । ସେ ହୁକୁମ ଦେଲେ ଯେ ମଫସଲ ପାଇକ ସୈନ୍ୟମାନେ ଗାଁ ଗାଁରୁ ବାହାରି ଆସି ଏକାଠି ହୁଅନ୍ତୁ ଅସ୍ତ୍ର ଶସ୍ତ୍ରରେ ଖଞ୍ଜି ହୁଅନ୍ତୁ । ସେ ପ୍ରଧାନ ସେନାପତିଙ୍କ ପାଖକୁ ଚିଠି ଲେଖିଦେଲେ ଯେ ସେ ସେହି ଲଣ୍ଡା ପାହାଡ଼ ଇଲକାରେ ହିଁ ରହିବେ ଓ ମରିବା ପର୍ଯ୍ୟନ୍ତ ଆତ୍ମରକ୍ଷା ପାଇଁ ଯୁଦ୍ଧକରୁଥିବେ । ସେ ପ୍ରଧାନ ସେନାପତିଙ୍କୁ ଲେଖିଥିଲେ ଯେ ଲଣ୍ଡା ପାହାଡ଼ ଇଲକାକୁ ପ୍ରଧାନ ସେନାପତି ଶତ୍ରୁ ଆକ୍ରମଣରୁ ରକ୍ଷା କରିବାକୁ ଉପାୟ କରିବେ କି ନ କରିବେ ସେ କଥା ତାଙ୍କୁ ଲଗିଲ, କିନ୍ତୁ ସେଠି ଦେଶର ଜଣେ ସବୁଠୁ ବୃଦ୍ଧ ସେନାପତି ହୁଏତ ଶତ୍ରୁ ହାତରେ ବନ୍ଦୀହେବେ ନହେଲେ ମରିବେ । ସେ ତାଙ୍କ ଘରର ସମସ୍ତଙ୍କ ଆଗରେ ଘୋଷଣା କରିଦେଲେ ଯେ ସେ ଲଣ୍ଡା ପାହାଡ଼ରେ ରହିବା ଉଚିତ୍ । କିନ୍ତୁ ନିଜେ ରହିବେ ବୋଲି ନିଷ୍ପତ୍ତି କଲେ ମଧ୍ୟ ଦେଖାଲେ ସଙ୍ଗରେ ପ୍ରିନ୍ସଙ୍କୁ ଓ ନାତି ପ୍ରିନ୍ସ ପିଲାଟିକୁ ଆଗ ବୋଗୁଚାରୋଭ ଓ ସେଠୁ ମସ୍କୋକୁ ପଠାଇଦେବା ପାଇଁ ସେ

ବନ୍ଦୋବସ୍ତ କରାଇ ଦେଲେ । ପ୍ରିନ୍‌ସେସ ମେରିଆ ଦେଖିଲେ ତାଙ୍କ ବାପା ଅନବରତ କରୁଥିବା ଚେଷ୍ଟା ଜର କୋପରେ କାମ କଲାପରି କାମ କରୁଛନ୍ତି । ତା ଦେଖି ତାଙ୍କୁ ଡର ମାଡ଼ିଲା । ତାଙ୍କୁ ଏକୁଟିଆ ଛାଡ଼ି ଦେଇ ଯିବାକୁ ତାଙ୍କର ମନ ବଳିଲା ନାହିଁ । ସେ ତାଙ୍କ ଜୀବନରେ ପ୍ରଥମ ଥର ବାପାଙ୍କର ଅବାଧ ହେବାକୁ ସାହାସ କଲେ । ସେ ଯିବାକୁ ମନାକଲେ । ତା ଫଳରେ କ୍ରୋଧର ଏକ ଭୟାନକ ଝଡ଼ ତାଙ୍କ ଉପରେ ବୋହିଗଲା । ପ୍ରିନ୍‌ସେସ୍‌ଙ୍କ ପ୍ରତି ପୂର୍ବେ ଯେତେ ଅନ୍ୟାୟ ହୋଇଛି ଗୋଟି ଗୋଟି କରି ସେହି ବହୁ ମୂଲ୍ୟ ଉଦାହରଣ ଗୁଡ଼ିକ ପ୍ରିନ୍‌ସ ତାଙ୍କୁ ଚେତାଇ ଦେଲେ । ପ୍ରିନସେସଙ୍କୁ ଭର୍ତ୍ସନା କରିବାକୁ ଆଳ ଖୋଜିବାକୁ ଚେଷ୍ଟାକରି ପ୍ରିନସ ତାଙ୍କୁ କହିଲେ ଯେ ସେ ତାଙ୍କୁ ହଇରାଣ କରିବାକୁ ସବୁ କରିଛନ୍ତି । ସେ ତାଙ୍କ ପୁଅ ପ୍ରତି ତାଙ୍କ ମନ ଫଟାଇ ଦେଇଛନ୍ତି, ସେ ତାଙ୍କ ପ୍ରତି ଅତି ଘୃଣ୍ୟ ସନ୍ଦେହ ମନ ଭିତରେ ରଖିଛନ୍ତି । ତାଙ୍କର ଜୀବନକୁ ବିଷାକ୍ତ କରିବା କାର୍ଯ୍ୟକୁ ପ୍ରିନ୍‌ସେସ ତାଙ୍କ ଜୀବନରେ ଲକ୍ଷ୍ୟ କରିଛନ୍ତି । ସେ ତାଙ୍କୁ କହିଲେ ଯେ ସେ ଯଦି ଚାଲି ନ ଯିବେ ସେଥିରେ ତାଙ୍କର କିଛି ଘସି ଯାଉନାହିଁ । ଏପରି କହି ସେ ତାଙ୍କୁ ତାଙ୍କ ପଢ଼ାଘର ଭିତରକୁ ତଡ଼ିଦେଲେ । ସେ ତାଙ୍କୁ କହିଲେ ଯେ ସେ ବଞ୍ଚିଛନ୍ତି କି ନାହିଁ ସେକଥା ଜାଣିବାକୁ ତାଙ୍କର ଗରଜ ପଡ଼ିବ ନାହିଁ, କିନ୍ତୁ ସେ ତାଙ୍କୁ ସାବଧାନ କରିଦେଲେ ଯେ କେବେ ଯେପରି ତାଙ୍କ ସାମ୍ନାକୁ ଆସିବାକୁ ସେ ଆଉ ସାହସ ନକରିବେ । ପ୍ରିନ୍‌ସେସ୍ ମେରିଆ ଆଶ୍ୱସ୍ତ ହେଲେଯେ ପ୍ରିନସ ଖାଲି ତାଙ୍କୁ ଆଦେଶ ଦେଇଛନ୍ତି ଯେ ସେ ତାଙ୍କ ସାମ୍ନାକୁ ନ ବାହାରନ୍ତୁ, କିନ୍ତୁ ତାଙ୍କୁ ଜବରଦସ୍ତ ଲଣ୍ଡା ପାହାଡ଼ରୁ ଦୂରକୁ ପଠାଇ ଦିଅ ବୋଲି ସେ ହୁକୁମ ଦେଇ ନାହାନ୍ତି, କାଳେ ସେ ସେପରି ହୁକୁମ ଦେବେ ବୋଲି ଭାବି ସେ ଡରୁଥିଲେ । ସେ ଜାଣିଥାନ୍ତି ଯେ ଏପରି କହିବାର ଅର୍ଥ ହେଉଛି ଯେ ବାପା ତାଙ୍କର ଭିତରେ ଭିତରେ ଖୁସି ହେଉଛନ୍ତି ଯେ ସେ ଚାଲି ନ ଯାଇ ତାଙ୍କ ସଙ୍ଗେ ରହିଲେ ।

ନିକୋଲୁସ୍କା ଯିବାର ଆରଦିନ ସକାଳେ ବୁଢ଼ା ପ୍ରିନ୍‌ସ ପୂର୍ଣ୍ଣ ସାମରିକ ପୋଷାକ ପିନ୍ଧି ପ୍ରଧାନ ସେନାପତିଙ୍କ ସଙ୍ଗରେ ଦେଖା କରିବାକୁ ଯିବା ଲାଗି ପ୍ରସ୍ତୁତ ହେଲେ । ଗାଡ଼ି ସଜ ହୋଇ ଠିଆ ହୋଇ

ଥାଏ । ପ୍ରିନସ ଦେଖିଲେ ଯେ ବାପା ତାଙ୍କର ଯୁଦ୍ଧ ପୋଷାକ ପିନ୍ଧିଛନ୍ତି, ତାଙ୍କର ସବୁଯାକ ପଦ ପଦବୀର ଚିହ୍ନ ତାଙ୍କ ଗ୍ରୀବାରେ ମରା ହୋଇଛି । ସେ ଘର ଭିତରୁ ବାହାରି ଆସି ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇଥିବା ଋଷୀ ମୂଲିଆମାନଙ୍କୁ ପରିଦର୍ଶନ କରିବା ସକାଶେ ବଗିଚାକୁ ଓହ୍ଲାଇ ଗଲେ । ବଗିଚାରୁ ତାଙ୍କର ବଡ଼ ପାଟି ଶୁଭୁଥାଏ ଯେ, ପ୍ରିନ୍‌ସେସ ମେରିଆ ଝରକା ପାଖରେ ବସି ଶୁଣୁଥାନ୍ତି । ହଠାତ୍ ବହୁତ ଗୁଡ଼ାଏ ଲୋକ ବଗିଚା ରାସ୍ତା ବାଟେ ଧାଇଁ ଧାଇଁ ଆସିଲେ, ତାଙ୍କ ମୁହଁରେ ଆତଙ୍କର ଚିହ୍ନ ଦିଶୁଥାଏ ।

ପ୍ରିନ୍‌ସେସ ମେରିଆ ପାହାଚକୁ ଧାଇଁଗଲେ, ତାପରେ ଫୁଲ ଗଛମାନଙ୍କ କରେ କରେ ବଗିଚାର ରାସ୍ତାକୁ ଦୌଡ଼ିଗଲେ । ସେହି ବାଟେ ତାଙ୍କର ପାଖକୁ ଚାକରମାନେ ଆସୁଥାନ୍ତି । ସେ ଗହଳ ମଝିରେ କେତେଜଣ ଲୋକ ଗୋଟିଏ ବୁଢ଼ାଟିକୁ ଧରି ଓଟାରି ଓଟାରି ନେଇ ଆସୁଥାନ୍ତି । ସାନ ବୁଢ଼ାଟିଏ, ଯୁଦ୍ଧ ପୋଷାକ ପିନ୍ଧିଥାଏ, ପଦ ପଦବୀର ଚିହ୍ନରେ ପୋଷାକଟି ସଜା ହୋଇଥାଏ । ପ୍ରିନ୍‌ସେସ୍ ମେରିଆ ତାଙ୍କ ଆଡ଼କୁ ଧାଇଁଗଲେ । ରାସ୍ତା ହି କରରେ ଲେମ୍ବୁଗଛ ଧାଡ଼ି ହୋଇ ଲାଗିଥାଏ । ଛାଇ ଘୋଡ଼େଇ ଥାଏ । ସେହି ଗଛ ସନ୍ଧିରେ ଗୋଲ ଗୋଲ ହୋଇ ଆଲୁଅର ଢେଉଁରି ନାଚୁଥାଏ । ପ୍ରିନ୍‌ସଙ୍କ ମୁହଁରେ ଯେଉଁ ପରିବର୍ତ୍ତନ ହୋଇଥାଏ ପ୍ରିନ୍‌ସେସ ମେରିଆ ତାକୁ ପରିଷ୍କାର କରି ଦେଖି-ପାରିଲେ ନାହିଁ । ସେ ଏତିକି ଖାଲି ଦେଖି ପାରିଲେ ଯେ ତାଙ୍କ ମୁହଁରେ ଯେଉଁ ଦର୍ପ ଓ ଟାଣର ପାଣି ଥିଲା ସେ ବଦଳି ଯାଇ ତା ପରିବର୍ତ୍ତେ ଭୟ ଓ କାତର ମିନତିର ଠାଣି ଲାଗି ରହିଛି । ସେ ତାଙ୍କ ଝିଅକୁ ଦେଖି କଣ କହିବେ ବୋଲି ତାଙ୍କର ନିର୍ଜିଷ୍ଟ ଓଠ ଯୋଡ଼ିକୁ ଥରାଇବାକୁ ଚେଷ୍ଟା କଲେ କିନ୍ତୁ ତାଙ୍କ ପାଟିରୁ ଖାଲି ଫମ୍ପା ଶବ୍ଦ ବାହାରିଲା । ସେ କ'ଣ କହୁଛନ୍ତି ତା ବୁଝିବା ଅସମ୍ଭବ ହେଲା । ତାଙ୍କୁ ଟେକିନେଇ ପଢ଼ାଘର ଖଟ ଉପରେ ଶୁଆଇ ଦିଆଗଲା, ଯେଉଁ ଖଟକୁ ଏବେ ସେ ଡରୁଥିଲେ ।

ରାତା ରାତି ଡାକ୍ତର ଡକା ହେଲା ! ଡାକ୍ତର ତାଙ୍କ ଦେହରୁ ରକ୍ତ ବାହାର କରିନେଲେ । କହିଲେ ଯେ ପ୍ରିନ୍‌ସଙ୍କୁ ସେମାନେ ବୋଗୁଚ୍ଚାରୋଭକୁ ନେଇଯାନ୍ତୁ । ଡାକ୍ତର ତାଙ୍କ ସଙ୍ଗରେ ମଧ୍ୟ ଗଲେ ।

ସେମାନେ ବୋଗୁଚ୍ଚରୋଭରେ ପତ୍ରଟି ଦେଖିଲେ ଯେ, ଦେଶାଲେ ଠିକ ପ୍ରିନ୍‌ସଙ୍କୁ ସଙ୍ଗରେ ଯେନ ମସ୍କୋ ଚାଲିଯାଇଛନ୍ତି । ତିନି ସପ୍ତାହ ପରେ ବୁଢ଼ା ପ୍ରିନ୍‌ସ ପକ୍ଷଘାତ ବେମାରିରେ ପଡ଼ି ରହିଲେ, ରୋଗ କମୁନଥାଏ କି ବଢ଼ୁ ନଥାଏ । ବୁଢ଼ା ପ୍ରିନସ ବେହୋସ ହୋଇ ପଡ଼ି ରହିଥାନ୍ତି, ସତେ ଯେମିତି ଗୋଟାଏ ବିଭଙ୍ଗ ହୋଇ ଯାଇଥିବା ମୁର୍ଦ୍ଦାର । ସେ ସବୁବେଳେ ଭୁଟୁରୁ ଭୁଟୁରୁ ହେଉଥାନ୍ତି, ତାଙ୍କ ଓଠ ଆଉ ଆଖିପତା ଥରୁଥାଏ ; ସେ କେଉଁଠି ଅଛନ୍ତି, ଚାରିଆଡ଼େ କଣ ହେଉଛି ଏସବୁ କଥା ସେ ବୁଝିପାରୁଥାନ୍ତି କି ନାହିଁ ସେକଥା କହିବା ଅସମ୍ଭବ ଜଣା ପଡୁଥିଲା । ଗୋଟାଏ କଥା ନିଶ୍ଚୟ କରି କୁହାଯାଇ ପାରୁଥିଲା ଯେ, ସେ ବହୁତ ଯନ୍ତ୍ରଣା ଭୋଗୁଛନ୍ତି ଆଉ କଣ କହିବେ ବୋଲି ତାଙ୍କର ଭାରି ମନ ଡାକୁଛି । ସେ ଖାଲି ଗୋଟାଏ ବେମାରିଆ ଲୋକର ରୋଗର ପ୍ରଳାପ ନା ରାଜ୍ୟର ହାଲଚାଲ ବିଷୟରେ କିଛି କି ପାରିବାରିକ ଘଟଣା କଣ ଯେ ସେ କହିବାକୁ ଇଚ୍ଛା କରୁଥିଲେ ସେକଥା କହିପାରୁ ନଥାନ୍ତି ।

ଡାକ୍ତର କହିଲେ ଯେ ସେ ଏପରି ଛଟପଟ ହେଉଛନ୍ତି ସେଥିରେ ଅନ୍ୟ ଅର୍ଥ ନାହିଁ, ଖାଲି ଦେହ ବ୍ୟସ୍ତ ଲାଗି ସେ ଏପରି ହେଉଛନ୍ତି । କିନ୍ତୁ ପ୍ରିନ୍‌ସେସ୍ ମେରିଆ ଭାବୁଥିଲେ, ଆଉ ସେ ପାଖରେ ଥିଲାବେଳେ ତାଙ୍କ ବାପା ବେଶି ଛଟପଟ ହେଉଛନ୍ତି । ଏକଥା ଦେଖି ତାଙ୍କ ବିଶ୍ୱାସ ଦୃଢ଼ ହେଉଥିଲା ଯେ ସେ ତାଙ୍କୁ କଣ କହିବାକୁ ଇଚ୍ଛା କରୁଛନ୍ତି ।

ଜଣାଯାଉଥାଏ ଯେ ତାଙ୍କ ଦେହରେ ଓ ମନରେ ଉଭୟଠି ଯନ୍ତ୍ରଣା ଲାଗି ରହିଥାଏ । ସେ ଆଉ ଭଲ ହେବେ ବୋଲି ତ ଆଶା ନଥାଏ । ତାଙ୍କୁ ସେଠାରୁ କୁଆଡ଼େ ନେବା ବି ଅସମ୍ଭବ ।

ବେଳେବେଳେ ପ୍ରିନସ ମେରିଆ ଭାବନ୍ତି, "କୁଆଡ଼େ ନେଲେ କାଳେ ନେଉ ନେଉ ସେ ବାଟରେ ମରିଯିବେ ? କଣ ହେବ ? ସବୁ ଶେଷ ହୋଇଗଲେ ଭଲ ହୁଅନ୍ତା ନାହିଁ ? ସବୁ ସରିଗଲେ ?"

କି ଦିନ କି ରାତି ସେ ତାଙ୍କୁ ଜଗି ବସିଥାନ୍ତି, ତାଙ୍କ ଆଖିକି ପ୍ରାୟ ନିଦ ନ ଥାଏ । ବଡ଼ ଭୟଙ୍କର କଥା ଯେ ସେ ଯେତେବେଳେ ତାଙ୍କୁ ଜଗିଥାନ୍ତି ସେତେବେଳେ ତାଙ୍କ ଦେହ ଭଲହେବାର ଚିହ୍ନ ଦେଖିବାକୁ

ତାଙ୍କର ଅପେକ୍ଷା ନଥାଏ । ଅନେକ ସମୟରେ ସେ ତାଙ୍କୁ ଏଇଥି ପାଇଁ ଚାହିଁଥାନ୍ତି ଯେ କାଳେ ତାଙ୍କର ଆସନ୍ନ ମୃତ୍ୟୁର ସଙ୍କେତ ସେ ଦେଖିପାରିବେ ।

ନିଜ ପାଖେ ନିଜେ ଏକଥା ସ୍ୱୀକାର କରିବାକୁ ପ୍ରିନ୍‌ସେସ୍‌ଙ୍କୁ ଆଶ୍ଚର୍ଯ୍ୟ ଲାଗୁଥାଏ । କିନ୍ତୁ ତଥାପି ତାଙ୍କ ହୃଦୟ ଭିତରେ ଏହିପରି ଭାବଥାଏ । ପ୍ରିନ୍‌ସେସ୍ ମେରିଆଙ୍କୁ ଆହୁରି ଭୀଷଣ ଭୟ ଲାଗୁଥାଏ ଯେ ତାଙ୍କ ବାପା ଯେଉଁ ଦିନୁଁ ବେମାର ପଡ଼ିଲେଣି । ଅବଶ୍ୟ ତା ଆଗରୁ ନ ଥିଲା । ସେତେବେଳେ ତ କାଳେ କ'ଣ ଗୋଟାଏ ଅନିର୍ଦ୍ଦିଷ୍ଟ କ'ଣ ଘଟିବ ବୋଲି ସେ ସତେକି ପ୍ରତୀକ୍ଷା କରି ରହିଥାନ୍ତି ।) ସେଦିନୁ ତାଙ୍କ ଭିତରେ ରହିଥିବା ପାସୋର ଆଶା ଓ କାମନା ମାନ ଚେଇଁ ଉଠିଥାନ୍ତି । ସତେକି ଶଇତାନର ପ୍ରଲୋଭନ ପରି ତାଙ୍କର କଳ୍ପନାକୁ ଧାରଣାମାନ ଆକ୍ରାନ୍ତ କରି ରଖିଥାନ୍ତି । ଆଗେ ତାଙ୍କ ମୁଣ୍ଡରେ ଏସବୁ ଧାରଣା ପଶୁନଥିଲା । ଏ ନୂଆ ଧାରଣାରେ ଥିଲା ବାପାଙ୍କ ପ୍ରତି ଭୟ ମୁକ୍ତ ହୋଇଥିବା ଏକ ଜୀବନ, ଏପରିକି ପ୍ରେମରେ ପଡ଼ିବାର ସମ୍ଭାବନା, ଏକ ସୁଖମୟ ବିବାହିତ ଜୀବନର ସମ୍ଭାବନା । ସେସବୁ ଚିନ୍ତାକୁ ତଡ଼ି ଦେବାକୁ ସେ ବୃଥା ଚେଷ୍ଟା କରୁଥାନ୍ତି । ବାରମ୍ବାର ତାଙ୍କ ମନରେ ଏହି ପ୍ରଶ୍ନମାନ ଉଠୁଥାଏ ଯେ କେଉଁ ବାଗରେ ନିଜ ଜୀବନକୁ ବର୍ତ୍ତମାନ ସଜାଡ଼ିବି, — ଏହାପରେ । ଏ ଚିନ୍ତା ସଇତାନର ହିଁ ଚିହ୍ନ, ପ୍ରିନ୍‌ସେସ୍ ଜାଣିଥିଲେ । ସେ ଜାଣିଥିଲେ ଯେ ଭଗବାନଙ୍କୁ ପ୍ରାର୍ଥନା କରିବା ହିଁ ସଇତାନ ବିରୁଦ୍ଧରେ ଏକମାତ୍ର ଅସ୍ତ୍ର ଯାହା କାମ୍ କରିପାରିବ । ସେ ପ୍ରାର୍ଥନା କଲା ଭଙ୍ଗୀରେ ଆସନରେ ବସୁଥାନ୍ତି । ଦେବତାମାନଙ୍କ ଛବି ଆଡ଼କୁ ଏକ ଦୃଷ୍ଟିରେ ଚାହିଁ ରହୁଥାନ୍ତି । ତୁଣ୍ଡରେ ବାରମ୍ବାର ପ୍ରାର୍ଥନାର ଶବ୍ଦମାନ ଆବୃତ୍ତି କରୁଥାନ୍ତି, ତଥାପି ତାଙ୍କ ଦ୍ୱାରା ପ୍ରାର୍ଥନା ହେଉନଥାଏ । ତାଙ୍କୁ ଲାଗୁଥାଏ ଯେ ତାଙ୍କୁ ଯେପରି କିଏ ବାସ୍ତବ ଜୀବନରେ ଏକ ନୂଆ ଦୁନିଆ ଭିତରକୁ ଟେକିନେଇ ଚାଲିଯାଉଛି । ସେ ଦୁନିଆରେ ଅଛି ପରିଶ୍ରମ କରିବା, ସ୍ୱାଧୀନହୋଇ କର୍ମ କରିବା ଯେଉଁ ମିଥ — ପୂର୍ଣ୍ଣ ବାତାବରଣ ଭିତରେ ସେ ବନ୍ଦିନୀ ହୋଇ ରହି ଆସିଛନ୍ତି । ଯେଉଁଠି ତାଙ୍କର ଏକମାତ୍ର ସାନ୍ତ୍ୱନା ହୋଇ ଆସିଛି ଇଶ୍ୱରଙ୍କୁ ପ୍ରାର୍ଥନା ଏ ନୂଆ ଦୁନିଆ ଯେପରିକି

ତାର ସମ୍ପୂର୍ଣ୍ଣ ବିରୋଧୀ । ସେ ପ୍ରାର୍ଥନା କରିପାରୁନଥାନ୍ତି, କି କାନ୍ଦି ପାରୁନଥାନ୍ତି । ତାଙ୍କ ମନ ବାସ୍ତବ ଜଗତର ଚିନ୍ତାରେହିଁ ବୁଡ଼ି ରହିଥାଏ ।

ବୋଗୁଚାରୋଭୋରେ ରହିବା ବେଳୁବେଳ ଆପଦ ସଙ୍କୁଳ ହୋଇ ଉଠୁଥାଏ ।

ଚାରିଆଡ଼ୁ ଗୁଜବ ଆସୁଥାଏ ଯେ ଫରାସୀ ସୈନ୍ୟ ପାଖକୁ ଆସିଗଲେଣି ଆଉ ବୋଗୁଚାରୋଭୋରେ ପନ୍ଦର ଭର୍ଷ୍ଟି ଦୂରରେ ଫରାସୀ ଲୁଣ୍ଠନକାରୀମାନେ ଗୋଟାଏ ଘର ଲୁଟି ନେଲେଣି । ଡାକ୍ତର ଜିଦ୍ ଧରିଲେ ଯେ ସେ ଯାଗାରୁ ପ୍ରିନସଙ୍କୁ ଅନ୍ୟତ୍ର ନେଇଯିବା ଆବଶ୍ୟକ । ସେ ଜିଲ୍ଲାର ସାମରିକ କର୍ତ୍ତା ପ୍ରିନସେସ୍ ମେରିଆଙ୍କ ପାଖକୁ ଜଣେ କର୍ମଚାରୀଙ୍କୁ ପଠାଇଲେ । ଯେତେ ଚଞ୍ଚଳ ପାରନ୍ତି ସେତେ ଚଞ୍ଚଳ ସେଠାରୁ ଚାଲିଯିବାକୁ ତାଙ୍କୁ କୁହାପୁଚ୍ଛା କରି ବୁଝାଇବାଲାଗି ସେ କର୍ମଚାରୀଙ୍କୁ ପଠାଇଥାନ୍ତି । ସେହି କଥା ଉପରେ ଜୋର ଦେଇ କହିବା ଲାଗି ପୋଲିସ ବିଭାଗର କର୍ତ୍ତା ବୋଗୁଚାରୋଭୋ ଆସିଲେ । ସେ କହିଗଲେ ଯେ ଫରାସୀ ସୈନ୍ୟ ବାହିନୀ ମୋଟେ ଚାଳିଶି ଭର୍ଷ୍ଟି ଦୂରରେ ଅଛନ୍ତି । ଗ୍ରାମେ ଗ୍ରାମେ ଫରାସୀ ମାନଙ୍କର ଘୋଷଣା ପତ୍ର ବୁଲୁଛି ଓ ପନ୍ଦର ତାରିଖ ପୂର୍ବରୁ ଯଦି ପ୍ରିନ୍‌ସେସ୍ ତାଙ୍କ ବାପାଙ୍କୁ ସେଠାରୁ ନେଇ ନ ଯିବେ ତେବେ ଯାହା ଫଳହେବ ସେଥିପାଇଁ ସେ ଦାୟୀ ହେବେ ନାହିଁ ।

ପ୍ରିନ୍‌ସେସ୍ ଠିକ୍ କଲେଯେ ୧୫ ତାରିଖ ଦିନ ସେମାନେ ସେଠାରୁ ଚାଲିଯିବେ । ତା ଆଗଦିନ ସେ ଆୟୋଜନ କରିବାରେ ଓ କାର୍ଯ୍ୟ କଣ ହେବ ସେଥିପାଇଁ ଆବଶ୍ୟକୀୟ ନିର୍ଦ୍ଦେଶମାନ ଦେବାରେ ବ୍ୟସ୍ତ ରହିଲେ । କଣ କରିବାକୁ ହେବବୋଲି ସମସ୍ତେ ତାଙ୍କୁ ପଚାରୁଥାନ୍ତି । ସବୁଦିନ ପରି ୧୪ ତାରିଖ ରାତିଟି ବି ସେ କଟାଇଲେ, ପୋଷାକ ପାଲଟିଲେ ନାହିଁ । ବୁଢ଼ା ପ୍ରିନ୍‌ସ ଯେଉଁ ଘରେ ଥାଆନ୍ତି ତାର ପାଖ ଘରେ ସେ ଶୋଇଥାନ୍ତି । ରାତିରେ ଅନେକ ଥର ଶବ୍ଦ ଶୁଣି ତାଙ୍କ ନିଦ ଭାଙ୍ଗି ଯାଉଥାଏ । ତାଙ୍କୁ ଶୁଭୁଥାଏ ଯେ ତାଙ୍କ ବାପା ଯନ୍ତ୍ରଣାରେ ଚିତ୍କାର କରୁଥାନ୍ତି । ବିଳି ବିଳେଇ ହେଉଥାନ୍ତି । ଖଟ କଟ କଟ ଶୁଭୁଥାଏ । ଟିହନ୍ ଓ ଡାକ୍ତର ତାଙ୍କୁ ବୁଝାଉ

ଥାନ୍ତି ଯେ ସେମାନଙ୍କ ପାଦ ଶବ୍ଦ ଶୁଭୁଥାଏ । ଅନେକଥର ପ୍ରିନ୍‌ସେସ୍‌ କବାଟ ପାଖେ କାନ ପାତୁଥାନ୍ତି । ତାଙ୍କୁ ଲାଗୁଥାଏ ଯେ ସବୁଦିନ ତାଙ୍କ ବାପା ଯେଉଁ ପାଟିରେ ବକା ବକେଇ ହୁଅନ୍ତି ତାଠାରୁ ଆହୁରି ବଡ଼ ପାଟିରେ ସେ ଭୁଣ୍ଟୁ ରୁ ଭୁଣ୍ଟୁ ରୁ ହେଉଛନ୍ତି ଓ ଅଧିକ ଅସ୍ଥିର ହୋଇ କରି ଲେଉଟାଉଛନ୍ତି । ପ୍ରିନ୍‌ସେସ୍‌ଙ୍କ ଆଖିରେ ନିଦ ନ ଥାଏ, ଅନେକ ଥର ସେ କବାଟ ପାଖରେ ଯାଇ କାନ ପାତୁଥାନ୍ତି, ବାରି ଭିତରକୁ ଯିବାକୁ ତାଙ୍କର ଲୋଭ ହେଉଥାଏ । କିନ୍ତୁ ଭିତରକୁ ପଶିବାକୁ ମନସ୍ଥିର କରିପାରୁ ନ ଥାନ୍ତି, ସେ କଥା କହିପାରୁ ନ ଥାନ୍ତି ସତ କିନ୍ତୁ ତାଙ୍କ ମୁଖ ଭଙ୍ଗୀରୁ ଜଣା ପଡ଼ୁଥାଏ ଯେ ତାଙ୍କ ବିଷୟରେ ମନ ବ୍ୟସ୍ତ କଲେ ସେ ସବୁଦିନେ ଯେପରି ବିରକ୍ତ ହୁଅନ୍ତି ସେତେବେଳେ ବି ସେହିପରି ହେବେ । ସେ ଲକ୍ଷ୍ୟ କରୁଥାନ୍ତି କେମିତି ବିରକ୍ତ ହୋଇ ସେ ତାଙ୍କ ଆଖିକୁ ଭୁଲ୍ଲିଁ ମୁହିଁ ବୁଲେଇ ନେଉଥାନ୍ତି । ପ୍ରିନ୍‌ସେସ୍‌ଙ୍କ ଆଖି ନିଜ ଅଜାଣତରେ ବେଳେ ବେଳେ ତାଙ୍କରି ଉପରେ ଲାଖି ରହିଥାଏ । ସେ ଜାଣିଥିଲେ ଯେ ରାତିରେ ପୁଣି ଅବେଳରେ ସେ ତାଙ୍କ ପାଖକୁ ଗଲେ ସେ ରାଗିବେ ।

କିନ୍ତୁ ପ୍ରିନ୍‌ସେସ୍‌ ତାଙ୍କ ବାପାଙ୍କ ପାଇଁ କେତେବେଳେ ହେଲେ ଦୁଃଖିତ ହୋଇନଥିଲେ କି ସେ ମରିବା କେଉଁ ଭୟଙ୍କର ଏପରି କେତେ ବେଳେ ସେ ଭାବୁ ନ ଥିଲେ । ତାଙ୍କ ସଙ୍ଗରେ ସେ ଯେତେଦିନ ଏକାଠି ରହିଲେଣି ସବୁ କଥା ସେ ମନେ ପକାଉଥାନ୍ତି । ବାପାଙ୍କର ପ୍ରତି ପଦେ କଥାରେ ପ୍ରତି କାର୍ଯ୍ୟରେ ତାଙ୍କ ପ୍ରତି ତାଙ୍କର ସ୍ନେହର ଭାବ ପ୍ରକାଶ ତାଙ୍କ ଆଖିରେ ପଡ଼ି ଯାଉଥାଏ । ମଝିରେ ମଝିରେ ଏହିସବୁ ସ୍ମୃତିରେ ପୁଣି ସଇତାନ୍‌ ଆସି ତାର ପ୍ରଲୋଭନ ଦେଇ ବାଧା ଦିଏ । ବାପା ମରିଗଲା ପରେ କଣ ହେବ ଓ ସ୍ୱାଧୀନ ଭାବେ ନିଜ ଜୀବନକୁ କିପରି ଭାବରେ ଚଳାଇବେ ତାହାର ସ୍ୱପ୍ନ ତାଙ୍କ କଳ୍ପନାରେ ଭାସି ଉଠେ । କିନ୍ତୁ ନିଜେ ଘୃଣିଆଁ ହୋଇ ସେ ମନ ଭିତରୁ ସେଭଳି ଚିନ୍ତା ଗୁଡ଼ାକୁ ବାଦ ଦିଅନ୍ତି । ପାହାନ୍ତିଆ ଆଡ଼କୁ ପ୍ରିନ୍‌ସ ଟିକିଏ ଚୁପଚାପ ହୋଇଗଲେ । ପ୍ରିନ୍‌ସେସ୍‌ଙ୍କୁ ନିଦ ହୋଇଗଲା ।

ଡେରିରେ ତାଙ୍କର ନିଦ ଭାଙ୍ଗିଲା । ନିଦରୁ ଉଠିଲା ମୁହୂର୍ତ୍ତରେ ଅନେକ ସମୟରେ ମଣିଷ ଅଳ୍ପଟ ହୋଇ ଆପଣା ମନକୁ ବୁଝିପାରେ ।

ତାଙ୍କ ବାପାଙ୍କ ବେମାର ଭିତରେ ତାଙ୍କର ସବୁଠୁ ବେଶୀ କେଉଁ କଥାରେ ମନ ଥାଏ ସେହି ନିଦରୁ ଉଠିଲା ମୁହୂର୍ତ୍ତରେ ସେହି ମନରେ ସେ ସେତିକି ନିର୍ଦ୍ଦିଷ୍ଟ ଭାବରେ ବୁଝି ପାରିଲେ । ସେ ନିଦରୁ ଉଠିଲେ । ଆଉ ଘରେ କଣ ହେଉଛି ଶୁଣିବାକୁ କବାଟ ସେପଟକୁ ସେ କାନ ଡେରିଲେ । ତାଙ୍କ ବାପା ଭୁଣ୍ଟୁରୁ ଭୁଣ୍ଟୁରୁ ହେଉଛନ୍ତି ତାଙ୍କୁ ଶୁଭିଲା । ସେ ଦୀର୍ଘଶ୍ୱାସ ପକାଇ ନିଜକୁ ନିଜେ କହିଲେ ଯେ, ଅବସ୍ଥା ଯାହାଥିଲା ସେଇଆ, ପରିବର୍ତ୍ତନ ନାହିଁ ।

ଆପଣା ଉପରେ ତାଙ୍କର ଘୃଣା ହେଲା, ସେ କହିପକାଇଲେ— "ଆଜି କଣ ହୁଅନ୍ତା ଯେ ! କଣ ହେବ ବୋଲି ମୁଁ ଆଶା କରିଥିଲି । ନା ସେ କେମିତି ମରନ୍ତୁ ଏଇଆ ଆଶା କରିଥିଲି ! ଛି !"

ସେ ଗାଧୋଇଲେ, ପୋଷାକ ପିନ୍ଧିଲେ, ପ୍ରାର୍ଥନା କଲେ, ତାପରେ ଘଡ଼ାକୁ ପାହାଚ ପାଖକୁ ଚାଲିଗଲେ । ଯେଉଁ ଗାଡ଼ିରେ ସେମାନଙ୍କ ଜିନିଷପତ୍ର ଲଦା ହୋଇଥାଏ ସେ ଗାଡ଼ି ଦୁଆରମୁହଁରେ ଠିଆ ହୋଇଥାଏ କିନ୍ତୁ ସେଥିରେ ଘୋଡ଼ା ବନ୍ଧା ହୋଇନଥାନ୍ତି ।

ସକାଳ ପାଉଁଶିଆ ଦିଶୁଥାଏ, ଶୀତ ନଥାଏ, ଉଷୁମ ଲାଗୁଥାଏ । ପ୍ରିନ୍‌ସେସ ମେରିଆ ତାଙ୍କ ଆପଣା ମନ ଭିତରେ ଯେଉଁ ନୈତିକ ଅଧଃପତନ ହୋଇଥାଏ ସେହିକଥା ଭାବି ଆତଙ୍କିତ ହେଉଥାନ୍ତି । ସେ ପାହାଚ ଉପରେ ମେଣ୍ଟେଇ ହେଉଥାନ୍ତି ଓ ବାପାଙ୍କୁ ଦେଖା କରିବାକୁ ଯିବା ଆଗରୁ ଆପଣା ଭାବନାଗୁଡ଼ିକୁ ସଜାଡ଼ିବାକୁ ଚେଷ୍ଟା କରୁଥାନ୍ତି ।

ଡାକ୍ତର ତଳ ମହଲାକୁ ଓହ୍ଲାଇ ଆସି ତାଙ୍କ ପାଖକୁ ଆସି, କହିଲେ "ସେ ଆଜି ଟିକଏ ଭଲ ଅଛନ୍ତି । ଆପଣଙ୍କୁ ଖୋଜୁଛନ୍ତି । ସେ କଣ କହୁଛନ୍ତି ତା ଟିକଏ ଟିକଏ ବୁଝିହେଉଛି । ତାଙ୍କ ମୁଣ୍ଡ ଆଗଠୁ ସଫା ଅଛି । ଭିତରକୁ ଚାଲନ୍ତୁ, ସେ ଆପଣଙ୍କ କଥା ପଚାରୁଛନ୍ତି ।"

ଏକଥା ଶୁଣି ପ୍ରିନ୍‌ସେସ ମେରିଆଙ୍କ ଛାତି ଏଡ଼େ ଜୋରରେ ଧଡ଼ଧଡ଼ ହେଲା ଯେ ସେ ବିବର୍ଣ୍ଣ ହୋଇଗଲେ, କାଳେ ତଳେ କଚାଡ଼ି ହୋଇପଡ଼ିବେ ବୋଲି କବାଟ ଉପରେ ଆଉଜି ପଡ଼ିଲେ । ଯେତେବେଳେ ତାଙ୍କର ସମଗ୍ର ଆତ୍ମା ଏହିସବୁ ଭୟପ୍ରଦ ପାପୀ ଚିନ୍ତାରେ ପୂର ରହିଥିଲା;

ସେତେବେଳେ ତାଙ୍କ ବାପାଙ୍କୁ ଦେଖିବା, ତାଙ୍କ ବାପାଙ୍କ ସଙ୍ଗେ କଥାଭାଷା ହେବା କ ତାଙ୍କ ଗୃହାଣି ଆଗରେ ଠିଆ ହେବା ଏକଥା ଭାବିଲା ବେଳକୁ ତାଙ୍କ ମନରେ ଏକପ୍ରକାର ଯନ୍ତ୍ରଣାମୟ ଆନନ୍ଦ ଆଉ ଭୟ ଲାଗୁଥାଏ ।

ଡାକ୍ତର କହିଲେ "ଚାଲନ୍ତୁ ଯିବା ଭିତରକୁ ।"

ପ୍ରିନ୍‌ସେସ୍ ମେରିଆ ଭିତରକୁ ପଶି ତାଙ୍କ ବାପାଙ୍କ ପାଖକୁ ଗଲେ । ସେ ତାଙ୍କ ବାପାଙ୍କ ଖଟ ପାଖକୁ ଚାଲିଗଲେ । ସେ ଚିତ୍ ହୋଇ ପଡ଼ିଥାନ୍ତି ଯେ ପିଠିଆଡ଼ୁ ଟେକା ହୋଇଥାନ୍ତି । ହାଡ଼ୁଆ ହାତ ଯୋଡ଼ିଏ ସେଥିରେ ନାଲି ନାଲି ଶିରା ସବୁ ଗଣ୍ଠି ପଡ଼ି ପଡ଼ି ବାହାରି ହୋଇଥାଏ । ତାଙ୍କ ବାଁ ଆଖି ସିଧା ସାମ୍ନାକୁ ଚାହିଁଥାଏ । ଡାହାଣ ଆଖି ବକ୍ରିତ ହୋଇଯାଇଥାଏ । ତାଙ୍କର ଓଠ ଆଉ ଆଖିପତା ହଲୁନଥାଏ, ନିଶ୍ଚଳ ଥାଏ । ସେ ଅତି ସରୁ ଅତି ସାନ ଦିଶୁଥାନ୍ତି, ଦେଖିଲେ ଦୟା ଆସୁଥାଏ । ତାଙ୍କ ମୁହଁ ଶୁଖିଶାଖି ଯାଇଥାଏ । ସତେଅବା ତରଳି କ୍ଷୟ ହୋଇ ଯାଇଛି । ତାଙ୍କ ଚେହେରା ବ କେଡ଼େ ସାନ ହୋଇଯାଇଥିବା ପରି ଦିଶୁଥାଏ । ପ୍ରିନ୍‌ସେସ୍ ମେରିଆ ପାଖକୁ ଯାଇ ତାଙ୍କ ହାତରେ ଚୁମ୍ବନ କଲେ । ବାପାଙ୍କ ବାଁହାତ ତାଙ୍କ ବାଁ ହାତକୁ ଏଭଳି ମୁଠେଇ ଭାବେ ଧରିଲା ଯେ ତାଙ୍କୁ ଜଣାଗଲା ଯେପରିକି ସେ କେତେବେଳୁ ତାଙ୍କୁ ଖୋଜୁଛନ୍ତି । ସେ ତାଙ୍କ ହାତ ପାପୁଲିକି ଚିପିଦେଲେ, ତାଙ୍କ ଓଠ ଓ ଆଖିପତା ରାଗରେ ଥରିଉଠିଲା ।

ପ୍ରିନ୍‌ସେସ୍ ମେରିଆ ଅତି ବ୍ୟାକୁଳ ହୋଇ ତାଙ୍କ ଆଡ଼କୁ ଚାହିଁଲେ ଓ ସେ ତାଙ୍କୁ କ'ଣ କରିବାକୁ କହୁଛନ୍ତି ସେକଥା ବୁଝିବାକୁ ଚେଷ୍ଟା କଲେ । ସେ ଯାଗା ବଦଳେଇ ନେଇ ଏପରି ଯାଗାରେ ବସିଲେ ଯେପରିକି ତାଙ୍କ ବାଁ ଆଖି ତାଙ୍କୁ ଦେଖିପାରିଲା ସେତେବେଳେ ତାଙ୍କ ମନ ବୁଝିଗଲା ବୋଲି ଜଣାଗଲା । ସେ କେତେ ସେକେଣ୍ଡଯାକେ ତାଙ୍କ ବାଁ ଆଖିରେ ତାଙ୍କୁ ଚାହିଁ ରହିଲେ । ତାପରେ ତାଙ୍କ ଜିଭ ଓଠ ଥରି ଉଠିଲା । ପାଟିରୁ କ'ଣ ଶବ୍ଦମାନ ବାହାରିଲା । ସେକଥା କହିବାକୁ ଚେଷ୍ଟା କଲେ ଆଉ ପ୍ରିନସେସ୍‌ଙ୍କ ଆଡ଼କୁ ଅନେକଲା ପରି ଡରି ଡରି ଚାହିଁ ରହିଲେ । ଲାଗୁଥାଏ ଯେ ସେ ଭାବୁଛନ୍ତି ପ୍ରିନ୍‌ସେସ୍ ମେରିଆ ତାଙ୍କ କଥା ବୁଝିପାରିବେ ନାହିଁ ।

ପ୍ରିନ୍‌ସେସ୍ ମେରିଆ ତାଙ୍କ ଆଡ଼କୁ ଚାହିଁ ରହିଥିଲା ବେଳେ ଯାବତ୍‌ପର୍ଯ୍ୟନ୍ତ ଚେଷ୍ଟା କରି ହାସ୍ୟାସ୍ପଦ ଭଙ୍ଗୀରେ ଜିଭକୁ ଏକରି ସେକରି କରୁଥାନ୍ତି । ତା ଦେଖି ପ୍ରିନ୍‌ସେସ୍ ମେରିଆ ତଳକୁ ଚାହିଁ ଦେଲେ । ତାଙ୍କର କୋହ ଉଠୁଥାଏ । ସେ ବହୁ କଷ୍ଟରେ କାନ୍ଦଣାକୁ ରୋକୁଥାନ୍ତି । ସେ କ'ଣ କହୁଥାନ୍ତି ଯେ ସେହି ଶବ୍ଦକୁ ବାରମ୍ବାର ଘଇଁଟାଉଥାନ୍ତି, କିନ୍ତୁ ପ୍ରିନ୍‌ସେସ୍ ମେରିଆ ସେସବୁ କଥା ଆଦୌ ବୁଝି-ପାରୁନଥାନ୍ତି । ତଥାପି ସେ ଠାସୁକ ମାରି ବୁଝିବାକୁ ଚେଷ୍ଟା କରୁଥାନ୍ତି । ତାଙ୍କ ବାପା ଯାହା ଯାହା କହୁଛନ୍ତି ବୋଲି ତାଙ୍କୁ ଲାଗୁଥାଏ ପ୍ରଶ୍ନ ପଚାରିଲା ପରି ସେହି କଥାକୁ ପ୍ରିନ୍‌ସେସ୍ ବାରମ୍ବାର କହୁଥାନ୍ତି ।

ଥରକୁ ଥର ହୋଇ ବହୁତଥର ପ୍ରିନ୍‌ସ କହିଲେ "ଓ...ଓ... ...ହୁଁ.....ହୁଁ ।"

ଏ ଶବ୍ଦମାନଙ୍କର ମାନେ କ'ଣ ତା ଜାଣିବା ଅସମ୍ଭବ ଥିଲା । ଡାକ୍ତର ଭାବିଲେ ଯେ ଏ ଶବ୍ଦର ମାନେ ବୁଝିପାରିଛନ୍ତି । ପଚାରିଲେ "ପ୍ରିନ୍‌ସେସ୍ କ'ଣ ଡରୁଛନ୍ତି ? ଏଇକଥା କହୁଛନ୍ତି ଆପଣ ?"

ପ୍ରିନ୍‌ସ ମୁଣ୍ଡ ହଲେଇଲେ, ପୁଣି ସେଇ ଶବ୍ଦକୁ ବାରମ୍ବାର କହିଲେ । ପ୍ରିନ୍‌ସେସ୍ ମେରିଆ ଆନ୍ଦାଜ କରି କହିଲେ, "ପ୍ରାଣଟା -ପ୍ରାଣଟାକୁ ଯନ୍ତ୍ରଣା ହେଉଛି !" ଏଥର ପ୍ରିନ୍‌ସ ସ୍ୱୀକୃତି ଜଣାଇଁ ଗର୍ଜନ କଲେ । ପ୍ରିନ୍‌ସେସ୍‌ଙ୍କ ହାତ ପାପୁଲିକୁ ଧରିପକାଇ ଆପଣା ଛାତି ଉପରେ ବିଭିନ୍ନ ସ୍ଥାନରେ ତାକୁ ରଖିଲେ ଯେପରିକି କେଉଁ ଯାଗାଟା ସେ ପାପୁଲି ପାଇଁ ଉପଯୁକ୍ତ ସ୍ଥାନ ସେଇ ଜାଗାଟା ସେ ଖୋଜୁଛନ୍ତି ।

ସେ ଯେମିତି ଏଥର ନିଶ୍ଚିତ ଭାବରେ ଜାଣିଲେ ଯେ ସେ ଯାହା କହିବେ ପ୍ରିନ୍‌ସେସ୍ ତାଙ୍କ କଥାକୁ ବୁଝିପାରିବେ ସେମିତି ଆଗକୁ ଆହୁରି ପରିଷ୍କାର କରି ସେ କହିଲେ "ମୁଁ ସବୁବେଳେ ଭାବୁଛି...ତୋରି କଥା ...ଭାବୁଛି । ପ୍ରିନ୍‌ସେସ୍ ମେରିଆଙ୍କର କୋହ ଉଠୁଥାଏ, ତାଙ୍କୁ କାନ୍ଦ ମାଡୁଥାଏ । ତାକୁ ଲୁଚାଇବାକୁ ସେ ତାଙ୍କ ବାପାଙ୍କ ବାହାରେ ମୁଣ୍ଡ ଗୁଞ୍ଜି ଦେଲେ ।

ପ୍ରିନ୍‌ସ ତାଙ୍କ ମୁଣ୍ଡବାଳ ଉପରେ ହାତ ବୁଲାଇଲେ । କହିଲେ "ବିଚରାରି ମୁଁ ତତେ ଡାକୁଚି..."

କାନ୍ଦ କାନ୍ଦ ପ୍ରିନ୍‌ସେସ୍ କହିଲେ "ମୁଁ ଜାଣିଥାନ୍ତି ଭଲ... ଆସିବାକୁ ମତେ ଡର ମାଡ଼ୁଥିଲା ।"

ପ୍ରିନ୍‌ସ ତାଙ୍କ ହାତ ପାପୁଲିକୁ ଚାପିଦେଲେ । କହିଲେ "ଶୋଇ ପଡ଼ୁନଥିଲୁ କି ?"

ମୁଣ୍ଡ ହଲାଇ ପ୍ରିନ୍‌ସେସ୍ ମେରିଆ କହିଲେ, "ନା ବାପା ମ ଡ଼ିଲି ନାହିଁ ।"

ଆପଣା ଅଜାଣତରେ ସେ ତାଙ୍କ ବାପାଙ୍କୁ ଅନୁକରଣ କରି ସେ ଯେପରି ଠାରଠୁରରେ କଥା କହୁଥାନ୍ତି ସେହିପରି କହିଲେ, ସତେ ଯେପରିକି ତାଙ୍କ ବାପାଙ୍କ ପରି ତାଙ୍କୁ ମଧ୍ୟ ପାଟିରେ କଥା କହିବାକୁ କଷ୍ଟ ଲାଗୁଛି ।

"ମୋ ଜୀବନ ପ୍ରାଣ..." ନା ସେ କ'ଣ କହିଲେ, "ମୋ ଧନ ?" ପ୍ରିନ୍‌ସେସ୍ ମେରିଆ ସେ ଶବ୍ଦଟି ଧରିପାରିଲେ ନାହିଁ । କିନ୍ତୁ ତାଙ୍କ ଆଖିର ଭଙ୍ଗୀ ଦେଖି ସେ ନିଃସନ୍ଦେହରେ ବୁଝିପାରିଲେ ଯେ ସେ ଗେହ୍ଲାଳିଆ ଆଦର ଦେଖାଇ କ'ଣ ପଦେ କହିଲେ ଯାହା ସେ ଆଗେ କେବେ କହିନଥିଲେ, କହିଲେ 'କାହିଁକି ତୁ ଆସିଲୁ ନାହିଁ ମା ?"

ପ୍ରିନସେସ୍ ମେରିଆ ଭାବୁଥାନ୍ତି "ଅଥଚ ମୁଁ ଚଣ୍ଡାଳୁଣୀ ଖାଲି ମନକୁ ମନ ଇଚ୍ଛା କରୁଥିଲି ..ଇଚ୍ଛା କରୁଥିଲି କେମିତି ସେ ମରନ୍ତେ..."

ପ୍ରିନ୍‌ସ କଥା ମଝିରେ ଅଟକିଗଲେ ।

ତାପରେ କହିଲେ 'ମୋ ମା, ମୋ ସୁନା...ଧନ୍ୟବାଦ... ତତେ ଧନ୍ୟବାଦ...ସମସ୍ତଙ୍କୁ ଧନ୍ୟବାଦ...ସମସ୍ତଙ୍କୁ । ମତେ ସମସ୍ତେ କ୍ଷମା କରିବ...ଧନ୍ୟବାଦ ।" ତାଙ୍କ ଆଖିରୁ ଲୁହ ବୋହି ପଡ଼ିଲା ।

ହଠାତ୍ ସେ କହିଲେ "ମୋ ଆଣ୍ଡ୍ରୁକୁ ଡାକ ଦେ ।" ଏ କଥା କହିଦେଇ ସାରିଲାପରେ ତାଙ୍କ ମୁହଁରେ କେମିତି ପିଲାଳିଆ ଭାବଟିଏ ଫୁଟି ଉଠିଲା । ଯେପରିକି ସେ କ'ଣ ଗୋଟିଏ ଆଶଙ୍କା କରିଛନ୍ତି ଅଥଚ

ସେପରି ନିର୍ଦ୍ଦେଶ ବୋଲି ବିରକ୍ତ ହୋଇ ଭାବୁଛନ୍ତି । ଜଣାଯାଉଥାଏ ସେ ସେ ନିଜେ ବୁଝୁଛନ୍ତି ଏ ପ୍ରଶ୍ନ ନିରର୍ଥକ । ଅନ୍ତତଃ ପ୍ରିନ୍‌ସେସ୍ ମେରିଆଙ୍କୁ ସେହିପରି ଲାଗିଲା ।

ପ୍ରିନ୍‌ସେସ୍ ମେରିଆ କହିଲେ "ତାଠୁ ଚିଠି ପାଇଛୁ ।" ସେ ଡରି ଡରି କାବାହୋଇ ତାଙ୍କୁ ଗୁହାଁଲେ ।

"କେଉଁଠି ଅଛି ସେ ?"

"ସେ ସ୍ମୋଲେନ୍‌ସ୍କଭରେ ଅଛି ବାପା । ସୈନ୍ୟ ବାହିନୀରେ ଅଛି ।" ସେ ଆଖି ବୁଜିଦେଇ ବହୁତ ବେଳଯାଏ ଚୁପ୍‌ଚାପ ହୋଇରହିଲେ । ତାପରେ ସତେ ଯେପରି ନିଜର ସନ୍ଦେହର ନିଜେ ଉତ୍ତର ଦେବା ସକାଶେ ଆଉ ଏକଥା ଜଣାଇ ଦେବାକୁ ଯେ ସେ ବର୍ତ୍ତମାନ ସବୁ ବୁଝିପାରୁଛନ୍ତି ସବୁ ମନେ ରଖୁଛନ୍ତି । ସେ ମୁଣ୍ଡ ହଲେଇ ହଲେଇ ଆଖି ଖୋଲିଲେ ।

ସେ ଆସ୍ତେ ଆସ୍ତେ ଅତି ପରିଷ୍କାର ପାଟିରେ କହିଲେ "ହଁ, ରୁଷ ଯାଇଛି···ସେମାନେ ରୁଷକୁ ହରାଇ ବସିଲେ ।" ପୁଣି ସେ କଇଁ କଇଁ ହୋଇ କାନ୍ଦିଉଠିଲେ । ତାଙ୍କ ଆଖିରୁ ଲୁହ ଧାର ନିଗିଡ଼ି ପଡ଼ିଲା । ପ୍ରିନସେସ୍ ମେରିଆ ଆଉ ଆପଣାକୁ ରୋକି ପାରିଲେ ନାହିଁ । ତାଙ୍କ ମୁହଁକୁ ଗୁହାଁଦେଲାକ୍ଷଣି ସେ ବି କାନ୍ଦିଲେ ।

ପ୍ରିନ୍‌ସ ପୁଣି ଆଖି ବନ୍ଦ କଲେ । ତାଙ୍କ କଇଁ କଇଁ କାନ୍ଦ ବନ୍ଦ ହେଲା, ସେ ତାଙ୍କ ଆଖି ଆଡ଼କୁ ହାତ ଦେଖାଇଲେ । ଟିହନ୍ ତାଙ୍କ କଥା ବୁଝିପାରି ଆସି ଆଖିରୁ ଲୁହ ପୋଛିଦେଲା ।

ପୁଣି ସେ ଆଖିଖୋଲି କ'ଣ କହିଲେ ଯେ ବହୁତ ବେଳଯାକେ ତାଙ୍କ କଥାକୁ କେହି ବୁଝିପାରିଲେ ନାହିଁ । ଶେଷରେ ଟିହନ୍ ବୁଝିପାରି ବୁଝାଇ ଦେଲା ।

ପ୍ରିନ୍‌ସ ଆଗେ ଯେଉଁ ବିଷୟରେ କଥା କହୁଥିଲେ ପ୍ରିନ୍‌ସେସ୍ ମେରିଆ ଭାବିଲେ ଯେ ବର୍ତ୍ତମାନ ବି ସେହି ସମ୍ପର୍କରେ ସେ କିଛି କହିଲେ

ଥିବା । ସେ ଭାବିଲେ ଏ ବୋଧହୁଏ ବର୍ତ୍ତମାନ ପୁଣି ରୁଷ ଦେଶ ବିଷୟରେ କହିଲେ । ତାପରେ ପ୍ରିନ୍‌ସ ଆନ୍ଦ୍ରେଙ୍କ ବିଷୟରେ କହିଲେ । ପରେ ପରେ ତାଙ୍କ ବିଷୟରେ ଆଉ ନିଜର ମୃତ୍ୟୁ ବିଷୟରେ ମଧ୍ୟ କହିଲେ । ଏମିତି ସେ ଭାବୁଥାନ୍ତି ବୋଲି ତାଙ୍କ ବାପା ଯାହା କହିଲେ ତାର ପ୍ରକୃତ ଅର୍ଥ ସେ ବୁଝିପାରିନଥିଲେ ।

ପ୍ରିନ୍‌ସ କହିଥିଲେ "ତୋ ଧଳା ପୋଷାକଟା ପିନ୍ଧିଛ ମା, ମୋତେ ସେଇଟା ଭାରି ଭଲଲାଗେ ।"

ପ୍ରିନସେସ ମେରିଆ ଯେତେବେଳେ ଏ କଥା ବୁଝିପାରିଲେ ସେତେବେଳେ ସେ ଆଗଠାରୁ ଆହୁରି ବଡ଼ ପାଟିରେ କାନ୍ଦିଲେ । ଡାକ୍ତର ତାଙ୍କୁ ଆପଣା ବାହା ଉପରେ ଆଉଜେଇ ନେଇ ପଦା ପିଣ୍ଡାକୁ ନେଇଗଲେ ।

ସେ ତାଙ୍କୁ ଶାନ୍ତ ହେବାକୁ ବୁଝାଉଥାନ୍ତି ଆଉ କହୁଥାନ୍ତି ଯାତ୍ରାପାଇଁ ସଜ ହେବା କାର୍ଯ୍ୟରେ ଲାଗିପଡ଼ିବାକୁ । ପ୍ରିନ୍‌ସେସ୍ ମେରିଆ ପ୍ରିନ୍‌ସଙ୍କ ପାଖରୁ ଚାଲିଗଲା ପରେ ସେ ଆସ୍ତେ ଆସ୍ତେ ପୁଣି ତାଙ୍କ ପୁଅ କଥା, ଯୁଦ୍ଧ କଥା, ରୁଷ ସମ୍ରାଟଙ୍କ କଥା ମନେ ପକାଇଲେ । ରାଗରେ ଆଖି ପଡ଼ାକୁ ନଚାଉଥାନ୍ତି । ଧାଗଡ଼ା ପାଟିକି ଆହୁରି ଚଡ଼ାଇ ଚଡ଼ାଇ କଥା କହିଲେ । ତାପରେ ତାଙ୍କୁ ଦ୍ୱିତୀୟ ଥରକ ବାତ ମାରିଲା, ସେଇହେଲା ଶେଷଥର ।

ପ୍ରିନ୍‌ସେସ୍ ମେରିଆ ଗଛତ ଉପରେ ରହିଗଲେ । ସେ ଦିନଟା ଭାରି ଚମତ୍କାର ପାଗ ହୋଇଥାଏ । ଖରା ପଡ଼ୁଥାଏ, ଉଷୁମ ଲାଗୁଥାଏ । ସେ କିଛି ବୁଝିପାରୁନଥାନ୍ତି, କୌଣସି କଥା ଭାବି ପାରୁନଥାନ୍ତି । ତାଙ୍କ ବାପାଙ୍କ ପ୍ରତି ଗଭୀର ସ୍ନେହ ଛଡ଼ା ଆଉ କିଛି ସେ ଅନୁଭବ କରିପାରୁ-ନଥାନ୍ତି । ତାଙ୍କୁ ଲାଗୁଥାଏ ଯେ ତାଙ୍କ ବାପାଙ୍କୁ ସେ କେଡ଼େ ଭଲ ପାଆନ୍ତି, ସେକଥା ସେହି ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ନିଜେ ଜାଣିନଥିଲେ । ସେ ବଗିଚା ଭିତରକୁ ଦୌଡ଼ିଗଲେ । ଯେଉଁ ବାଟ କରେ କରେ ପ୍ରିନ୍‌ସ ଆନ୍ଦ୍ରେ ନିଜ ହାତରେ ସାନ ସାନ ଲେମ୍ବୁଗଛ ପୋତି ଯାଇଥିଲେ ସେହି ବାଟେ ବାଟେ କାନ୍ଦି କାନ୍ଦିକା ସେ ପୋଖରୀ ଆଡ଼କୁ ଧାଇଁଗଲେ ।

ପ୍ରିନ୍‌ସେସ୍ ମେରଆ ବଡ଼ ପାଟିରେ ଭୁଣ୍ଟୁରୁ ଭୁଣ୍ଟୁରୁ ହେଉଥାନ୍ତି । "ହଁ...ମୁଁ...ମୁଁ...ସେ କେମିତି ମରଯାନ୍ତୁ ବୋଲି ମୁଁ ଚିତ ମନାସୁଥିଲି । ହଁ ! ମୁଁ ତ ଭାବୁଥିଲି ଯେ ଏ କେମିତି ଜଲଦି ମରଯାଉ...... ତେବେ ମୁଁ ଶାନ୍ତିରେ ରହିବି...ତେବେ ଏଥର ମୋର କି ଦଶା ହେବ ?

ସେ ତ ନଥିବେ ଆଉ ମୁଁ ଶାନ୍ତିରେ ରହିଲେ ମୋର କ'ଣ ଉପକାରଟା ହେବ ?

ପ୍ରିନ୍‌ସେସ୍ ମେରଆ ବଗିଚ୍ଚାକ ତରତର ପାହୁଣ୍ଡ ପକାଇ ବୁଲୁଥାନ୍ତି ଆଉ ମନକୁ ମନ ଭୁଣ୍ଟୁରୁ ଭୁଣ୍ଟୁରୁ ହୋଇ ଏମିତି କହୁଥାନ୍ତି । କାନ୍ଦଣାର କୋହରେ ତାଙ୍କ ଛାତି ଉଠୁଥାଏ ପଡ଼ୁଥାଏ ଯେ ସେ ଛାତିରେ ହାତ ମାଡ଼ି ରଖୁଥାନ୍ତି । ସେ ବଗିଚ୍ଚା ଭିତରେ ଭଉଁରୀ ବୁଲି ଆସିଲା ବେଳକୁ ଘର ପାଖରେ ଆସି ଠିଆହୋଇଗଲେ । ସେତେବେଳେ ସେ ଦେଖିଲେ ଯେ ମାଦାମୋଜେଲ ବୁରେନ ତାଙ୍କ ଆଡ଼କୁ ଆସୁଛନ୍ତି (ମାଦାମୋଜେଲ ବୁରେନ ବୋଗୁଚାରୋଭୋରେ ରହୁଥିଲେ, ଅନ୍ୟ କୁଆଡ଼େ ଯିବାକୁ ତାଙ୍କର ମନ ହେଲା ନାହିଁ) ତାଙ୍କ ସଙ୍ଗରେ ଜଣେ ଅଚିହ୍ନା ଭଦ୍ରଲୋକ ଜଣେ କଏସେ ଆସୁଛନ୍ତି । ସେ ଜଣକ ଜିଲ୍ଲାର ସାମରିକ ଅଧିକାରୀ । ସେ ପ୍ରିନ୍‌ସେସ୍‌ଙ୍କୁ କହିବାକୁ ଆସିଥାନ୍ତି । ପ୍ରିନ୍‌ସେସ୍ ମେରଆ ତାଙ୍କ କଥା ଶୁଣିଲେ ସିନା ସେକଥା ତାଙ୍କ ମୁଣ୍ଡ ଭିତରକୁ ପଶିଲା ନାହିଁ । ସେ ତାଙ୍କୁ ଘର ଭିତରକୁ ଡାକନେଲେ, ସେଠି ଖାଇବାକୁ ତାଙ୍କୁ ନିମନ୍ତ୍ରଣ କଲେ, ତାଙ୍କ ପାଖରେ ମଧ୍ୟ ବସିଲେ । ତା'ପରେ ସେ ତାଙ୍କୁ କହିଲେ, "କିଛି ଭାବିବେ ନାହିଁ, ମୁଁ ଟିକିଏ ଆସେ । ବୁଢ଼ା ପ୍ରିନ୍‌ସ ଯେଉଁ ବଖରାରେ ଥିଲେ, ସେ ବଖରାର ଦୁଆରମୁହଁକୁ ଗଲେ । ଡାକ୍ତର ପଦାକୁ ଆସିଲେ, ତାଙ୍କ ମୁହଁରେ ଆତଙ୍କ ଖେଳୁଥିଲା । ସେ ତାଙ୍କୁ କହିଲେ ଯେ ସେ ଭିତରକୁ ଯାଇପାରିବେ ନାହିଁ । "ପଳାନ୍ତୁ ଆପଣ, ପ୍ରିନ୍‌ସେସ, ଆପଣ ପଳାନ୍ତୁ ।"

ପ୍ରିନ୍‌ସେସ୍ ମେରଆ ପୁଣି ବଗିଚ୍ଚାକୁ ଚାଲିଗଲେ । ତା'ପରେ ପାହାଡ଼ ତଳେ ଯେଉଁ ପୋଖରୀଟି ଥିଲା ତାହାରି କଡ଼ରେ ଏପରି

ଗୋଟିଏ ଜାଗାରେ ବସିପଡ଼ିଲେ ଯେଉଁଠି କେହି ତାଙ୍କୁ ଦେଖି-ପାରିବେ ନାହିଁ । ସେ ସେଠାରେ କେତେବେଳଯାଏ ବସି ରହିଥିଲେ ତାଙ୍କୁ ପଚାରିଲେ କହିପାରିନଥାନ୍ତେ କିନ୍ତୁ ବାଟେ ବାଟେ ଦୌଡ଼ି ଆସୁଥିବା ଗୋଟିଏ ସ୍ତ୍ରୀ ଲୋକର ପାଦଶବ୍ଦ ଶୁଣି ସେ ବୁଲିପଡ଼ି ଚାହିଁ ଦେଲେ । ସେ ଠିଆହୋଇ ଦେଖିଲେ ଯେ ତାଙ୍କ ଦାସୀ ଦୁନ୍ୟାସା ତାଙ୍କୁ ଖୋଜି ଖୋଜିକା ଧାଇଁଛି । ସେ ତା ସାଆନ୍ତାଣୀକୁ ଦେଖି ସତେ ଯେପରିକି ଚମକିଆ ହୋଇ ଅଟକିଗଲା ।

ଦୁନ୍ୟାଶାର ସ୍ୱର ଭାଙ୍ଗି ପଡ଼ୁଥାଏ, ସେ କହିଲା "ଚାଲନ୍ତୁ ପ୍ରିନ୍‌ସେସ୍...ପ୍ରିନସ - "

ତରତର ହୋଇ ପ୍ରିନ୍‌ସେସ ପାଟିକଲେ "ହଁ ଯାଉଚି ଯାଉଚି—"

ଦୁନ୍ୟାଶା ଯାହା କହିବ ବୋଲି ହେଉଥିଲା ସେ ତାକୁ କହିବାକୁ ବେଳ ଦେଲେ ନାହିଁ । ତାକୁ ନ ଦେଖିବାକୁ ଚେଷ୍ଟା କରି ସେ ଘର ଭିତରକୁ ଧାଇଁ ପଳାଇଗଲେ ।

ଘର ଦୁଆରମୁହଁରେ ତାଙ୍କୁ ଦେଖିପକାଇ ଜିଲ୍ଲାର ସାମରିକ କର୍ତ୍ତା କହିଲେ, "ପ୍ରିନ୍‌ସେସ୍, ଏ ଭଗବାନଙ୍କ ଇଚ୍ଛା । ଦାରୁଣ ସମ୍ବାଦ ଲାଗି ଆପଣଙ୍କୁ ପ୍ରସ୍ତୁତ ହେବାକୁ ପଡ଼ିବ ।"

ପ୍ରିନ୍‌ସେସ୍ ବିରକ୍ତ ହୋଇ ତାଙ୍କୁ କହିଲେ "ମୋତେ କିଛି କହନ୍ତୁ ନାହିଁ । ଏକଥା ସତ ନ ହୋଇପାରେ ।"

ଡାକ୍ତର ତାଙ୍କୁ ଅଟକାଇବାକୁ ଚେଷ୍ଟା କଲେ । ସେ ତାଙ୍କୁ ଠେଲିଦେଇ ଦୁଆରମୁହଁକୁ ଦୌଡ଼ିଗଲେ । ଏ ଲୋକମାନେ ଏମିତି ଭୟବ୍ରସ୍ତ ମୁହଁ କରି ମୋତେ କାହିଁକି ଅଟକାଇବାକୁ ଚେଷ୍ଟା କରୁଛନ୍ତି । ଏମାନଙ୍କ ମଧ୍ୟରୁ କାହାରିକି ମୋର ଦରକାର ନାହିଁ । ଏମାନେ ଏଠାରେ କ'ଣ କରୁଛନ୍ତି ।" ଏହିପରି ସେ ଭାବୁଥାନ୍ତି । ସେ କବାଟ ଖୋଲିଦେଲେ । ଘରଟା ଏପର୍ଯ୍ୟନ୍ତ ସବୁବେଳେ ଅନ୍ଧାର ଥିଲା । ଘରେ ଖବର ପଡ଼ିବାରୁ ତାଙ୍କୁ ଡର ମାଡ଼ିଲା । ସେ ଘରେ ତାଙ୍କ ବୁଢ଼ୀ ଧାଈମା' ଥାଆନ୍ତି ଓ

ଅନ୍ୟାନ୍ୟ ସ୍ତ୍ରୀଲୋକ ମଧ୍ୟ ଥାଆନ୍ତି । ସେମାନେ ତାଙ୍କୁ ବାଟ ଛାଡ଼ିଦେଇ ଖଟ ପାଖକୁ ଘୁଞ୍ଚିଗଲେ । ପ୍ରିନ୍ସ ଆଗପରି ଖଟ ଉପରେ ପଡ଼ିଥାନ୍ତି । କିନ୍ତୁ ଘରି ଦୁଆରମୁହଁରେ ଚୁହିଁ ପ୍ରିନସେସ ଦେଖିଲେ ଯେ ତାଙ୍କ ଶାନ୍ତ ମୁହଁ କଠୋର ଦିଶୁଛି । ସେତିକ ଦେଖି ସେ ଅଟକିଗଲେ ।

ପ୍ରିନସେସ୍ ମେରିଆ ନିଜକୁ ନିଜେ କହିଲେ "ନା, ଏ ଅସମ୍ଭବ, ସେ ମରିନାହାନ୍ତି ।" ସେ ତାଙ୍କ ପାଖକୁ ଗଲେ । ତାଙ୍କୁ ଦେଖି ତାଙ୍କୁ ଡର ମାଡ଼ୁଥାଏ । ଆପଣା ଭୟକୁ କଷ୍ଟେମଷ୍ଟେ ଆୟତ୍ତ କରି ସେ ତାଙ୍କ ଗାଲରେ ଓଠ ମାଡ଼ିଦେଲେ । କିନ୍ତୁ ସେହି ମୁହୂର୍ତ୍ତରେ ସେ ଚମକିପଡ଼ି ପଛକୁ ହଟି ଆସିଲେ । ହଠାତ୍ ତାଙ୍କ ପ୍ରତି ତାଙ୍କର ସବୁ ସ୍ନେହ କୁଆଡ଼େ ଉଭେଇଗଲା । ବରଂ ସାମ୍ନାରେ ଯାହା ଥୁଆ ହୋଇଛି ସେଇଟା ପ୍ରତି ତାଙ୍କର ଭୟ ହେଲା । "ନା, ନା ସେ ଆଉ ନାହାନ୍ତି । ସେ ଆଉ ନାହାନ୍ତି । ସେ ଯେଉଁଠି ଥିଲେ ସେଠାରେ ସେ ଅଜ୍ ଗୋଟାଏ ଅଛି । ଏହାକୁ ମୁଁ ଚିହ୍ନେ ନାହିଁ । ଏହା କ'ଣ ଗୋଟାଏ ଅମଙ୍ଗଳ । ଏହା ଗୋଟାଏ କିଛି ଭୟଙ୍କର, ଭୟାର୍ତ୍ତ ଗୋପନ ରହସ୍ୟ ।" ହାତ ପାପୁଲିରେ ମୁହଁ ଘୋଡ଼ାଇ ପକାଇ ପ୍ରିନ୍ସେସ ମେରିଆ ଡାକ୍ତରଙ୍କ ହାତରେ ଢଳି ପଡ଼ିଲେ । ଡାକ୍ତର ତାଙ୍କୁ ଆଶ୍ରା ଦେଇ ଧରି ରଖିଲେ ।

ଟିହିନ ଆଉ ଡାକ୍ତର ସେଠାରେ ଥାଇ ସ୍ତ୍ରୀଲୋକମାନେ ସେଇଟାକୁ ଗାଧୋଇ ଦେଲେ, ଯିଏକି ଆଗେ ହୋଇଥିଲା ପ୍ରିନ୍ସ । କାଳେ ପାଟିଟା ଟାଣ ହୋଇ ଆଁ କରି ରହିବ ସେଥିପାଇଁ ସେମାନେ ତା' ମୁଣ୍ଡରେ ଗୋଟାଏ ରୁମାଲ ବାନ୍ଧି ଦେଲେ । ଆଉ ଗୋଟାଏ କନାରେ ସେମାନେ ତାର ହାତଗୋଡ଼ ଗୁଡ଼ାଇଦେଲେ । ତାପରେ ସେମାନେ ତାକୁ ତାହାର ଯୁଦ୍ଧ ପୋଷାକ ପିନ୍ଧାଇଦେଲେ, ଯେଉଁଥିରେ କି ନାନା ସାମରିକ ସମ୍ମାନର ପଦକମାନ ମରା ହୋଇଥିଲା । ତାପରେ ସେଇ ଛୋଟିଆ ଶୁଖିଲା ଶବଟିକୁ ସେମାନେ ଟେବୁଲ ଉପରେ ଶୁଆଇ ଦେଲେ । କିଏ କେତେବେଳେ ଏସବୁ କଥା ଭାବି ବନ୍ଦୋବସ୍ତ କଲା କହିହେବ ନାହିଁ । ଲାଗୁଥାଏ ଯେପରିକି ସବୁକାମ ଆପେ ଆପେ ହୋଇଯାଉଛି । ରାତି ହେଉ ହେଉ ଶବାଧାର ଚାରିକଡ଼େ ମହମବତିମାନ ଜଳି ଉଠିଲା । ତା' ଉପରେ

ଗୋଟାଏ ଘୋଡ଼ଣି ଘୋଡ଼ା ହେଲା । ଘର ଚଟାଣରେ ଜୁନିପର ଗଛର ପତ୍ର ବିଛା ହୋଇଗଲା । ମଲା ଶୁଖିଲା ମୁଣ୍ଡତଳେ ଗୋଟାଏ ଛପା ପ୍ରାର୍ଥନା ସଙ୍ଗୀତ ଗୁଞ୍ଜି ହୋଇଗଲା । ଘରର ଗୋଟାଏ କଣରେ ଜଣେ ଧର୍ମଯାଜକ ବସି ବଡ଼ ପାଟିରେ ମୃତ୍ୟୁ ବିଷୟର ପ୍ରାର୍ଥନା ବୋଲୁଥା'ନ୍ତି । ଗୋଟାଏ ଘୋଡ଼ା ମରି ପଡ଼ିଥିଲେ ଅନ୍ୟ ଘୋଡ଼ାମାନେ ଯେପରି ତା' ଚାରିକଡ଼େ ବେଢ଼ିଯାଆନ୍ତି, ନାକ ଫଡ଼ଫଡ଼ କରନ୍ତି, ଚମକନ୍ତି, ସେମିତି ଚିହ୍ନାଅଚିହ୍ନା ହୋଇ ବହୁତ ଲୋକ ସେ ଶବାଧାର ଚାରିକଡ଼େ ଖୁନ୍ଦାଖୁନ୍ଦି ହେଉଥାନ୍ତି ।

ଜିଲ୍ଲାର ସାମରିକ ଶାସନ କର୍ତ୍ତା, ଗାଁର ମୁଖିଆ ଲୋକ, ଏବଂ ଚାକରାଣୀମାନେ ଥାଆନ୍ତି । ସମସ୍ତଙ୍କ ଆଖି ଦିଶୁଥାଏ ଭୟାର୍ତ୍ତ ମୋହାବିଷ୍ଟ । ସମସ୍ତେ ଭଗବାନଙ୍କ ଉଦ୍ଦେଶ୍ୟରେ ଆପଣା ଦେହ ଉପରେ ହାତ ଛକ ଦେଇ ସଙ୍କେତ କରୁଥାନ୍ତି । ସମସ୍ତେ ନଇଁପଡ଼ି ମଲା ପ୍ରିନ୍‌ସଙ୍କର ପଡ଼ିଯାଇଥିବା କାକର ହାତରେ ଚୁମ୍ବନ କରୁଥାନ୍ତି ।

ପ୍ରିନ୍‌ସ ଆନ୍ଦ୍ରେ ବୋଗୁଚାରୋଭରେ ଆସି ରହିଲା ପର୍ଯ୍ୟନ୍ତ କୌଣସି ଦିନ ସେ ଜମିଦାରୀର କୌଣସି ମାଲିକ ସେ ଇଲାକା ଭିତରେ ଆଗେ କେବେ ରହିନଥିଲେ । ବୋଗୁଚାରୋଭର ଚାଷୀଙ୍କ ଚରିତ୍ର ଲିଶ୍ରାପାହାଡ଼ ଜମିଦାରୀର ଚାଷୀଙ୍କ ଚରିତ୍ରଠୁ ସମ୍ପୂର୍ଣ୍ଣ ଭିନ୍ନ । ସେମାନେ କହନ୍ତି ଯେ ତାଙ୍କ ଆଦ୍ୟ ଘର ଥିଲା ବିରାଟ ଘାସବଣ ଦେଶରେ । ସେମାନେ ଲିଶ୍ରା ପାହାଡ଼କୁ ଆସୁଥିଲେ ଫସଲ କାଟିବାପାଇଁ । ସେତେବେଳେ ସେମାନଙ୍କ ପରିଶ୍ରମକୁ ବୁଢ଼ା ପ୍ରିନ୍‌ସ ପ୍ରଶଂସା କରୁଥିଲେ କିନ୍ତୁ ସେମାନଙ୍କର ଧରଣ ଧାରଣା ଅଲଗା ବୋଲି ସେ ସେମାନଙ୍କୁ ଭଲ ପାଉଥିଲେ ।

ପ୍ରିନ୍‌ସ ଆନ୍ଦ୍ରେ ବୋଗୁଚାରୋଭରେ ରହିଲେ, ନୂଆ ନୂଆ କାମ କଲେ । ଡାକ୍ତରଖାନାମାନ, ସ୍କୁଲମାନ ଖୋଲିଲେ । ରଇତଙ୍କ ଖଜଣା କମାଇ ଦେଲେ । ତଥାପି କାହିଁ ସେମାନଙ୍କ ବ୍ୟବହାର ବଦଳିଲା ନାହିଁ । ନରମିଲା ନାହିଁ । ଓଲଟା ସେମାନଙ୍କ ଚରିତ୍ରର ବଶିଷ୍ଟତା ଆହୁରି ବଢ଼ି ବଢ଼ି ଫୁଟିଉଠିଲା । ବୁଢ଼ା ପ୍ରିନ୍‌ସ କହିଲେ, ଏହା ସେମାନଙ୍କ ଅଭ୍ୟାସ ।

ବୁଢ଼ା ପ୍ରିନ୍‌ସ ମରିବାର ଅଳ୍ପଦିନ ପୂର୍ବରୁ ଆଲ୍‌ପାଟିଚ ବୋଗୁଚୁରୋଭରେ ଆସି ପହଞ୍ଚିଲା । ସେ ଦେଖିଲା ଯେ, ଚାଷୀମାନଙ୍କ ଭିତରେ ଟିକିଏ ଉତ୍ତେଜନା ଖେଳିଯାଇଛି । ସେ ଆଉରି ଦେଖିଲା ଯେ 'ଲଣ୍ଡା- ପାହାଡ଼' ଇଲାକାରେ ସିନା କୋଡ଼ିଏ କୋଶ ଆଖପାଖ ଭିତରେ ସବୁ ଚାଷୀ ଘରଦ୍ୱାର ଛାଡ଼ି ପଳାଇ ଯାଇଥିଲେ; କିନ୍ତୁ ଘାସବଣ ଅଞ୍ଚଳ ବୋଗୁଚୁରୋଭ୍-ଇଲାକାରେ ଚାଷୀମାନେ କୁଆଡ଼େ ଫରାସୀମାନଙ୍କ ସଙ୍ଗେ ସମ୍ବନ୍ଧ ଯୋଡ଼ିଦେଇ ଆପଣା ଆପଣା ଘରେ ରହିଛନ୍ତି । ଆଉ ସେମାନଙ୍କ ଭିତରେ ଗୁପ୍ତରେ କ'ଣ ସବୁ ରହସ୍ୟପୂର୍ଣ୍ଣ ଛପା କାଗଜମାନ ବଣ୍ଟା ଯାଇଛି ।

ଶେଷରେ ସବୁଠାରୁ ଗୁରୁତର କଥା ହେଉଛି ଯେ ଠିକ୍ ଯେଉଁଦିନ ଆଲ୍‌ପାଟିଚ ଗାଁର ମୁରବିକି ହୁକୁମ୍ ଦେଲା ଯେ ପ୍ରିନ୍‌ସେସ୍ ବୋଗୁଚୁରୋଭରୁ ଚାଲିଯିବେ ତାଙ୍କ ଜିନିଷପତ୍ର ନେବାପାଇଁ ଗାଡ଼ି ସବୁ ବନ୍ଦୋବସ୍ତ କରିବାକୁ ପଡ଼ିବ, ସେହିଦିନ ଆଲ୍‌ପାଟିଚ୍ ଖବର ପାଇଲା ଯେ ଗାଁରେ ସେଦିନ କୁଆଡ଼େ ଗୋଟାଏ ସଭା ବସି ସ୍ଥିର କରିଗଲା ଯେ ଅପେକ୍ଷା କରି ରହିବାକୁ ପଡ଼ିବ । କେହି ଗାଡ଼ି ନେବେ ନାହିଁ । ଏଣେ ବେଳ ଗଡ଼ି ଯାଉଥାଏ । ଯେଉଁଦିନ ବୁଢ଼ା ପ୍ରିନ୍‌ସ ମଲେ, ଅର୍ଥାତ୍ ଅଗଷ୍ଟ ମାସର ପନ୍ଦର ତାରିଖ ଦିନ ଜିଲ୍ଲାର ସାମରିକ ଅଧିକାରୀ ପ୍ରିନ୍‌ସେସ୍‌ଙ୍କୁ ସେହିଦିନ ଚାଲିଯିବାକୁ କହିଲେ । ତା' ନହେଲେ ୧୬ ତାରିଖ ଗତ ହୋଇଗଲେ, ଯାହା ଘଟିପାରେ, ସେଥିପାଇଁ ସେ ଆଉ ଦାୟିତ୍ୱ ନେବେ ନାହିଁ । ସେହିଦିନ ସଞ୍ଜବୁଡ଼େ ସେ ଘୋଡ଼ାରେ ଚଢ଼ି ଚାଲିଗଲେ । କହିଦେଇଗଲେ ଯେ ତହିଁଆରଦିନ ସକାଳେ ଯେତେବେଳେ ଶବକୁ ସମାଧି ଦିଆହେବ ସେତେବେଳେ ସେ ଆସି ପହଞ୍ଚିବେ । କିନ୍ତୁ ତହିଁ-ଆରଦିନ ସେ ଆଉ ଆସିଲେ ନାହିଁ, କାରଣ ସେ ଖବର ପାଇଲେ ଯେ ଫରାସୀମାନେ ଅପ୍ରତ୍ୟାଶିତ ଭାବରେ ଆଗକୁ ମାଡ଼ି ଆସିଛନ୍ତି । ତେଣୁ ସେ ତାଙ୍କ ଛୁଆପିଲା ଓ ବହୁମୂଲ୍ୟ ଜିନିଷଗୁଡ଼ିକ ସଙ୍ଗରେ ଘେନି ତାଙ୍କ ନିଜ ଇଲାକା ଛାଡ଼ି ପଳାଇଯିବାକୁ ତାଙ୍କୁ କେବଳ କଣ୍ଢେଇ ପରି ଫୁରୁସତ ଟିକିଏ ମିଳିଥାଏ, ଆଉ ବେଳ ନଥାଏ ।

ସଞ୍ଜ ବୁଡ଼ିଲା ଅଥଚ ସେତେବେଳକୁ ଶଗଡ଼ଗୁଡ଼ିକ ଦେଖା ନାହିଁ । ପୁଣି ମଦଖଟିରେ ଗାଁ ବାଲାଙ୍କର ଗୋଟାଏ ସଭା ବସିଥିଲା । ସେ ସଭାରେ ସ୍ଥିର ହୋଇଥିଲା ଯେ ସେମାନେ ତାଙ୍କ ଘୋଡ଼ାମାନଙ୍କୁ ଜଙ୍ଗଲକୁ ଅଡ଼େଇ ଦେବେ ଓ ପ୍ରିନସେସ୍‌ଙ୍କ କାମପାଇଁ ଗାଡ଼ି ଯୋଗାଇବେ ନାହିଁ । ଆଲ୍‌ପାଭିଚ୍ ଏସବୁ ବିଷୟରେ ପଦେ କାହାକୁ ପାଟି ଫିଟାଇଲା ନାହିଁ । ଲଣ୍ଡାପାହାଡ଼ ଇଲାକାରୁ ଯେଉଁସବୁ ଗାଡ଼ି ଆସିଥିଲା ସେଥିରୁ ତା' ନିଜର ମାଲ ଗୁଡ଼ିକ ଓହ୍ଲାଇଦେଇ ଘୋଡ଼ାଙ୍କୁ ନେଇ ପ୍ରିନ୍‌ସେସ୍‌ଙ୍କ ଗାଡ଼ିରେ ଯୋଚି ଦେବାକୁ ଆଲ୍‌ପାଭିଚ୍ ହୁକୁମ ଦେଇଦେଲା । ତାପରେ ସେ ନିଜେ ଘୋଡ଼ାରେ ଚଢ଼ି ପୁଲିସ ବିଭାଗର କର୍ମଚାରୀମାନଙ୍କ ପାଖକୁ ଚାଲିଗଲା ।

ଅଗଷ୍ଟ ୧୭ ତାରିଖ ଦିନ ରୋଷ୍ଟଭ୍ ଓ ସଙ୍ଗରେ ଇଲୟିନ ବୋଲି ଜଣେ ତରୁଣ ଘୋଡ଼ା ସବାର ସୈନିକ ଓ ବୋଲକର କାମ କରୁଥିବା ଆଉ ଜଣେ ଘୋଡ଼ା ସବାର ସୈନିକ ଏମାନେ ସମସ୍ତେ ସଙ୍ଗହୋଇ ଘୋଡ଼ା ଖାଇବା ପାଇଁ ଶୁଖିଲା ଘାସ ଅଛି କି ନାହିଁ ଖୋଜିବେ ଓ ଇଲୟିନ୍ ଗୋଟାଏ ନୂଆ ଘୋଡ଼ା କିଣିଥାଏ ତାକୁ ପରଖିବେ ଏହା ପାଇଁ ୟାଙ୍କୋ ଭୋରୁ ବାହାରି ଘୋଡ଼ାରେ ଚଢ଼ି ଚାଲିଗଲେ । ୟାଙ୍କୋଭେ ବୋଗୁଚ୍ଚରୋଭରୁ ପନ୍ଦର ବ୍ଲାଇଟ୍ ଦୂର ।

ଗଲା ତିନଦିନ ହେଲା ବୋଗୁଚ୍ଚରୋଭେ ଦୁଇପଟର ପରସ୍ପର ବିରୋଧୀ ସେନାମାନଙ୍କ ମଝିରେ ରହିଯାଇଥିଲା, ତେଣୁ ଫରାସୀ ପଟର ଆଗୁଆ ବାହିନୀ ସେଠାକୁ ଯେମିତି ସହଜରେ ପହଞ୍ଚିପାରିବେ, ରୁଷ ପଟରୁ ପଛୁଆବାହିନୀ ବି ସେଠାରେ ସେତେ ସହଜରେ ପହଞ୍ଚି ପାରିବେ । ତେଣୁ ଜଣେ ହୁସିଆର କର୍ମଚାରୀ ଯେପରି କରନ୍ତି ରୋଷ୍ଟଭ୍ ବି ସେହିପରି ଆଗ ସେଠାରେ ଫରାସୀମାନେ ପହଞ୍ଚିବା ଆଗରୁ ଆପେ ପହଞ୍ଚି ସେଠାରେ କିଛି ରସଦପତ୍ର ମିଳିପାରେ ସେତକ ସଂଗ୍ରହ କରି ନେବାକୁ ବ୍ୟାକୁଳ ହେଉଥିଲା ।

ରୋଷ୍ଟଭ୍ ଓ ଇଲୟିନ ଏ ଦୁହିଁଙ୍କ ମନ ଭାରି ଉତ୍ଫୁଲ୍ଲ ଥିଲା । ସେମାନେ ଜାଣିଥିଲେ ଯେ, ବୋଗୁଚ୍ଚରୋଭେ କେଉଁ ଜଣେ ପ୍ରିନ୍‌ସଙ୍କ ଜମିଦାରି ? ସେଠାରେ ଗୋଟିଏ ପୁରୁଣାକାଳିଆ ଜମିଦାରି ଅଛି ।

ସେମାନେ ଭାବଥିଲେ ସେ ଘରେ ବହୁତ ମଣିଷ ରହୁଥିବେ, ଆଉ ସେଠାରେ ବୋଧହୁଏ ସୁନ୍ଦର ସୁନ୍ଦର ଗୃହକରଣୀ ଟୋକୀମାନେ ଦେଖା ପଡ଼ିବେ । ତେଣୁ ବୋଗୁଚ୍ଚରୋଭେ ଯାଉ ଯାଉ ଇଲଯ୍ଚନ ଯେଉଁ ନୂଆ ଘୋଡ଼ା କିଣିଛି ସେ କେମିତି ଦୌଡ଼ୁଛି ଏକଥା ପରୀକ୍ଷା କରିବା ଲାଗି ସେମାନେ ଘୋଡ଼ା-ମାନଙ୍କୁ ଖୁବ ଜୋରରେ ଦୌଡ଼ାଇ ଦେଲେ । ରୋଷ୍ଟଭର ଆଦୌ ଧାରଣା ନଥିଲା ଯେ ସେ ଯେଉଁ ଗାଁକୁ ଯାଉଛି ସେଇଟା ପ୍ରିନ୍ସ ବଲକନ୍‌ସ୍କିଙ୍କ ସମ୍ପତ୍ତି ଯାହାଙ୍କ ସଙ୍ଗରେ ତା'ର ଭଉଣୀର ବିବାହର ଲାଗିଥିଲା । ବୋଗୁଚ୍ଚରୋଭେ ପହଞ୍ଚିବା ଆଗରୁ ଘୋଡ଼ାମାନେ ଶେଷଥର ଦାଉଆ ହେବାପାଇଁ ରୋଷ୍ଟଭ ଓ ଇଲଯ୍ଚନ ସେମାନଙ୍କ ଘୋଡ଼ାମାନଙ୍କୁ ବାଦବୁଦିଆ କରି ଦୌଡ଼େଇ ଦେଇଥିଲେ । ରୋଷ୍ଟଭ ଇଲଯ୍ଚନଙ୍କୁ ଟପିଯାଇ ଆଗ ଗାଁ ରାସ୍ତା ଭିତରକୁ କଦମ୍‌ କୁଦାଇ ଧାଇଁଗଲା ।

ଇଲଯ୍ଚନର ମୁହଁ ନାଲି ପଡ଼ିଗଲା । ସେ କହିଲା "ବାହାରିଲା ବେଳେ ବି ତୁମେ ଆଗରେ ରହିଥିଲ । ରୋଷ୍ଟଭର ଡନ ଦେଶର ଘୋଡ଼ା ପାଟିରୁ ଫେଣ ବାହାରୁଥାଏ । ସେ ତା' ଘୋଡ଼ାକୁ ଥାପୁଡ଼େଇ ଥାପୁଡ଼େଇ କହିଲା, "ହଁ ସବୁବେଳେ ମୁଁ ଆଗରେ ରହିଥିଲି । ପଡ଼ିଆରେ ଆସିଲାବେଳେ ବି ଆଗରେ ଆଉ ଏଠିବି ଆଗରେ" ।

ମଣିଷ ଚାଲିଲା ପରି ଆସ୍ତେ ଆସ୍ତେ ଘୋଡ଼ାଙ୍କୁ ଦୌଡ଼େଇ ସେମାନେ ଶସ୍ୟ ଗୋଲାଆଡ଼କୁ ଚାଲିଲେ । ସେତେବେଳକୁ ଶସ୍ୟ ଗୋଲାଠାରେ ବହୁତ ଚାଷୀ ଏକାଠି ଠୁଳ ହୋଇଥାନ୍ତି । କେତେଜଣ ଚାଷୀ ସେମାନଙ୍କୁ ସମ୍ମାନ ଦେଖାଇ ଆପଣା ଆପଣା ମୁଣ୍ଡରୁ ଟୋପି ଖୋଲି ପକାଇଲେ । ଅନ୍ୟମାନେ ଟୋପି ନ ଖୋଲି ସେମାନଙ୍କ ଆଡ଼କୁ ଏକ ଦୃଷ୍ଟିରେ ଚାହିଁଥାଆନ୍ତି । ମଦଖଟି ଭିତରୁ ଦି' ଜଣ ବୁଢ଼ା ବୁଢ଼ା ଚଷା ଟଳି ଟଳି ଗୀତ ବୋଲି ବୋଲି ବାହାରି ଆସିଲେ । ସେ ଗୀତରେ ରାଗ-ରାଗିଣୀ ନ ଥାଏ । ସେମାନଙ୍କ ମୁହଁର ଚମ ଲେଉଟି କୋଉଟି ହୋଇଯାଇଥାଏ । ଅଳ୍ପ ଅଳ୍ପ ଦାଢ଼ୀ ଥାଏ । ହସି ହସି ସେ ଦୁହେଁ ସେ କର୍ମଚାରୀମାନଙ୍କଆଡ଼କୁ ମାଡ଼ି ଆସିଲେ । ରୋଷ୍ଟଭ୍ ହସି ହସି କହିଲେ "ଖୁବ ବଢ଼ିଆ ଲୋକ ଏ ଦୁହେଁ । ଆଛା ହେଇଛୋ

ତୁମ ପାଖରେ ଶୁଖିଲା ଘାସ ଅଛି ?" ଜଣେ ଚଷା ଖୁଣ୍ ଆନନ୍ଦରେ ହସିଦେଇ କହିଲା "ଖଗଡ଼ଦନ ବୋଲ···ମଉଜ କରୁଚ" । ଆଉଜଣେ ଚଷା ଦଳ ଭିତରୁ ବାହାରପଡ଼ି ବ୍ରେସ୍ତଭ୍ ପାଖକୁ ଗଲା । ପଚାରିଲା "କୋଉଠାରୁ ଆସିଲେ ଆପଣ ?" ଇଲାପ୍ନନ୍ ହସି ହସି କହିଲା "ଆମେ ପରଦେଶୀ ଲୋକ ପରା" ଲଭ୍ରୁସ୍କା ଆଡ଼କୁ ହାତ ଦେଖାଇ କହିଲା ଆଉ ହେଉଛନ୍ତି ସ୍ୱୟଂ ନେପୋଲିୟନ୍ । ଚଷା ଜଣକ ପଚାରିଲା "ତାହାଲେ ଆପଣମାନେ ବୋଧହୁଏ ଋଷ ପକ୍ଷର, ନା କ'ଣ ?" ଆଉ ଜଣେ ବାଫର ଚଷା ପାଖକୁ ଆସି ପଚାରିଲା "ଆଚ୍ଛା ଆଜ୍ଞା ଆପଣ ମାନଙ୍କର କ'ଣ ଏଠି ବହୁତ ସୈନ୍ୟ ଅଛନ୍ତି ?" ବ୍ରେସ୍ତଭ କହିଲା "ଅଜଳନ ଅଛନ୍ତି । ତମେ ସବୁ ଏଠାରେ ଆସି ଜୁଣ୍ଡ ହୋଇଚ କାହିଁକି ? ଏ କ'ଣ ଗୋଟାଏ ଛୁଟିଦିନ ନା କ'ଣ ?' ଚଷା ଜଣକ ତା ପାଖରୁ ଘୁଞ୍ଚିଯାଇ କହିଲା—'ଗାଁର ଗୋଟାଏ ବିଷୟ ପଡ଼ିଚ ବୋଲି ବୁଢ଼ା ବୁଢ଼ାମାନେ ଏକାଠି ହୋଇଛନ୍ତି ।" ସେତିକବେଳେ ଦେଖାଗଲା ଯେ, ପ୍ରିନ୍ସଙ୍କ ଘରଆଡ଼ୁ କର୍ମଚାରୀମାନଙ୍କ ଆଡ଼କୁ ଯୋଡ଼ିଏ ସ୍ତ୍ରୀ ଲୋକ ଓ ଧଳା ଟୋପି ପିନ୍ଧା ଜଣେ ପୁରୁଷ ଦୌଡ଼ି ଆସୁଛନ୍ତି ।

ଇଲାପ୍ନନ ଦେଖିଲା ଦୁନ୍ୟାଶା ଠିକ୍ ତାର ଆଡ଼କୁ ଦ୍ରୁତ ପ୍ରତିଜ୍ଞାରେ ଧାଇଁ ଧାଇଁ ଆସୁଛି । ସେ କହିଲା "ଗୋଲାପୀ ପୋଷାକ ଯେ ପିନ୍ଧିଛି ସେଇଟି ମୋର ଜାଣିଥା । ତା' ସଙ୍ଗରେ କେହି ଲାଗିବ ନାହିଁ ମୁଁ କହି ଦଉଚ ।" ଲାଲରୁସ୍କା ଇଲାପ୍ନନ ଆଡ଼କୁ ଆଖିମିଟିକା ମାରି କହିଲା, "ପ୍ୟେ··ଟୋକୀ ଆମଣ ପାଇଁ ।"

ଇଲାପ୍ନନ୍ ମୁରୁକି ହସି ପଚାରିଲା "କ'ଣ ଆପଣଙ୍କର ଦରକାର ସୁନ୍ଦରୀ ?"

"ମୋତେ ପ୍ରିନ୍ସେସ୍ ବୁଝି ଆସିବାକୁ ପଠାଇଲେ ଯେ ଆପଣ କେଉଁ ସୈନ୍ୟ ଦଳରେ କାମ କରନ୍ତି ଓ ଆପଣଙ୍କ ନାଁ କ'ଣ ?"

"ମୁଁ କାଉଣ୍ଟ ବ୍ରେସ୍ତଭ୍, ସୈନ୍ୟ ଦଳର ସେନାପତି । ମୁଁ ଆପଣଙ୍କ ସେବାକାରୀ ?"

ଇଲପ୍ଟିନ୍ ସେ ଝିଅଟି ସଙ୍ଗରେ କଥାବାର୍ତ୍ତା ହେଲାବେଳେ ମହୁଆ ଚଷାଟି ଇଲପ୍ଟିନ୍ ଆଡ଼କୁ ଚାହିଁ ଚାହିଁ ଭାରି ଆନନ୍ଦରେ ମୁରୁକ ମୁରୁକ ହସି ଗୀତ ବୋଲୁଥାଏ । "ମଉଜ···ମଉଜ କୁଞ୍ଜବନ" ଆଲପାଭଚ୍ ଦୁନ୍ୟାଶା ପଛେ ପଛେ ପହଞ୍ଚିଗଲା । ପାଖ ହେବାରୁ ରୋସ୍ତଭ୍ ଆଡ଼କୁ ଚାହିଁ ସେ ମୁଣ୍ଡର ଟୋପି ଖୋଲିଦେଲା ।

ସେ କହିଲା "ହଜୁରଙ୍କୁ ଟିକିଏ ହରବର କରିବାକୁ ମୁଁ ସାହସକରି ବସିଚି ।"

ସେକଥା କହିଲାବେଳେ ସମ୍ମାନ ଦେଖାଇ ଆପଣା ଗୁଞ୍ଜରେ ହାତକୁ ମାଡ଼ୁଥାଏ । ଭାରି ମର୍ଯ୍ୟାଦାରେ କଥା କହୁଥାଏ ଯେ ସେ ମର୍ଯ୍ୟାଦା ଭିତରେ କର୍ମଚାରୀଙ୍କର ଅଳ୍ପ ବୟସ ସକାଶେ ଟିକିଏ ତାଙ୍କ ପ୍ରତି ଶ୍ଳେଷ ବି ତା' କଥାରେ ବାରି ହୋଇ ପଡ଼ୁଥାଏ । କହିଲା "ମୋ' ସାଆନ୍ତାଣୀ ହଜୁରଙ୍କୁ ନେହୁରା ହୋଇ କହିଛନ୍ତି ହଜୁର ଟିକେ ଆସିବେ । ସେ ପ୍ରଧାନ ସେନାପତି ନିକୋଲେ ଆନ୍ଦ୍ରେଇଚ୍ ପିଲ୍‌କନ୍‌ସ୍କିଙ୍କ ଝିଅ । ପ୍ରଧାନ ସେନାପତି ଏମାସ ୧୫ ତାରିଖ ଦିନ ସ୍ୱର୍ଗାରୋହଣ କଲେ । ଏ ଲୋକ-ମାନଙ୍କ ଅସଭ୍ୟତା ଆଉ ମୂର୍ଖତା ଯୋଗୁଁ ମୋ' ସାଆନ୍ତାଣୀ ବର୍ତ୍ତମାନ ହଇରାଣରେ ପଡ଼ିଛନ୍ତି ହଜୁର ।" ବିଷର୍ଣ୍ଣ ହସ ହସି ସେ ପୁଣି କହିଲା "ଏଠାରେ କହିବାକୁ ସୁବିଧା ହେଉନାହିଁ ହଜୁର । ହଜୁର, ଟିକେ ଦୟାକରି ଆଉ ଟିକେ ସେ ଆଡ଼କୁ ଆସନ୍ତେ ନାହିଁ । ଏଠାରେ ଏ ଲୋକଙ୍କ ଆଗରେ···" ପାଖରେ ଡାଆଁ ସ ବୁଲିଲା ପରି ଦୁ'ଜଣ ଚାଷୀ ସେମାନଙ୍କ ପାଖେ ନଡ଼ବଡ଼ ହେଉଥାନ୍ତି । ଆଲ୍‌ପାଭଚ୍ ସେମାନଙ୍କ ଆଡ଼କୁ ହାତ ଦେଖାଇଲା ।

ଚାଷିମାନେ ତାକୁ ଦେଖି ଭାରି ଖୁସିରେ ପାଟିକଲେ । "ଆରେ ହୋ···ଆଲ୍‌ପାଭଚ୍···ହୋ ଆଲ୍‌ପାଭଚ୍ । ହୋ ୟାକଭ ଆଲ୍‌ପାଭଚ୍ ଭାରି ବଢ଼ିଆ କାମ । ଏଁ । କ'ଣ କହୁଚ ? ଦେଖ ତୁମକୁ ଠାକୁରଙ୍କ ହାତ ଆମ କଥାକୁ ଦୋଷ ମଣିବ ନାହିଁ ?" ରୋସ୍ତଭ ସେ ମହୁଆ ଚଷାମାନଙ୍କୁ ଚାହିଁଚାହିଁ ଅନାଇଁ ହସିଲା । ୟାକଭ୍ ଆଲ୍‌ପାଭଚ୍ ତା'ର ଆର ହାତରେ ବୁଢ଼ା ଚଷାମାନଙ୍କଆଡ଼କୁ ଠାରି ଗମ୍ଭୀରହୋଇ

କହିଲା "ବୋଧହୁଏ ହଜୁରଙ୍କୁ ଏଦୃଶ୍ୟ ଦେଖିବାକୁ ଆମୋଦ ଲାଗୁଛି ଭଲ—"

ରୋସ୍ତଭ କହିଲା "ନାହିଁ ନାହିଁ ଏଥିରେ ଆମୋଦ ଲାଗିବାର କିଛି ନାହିଁ" । ଖଣ୍ଡେ ଦୂରକୁ ଘୁଞ୍ଚିଯାଇ ସେ ପଚାରିଲା "କଥା କଅଣ" ।

"ହଜୁରଙ୍କ ସାମ୍ନାରେ ଭରସି ମୁଁ ଏତିକି ଜଣାଉଚି ଯେ ଏଠିକାର ଏଇ ମୂର୍ଖ କୃଷୀମାନେ ତାଙ୍କ ସାଆନ୍ତାଣୀଙ୍କୁ ଇଲାକାରୁ ବାହାରକୁ ଯିବାକୁ ଦେଉନାହାନ୍ତି । ତାଙ୍କ ଗାଡ଼ିରୁ ଘୋଡ଼ାଙ୍କୁ ଖୋଲି ନେଇଯିବେ ବୋଲି ଧମକଉଛନ୍ତି । ସକାଳୁ ଗାଡ଼ିରେ ଜିନଷ ଲଦାହୋଇ ରହିଚି ତଥାପି ସାଆନ୍ତାଣୀ ଯାଇ ପାରୁନାହାନ୍ତି ।

"ବଡ଼ ଅସମ୍ଭବ କଥା" ରୋସ୍ତଭ ପାଟିକଲା । ଆଲ୍ପାତିଚ୍ କହିଲା "ହଜୁରଙ୍କ ସାମ୍ନାରେ ନିରାଟ ସତ୍ୟ ମୁଁ ଜଣାଇଲି ।" ରୋସ୍ତଭ୍ ଘୋଡ଼ାରୁ ଓହ୍ଲାଇପଡ଼ି ଘୋଡ଼ାକୁ ତାର ବୋଲ୍କର ହାତକୁ ବଢ଼ାଇ ଦେଇ ଆଲ୍ପାତିଚ୍ ସଙ୍ଗରେ ଘୋଡ଼ା ଆଡ଼କୁ ଚାଲି ଚାଲିକା ଗଲା, କଣ ଘଟଣା ଘଟିଛି ସେ ବିଷୟରେ ତାକୁ ଆହୁରି ପଚାରୁଥାଏ ।

ଯେତେବେଳେ ରୋସ୍ତଭ ଓ ଇଲ୍ୟିନ୍ ଏ ଦୁହେଁ ଗାଁ ଦାଣ୍ଡରେ ଘୋଡ଼ାଙ୍କୁ କଦମ୍ ଛୁଟେଇ ଧାଇଁ ଆସୁଥିଲେ, ସେତିକିବେଳେ ପ୍ରିନ୍ସେସ୍ ମେରିଆ ଯିବାକୁ ବାହାରିଥାନ୍ତି । ଆଲ୍ପାତିଚ୍ ଆଉ ବୁଢ଼ୀ ଧାଈମା ଆଉ ଦାସୀ ଏମାନେ ତାଙ୍କୁ ଯେତେ ବାରମ୍ବାର ମନାକଲେ ସେ କାହାରି କଥା ମାନିଲେ ନାହିଁ । ଗାଡ଼ିରେ ଘୋଡ଼ା ଯୋଚିବାକୁ ହୁକୁମ ଦେଇ-ଦେଲେ, ଯିବାକୁ ବାହାରିଲେ । କିନ୍ତୁ ଅଶ୍ୱାରୋହୀ ଧାଇଁ ଆସୁଥିବାର ଦେଖି ଗାଉଁଆନ୍ ଭାବିଲେ ସେମାନେ ଫରାସୀ ସୈନ୍ୟ, ସେ ଧାଇଁ ପଳାଇଲା, ଆଉ ଘରେ ତେଣେ ମାଇପେ ଏକାଠି ଭାରି ପାଟିକରି ବାହୁନିବାକୁ ଆରମ୍ଭ କଲେ ।

ରୋସ୍ତଭ୍ ଯେମିତି ବରେଣ୍ଡା ପାରହେଲା ସେମିତି ବହୁତ କାରୁଣ୍ୟ ଦେଖାଇ ନାନା ସ୍ୱରରେ ଶୁଭିଲା ।

"ହେ ଦୟାଳୁ ମହାତ୍ମା ! ହେ ରକ୍ଷାକର୍ତ୍ତା ! ଭଗବାନ ଆପଣଙ୍କୁ ଏଠିକି ପଠାଇଛନ୍ତି ।" ପ୍ରିନ୍‌ସେସ୍ ମେରିଆ ନିଃସହାୟ ଅବସ୍ଥାରେ ବାଇଆଣୀପରି ବଡ଼ ଘରେ ବସିଥାନ୍ତି, ସେତିକବେଳେ ରୋଷ୍ଟଭ୍‌କୁ ଘର ଭିତରକୁ ଅଣାହେଲା । ସେ କିଏ, ସେ କାହିଁକି ଆସିଛି, ତାଙ୍କ ନିଜର କିଣ ହେଉଛି, ସେ କିଛି ଜାଣିନଥାନ୍ତି । ସେ ଯେମିତି ତା ମୁହଁ ଦେଖି ଚିହ୍ନିଲେ ଯେ ସେ ରୁଷ୍ ଦେଶର ଲୋକ, ଯେମିତି ତାର ପ୍ରଥମ କଥାଭାଷାରୁ ଜାଣିପାରିଲା ଯେ ତାଙ୍କରି ନିଜ ଶ୍ରେଣୀର ଲୋକ ସେମିତି ତା ଆଡ଼କୁ ତାଙ୍କର ଗଭୀର ଉଜ୍ଜ୍ୱଳ ଆଖିରେ ଚାହିଁ ରହି ବାଷ୍ପରୁଦ୍ଧ ଥରଥର କଣ୍ଠରେ ତାକୁ କଥା କହିବାକୁ ଲାଗିଲା । ରୋଷ୍ଟଭ୍ ତାଙ୍କ କଥା ଶୁଣି ତାଙ୍କୁ ଦେଖି ଭାବିଲା "ଆହା, ବଡ଼ ଅସହାୟ ଝିଅଟିଏ, ଦୁଃଖରେ ମୋଡ଼ି ମୋଡ଼ି ହୋଇ ପଡ଼ୁଛି, ଅସଭ୍ୟ ବିଦ୍ରୋହୀ ଚାଷୀମାନଙ୍କ ମରଜିଉପରେ ଫୋଡ଼ା-ଫୋଡ଼ି ହୋଇଛି ବିଚାରି, କେଡ଼େ ଅଦ୍ଭୁତ ଭାଗ୍ୟ ମୋତେ ବି ଏଠିକି ଆଣି ପହଞ୍ଚାଇଲା କେଜାଣି ।

ତାର କରୁଣ କାହାଣୀ ଶୁଣୁ ଶୁଣୁ ସେ ଭାବୁଥାଏ, "ତା ଚେହେରାରେ ଭାବଭଙ୍ଗିରେ କେତେ ବିନୟ, କେଡ଼େ ମର୍ଯ୍ୟାଦା ।"

ସେ ଯେତେବେଳେ ତା ଆଗରେ କହୁଥିଲେ ଯେ ତାଙ୍କ ବାପଙ୍କ ଶେଷକୃତ୍ୟ କରିବା ଦିନ ଏସବୁ କାଣ୍ଡମାନ ଘଟିଲା ସେତେବେଳେ ତାଙ୍କ ସ୍ୱର ଥରି ଉଠିଲା । କାଳେ ରୋଷ୍ଟଭ୍ ଭାବିବ ଯେ, ତାର ମରମଭାବ ଉପରେ ପ୍ରଭାବ ପକାଇବାକୁ ସେ ଏପରି କଥାମାନ କହୁଛନ୍ତି, ଏଥିପାଇଁ ସେ ମୁହଁ ବୁଲାଇନେଲେ । ଆଶଙ୍କାପୂର୍ଣ୍ଣ କୁତୂହଳରେ ସେ ରୋଷ୍ଟଭ ଆଡ଼କୁ ଟିକିଏ ଚାହିଁଦେଲେ । ରୋଷ୍ଟଭର ଆଖିରେ ଲୁହଥାଏ । ପ୍ରିନ୍‌ସେସ୍ ମେରିଆ ତାକୁ ଲକ୍ଷ କଲେ ଆଉ ତା ଆଡ଼କୁ ଆଲୁଅ ଜଳଜଳ ଆଖିରେ ଚାହିଁ ରହିଲେ ଯେ ସେ ଆଖି ଦେଖିଲେ ଲୋକ ଭୁଲିଯିବ ଯେ ତାଙ୍କ ମୁହଁଟି ଖାଲି ଗୋଟିଏ ସାଧାସିଧା ମୁହଁଟିଏ ।

ରୋଷ୍ଟଭ ଠିଆ ହୋଇପଡ଼ି କହିଲା "ମୁଁ ଯେ ଅକସ୍ମାତ୍ ଏବାଟେ ଚାଲିଆସିଲି ଓ ଆପଣଙ୍କର କୌଣସି ବିଷୟରେ କାର୍ଯ୍ୟରେ ଆସିପାରିଲି ସେଥିପାଇଁ ମୋ ମନରେ କି ଆନନ୍ଦ ହେଉଛି ମୁଁ ତା ଭାଷାରେ ପ୍ରକାଶ

କରିପାରୁନାହାଁ ପ୍ରିନ୍‌ସେସ ! ମୋର ବିଶ୍ୱାସ ଆପଣ ବର୍ତ୍ତମାନ ଚାଲିଯାଇ ପାରିବେ ।

ଖାଲି ଆପଣ ଯଦି ମତେ ଅନୁମତି ଦେବେ ଆପଣଙ୍କ ସଙ୍ଗରେ ଜଗୁଆଳିହୋଇ ଯିବାଲାଗି, ତେବେ ମୁଁ ଆପଣଙ୍କୁ ମୋର ସମ୍ମାନର ରାଣ ପକାଇ ନିର୍ଭର କରି ଜବାବ ଦେଇପାରିବି ଯେ, ଆପଣଙ୍କୁ କୌଣସି ପ୍ରକାରେ ବିରକ୍ତ କରିବାକୁ କୌଣସି ଲୋକ ସାହସ କରିପାରିବ ନାହିଁ ।

ରାଜପ୍ରାସାଦର ଭଦ୍ରମହିଳାମାନଙ୍କୁ ଯେପରି ଭାବେ ସମ୍ମାନ ଦେଖାଇ ପ୍ରଣତି ବିଧାନ ହୁଏ, ସେହିପରି ଠାଣିରେ ସେ ତଳକୁ ଝୁଙ୍କିଯାଇ ତାଙ୍କୁ ଦଣ୍ଡବତ କରି ଦୁଆରମୁହାଁ ଆଡ଼କୁ ବୁଲିପଡ଼ିଲା ।

ରୋସ୍ତଭ ତାର କଥାର ଭଙ୍ଗିରେ ବିନୟ ଫୁଟାଇ ଏହି କଥା ବୁଝାଇ ଦେବାକୁ ଚେଷ୍ଟା କଲା ଯେ, ତାଙ୍କ ସଙ୍ଗେ ଏହା ପରିଚୟ ହେଲେ ସେ ନିଜକୁ ଭାଗ୍ୟବାନ ମନେକରିବ । କିନ୍ତୁ ତା ବୋଲି ତାଙ୍କ ଦୁରବସ୍ଥାର ସୁଯୋଗ ନେଇ ସେ ବଳେ ବଳେ ତାଙ୍କ ସଙ୍ଗେ ପରିଚୟ ଯୋଡ଼ି ଦେବ ନାହିଁ ।

ପ୍ରିନ୍‌ସେସ୍ ମେରିଆ ତାର ସ୍ୱରରେ ଅର୍ଥ ଅନୁଭବ କରିପାରିଲେ ଓ ଖୁସିହେଲେ । ସେ ତାକୁ ଫରାସୀ ଭାଷାରେ କହିଲେ, "ଯାହା କୁହନ୍ତୁ, ମୁଁ ଆପଣଙ୍କଠାରେ ବହୁତ କୃତଜ୍ଞ । ତେବେ ମୁଁ ଆଶା କରୁଛି ଯେ, ଏ ଯେଉଁ ଘଟନାଟା ଘଟିଗଲା ସେଥିପାଇଁ କାହାର ଦୋଷ ନାହିଁ, ଖାଲି ବୁଝାମଣା ଅଭାବରୁ ସେପରି ଘଟିଲା ।" ତାପରେ ସେ କାନ୍ଦିପକାଇଲେ । ଦେଖନ୍ତୁ, କିଛି ଭାବିବେ ନାହିଁ । ମୋ ଅପରାଧ ଧରିବେ ନାହିଁ । ରୋସ୍ତଭ ଭ୍ରୂକୁଞ୍ଚିତକରି ଆହୁରି ଥରେ ମୁଣ୍ଡକୁ ଝୁଙ୍କି ତାଙ୍କୁ ଦଣ୍ଡବତ କରି ସେ ଘରୁ ବାହାରିଗଲା ।

ଇଲୟୁନ୍, "କଣ ଦେଖିଲ ? ସେ ସୁନ୍ଦର କି ନୁହେଁ ? ଯାହା କହ ମୋର ଗୋଲାପୀ ପ୍ରିୟାଟି ଭାରି ଚମତ୍କାର । ତା ନାଁଟି ପୁଣି ଦୁନ୍ୟାଶା ।"

କିନ୍ତୁ ରୋଷ୍ଟଭର ମୁହଁକୁ ଚାହିଁଦେଇ ଇଲୟିନ୍ ଚୁପ ହୋଇଗଲା । ସେ ଦେଖିଲା ଯେ, ତାର ଏ ଆରାଧ୍ୟ ବୀରପୁରୁଷ ପୁଣି ଉପରସ୍ଥ କର୍ମଚାରୀ ଏକ ସମ୍ପୂର୍ଣ୍ଣ ଭିନ୍ନ ଚିନ୍ତାରେ ଆଚ୍ଛନ୍ନ ।

ରୋଷ୍ଟଭ ଇଲୟିନ୍ ଆଡ଼କୁ ରାଗରେ ଚାହିଁ ଦେଲା । ତାପରେ କିଛି ଉତ୍ତର ନଦେଇ ବଡ଼ ବଡ଼ ପାହୁଣ୍ଡ ପକାଇ ଗାଁ ଆଡ଼କୁ ଛୁଟିଲା ।

ସେ ମନକୁ ମନ ଭୃକୁଟି ଭୃକୁଟି ହେଉଥାଏ । "ରହ ମୁଁ ତାକୁ ଦଉଛି ପାନେ, ଥଣ୍ଡା କରୁଛି ତାଙ୍କୁ । ବଦ୍‌ମାସ୍ ।"

ଆଲ୍‌ପାଟିଚ୍ ତରତରହୋଇ ରୋଷ୍ଟଭର ପଛେ ପଛେ ଚାଲିଥାଏ । ତାର ସାଙ୍ଗ ଧରିବାକୁ ତାକୁ ଏତେ ବେଗରେ ଚାଲିବାକୁ ହେଉଥାଏ ଯେ, ସେ ଦୌଡ଼େ କି ନ ଦୌଡ଼େ ଏହିପରି ତାର ଅବସ୍ଥା ।

ତା ପାଖରେ ପହଞ୍ଚିଯାଇ ସେ ପଚାରିଲା "ହଜୁର କ'ଣ ନିଷ୍ପତ୍ତି କଲେ ?" ରୋଷ୍ଟଭ ବାଟ ମଝିରେ ଅଟକିଗଲା । ହାତକୁ ମୁଠେଇ ମାରିଲାପରି ହୋଇ ସେ ଆଲ୍‌ପାଟିଚ ଆଡ଼କୁ ଛୁଟିଗଲା ।

ସେ ଗର୍ଜନ କଲା "ନିଷ୍ପତ୍ତି ! କି ନିଷ୍ପତ୍ତି ବେ ବୁଢ଼ାହଡ଼ା କାହିଁକା ? କ'ଣ ତୁ ଭାବୁଚୁ ମନେ ମନେ ? ଋଇତଗୁଡ଼ାକ ଅମାନିଆ ହୋଇଗଲେ ଆଉ ତାଙ୍କ ସଙ୍ଗରେ କେମିତି କାରବାର କଲେ ସେମାନେ ବାଗକୁ ଆସିବେ ସେକଥା କି ତୋତେ ଜଣାନାହିଁ ? ତୁ ନିଜେ ଗୋଟାଏ ବିଶ୍ୱାସଘାତକ । ମୁଁ ତୋତେ ଚିହ୍ନିଲି । ବେତରେ ବାଡ଼େଇ ବାଡେଇ ତୁମ ସମସ୍ତଙ୍କ ପିଠିରୁ ଚୂଲ ଛଡେଇ ଦେବି ରଇଥା ।"

ସେ ଆଲପାଟିଚକୁ ଛାଡ଼ିଦେଇ ଆଗକୁ ଧାଇଁଲା । ସତେ ଯେପରିକି ସେ ଡରୁଥାଏ ଯେ, ତାର ରାଗର ସବୁଯାକ ବଳ କାଳେ ଆଲପାଟିଚ ଉପରେ ପଡ଼ି ନଷ୍ଟ ହୋଇଯିବ । ଆଲପାଟିଚ ଏ ଅପମାନକୁ ହଜମ କରି ରୋଷ୍ଟଭ ପଛେ ପଛେ ଟଳିଲା ପରି ଧାଇଁଥାଏ । ଘଟନା ବିଷୟରେ ସେ ନିଜେ ଯାହା ଭାବିଥିଲା ସେ ତଥାପି ସେହିକଥା ତା ଆଗରେ କହିଲାଗିଥାଏ । ସେ କହିଲା ଯେ, ଋଷୀମାନେ ଭାରି ଅବାଧ

ହୋଇ ଯାଇଛନ୍ତି । ପାଖରେ ହାତ ହତିଆରବାଲା ସୈନ୍ୟ ନଥିଲା ବେଳେ ତାଙ୍କ ଶତ୍ରୁତା ଅର୍ଜିବା ବୁଦ୍ଧିମାନର କାର୍ଯ୍ୟ ହେବ ନାହିଁ । ଆଗ ହାତ ହତିଆରବାଲା ସୈନ୍ୟ ଦଳଟିଏ ମଗାଇ ଆଣିଲେ ଭଲ ହୁଅନ୍ତା ନାହିଁ ?

" ମୁଁ ତାଙ୍କୁ ସୈନ୍ୟ ଦଳ ପଠେଇଦେବି—ତାଙ୍କ ଶତ୍ରୁତା ଅର୍ଜିବି"...ନିକୋଲେ ନିରର୍ଥକ ଭାବରେ ଭୁଣ୍ଡୁ ଭୁଣ୍ଡୁ ହେଉଥାଏ । ଗୋଟାଏ ବଣ୍ୟ ଜନ୍ତୁର ରାଗପରି ତାହାଁ ଅନ୍ଧ ରାଗ ଚଢ଼ିଥାଏ ଯେ, ସେ ରାଗରେ ତାର ନିଶ୍ୱାସ ବନ୍ଦ ହୋଇ ଯାଉଥାଏ । ମନ ହେଉଥାଏ କାହା ଉପରେ ସେ ତା ରାଗ ଝଡ଼ାନ୍ତା । କ'ଣ ସେ କରିବାକୁ ବସିଛି ସେ ବିଷୟରେ କିଛି ନ ଭାବି ନ ବିଚାରି ଆପଣା ମନ ଅଜାଣାତରେ ସେ ତରତର ହୋଇ ଦୃଢ଼ ପ୍ରତିଜ୍ଞା ହେଲାପରି ଲକ୍ଷ ରଖି ଚାଲି ଚାଲିକା ସେହି ଗହଳ ଆଡକୁ ମାଡ଼ିଗଲା । ସେ ଯେତିକି ଯେତିକି ଲୋକଙ୍କ ପାଖକୁ ପାଖକୁ ଯାଉଥାଏ ଆଲପାଟିଚକୁ ସେତିକି ଲାଗୁଥାଏ ଯେ ତାର ଏ ହୁଣ୍ଡା କାମରୁ ଅତି ଉତ୍ତମ ଫଳ ଫଳିବ । ଦଳ ଭିତରେ ଥିବା ଚାଷୀମାନେ ଯେତେ-ବେଳେ ତାର ଦମ୍ଭ ଆଉ ତରତର ଚାଲିକୁ ଦେଖୁଥାନ୍ତି, ତାର ଦୃଢ଼ ପ୍ରତିଜ୍ଞ ଭ୍ରୁକୁଟୀ କୁଞ୍ଚନ ମୁହଁକୁ ଚାହୁଁଥାନ୍ତି ସେମାନଙ୍କୁ ବି ସେହିପରି ଲାଗୁଥାଏ ।

ରେସ୍ତଭ୍ ସେ ଚଷାମାନଙ୍କୁ ହୁକୁମ ଦେଲା, "ଶୁଣ ସମସ୍ତେ ମୁଁ ଯାହା କହୁଚି ଶୁଣ । ଏଇ ମୁହୂର୍ତ୍ତରେ ସିଧା ଆପଣା ଆପଣା ଘରକୁ ମାଡି କରି ଚାଲିଯାଅ, ପୁଣି ଯେମିତି ମୁଁ ତମ ପାଟିଗୁଣ୍ଡେ ନ ଶୁଣେ ।"

ଲୋକେ ପରସ୍ପରକୁ ଦୋଷ ଦିଆଦେଇ ହେଲେ । କୁହାକୁହି ହେଉଥାନ୍ତି ଯେ ଶୁଭୁଥାଏ "କ'ଣ ହେଲା ? ଆମେତ କାହାର କିଛି ଅନିଷ୍ଟ କରିନାହୁଁ । ବୁଝିଲେ ହଜୁର, ସାମାନ୍ୟ ଟିକିଏ ମୂର୍ଖାମୀ କଲୁ ବୋଲି ଯାହା ଅବା ହେଲା । ଖାଲି ଟିକିଏ ମୂର୍ଖାମୀ । ତ୍ରସ ଖାଲି ବାଜେ କଥା...ମୁଁ ତ ସେତେବେଳେ କହୁଥିଲି ଯେ କାମଟା ଠିକ ହେଲା ନାହିଁ କି !"

ଆଲପାଟିଚ ପୁଣି ତାର ନ୍ୟାର୍ଯ୍ୟ କର୍ତ୍ତୃତ୍ୱ ଅଧିକାର କରି ନେଇ କହିଲା "ଦେଖ, ମୁଁ କହୁଥିଲି କି ନାହିଁ ? ତମର କାଇଲ୍ ହୋଇଚି ପିଲେ—"

ପାଟି ଶୁଭିଲା, ଲୋକେ ଉତ୍ତର ଦେଲେ "ଆମର କାଇଲ୍ ଯାକିଭ ଆଲପାଟିଚ।" ଗୃହୁଁ ଗୃହୁଁ ଦଳ ଭାଙ୍ଗିଗଲା । ଲୋକେ ଗାଁ ଯାକ ଛିନ୍ନଛତର ହୋଇ କୁଆଡ଼େ କୁଆଡେ ଚାଲିଗଲେ ।

ଦୁଇ ଘଣ୍ଟା ଭିତରେ ଦେଖିଲା ବେଳକୁ ଯେତେ ଘୋଡ଼ା ଯେତେ ଗାଡ଼ି ଦରକାର ସବୁ ଆସି ବୋଗୁଚାରୋଭୋ ପ୍ରାସାଦ ଆଗରେ ଠିଆ ହୋଇଗଲା । ଚଷାମାନେ ଭାରି ଆଗ୍ରହରେ ଧାଁ ଧପଡ଼ କରି ମାଲିକମାନଙ୍କ ଜିନିଷ ପତ୍ର ନେଇ ଗାଡ଼ିରେ ଲଦୁ ଥାନ୍ତି ।

ରୋଷ୍ଟଭ ପ୍ରିନ୍‌ସେସଙ୍କ ଉପରେ ବଳେ ବଳେ ଆପଣା ବନ୍ଧୁତ୍ୱ ଲଦି ଦେବାକୁ ଇଚ୍ଛା କଲା ନାହିଁ । ସେ ଆଉ ତାଙ୍କ ଘରକୁ ଗଲା ନାହିଁ । ସେ ଗାଡ଼ିରେ ଚଢ଼ି ଚାଲିଯାଆନ୍ତୁ ବୋଲି ସେପର୍ଯ୍ୟନ୍ତ ସେ ଗାଁରେ ଅପେକ୍ଷାକରି ରହିଲେ । ଯେମିତି ପ୍ରିନ୍‌ସେସଙ୍କ ଗାଡ଼ି ବାହାରି ଚାଲିଗଲା ସେମିତି ରୋଷ୍ଟଭ ଘୋଡ଼ାରେ ଚଢ଼ି ଗାଡ଼ି ସଙ୍ଗରେ ଜଗୁଆଳି ହୋଇ ବୋଗୁଚାରୋଭୋରୁ ୧୨ ଭର୍ଷ୍ଟ ଦୂରରେ ଯେଉଁଠି ସଡ଼କକୁ ରୁଷ ପକ୍ଷର ସୈନ୍ୟମାନେ ଅଧିକାର କରି ରହିଥା'ନ୍ତି ସେପର୍ଯ୍ୟନ୍ତ ସେ ଗଲା । ୟାଙ୍କୋଭୋରେ ଯେଉଁ ସରେଇ ଘର ଅଛି ସେଇଠି ସେ ବହୁ ମାନମର୍ଯ୍ୟାଦା ଦେଖାଇ ତାଙ୍କଠାରୁ ବିଦାହୋଇ ଗଲା । ସେଇଠି ପ୍ରଥମ ଥର ସେ ତାଙ୍କ ହାତ ପାପୁଲିରେ ଚୁମ୍ବନ କଲା ।

ପ୍ରିନସେସ୍ ମେରିଆ ଯେତେବେଳେ ତାଙ୍କୁ ତାଙ୍କର କୃତଜ୍ଞତା ଜଣାଇଲେ ଆଉ କହିଲେ ଯେ, ସେ ତାଙ୍କ ଜୀବନ ରକ୍ଷା କରିଛନ୍ତି ସେତେବେଳେ ସେ ଲାଜରେ ରଙ୍ଗା ପଡ଼ିଯାଇ କହିଲା "କେମିତି ଆପଣ ସେକଥା ଭୁଣ୍ଡରେ ଧରୁଛନ୍ତି । କିବା କାମ ମୁଁ କଲି ? ଯେ କୌଣସି ପୁଲିସ କର୍ମଚାରୀ କଣ ସେତିକି କରିନଥା'ନ୍ତା କି ?"

କଥା ବୁଲେଇ ଦେବାକୁ ଚେଷ୍ଟା କରି ସେ କହିଲା "ଖାଲି ଯଦି ଆମେ ଚାଷୀଙ୍କ ବିରୁଦ୍ଧରେ ଯୁଦ୍ଧ କରିଥାନ୍ତେ ତେବେ ଶତ୍ରୁ ପକ୍ଷ ଏତେବାଟ

ମାଡ଼ ଆସିପାରିନଥାନ୍ତା । ମୋ ମନ ଖାଲି ଏତିକ ପାଇଁ ଭାରି ଆନନ୍ଦ ହେଉଛି ଯେ ଆପଣଙ୍କ ସଙ୍ଗେ ଆଳାପ ପରିଚୟ ଲାଗି ସୁଯୋଗ ମିଳିଲା । ମୁଁ ଯାଉଚି, ନମସ୍କାର ପ୍ରିନସେସ୍ । ମୋର ବିଶ୍ୱାସ ଆପଣ ସୁଖୀ ହେବେ ଆଶ୍ୱସ୍ତା ହେବେ । ମୁଁ ଆଶା କରୁଛି ଅବସ୍ଥା ଆହୁରି ସୁଖକର ହେଲାବେଳେ ପୁଣି ଆପଣଙ୍କ ସଙ୍ଗେ ମୋର ଦେଖାହେବ । ଦେଖନ୍ତୁ ଯଦି ମୋତେ ଲଜ୍ଜା ଦେଇ ନାଲି ପକାଇବାକୁ ଆପଣଙ୍କର ଇଚ୍ଛା ନୁହେଁ ତେବେ ମୋତେ ଏତେ ଧନ୍ୟବାଦ ଦିଅନ୍ତୁ ନାହିଁ ।"

କିନ୍ତୁ ଯଦିଓ ପ୍ରିନ୍‌ସେସ ତୁଣ୍ଡ କଥାରେ ତାଙ୍କୁ ଧନ୍ୟବାଦ ନ ଜଣାଇଲେ ତେବେ ସେ ତାଙ୍କର ମୁହଁର ସମଗ୍ର ଠାଣିରେ ତାଙ୍କୁ ଧନ୍ୟବାଦ ଜଣାଇଥିଲେ । କୃତଜ୍ଞତା ଓ ସ୍ନେହରେ ତାଙ୍କ ମୁହଁ ଝଟକି ଉଠୁଥାଏ । ତାଙ୍କୁ ଧନ୍ୟବାଦ ଦେବାକୁ କୌଣସି କାରଣ ନାହିଁ । ଏ କଥା ସେ ଆଦୌ ବିଶ୍ୱାସ କରି ପାରିଲେ ନାହିଁ । ଓଲଟି ତାଙ୍କ ମନରେ ନିଃସନ୍ଦେହରେ ବିଶ୍ୱାସ ଆସିଯାଇଥିଲା ଯେ ସେ ନ ଆସିଥିଲେ ସେ ହୁଏତ ସେହି ମେଳି କରିଥିବା ଚଷାମାନଙ୍କ ପାଖରେ ନହେଲେ ଫରାସୀମାନଙ୍କ ହାତରେ ବନ୍ଦୀ ପଡ଼ିଥାନ୍ତେ ଓ ତାଙ୍କୁ ରକ୍ଷା କରିବାକୁ ଯାଇ ସେ ଆପଣଙ୍କୁ ନିଶ୍ଚିତ ଓ ଭୟାନକ ବିପଦ ମୁହଁରେ ପକାଇ ଥିଲେ । ସେ ଆହୁରି ଦୃଢ଼ ଭାବେ ବିଶ୍ୱାସ କରନ୍ତି ଯେ ସେ ଏକ ଅତି ଉଦାର ଉଚ୍ଚମନା ମଣିଷ, ତେଣୁ ସେ ଯେଉଁଭଳି ଅବସ୍ଥାରେ ଯେଉଁ ଦୁଃଖରେ ପଡ଼ିଥିଲେ ସେଥିରେ ତାଙ୍କ ପ୍ରତି ତାର ସହାନୁଭୂତି ଜନ୍ମି ଥିଲା । ସେ ଯେତେବେଳେ କାନ୍ଦି କାନ୍ଦି ତା ଆଗରେ ତାଙ୍କ ବାପା ମରିବା କଥା କହୁଥିଲେ ସେତେବେଳେ ତାର ଲୁହ ଛଳ ଛଳ ଆଖିରେ ଯେଉଁ କରୁଣା ଓ ଆନ୍ତରିକତା ଫୁଟି ଉଠିଥିଲା, ତାର ସେ ଚାହାଣି ତାଙ୍କ କଳ୍ପନାରେ ରହିଯାଇ ବାରମ୍ବାର ମନେ ପଡୁଥିଲା । ତାଙ୍କୁ ପ୍ରତିନମସ୍କାର ଜଣାଇ ତାଙ୍କଠାରୁ ବିଦାୟ ହୋଇସାରି ସେ ଯେତେବେଳେ ଏକୁଟିଆ ଥିଲେ ହଠାତ୍ ସେ ଅନୁଭବ କଲେ ଯେ ତାଙ୍କ ଆଖି ଲୁହରେ ପୂରିଛି, ଆଉ ସେତେ-ବେଳେ ଏହି ପ୍ରଶ୍ନଟି ତାଙ୍କର ମନେ ପଡ଼ିଲା ଅବଶ୍ୟ ଏଇ ପ୍ରଥମ ଥର କି ବୋଲି ନୁହେଁ, କିଣ ନା "ମୁଁ କଣ ତାଙ୍କ ପ୍ରେମରେ ପଡ଼ିଯାଇଛି ?" ମସ୍କୋ ପହଞ୍ଚୁ ପହଞ୍ଚୁ ଆଉ ଟେଃତେବାଟ ଲାଗିଲା ସେହି ବାଟଯାକ ଦୁନ୍ୟାଶା ଲକ୍ଷ କରୁଥାଏ ଯେ ଝରକା ବାଟେ ପଦାକୁ ଅନାଇଁ ଥିବା

ଅବସ୍ଥାରେ ତାର ସାଆନ୍ତାଣୀଙ୍କ ମୁହଁରେ ଅସ୍ପଷ୍ଟ ହୋଇ ଯେପରିକ ବିଷର୍ଣ୍ଣତା ଭିତରେ ଗୋଟିଏ ସୁଖର ହସ ଲାଗି ରହୁଥାଏ । ଅଥଚ ତାଙ୍କର ଅବସ୍ଥା ଏପରି ନଥିଲା କାହିଁରେ ଲୋକ ମନରେ ଆନନ୍ଦ ଆସିଲା । ଦ୍ୟୁନ୍ୟାଶା ତାଙ୍କ ସଙ୍ଗରେ ସେହି ଗାଡ଼ିରେହିଁ ଥିଲା ।

ପ୍ରିନ୍‌ସେସ ମନକୁମନ ଭାବୁଥାନ୍ତି "ଧର ଯଦିବା ମୁଁ ତାଙ୍କ ପ୍ରେମରେ ପଡ଼ିଲି । ତେବେ କ'ଣ ଭାସିଗଲା ।"

ଏକଥା ସେ ଆପଣା ପାଖରେ ସ୍ୱୀକାର କରିବାକୁ ତାଙ୍କୁ ଲାଜ ମାଡ଼ୁଥାଏ ଯେ ଯେଉଁ ମଣିଷଟାର ତାଙ୍କ ପାଇଁ ହୁଏତ ଟିକିଏ ହେଲେ ଦୟା ନଥିବ ସେମିତି ଗୋଟାଏ ମଣିଷକୁ ସେ ହୃଦୟ ସମର୍ପି ଦେଇଥାନ୍ତି। ତଥାପି ସେ ଏଇଆ ଭାବି ଆପଣାମନକୁ ଆଶ୍ୱସନା ଦେଉଥାନ୍ତି, ଯେ ତାଙ୍କ ମନକଥା କେହି କେବେ ଜାଣିବ ନାହିଁ । ଆପଣା ଜୀବନ ଭିତରେ ଏଇଥର ପ୍ରଥମ ଥରକ ଆଉ ପୁଣି ଶେଷଥରକ ଯଦିବା ସେ ଲୁଚେଇ ଛପି ପ୍ରେମରେ ପଡ଼ିଗଲେ ସେଥିପାଇଁ ତାଙ୍କ ନଜର ଦୋଷ ନାହିଁ ।

ବେଳେ ବେଳେ ସେ ତାର ଗୃହାଣୀ, ତାର ସହାନୁଭୂତି, ଭାକଥା ଏସବୁ ମନେପକାଇ ଥିଲେ । ତାଙ୍କୁ ଲାଗୁଥିଲା ଯେ ଆପଣା ଜୀବନରେ ଆନନ୍ଦ ପାଇପାରିବା ତାଙ୍କ ପକ୍ଷରେ ଏକାଥରେ ଅସମ୍ଭବ ତା ନୁହେଁ । ସେ ଏପରି ଭାବିଲାବେଳେ ଦୁନ୍ୟାଶା ଲକ୍ଷକଲା ଯେ ସେ ମୁରୁକି ହସି ହସି ଝରକାବାଟେ ପଦାକୁ ଚାହିଁଛନ୍ତି ।

ପ୍ରିନ୍‌ସେସ୍ ମେରିଆ ଭାବୁଥାନ୍ତି "ଦେଖ କେଡ଼େ ଆଶ୍ଚର୍ଯ୍ୟ କଥା ଯେ ସେ ଆସିଲେ । ଆସିଲେ ଫେର୍ ଠିକ୍ ସେଇ ଘଡ଼ିରେ । ଆଉ ତାଙ୍କର ଭଉଣୀ ପୁଣି ଆନ୍‌ଦ୍ରେଙ୍କୁ ବାହା ହେବାକୁ ମନା କରିଦେଲେ ।" ଏସବୁ ଘଟଣାରେ ଦୈବର ହାତରେ କାରସାଦି ଅଛି ସେ ଭାବୁଥାନ୍ତି ।

ରୋଷ୍ଟଭ୍ ମନରେ ପ୍ରିନସେସ୍ ମେରିଆ ଏକ ଆନନ୍ଦକର ସ୍ମୃତି ରଖିଦେଲେ । ସେ ତାଙ୍କ କଥା ମନେ ପକାଇବା ମାତ୍ରେ ତାକୁ ଆନନ୍ଦ ଲାଗେ । ବୋଗୁଚ୍ଚରୋଭରେ ତାର ସେ ଦୁଃସାହାସିକ କାହାଣୀ ଶୁଣି ତା ସାଙ୍ଗମାନେ ତାକୁ ଯେତେବେଳେ ଥଟ୍ଟା କଲେ ଯେ ସେ ଘୋଡ଼ାଖିଆ

ଶୁଖିଲା ଘାସ ଅନୁଷା କରିବାକୁ ଯାଇ ଋଷ୍ ଦେଶରେ ସବୁଠି ବେଶି ସମ୍ପତ୍ତି ଥିବା ପାର୍ଟୀଟିଏ ପାଇଗଲା, ସେତେବେଳେ ସେ ରାଗିଗଲା । ତାର ସେ ରାଗର କାରଣ ହେଉଛି ଯେ ଅନେକଥର ଆପଣା ଇଚ୍ଛା ବିରୁଦ୍ଧରେ ବି ତା ମନରେ ଗୋଟିଏ ପ୍ରସଙ୍ଗ ଉଠିଥିଲା ଯେ ଶାନ୍ତ ସୁଧାର ପ୍ରିନ୍‌ସେସ୍ ମେରିଆ ।

ଯାହାଙ୍କୁ ସେ ଭାବୁଥିଲେ ଅତି ଚମତ୍କାର ଅତି ମନୋହାରିଣୀ ବୋଲି, ପୁଣି ଯାହାଙ୍କର ଅଚଳାଚଳ ସମ୍ପତ୍ତି ଅଛି, ସେଇଆକୁ ସେ ବିଭା ହୁଅନ୍ତା କି ! ନିକୋଲେଇର ନିଜର ଇଚ୍ଛା ହେଉଥିଲା ଯେ ପ୍ରିନ୍‌ସେସ୍ ମେରିଆଙ୍କୁ ଯଦି ସେ ପତ୍ନୀରୂପରେ ପାଇପାରନ୍ତା ତେବେ ତା'ଠୁ ବଳି ଆଉ ତାର ସୌଭାଗ୍ୟ ନାହିଁ । ତାଙ୍କୁ ବିଭା ହେଲେ କାଉଣ୍ଟେସ୍ ଅର୍ଥାତ୍ ତାର ମା ଖୁବ୍ ଖୁସି ହୁଅନ୍ତେ । ତାଙ୍କ ବାପାଙ୍କ ସମ୍ପତ୍ତିବାଡ଼ି ଯେ ଭାଙ୍ଗି ପଡ଼ୁଛି ସେ ବଳେ ସଜାଡ଼ି ହୁଅନ୍ତା । ଆହୁରି ବି ନିକୋଲେଇକୁ ଲାଗୁଥାଏ —ସେ ଯଦି ପ୍ରିନ୍‌ସେସ୍‌ଙ୍କୁ ବିଭା ହୁଅନ୍ତା ତେବେ ପ୍ରିନ୍‌ସେସ୍ ନିଜେ ବି ଜୀବନରେ ସୁଖଶାନ୍ତି ପାଆନ୍ତେ ।

ସୈନ୍ୟବାହିନୀର ଅଧିନାୟକ ହୋଇ ନିଯୁକ୍ତ ଯାଇଲା ସଙ୍ଗେ ସଙ୍ଗେ କୁତୁଜଭ ପ୍ରିନ୍‌ସ ଆନ୍ଦ୍ରେଙ୍କୁ ମନେପକାଇ ହେଡ଼କ୍ୱାର୍ଟରକୁ ଆସିବାକୁ ତାଙ୍କୁ ଡକରା କରି ଚିଠି ପଠାଇଲେ । ଠିକ୍ ଯେଉଁଦିନ ଆଉ ଯେତିକି-ବେଳେ ପ୍ରିନ୍‌ସ ଆନ୍ଦ୍ରେ ସାରେଭୋ-ଜାଇମିସ୍‌ସେ ଗାଁରେ ପହଞ୍ଚିଗଲେ, ସେ ଗାଁରେ ପହଞ୍ଚି ପ୍ରିନ୍‌ସ ଆନ୍ଦ୍ରେ ଖ୍ରୀଷ୍ଟିଆନ ପାଦ୍ରୀଙ୍କ ଘରେ ଅପେକ୍ଷା କଲେ । କୁତୁଜଭକୁ ସମସ୍ତେ ମଣିମା ମଣିମା କହୁଥାନ୍ତି । ଗାଁ ସେପଟେ ଯେଉଁ ସମତଳଭୂମି ପଡ଼ିଛି ସେଣ୍ଟିଆଡ଼ୁ ସାମରିକ ଯନ୍ତ୍ରସଙ୍ଗୀତର ଶବ୍ଦ ଓ ଅଜଣା ଲୋକେ ଜୟ ! ଜୟ ! ବୋଲି ଚିତ୍କାର କରି ନୂଆ ପ୍ରଧାନ ସେନାପତିଙ୍କୁ ଅଭିବାଦନ ଜଣାଉଥାନ୍ତି, ସେହି ଗର୍ଜନ ଭାସି ଆସୁଥାଏ । ଫାଟକ ପାଖରେ ପ୍ରିନ୍‌ସ ଆନ୍ଦ୍ରେଙ୍କ ପାଖରୁ ଦଶପାହୁଣ୍ଡ ଦୂରରେ ଠିଆ ହୋଇଥାନ୍ତି, ଦିଜଣ ରକ୍ଷୀ । ଜଣେ ହରକରା, ଜଣେ ଘର ଗୁମାସ୍ତା । ଖାଉନ୍ଦ ନାହାନ୍ତି ବୋଲି ଟିକିଏ ସୁବିଧା ମିଳିଯିବାରୁ ସେମାନେ ସେଦିନ ଚମତ୍କାର ପାଗକୁ ଉପଭୋଗ କରୁଥାନ୍ତି । ଘୋଡ଼ାରେ ଚଢ଼ି

ଫାଟକ ପାଖକୁ ଆସିଲେ ଜଣେ ଘୋଡ଼ାସବାର ସୈନ୍ୟଙ୍କ ଲେଫ୍‌ଟେନେଣ୍ଟ, ମୋଟାସୋଟା ହୋଇ ଚୁଟିଆ ମଣିଷଟିଏ, ମୁହଁପାକ ବଣବୁଦା ପରି ନିଶ ଆଉ ଗାଲ ମୁଚ୍ଛ ବଢ଼ିଛି । ପ୍ରିନସ ଆନ୍ଦ୍ରେଙ୍କ ଆଡ଼କୁ ଚାହିଁଦେଇ ପଚାରିଲେ ଯେ ମଣିଷ ସେଠି ରହୁଛନ୍ତି କି ଓ ସେ ଚଞ୍ଚଳ ଲେଉଟି ଆସିବେ କି ନାହିଁ ।

ପ୍ରିନ୍‌ସ ଆନ୍ଦ୍ରେ ତାଙ୍କୁ କହିଲେ ଯେ ସେ ମଣିମାଙ୍କ କର୍ମଚାରୀ ଗୋଷ୍ଠୀ ଭିତରର ନୁହନ୍ତି ଓ ସେ ମଧ୍ୟ ସେତିକିବେଳେ ଆସି ପହଞ୍ଚିଛନ୍ତି । ଘୋଡ଼ାସବାର ସୈନ୍ୟଦଳର ଲେଫ୍‌ଟେନେଣ୍ଟ ଜଣେ ଫିଟ୍‌ଫାଟ ରକ୍ଷୀ ଆଡ଼କୁ ବୁଲି ପଡ଼ିଲେ ଓ ପ୍ରଧାନ ସେନାପତିଙ୍କ ରକ୍ଷୀମାନେ ଯେମିତି ଅବଜ୍ଞା ଦେଖାଇ ଲୋକଙ୍କ ସଙ୍ଗେ କଥାବାର୍ତ୍ତା ହୁଅନ୍ତି ସେମିତି ଅବଜ୍ଞାରେ ସେ ରକ୍ଷୀ ଜଣକ କହିଲା ।

"ଓ ମଣିମାଙ୍କ କଥା ପଚାରୁଛନ୍ତି ? ସେ ଏଇ ସଙ୍ଗେ ସଙ୍ଗେ ଆସି ପହଞ୍ଚିବେ ବୋଲି ଆମେ ଅପେକ୍ଷା କରିଛୁ । ଆପଣଙ୍କର ତାଙ୍କ ସଙ୍ଗରେ କଣ ଦରକାର ?"

ସେ ରକ୍ଷୀର କହିବା ଭଙ୍ଗି ଶୁଣି ସେ ଅଫିସର ଜଣକ ନିଜ ଜହାଡ଼ିରେ ହସି ଦେଲେ, ଘୋଡ଼ାରୁ ଓହ୍ଲାଇପଡ଼ି ଘୋଡ଼ାକୁ ଜଣେ ଚାକର ହାତରେ ଦେଇଦେଲେ, ତାପରେ ମୁଣ୍ଡକୁ ଅଳ୍ପ ନୁଆଁଇ ଦେଇ ଦଣ୍ଡବତ କରି ବଲ କନସ୍କିଙ୍କ ପାଖକୁ ଚାଲିଗଲେ ।

ବଲ୍‌କନସ୍କି ବେଞ୍ଚଉପରେ ଘୁଞ୍ଚିଯାଇ ତାଙ୍କ ପାଇଁ ଜାଗା କରିଦେଲେ । ଘୋଡ଼ାସବାର ସୈନ୍ୟବାହିନୀର ଅଫିସର ତାଙ୍କ ପାଖରେ ବସିପଡ଼ିଲେ । କହିଲେ "ଆପଣ ବି ପ୍ରଧାନ ସେନାପତିଙ୍କ ଲାଗି ଅପେକ୍ଷା କରିଛନ୍ତି ? ଭଗବାନଙ୍କୁ ଧନ୍ୟବାଦ । ଲୋକେ କହନ୍ତି ଯେ ଆସୁ, ତାଙ୍କୁ ଦେଖା କରିବାକୁ ତାଙ୍କର ଖୁବ୍ ଆଗ୍ରହ । ଜର୍ମାନ ସେନାପତି ହୋଇଥିଲେ ତ ତାଙ୍କ କଥା ପୁରାପୁରି ଅନ୍ୟପ୍ରକାର । ସ୍ପେର ମୋଲ୍‌ଭ୍ ଏମିତିଆ ଯେ ମନକଲେ ଜର୍ମାନ ହୋଇ ପଦୋନ୍ନତି ପାଇବାକୁ ସେ ମନ ବଳାଇଥାନ୍ତେ ପରା । ବର୍ତ୍ତମାନ ରୁଷ ଲୋକେ ପୁଣି ସାହସ କରି କଥାପଦେ କହିପାରିବେ ।

କଣ ସବୁ ଯେ ହଉଚି ସେଚ ମୋ ମୁଣ୍ଡରେ ପଶୁନାହିଁ । ଖାଲି ହଟି ହଟିକା ପଛଘୁଞ୍ଚା ଦେଇ ଯଳା ପଳା ।"

ପଚାରିଲେ "ଆଜ୍ଞା ଆପଣ ଲଢ଼େଇ ଜାଗାରେ ଥିଲେ କେବେ ?" ପ୍ରିନ୍ସ ଆନ୍ଦ୍ରେ କହିଲେ "ଆଜ୍ଞା ମୋର ଏଡ଼େ ଭାଗ୍ୟ ଯେ ଖାଲି ଯେ ମୁଁ ସେ ପଛଘୁଞ୍ଚା ଦେବାର ଭାଗ ନେଇଥିଲି ଖାଲି ସେତିକି ନୁହେଁ, ଯାହା ଯେତେ ମୁଁ ମୋ ପକ୍ଷରେ ମୂଲ୍ୟବାନ ବୋଲି ଭାବୁଥିଲି, ସବୁ ମୋର ସେଇ ପଛଘୁଞ୍ଚାରେ ହିଁ ଚାଲିଗଲା । ଖାଲି ସମ୍ପତ୍ତିବାଡ଼ି ଗଲା ତା ନୁହେଁ, ମୁଁ ଯେଉଁ ଘରେ ଜନ୍ମ ହୋଇଥିଲି ତା ବି ଚାଲିଗଲା । କେବଳ ସେତିକି ନୁହେଁ, ମୋ ବାପା ବି ଚାଲିଗଲେ । ସେମାନେ ମନ ଦୁଃଖରେ ମରିଗଲେ ଆଜ୍ଞା । ଆମ ଘର ସ୍ମୋଲେନସ୍କ ।"

ଡେନିସଭ୍ ପ୍ରିନସ ଆନ୍ଦ୍ରେଙ୍କ ହାତ ପାପୁଲିକୁ ଚିପି ଦେଇ ତାଙ୍କ ମୁହଁକୁ ଚାହିଁଲେ । ତାଙ୍କ ମୁହଁରେ ବିଶେଷ ହୋଇ ସହାନୁଭୂତିର ଠାଣି ଫୁଟି ଉଠୁଥାଏ । କହିଲେ "ଆରେ ! ଆପଣ ପ୍ରିନ୍ସ ବଲ୍‌କନସ୍କି ? ଆପଣଙ୍କ ସଙ୍ଗେ ପରିଚିତ ହୋଇ ଭାରି ଖୁସି ହେଲି । ମୁଁ ଲେଫ୍‌ଟେନେଣ୍ଟ କର୍ଣ୍ଣେଲ ଡେନିସଭ୍, ଡାକ ନା ଭାସ୍କା ।"

ସହାନୁଭୂତି ଦେଖାଇ ସେ କହିଲେ "ହଁ ମୁଁ ଶୁଣିଛି ସେକଥା ।"

ଟିକିଏ ରହି ସେ ଫେରି କହିଲେ "ଏ ଯେଉଁ ବାଗରେ ଲଢ଼େଇ ହେଉଛି ସେଇଟା ସିଥିଆ ଦେଶର ଲୋକଙ୍କ ଲଢ଼ିବା କାଇଦା । ସେୁ ଭଲ ଯେ, ଏଥିପାଇଁ ଯେଉଁ ଲୋକଙ୍କୁ କ୍ଷତି ସହିବାକୁ ହୁଏ ତାଙ୍କ ପାଇଁ ଏ ଭଲ ନୁହେଁ । ଓ ! ଆପଣ ପ୍ରିନ୍ସ ବଲ୍‌କନସ୍କି ? ଏ ।" ସେ ମୁଣ୍ଡକୁ ଟିକେ ଝାଙ୍କି ପୁଣି ତାଙ୍କ ହାତକୁ ଚିପିଦେଇ ବିଷର୍ଣ୍ଣ ହସି ହସି କହିଲେ "ଆପଣଙ୍କ ସଙ୍ଗେ ଚିହ୍ନା ହେଲା ବୋଲି ମୋତେ ଭାରି ଆନନ୍ଦ ଲାଗୁଛି ପ୍ରିନ୍ସ ।"

ରୁଷ୍ ସୈନ୍ୟମାନେ ଯେତେବେଳେ ହଟି ହଟି ଆସୁଥିଲେ ଆଉ ସେ ନିଜେ ତାର ପ୍ରାନ୍ତୀୟ ଘାଟିମାନଙ୍କରେ କାର୍ଯ୍ୟ ଉପରେ ଥିଲେ, ସେତେବେଳେ ସେ ନିଜେ ଯୁଦ୍ଧର କାଇଦା ବିଷୟରେ ଯେଉଁ ଯୋଜନା

କରିଥିଲେ ସେଇକଥା ପ୍ରିନ୍ସ ଆନ୍ଦ୍ରେଙ୍କୁ ବୁଝାଇବାକୁ ଲାଗିଲେ । ତା ଆଗରୁ ସେନାପତି ବାରକ୍ଲେ-ଦ୍ୟୋଟଲିଙ୍କ ଆଗରେ ସେ ତାଙ୍କର ଯୋଜନା ଆଣି ଥୋଇଥିଲେ । ପୁଣି ବର୍ତ୍ତମାନ କୁତୁଜଭଙ୍କ ଆଗରେ ତାକୁ ଥୋଇବାକୁ ତାଙ୍କର ଇଚ୍ଛା । ଫରାସୀ ପକ୍ଷ ଯେଉଁ ଧାଡ଼ିରେ ତାଙ୍କର ଆକ୍ରମଣ ଚଳାଇଛନ୍ତି ସେ ଧାଡ଼ିଟା ଏତେ ଲମ୍ବା ଧାଡ଼ିଟା ଯେ ସେମାନେ ତାକୁ ସମ୍ଭାଳିବା କଷ୍ଟ । ଏଇ ଘଟନାକୁ ମୂଳ କରି ତେନସ୍‌ଭଙ୍କ ଯୋଜନା ତିଆରି ହୋଇଥିଲା । ତାଙ୍କ ଯୋଜନାରେ ସେ ଏଇ ପ୍ରସ୍ତାବ କରିଥାନ୍ତି ଯେ ଫରାସୀ ପକ୍ଷକୁ ଅଟକାଇବା ଅଭିପ୍ରାୟରେ ଆଦୌ ମୁହାଁମୁହିଁ ଆକ୍ରମଣ କଲେ ସୁଦ୍ଧା ତା ସଙ୍ଗେ ସଙ୍ଗେ ଯେଉଁ ମାର୍ଗରେ ସେମାନେ ପରସ୍ପର ସଙ୍ଗେ ସମ୍ପର୍କ ରଖିଛନ୍ତି ଆଗ ସେହି ବାଟକୁ ଆକ୍ରମଣ କରିବାକୁ ପଡ଼ିବ ।

ସେ କହିଲେ "ଏଡ଼େ ବଡ଼ ଧାଡ଼ିଟାକୁ ସେମାନେ କେବେହେଲେ ରକ୍ଷାକରି ପାରିବେ ନାହିଁ । ଏ ଅସମ୍ଭବ କଥା । ମୁଁ ନିଜେ ସେ ଧାଡ଼ି ଭୁଶୁଡ଼ି ପଡ଼ିବ ବୋଲି ମୁଁ ନିଜର ଜବାବ ଦେଇ ପାରିବ । ମୋତେ ପାଞ୍ଚଶ ଲୋକ ଦିଅନ୍ତୁ ମୁଁ ତାଙ୍କ ଯୋଗସୂତ୍ର କାଟିଦେଇ ପଶିଯିବି । ଏତ ନିଶ୍ଚୟ କଥା, ଏଠି କାଇଦା ହେଉଛି ସେମାନଙ୍କ ଭିତରେ ପଶିଯାଇ ଛପି ରହି ରହି ଯୁଦ୍ଧ କରିବା ।"

ତେନସଭ୍ ଠିଆହୋଇପଡ଼ି ନାନା ଅଙ୍ଗଭଙ୍ଗୀ କରି ବଲ୍‌କନସ୍କିଙ୍କ ଆଗରେ ତାଙ୍କ ଯୋଜନା ବୁଝାଇ ବାକୁ ଲାଗିଲେ । ସେ ତାଙ୍କକଥା ଅଧା କରିଥାନ୍ତି । ଏତିକିବେଳେ ସୈନ୍ୟ ବାହିନୀର କୁହାଟ ଶୁଭିଲା, ବାଜା ଶୁଭିଲା । ଗୀତ ଶୁଭିଲା । ସେ ଶବ୍ଦ ମାନ ଅଲଗା ଅଲଗା ଦଳ ଦଳ ସୈନ୍ୟଙ୍କ ଗହଣରୁ ଶୁଭୁଥାଏ । ଦୂରକୁ ସେ ଶବ୍ଦ ବଢ଼ିଚାଲି ହୋଇ ପଡ଼ୁଥାଏ । ଗାଁ ପଟୁ ଜୟଧ୍ୱନି ଶୁଭିଥାଏ ଆଉ ଘୋଡ଼ାଟାପୁ ଶବ୍ଦ ମଧ୍ୟ ଶୁଭୁଥାଏ । ଫାଟକ ପାଖେ ଯେଉଁ କୋସାକ୍ ସୈନ୍ୟକ ଠିଆ ହୋଇ ରହିଥିଲା ସେ ପାଟିକଲା "ଆଜ୍ଞା ମହିମା ବିଜେ କରୁଛନ୍ତି, ବିଜେ କରୁଛନ୍ତି ।"

ବଲକନସ୍କି ଓ ଡେନସଭ୍ ଫାଟକ ପାଖକୁ ଚାଲିଆସିଲେ । ସେଠାରେ ସେତେବେଳକୁ ଅଳ୍ପ କେତେଜଣ ସୈନ୍ୟ ଠିଆ ହୋଇଥାନ୍ତି (ସାମରିକ ଅଭ୍ୟର୍ଥନା ଜଣାଇବାକୁ ସେ ଦଳଟି ସେଠାରେ ଅପେକ୍ଷା କରିଥାଏ । ) ସେମାନେ ଦେଖିଲେ ଯେ ଗୋଟିଏ ଅଳ୍ପ ଉଚ୍ଚ ଛଉକା ଘୋଡ଼ାରେ ଚଢ଼ି ଗଳା ସେ ମୁଣ୍ଡ ଆଡ଼ୁ କୁଟୁଜଭ ଆସୁଥାନ୍ତି । ତାଙ୍କ ପଛେ ପଛେ ପ୍ରକାଣ୍ଡ ଦଳେ ସେନାପତି ଆସୁଥାନ୍ତି । ବାରକ୍ଲେଡ ପ୍ରାୟ ତାଙ୍କ ପାଖେ ପାଖେ ଥାନ୍ତି । ସେମାନଙ୍କ ପଛରେ ପୁଣି ଚାରିକଡ଼ରେ ଦଳେ ଅଫିସର ଦୌଡ଼ ଦୌଡ଼ ଚିତ୍କାର କରୁଥାନ୍ତି, "ଜୟ ! ଜୟ ।"

କୁଟୁଜଭ ପହଞ୍ଚିବା ଆଗରୁ ତାଙ୍କ ପାର୍ଶ୍ୱରେ ସେନାପତିମାନେ ଘୋଡ଼ାକୁ କଦମ ଛୁଟେଇ ଆପଣା ଭିତରେ ପହଞ୍ଚିଗଲେ । କୁଟୁଜଭ ଅଧିର ହୋଇ ତାଙ୍କ ଘୋଡ଼ାକୁ ଗୋଇଠା ମାରୁଥାନ୍ତି । ଘୋଡ଼ାଟି ତାଙ୍କ ବୋଝ ବୋହି ଆସ୍ତେ ଆସ୍ତେ ଗୋଟିଏ ଗୋଟିଏ ହୋଇ ଆସୁଥାଏ । କୁଟୁଜଭ ବାରମ୍ବାର ମୁଣ୍ଡ ହଲଉଥାନ୍ତି । ବାରମ୍ବାର ଟୋପିରେ ହାତ ଛୁଆଁଉଥାନ୍ତି । ଟୋପିଟା ଘୋଡ଼ାସବାର ସୈନ୍ୟ ବାହିନୀର ରକ୍ଷୀ ପିନ୍ଧିବା ଟୋପି, ଧଳାଟୋପିଟିଏ ସେଥିରେ ନାଲିଫିତା ଗୁଡ଼ା ହୋଇଛି କିନ୍ତୁ ଟୋପି ଉପରେ ଗୋଜ ନାହିଁ । ସାମରିକ ଅଭ୍ୟର୍ଥନା ଜଣାଇ ବାକୁ ଯେଉଁ ଦଳଟି ଠିଆ ହୋଇଥାଏ ସେ ତାଙ୍କରି ପାଖରେ ପହଞ୍ଚିଗଲେ । ବୋମା ଫୋପାଡ଼ିବା ବାଲା ହୃଷ୍ଟପୃଷ୍ଟ ସୈନ୍ୟ ଦଳେ ତାଙ୍କୁ ଅଭିବାଦନ ଜଣାଇଲେ । ସେଥିରୁ ଅନେକ ଘୋଡ଼ା ସବାର ସୈନ୍ୟ ମିନିଟିଏ କାଳ ଭୁନତାନ ହୋଇ ସେମାନଙ୍କ ଆଡ଼କୁ ଚାହିଁ ରହିଲେ । ଜଣେ ଲୋକ ତାର ଉପରେ ହୁକୁମ୍ ଜାରି କରିବାକୁ ଅଭ୍ୟସ୍ତ ହୋଇଗଲେ । ତା ଚାହାଣିରେ ସ୍ଥିର ଏକାଗ୍ରତା ଓ ନିବିଷ୍ଟତା । ଦଳେ ସେହିପରି ଥିଲା ତାଙ୍କ ଚାହାଣି । ତାପରେ ତାଙ୍କୁ ବେଢ଼ି ଯେଉଁ ସେନାପତିମାନେ ଓ ଅଫିସରମାନେ ଠିଆ ହୋଇଥିଲେ ସେ ସେମାନଙ୍କ ଆଡ଼କୁ ବୁଲି ପଡ଼ିଲେ । ହଠାତ୍ ତାଙ୍କ ମୁହଁରେ ଏକ ରହସ୍ୟମୟ ଭଙ୍ଗୀ ଖେଳିଗଲା । ସେ ଧନ୍ଦହେଲାପରି କାନ୍ଧକୁ ଥରାଇ ଥରାଇ କହିଲେ, "ଏମିତି ଟାଣୁଆ ମଣିଷ ସବୁ ଥାଉ ଥାଉ ଖାଲି କଣନା ପଳା-ପଳା-ପଳା । ଆଚ୍ଛା କଥା । ହଉ ନମସ୍କାର ସେନାପତି ମହାଶୟ ।" ଏତିକି କହି ଫାଟକ ପାଖେ ଯେଉଁଠି ପ୍ରିନ୍ସଆଣ୍ଡ୍ରେ ଓ

ଡେଜନସବ୍ ଠିଆ ହୋଇଥିଲେ । ସେ ତାଙ୍କ ଘୋଡ଼ାକୁ କେଣ୍ଡୁଦେଇ ସେହି-
ପଟ ଦେଇ ଭିତରକୁ ପଶିଗଲେ ।

ପଛଆଡ଼ୁ ପାଟି ଶୁଭୁଥାଏ, "ଜୟ ! ଜୟ ! ଜୟ !" ପ୍ରିନ୍ସ
ଆନ୍ଦ୍ରେ କୁଟୁଜଭଙ୍କୁ ପଚ୍ଛଥରକ ଯେମିତ ଦେଖିଥିଲେ ଏଥର ସେ ଆହୁରି
ମୋଟା ହୋଇ ଗଲାପରି ଜଣାପଡ଼ୁଥାଏ,, ଯେପରିକି ଏତେ ମୋଟା ସେ
ଆଗେ କେବେ ହୋଇ ନଥିଲେ । ସତେ ଯେମିତି ଖାଲି ସେ ଚର୍ବିରେ
ବୋଳି ହୋଇ ଲଟର ପଟର ହେଉଛନ୍ତି । କିନ୍ତୁ ସେହି ନିହ୍ଲା ଖଣ୍ଡିଆ
ଚିହ୍ନ, ଧଳା ଆଖି, ତାଙ୍କ ମୁହଁରେ ଦେହରେ ଦୋଳି ହୋଇ ପଡ଼ିଲା ପରି
ଠାଣି, ଏସବୁ ବଦଳି ନଥାଏ, ଯେମିତିକି ସେମିତି ରହିଛି । ଘୋଡ଼ା ସବାର
ସୈନ୍ୟଦଳର କର୍ମଚାରୀ ଯେଉଁ ଧଳା ଟୋପି ପିନ୍ଧନ୍ତି ସେମିତି ଟୋପିଟିଏ,
ଆଉ ଗୋଟାଏ ସାମରିକ କୋଟ୍ ପିନ୍ଧିଥାନ୍ତି । ତାଙ୍କ କାନ୍ଧରେ ଗୋଟାଏ
ଅଣଓସାରିଆ ଫିତାରେ ବନ୍ଧା ହୋଇ ଗୋଟାଏ ଚାବୁକ ଝୁଲୁଥାଏ ।
ସେ ଯେଉଁ ଘୋଡ଼ାରେ ବସିଥାନ୍ତି ସେଇଟା ଖୁବ୍ ଟାଣୁଆ ଘୋଡ଼ା
କିନ୍ତୁ ସେ ତା ଉପରେ ଓଜନ ହୋଇ ମାଡ଼ିହୋଇ ବସିଥିବାରୁ ଏକର
ସେକର ଝାଙ୍କି ହେଉଥାନ୍ତି ।

ଅଗଣା ଭିତରକୁ ଘୋଡ଼ା ଚଢ଼ି ଚାଲିଆସିଲା ବେଳେ ସେ ସିଟି
ମାରୁଥାନ୍ତି—"ଫଃ—ଫଃ—ଫଃ—।" ତାଙ୍କ ସିଟି ଶୁଭୁନଥାଏ । ଗୋଟାଏ
କଷ୍ଟ ଦେହ ମେହନତ କାମ କରିସାରି ଏଥର ବିଶ୍ରାମ କରିବ ବୋଲି
ଯେତେବେଳେ ଜଣେ ଭାବୁଥାଏ, ସେତେବେଳେ ତା ମୁହଁରେ ଯେପରି
ସ୍ବସ୍ତିର ଛାଇ ଦିଶେ, ତାଙ୍କ ମୁହଁକୁ ଦେଖି ସେହିପରି ଜଣାପଡ଼ୁଥାଏ ।
ସେ ପାଦରଖା ଭିତରୁ ବାଁ ପାଦକୁ କାଢ଼ିଦେଲେ । ସମୁଦାୟ
ଦେହକୁ ଝାଙ୍କି ଲେଫ୍ଟେଇ ଦେଇ ସେହି ପରିଶ୍ରମରେ ମୁହଁ ବିକୃତ କରି
ସେ ପାଦଟାକୁ ଜିନ୍ ଉପରକୁ ଟେକିଲେ । ଆଣ୍ଠୁ ଭଙ୍ଗିଦେଇ ନଇଁପଡ଼ି
ଗୋଟାଏ ଯନ୍ତ୍ରଣାମୟ ଚିତ୍କାର କରି ତାଙ୍କୁ ଧରିପକାଇବାକୁ ତାଙ୍କ ପାଖରେ
ଯେଉଁ କୋସାକ୍ ସୈନ୍ୟମାନେ ଆଉ ପାର୍ଶ୍ବରକ୍ଷୀମାନେ ପ୍ରସ୍ତୁତ ହୋଇ
ଠିଆ ହୋଇଥିଲେ, ସେ ତାଙ୍କର ହାତକୁ ଘୋଡ଼ା ପିଠିରୁ ଖସାଇ ପକାଇ-
ଦେଲେ ।

ସେ ପୁଣି ନିଜକୁ ସଜାଡ଼ିନେଲେ । ଅଧା ବୁଜା ଆଖିରେ ଚାରିଆଡ଼କୁ ଚାହିଁଲେ । ପ୍ରିନ୍ସ ଆନ୍ଦ୍ରେଙ୍କ ଆଡ଼କୁ ଚାହିଁଦେଇ ନସର ପସର ହୋଇ ପାହାଚ ଆଡ଼କୁ ଚାଲିଲେ । ତାଙ୍କୁ ଲାଗୁଥାଏ ଯେପରିକି ସେ ପ୍ରିନ୍ସ ଆନ୍ଦ୍ରେଙ୍କୁ ଚିହ୍ନି ପାରିଲେ ନାହିଁ ।

"ଫଃ—ଫଃ—ଫଃ " ସେ ସିଟି ମାରୁଥାନ୍ତି । ପୁଣି ସେ ଭୁଲପଡ଼ି ପ୍ରିନ୍ସ ଆନ୍ଦ୍ରେଙ୍କୁ ଚାହିଁଲେ । ଲୋକ ବୁଢ଼ା ହୋଇଗଲେ ସାଧାରଣତଃ ଯେମିତି ହୁଅନ୍ତି, ସେ ପ୍ରିନ୍ସ ଆନ୍ଦ୍ରେଙ୍କ ମୁହଁକୁ ଚାହିଁଲେ ବି ତାଙ୍କ ବ୍ୟକ୍ତିତ୍ୱଟା ହଠାତ୍ ତାଙ୍କର ମନେପଡ଼ିଲା ନାହିଁ । କ୍ଲାନ୍ତ ହୋଇ ପଡ଼ିଥିଲା ସ୍ୱରରେ ସେ କହିଲେ "ଆରେ, କେମିତି ଅଛ ବାବା, କେମିତି ଅଛ ? ଭଲଟି ? ଆସ ଆସ ।" ତାପରେ ସେ ସିଡ଼ିରେ ଚଢ଼ି ଚଢ଼ି ଉପରକୁ ଗଲେ । ତାଙ୍କ ଦେହ ଓଜନରେ ସିଡ଼ିଟା କଠ୍ କଠ୍ ଡାକୁଥାଏ । କୋଟ୍ ଖୋଲିଦେଇ ସେ ପିଣ୍ଡାରେ ଗୋଟିଏ ଆସନରେ ବସିପଡ଼ିଲେ ।

"ତୁମ ବାପା କେମିତି ଅଛନ୍ତି ?"

ପ୍ରିନ୍ସ ଆନ୍ଦ୍ରେ ସଂକ୍ଷେପରେ କହିଲେ "ତାଙ୍କ ମୃତ୍ୟୁ ଖବର ମୁଁ କାଲି ପାଇଲି ।" ଦୁଃଖରେ ଫାଡ଼ ହୋଇ ଯାଇଥିବା ଆଖି କରି କୁତୁଜଭ ତାଙ୍କ ଆଡ଼କୁ ଚାହିଁଲେ । ତାପରେ ସେ ମୃତଆତ୍ମା ପ୍ରତି ସମ୍ମାନ ଦେଖାଇ ଟୋପି ଖୋଲି ପକାଇ ଛାତି ଉପରେ ହାତରେ ହାତ ଛନ୍ଦି ଛକ ଚିହ୍ନ କରି କହିଲେ "ତାଙ୍କ ଆତ୍ମା ସ୍ୱର୍ଗରେ ଶାନ୍ତିରେ ରହୁ । ଆମ ସମସ୍ତଙ୍କ ପ୍ରତି ଈଶ୍ୱରଙ୍କର ଯେଉଁ ଇଚ୍ଛା ତା ପୂର୍ଣ୍ଣ ହେଉ ।"

ଏକ ପ୍ରକାଣ୍ଡ ଦୀର୍ଘଶ୍ୱାସ ଛାଡ଼ି ସେ ଟିକିଏ ଅଟକିଗଲେ । ତାପରେ କହିଲେ "ମୁଁ ତାଙ୍କୁ ଗଭୀର ଶ୍ରଦ୍ଧା କରୁଥିଲି । ସମ୍ମାନ ଦେଖାଉଥିଲି । ତୁମ ଦୁଃଖରେ ମୁଁ ଅନ୍ତର ସହିତ ସମବେଦନା ଜଣାଉଛି ବାବୁ ।"

ସେ ପ୍ରିନ୍ସ ଆନ୍ଦ୍ରେଙ୍କୁ କୁଣ୍ଢାଇ ପକାଇ ତାଙ୍କର ଚର୍ବି ବହୁଳ ଛାତିରେ ଜାକିଦେଲେ; କିଛିସମୟ ପର୍ଯ୍ୟନ୍ତ ତାଙ୍କୁ ଛାଡ଼ିଲେ ନାହିଁ । ଯେତେବେଳେ ତାଙ୍କୁ ଛାଡ଼ିଦେଲେ ସେତେବେଳେ ପ୍ରିନ୍ସ ଆନ୍ଦ୍ରେ

ଦେଖିଲେ ଯେ କୁତୁଜଭଙ୍କ ମୋଟା ଓଠ ଯୋଡ଼ିକ ଥରୁଚ, ତାଙ୍କ ଆଖିରେ ଲୁହ ଭରିଯାଇଛି । ସେ ଦୀର୍ଘଶ୍ୱାସ ପକାଇଲେ । ଆସନରୁ ଉଠିବାକୁ ସେ ଆନନ୍ଦରେ ହାତ ଯୋଡ଼ାକ ମାଡ଼ିଦେଲେ ।

ସେ କହିଲେ "ଆସ ଭିତରକୁ ଯିବା, ଟିକିଏ ଦୁଃଖ ସୁଖ ହେବା ଆସ ।" କିନ୍ତୁ ସେତିକିବେଳେ ଡେନିସଭ୍ ସାହସ ଦେଖାଇ ମାଡ଼ିଆସିଲେ । ଶତ୍ରୁପକ୍ଷକୁ ତାଙ୍କର ଯେମିତି ଡର ନଥାଏ ଉପରିସ୍ଥମାନଙ୍କୁ ବି ସେମିତି ତାଙ୍କର ଭୟ ନଥାଏ । ଘୋଡ଼ା କେଞ୍ଚିବା ଗୋଜମାନ ତାଙ୍କ ଗୋଡ଼ରେ ବନ୍ଧା ହୋଇଥାଏ । ବାହାରେ ଚାଲିଲାବେଳେ ଝୁଣ୍ ଝୁଣ୍ ଶବ୍ଦ ଶୁଭୁଥାଏ । ପାର୍ଶ୍ୱରକ୍ଷୀମାନେ ରାଗରେ ଫୁସ୍ ଫୁସ୍ ହୋଇ କୁହାକୁହି ହେଉଥାନ୍ତି ଆଉ ତାଙ୍କୁ ରୋକିବାକୁ ଚେଷ୍ଟା କରୁଥିଲେ ମଧ୍ୟ, ସେ ତାଙ୍କୁ ଭ୍ରୂକ୍ଷେପ କରୁନଥାନ୍ତି । କୁତୁଜଭ ଆସନରୁ ଉଠିବା ସକାଶେ ଆସନ ଉପରେ ସେମିତି ହାତ ଦିଟା ମାଡ଼ିଥାନ୍ତି । ସେ ଡେନିସଭଙ୍କ ଆଡ଼କୁ ବିରକ୍ତ ହୋଇ ଚାହିଁଲେ । ଡେନିସଭ୍ ଆପଣା ନାଁ କହି କହିଲେ ଯେ, ସମଗ୍ର ଋଷ୍ ଦେଶର ମଙ୍ଗଳ ସକାଶେ ସେ ତାଙ୍କ ପାଖକୁ ଆସିଛନ୍ତି । କୁତୁଜଭ ତାଙ୍କର କ୍ଳାନ୍ତ ଆଖିର ଚାହାଣୀକୁ ଡେନିସଭ ଉପରେ ପକାଇ ଦେଇ ବିରକ୍ତିର ଚିହ୍ନ ସ୍ୱରୂପ ତାଙ୍କ ହାତକୁ ଉପରକୁ ଟେକି ପୁଣି ତଳପେଟ ଉପରେ ଛକି ଦେଇ ଦେଇ ବାରମ୍ବାର କହିଲେ "ଓଃ ! ସମଗ୍ର ଋଷ ଦେଶର ମଙ୍ଗଳ ସକାଶେ ! କି କଥା ସେ ? କହନ୍ତୁ !"

ଯୁବତୀଟିଏ ଲାଜେଇହୋଇଗଲେ ଯେମିତି ନାଲି ପଡ଼ିଯାଏ ଡେନିସଭ୍ ସେମିତି ରଙ୍ଗା ପଡ଼ିଗଲେ (ସେହି କଠିନ ବୟସ୍କ ମଦ ଟେଣ୍ଡିବା ମୁହଁରେ କେମିତି ନାଲି ବୋଳା ହୋଇଯାଉଥିଲା ଦେଖିଲେ ଆଶ୍ଚର୍ଯ୍ୟ ଲାଗୁଥିଲା) କିନ୍ତୁ ଖୁବ ସାହସରେ ସେ ତାଙ୍କ ଯୋଜନାଟି ବୁଝାଇ କହିଲେ ଯେ କେମିତି ସ୍ମୋଲେନ୍ସ୍କ ଆଉ ଭ୍ୟାଜ୍ମା ଏ ଦୁଇ ସହର ମଝିରେ ଶତ୍ରୁ ପକ୍ଷର ଯୋଗାଯୋଗ କରିବାକୁ କାଟି ଦିଆଯାଇ ପାରିବ । ଡେନିସଭଙ୍କ ନିଜ ଘର ସେହି ଅଞ୍ଚଳରେ ଥିଲା । ସେ ସେପଟ ଅଞ୍ଚଳକୁ ଖୁବ ଭଲକରି ଜାଣିଥିଲେ । ତାଙ୍କ ଯୋଜନାଟି ଯେ ଗୋଟିଏ ଖୁବ ଭଲ ଯୋଜନା ସେଥିରେ କୌଣସି ସନ୍ଦେହ ନଥିଲା ପରି ଲାଗୁଥିଲା ।

ବିଶେଷତଃ ଏହି କାରଣରୁ ଯେ ସେ ଯେମିତି ଭଙ୍ଗୀରେ କଥା କହୁଥାନ୍ତି ତାଙ୍କ କଥା ଶୁଣିଲେହିଁ ଲୋକର ତାଙ୍କ କଥାରେ ବିଶ୍ୱାସ ଆସିଯିବ । କୁତୁଜଭ ଆପଣା ପାଦ ଆଡ଼କୁ ଏକ ଦୃଷ୍ଟିରେ ଚାହିଁ ରହିଲେ । ତା ପରେ ସେ ପାଖ ଘରର ଆଗଣା ଅଡ଼କୁ ସେମିତି ଚାହିଁ ରହିଲେ, ସତେ ଯେପରିକି ସେପଟୁ କ'ଣ ଅପ୍ରୀତିକର ବିଷୟ ସେଠିକି ଆସିବ ବୋଲି ସେ ଅପେକ୍ଷା କରିଛନ୍ତି । ପ୍ରକୃତରେ ବି ସେ ପାଖଘରୁ ଜଣେ ସେନାପତି ବାହାରିଲେ । ତାଙ୍କ କାଖ ତଳେ ଗୋଟାଏ କାଗଜ ରଖା ହୁଣି ଥାଏ । ଡେନିସଭ୍ କଥା କହୁଥାନ୍ତି, ଏତିକିବେଳେ ସେ ସେଠୁ ବାହାରି ପଡ଼ିଲେ ।

ଡେନିସଭ୍ ତାଙ୍କ ଯୋଜନା ବୁଝାଉଥାନ୍ତି । କଥା ମଝିରେ କୁତୁଜଭ୍ ପଚାରିଲେ "ଆପଣ ପ୍ରସ୍ତୁତ ହେଲେଣି ତ" ?

ସେ ଆଉ ସେନାପତି ଜଣକ କହିଲେ 'ହଁ ମଣିମା" । କୁତୁଜଭ ମଧ୍ୟ ମୁଣ୍ଡ ହଲାଇଲେ । ତାଙ୍କ ମୁଣ୍ଡ ହଲାଇବା ଭଙ୍ଗୀ ଯେପରି କହି ଦେଉଥାଏ "ଗୋଟାଏ ମଣିଷ ଏତେ କାମର ଦାଉ କେମିତି ଭଲ ସମ୍ଭାଳିବ !" ପୁଣି ଡେନିସଭ୍‌ଙ୍କ ଆଡ଼କୁ ସେ ଚାହିଁରହିଲେ ।

ଡେନିସଭ୍ କହୁଥାନ୍ତି "ଋଷ ଦେଶର ଜଣେ କର୍ମଚାରୀ ହିସାବରେ ମଣିମାଙ୍କ ଆଗରେ ପ୍ରତିଜ୍ଞା କରି କହୁଛି ମୁଁ ନେପୋଲିଅନର ଯୋଗସୂତ୍ର କାଟିଦେବି ।"

କୁତୁଜଭ୍ ତାଙ୍କ କଥାମଝିରେ କହିଲେ "ସେନାପତି କିରିଲ୍ ଆନ୍ଦ୍ରେଇଚ୍ ଡେନିସଭ୍ କ'ଣ ଆପଣଙ୍କର ବନ୍ଧୁବାନ୍ଧବ ?"

"ମଣିମା ସେ ମୋ ଦାଦା ।"

କୁତୁଜଭ୍ ଖୁସିହୋଇଯାଇ କହିଲେ "ଓ । ତାଙ୍କର ମୋର ଭାରି ବନ୍ଧୁତା ଥିଲା । ବାଃ ଭାରି ଭଲ, ଭାରି ଭଲ । ହଉ ବାବୁ ମୋର ପାର୍ଶ୍ୱରକ୍ଷୀ କର୍ମଚାରୀ ଦଳରେ ତୁମେ ଏଠାରେ ଥାଅ । କାଲି କଥା ଭାଷା ହେବା ।"

ସେ ଡେନିସଭ୍‌କୁ ଗୃହିଁ ମୁଣ୍ଡ ଟୁଙ୍ଗାରିଲେ । ସେଠାରୁ ଉଠିଯାଇ ସେନାପତି କୋନଭନିଭ୍‌ସିନ୍ ତାଙ୍କ ପାଖକୁ ଯେଉଁ କାଗଜ ପତ୍ର ଆଣିଥିଲେ ସେଇଟିକୁ ନେବେ ବୋଲି ହାତ ବଢ଼ାଇଲେ । ସେଠାରେ ଯେଉଁ ସେନାପତି ସେତେବେଳେ ଆପଣା କର୍ତ୍ତବ୍ୟ ଉପରେ ଥାନ୍ତି ସେ ଅସନ୍ତୁଷ୍ଟ ହେଲାପରି ସ୍ୱରରେ କହିଲେ "ମହିମା ଦୟାକରି ଭିତରକୁ ବିଜେ କରନ୍ତେ ନାହିଁ ? ନକ୍‌ସାଗୁଡ଼ାକ ଦେଖିବାକୁ ପଡ଼ିବ ଆଉ କେତେ କାଗଜ ଦସ୍ତଖତ କରିବାକୁ ପଡ଼ିବ ।" ଦୁଆର ମୁହଁରେ ଜଣେ ପାର୍ଶ୍ୱରକ୍ଷୀ ଦେଖାଦେଲେ । ସେ କହିଲେ ଘର ଭିତରେ ସବୁ ଠିକଣା କରାହୋଇଛି । କିନ୍ତୁ କୁଟୁଜଭଙ୍କର ଯେପରିକି ଇଚ୍ଛାହେଉଥାଏ ଯେ ଭିତରକୁ ଯିବା ଆଗରୁ ସେସବୁ ଝିଞ୍ଜଟ ତୁଟାଇଦେଇ ଯିବେ । ସେ ଅଟକି ଯାଇ କହିଲେ—

"ନାହିଁ ନାହିଁ । ଏଠିକି ଗୋଟାଏ ଟେବୁଲ ଅଣାଇଦେଲ ବାବୁ ! ମୁଁ ଏଇଠି ଏସବୁ ଦେଖିନେବି ।" ପ୍ରିନସ୍ ଆନ୍ଦ୍ରେଙ୍କୁ କହିଲେ "ତୁମେ ଯାଅନାହିଁ । ବସିପଡ଼ ଏଠି । ଆମେ ଟିକିଏ କଥା ଭାଷା ହେଉଁ । ଭାରି ଦୁଃଖର କଥା ବାବୁ । ଭାରି ଦୁଃଖର କଥା । ତେବେ ଏକଥା ମନେରଖିଥିବ ବାବୁ, ମୋତେ ତୁମ ବାପାଙ୍କ ପରି ଭାବିବ । ମୁଁ ତୁମର ଆଉ ଗୋଟିଏ ବାପ... ।"

ତାଙ୍କ ବାପାଙ୍କ ଅନ୍ତିମ ଦଶା ବିଷୟରେ ପ୍ରିନ୍‌ସ ଆନ୍ଦ୍ରେ ଯାହା ଜାଣିଥିଲେ ସବୁ କୁଟଜଭଙ୍କ ଆଗରେ କହିଲେ । ଲିଶ୍ରାପାହାଡ଼ରେ ଯାହା ଯାହା ସେ ଦେଖିଆସିଲେ ସବୁ ବର୍ଣ୍ଣନା କଲେ । ପ୍ରିନ୍‌ସ ଆନ୍ଦ୍ରେ ତାଙ୍କୁ ଯାହା କହିଲେ ସେଥିରେ ସତେକି ଋଷ ଦେଶ କି ଅବସ୍ଥାରେ ଆସି ପଡ଼ିଲାଣି ସେକଥା ତାଙ୍କୁ ଜଳ ଜଳ ହୋଇ ଦିଶିଗଲା । ହଠାତ୍ ସେ ଭାବ ଗଦ୍ ଗଦ୍ ସ୍ୱରରେ କହିଲେ—

"ଓଃ ! ଆମକୁ ଏ କି ଦଶା ଆସି ଘୋଟିଗଲା ।"

ସେ ପୁଣି କହିଲେ "ଟିକିଏ ରହିଥା, ଟିକିଏ ରହିଥା, ତାଙ୍କ ମୁହଁର ଠାଣିରେ ପ୍ରତିହିଂସା ଫୁଟି ଉଠିଲା ।

ସେଉଁ କଥା ପଡ଼ିଲେ ସେ ଶଧର ଭବେ ଅଭିଭୂତ ହୋଇପଡ଼ୁଥାନ୍ତି, ସେପରି କଥା ଉଠାଇବାକୁ ତାଙ୍କର ମନ ହେଉନଥାଏ । ସେହିପରି ଭାବ ଦେଖାଇ ସେ କହିଲେ—

"ମୁଁ ତମକୁ ଏଇଥି ପାଇଁ ଡକାଇ ଥିଲି ଯେ, ମୋର ଇଚ୍ଛା ତୁମେ ମୋ ପାଖରେ ରହିବ ।"

ପ୍ରିନ୍‌ସ ଆନ୍ଦ୍ରେ କହିଲେ "ମୁଁ ମଣିମାଙ୍କୁ ଧନ୍ୟବାଦ ଜଣାଉଛି ।" ମୁରୁକି ହସିଦେଇ ପୁଣି କହିଲେ "କିନ୍ତୁ ମୋର ଡ଼ର ହେଉଛି ଯେ, ଆଉ ମଣିମାଙ୍କ ପାର୍ଶ୍ୱରକ୍ଷୀ ଦଳରେ ରହିବାକୁ ମୋର ଆଉ ସାମର୍ଥ୍ୟ ନାହିଁ ।"

କୁତୁଜଭ ତାଙ୍କ ହସକୁ ବନ୍ଦ କଲେ । ତାଙ୍କ ଆଡ଼କୁ ପଚ୍ଛରିଲି ପରି ଚାହିଁଲେ । ପ୍ରିନ୍‌ସ ଆନ୍ଦ୍ରେ କହିଲେ "ସବୁଠୁ ବଡ଼ କଥା ହେଉଛି ଯେ ମୋ ସୈନ୍ୟ ଦଳ ସଙ୍ଗରେ ରହିବା ମୋତେ ଆରେଇ ଗଲାଣି । ମୁଁ ସେ କର୍ମଚାରୀମାନଙ୍କୁ ଭଲ ପାଉଛି । ମୋତେ ଲାଗୁଛି ସେ ସୈନ୍ୟମାନେ ବି କାଳକ୍ରମେ ମୋତେ ଭଲ ପାଇବେ । ସେ ସୈନ୍ୟ-ଦଳକୁ ଛାଡ଼ିଗଲେ ମୋର ମନଦୁଃଖ ହେବ । ମଣିମାଙ୍କ ଗହଣରେ ରହିଥିଲେ ମୋର ବହୁତ ସମ୍ମାନ ବଢ଼ିଥାନ୍ତା । ମୁଁ ଯେ ସେ ସମ୍ମାନ ନେବାକୁ ମନାକରି ଦେଉଛି, ତାର କାରଣ ହେଉଛି ମଣିମା, ମୋ କଥାକୁ ବିଶ୍ୱାସ କରନ୍ତୁ । ମୁଁ ଗୁହାରି କରୁଛି,—ତାର ଏଇ କାରଣ ଯେ—

କୁତୁଜଭଙ୍କ ମାଉଁସିଆ ମୁହଁ ତେଜି ଉଠିଲା । ତାର ଠାଣିରେ ଚତୁରତା ଆଉ ଖୁସି ବାସିଆ ମନୋଭାବ ସଙ୍ଗେ ସଙ୍ଗେ ଗୁପ୍ତ ବିଦ୍ରୂପରେ ଝଲକାଇ ଦେଇ ଫୁଟି ଉଠିଲା ।

ପ୍ରିନ୍‌ସ ଆନ୍ଦ୍ରେଙ୍କ କଥା ମଝିରେ କାଟିଦେଇ ସେ କହିଲେ "ତୁମେ ମୋର କାମରେ ଲାଗିଥାନ୍ତ ଏ କଥାରେ ଆଉ କଣ ସନ୍ଦେହ ଅଛି ? ତେବେ ତୁମେ ଯାହା କହୁଚ ତା ଠିକ୍ କଥା । ତୁମର କଥା ଠିକ୍ । ସତରେ ତ, ଏଠି ଆମର ଲୋକ ଦରକାର ନାହାନ୍ତି । ଉପଦେଶ ଦେବା ଲୋକ ଯେତେବେଳେ ଖୋଜିଲେ ଗଣ୍ଡା ଗଣ୍ଡା ମିଳିବେ । ଅସଲ ମଣିଷ ମିଳିବା

ଅଭାବ । ଯେଉଁମାନଙ୍କର ଉପଦେଶ ଦେବା ଲୋକ ହେବାକୁ ଇଚ୍ଛା ସେମାନେ ଉପଦେଶ ନଦେଇ ଯଦି ତମର ପରି ଯାଇ ସୈନ୍ୟବାହିନୀରେ ରହି କାମ କରିବେ ; ତେବେ ସୈନ୍ୟଦଳଗୁଡ଼ିକ ବର୍ତ୍ତମାନ ଯେଭଳି ଅବସ୍ଥାରେ ଆସି ପଡ଼ିଲେଣି ସେପରି ଖରାପ ଅବସ୍ଥାରେ ନଥାନ୍ତା । ଅଷ୍ଟରଲିଜ୍ ଯୁଦ୍ଧ କ୍ଷେତ୍ରରେ ତୁମେ ଯାହା କଲ ତା ମୋର ମନେ ଅଛି । ତୁମେ ଯେତେବେଳେ ପତାକାଟିକୁ ଟେକିଧରି ମାଡ଼ି ଚାଲିଥିଲ ସେକଥା ମଧ୍ୟ ମୋର ମନେ ଅଛି ।"

କୁତୁଜଭଙ୍କ କଥାଶୁଣି ପ୍ରିନ୍‌ସ ଆନ୍ଦ୍ରେଙ୍କ ମୁହଁ ଆନନ୍ଦରେ ଝଲସି ଉଠିଲା । କୁତୁଜଭ ତା ଆଡ଼କୁ ହାତ ବଢ଼ାଇଦେଲେ, ଚୁମ୍ବନ କରିବାକୁ ତାଙ୍କ ଆଡ଼କୁ ନିଜ ଗାଲ ଦେଖାଇଦେଲେ । ପୁଣି ବୁଢ଼ାଙ୍କ ଆଖିରେ ପ୍ରିନ୍‌ସ ଆନ୍ଦ୍ରେ ଲୁହ ଦେଖିଲେ । ପ୍ରିନ୍‌ସ ଆନ୍ଦ୍ରେ ଜାଣିଥିଲେ ଯେ କୁତୁଜଭଙ୍କ ଆଖିରେ ସହଜରେ ଲୁହ ଆସେ । ଆଉ ଜାଣିଗଲେ ଯେ ତାଙ୍କ ଦୁଃଖରେ ସହାନୁଭୂତି ଦେଖାଇବାପାଇଁ ସେ ବିଶେଷ ଭାବରେ ତାଙ୍କ ପ୍ରତି ସ୍ନେହ ଓ କୋମଳତା ଦେଖାଉଛନ୍ତି । ତଥାପି ସେ ଅଷ୍ଟରଲିଜ୍ ଯୁଦ୍ଧର ସ୍ମୃତି ମନେ ପକାଇଦେଲେ ବୋଲି ପ୍ରିନ୍‌ସ ଆନ୍ଦ୍ରେଙ୍କ ମନକୁ ରୁଚିକର ଲାଗିଲା ଓ ତାଙ୍କ ମନ ପ୍ରଶଂସା ପାଇଲା ପରି ଫୁଲି ଉଠିଲା ।

କୁତୁଜଭ କହିଲେ "ଯାଅ ବାପା, ତୁମେ ଯେଉଁ ବାଟ ବାଛିଚ ସେହିବାଟେ ଚାଲ । ଭଗବାନ ତମକୁ ସେ ବାଟରେ ଆଶୀର୍ବାଦ କରନ୍ତୁ... ମୁଁ ଜାଣେ, ତୁମେ ଯେଉଁ ବାଟ ଧରିଛ ସମ୍ମାନ ଆଣିବାର ବାଟ ସେହି ।

ସେ ବଳିଯାଇ କହିଲେ "ହଉ ବାପା ବିଦାୟ । ମନେରଖିଥିବ ଯେ ତୁମର ଦୁଃଖରେ ମୁଁ ମୋ ଅନ୍ତର ସହିତ ସମଦୁଃଖୀ । ମନେ-ରଖିଥିବ ତୁମପାଇଁ ମୁଁ ମହିମା ନୁହେଁ କି ପ୍ରିନ୍‌ସ ନୁହେଁ କି ପ୍ରଧାନ ସେନାପତି ନୁହେଁ । ମୁଁ ଖାଲି ତୁମର ବାପା, ଅନ୍ୟ କିଛି ନୁହେଁ । ଯେତେବେଳେ କିଛି ଦରକାର ହେଉଥିବ ସିଧାସଳଖ ମୋ ପାଖକୁ ଚାଲି ଆସୁଥିବ । ଯାଅ ପୁଅ, ବିଦାୟ ।" ପୁଣି ସେ ତାଙ୍କୁ କୁଣ୍ଢେଇ ପକାଇ ଗେଲ କଲେ ।

ତାଙ୍କର କ'ଣ ହେଲା, କାହିଁକି ଏମିତି ହେଲା । ପ୍ରିନ୍ସ ଆନ୍ଦ୍ରେ ଯେତେବେଳେ ସୈନ୍ୟଦଳକୁ ଲେଉଟିଗଲେ ସେତେବେଳେ ଯୁଦ୍ଧର ଭବିଷ୍ୟତ ବିଷୟରେ ସେ ନିଶ୍ଚିନ୍ତ ହୋଇଥିଲେ ଓ ଯେଉଁ ଲୋକ ଉପରେ ସେ ଯୁଦ୍ଧର ନେତୃତ୍ୱର ଭର ଥିଲା ତାଙ୍କଠି ତାଙ୍କର ନିର୍ଭରପୂର୍ଣ୍ଣ ବିଶ୍ୱାସ ଆସିଯାଇଥିଲା । ସେ ପରିଷ୍କାର ଦେଖିପାରିଲେ ଯେ ବୃଦ୍ଧ ନେତାଙ୍କଠି ତାଙ୍କର ବ୍ୟକ୍ତିଗତ ହୋଇ କିଛି ଗୁଣ ନାହିଁ । ତାଙ୍କଠି ତାଙ୍କ ପୁରୁଣା ବ୍ୟକ୍ତିତ୍ୱହିଁ ନାହିଁ ବରଂ ତା ପରିବର୍ତ୍ତେ ରହିଯାଇଛି କେତେକଗୁଡ଼ାଏ ଅଭ୍ୟାସ ଆଉ କେତେଗୁଡ଼ାଏ ଝୁଙ୍କ । ଘଟଣାକୁ ବୁଝି ଯୋଜନା କଲାଭଳି ବୁଦ୍ଧି ତାଙ୍କଠି ନାହିଁ । କେବଳ ଘଟଣା ଯାହା ହେବାର ହୋଇପାଇଛି, ଶାନ୍ତ ହୋଇ ତାକୁ ଭାବିବା ଏତିକି ସେ ନେତାଙ୍କଠି ଅବଶିଷ୍ଟ ରହିଛି । ପ୍ରିନ୍ସ ଆନ୍ଦ୍ରେ ଯେତିକି ପରିଷ୍କାର କରି ଏକଥା ଦେଖିପାରୁଥାନ୍ତି ସେତିକି ସେତିକି ସେ ଭାବୁଥାନ୍ତି ଯେ ଯାହା ଯେପରି ହେବା ଉଚିତ୍ ତା ଠିକ୍ ହେଉଛି ।

ପ୍ରିନ୍ସ ଆନ୍ଦ୍ରେ ଭାବୁଥାନ୍ତି "ଆପଣା ଭିତରୁ କାଢ଼ି ସେ କୌଣସି କଥା କରିବେ ନାହିଁ । ସେ ନିଜେ କିଛି ଉପାୟ ପାଞ୍ଚିବେ ନାହିଁ । ନିଜେ କିଛି ଭୁଲାଇବେ ନାହିଁ । କିନ୍ତୁ ସେ ସବୁ ଶୁଣିବେ, ସବୁକଥା ହେଉ କରିବେ । ଯେଉଁଟାକୁ ଯେଉଁଠି ଥୋଇବା କଥା ସେକଥା କରିବେ । ଯେଉଁ କାମଟା କଲେ ଉପକାର ହେବ ସେଥିରେ ବାଧା ଉପୁଜାଇବେ ନାହିଁ । ଯେଉଁ କଥା କଲେ ଅନିଷ୍ଟ ହେବ ତା କରିବାକୁ ନେବେ ନାହିଁ । ସେ ଜାଣନ୍ତି ଯେ ତାଙ୍କ ନିଜର ମନବଳ ଅପେକ୍ଷା ଆହୁରି ଅଧିକା ବଳଶାଳୀ ଆହୁରି ଗୁରୁତର ହୋଇ କିଛି ଗୋଟାଏ ଅଛି । ସେଇଟା ହେଉଛି ଅବଶ୍ୟମ୍ଭାବୀ ଘଟଣାମାନଙ୍କ କ୍ରମ । ତାଙ୍କ ଆଖିକୁ ସେଗୁଡ଼ାକ ଦିଶିଯାଏ, ତା'ର ଘଟଣାର୍ଥ, ସେ ବୁଝିପାରନ୍ତି । ତାର ସ୍ୱରୂପ ସେ ବୁଝିପାରନ୍ତି ବୋଲି ତା ସଙ୍ଗରେ ଲାଗିବା କି ଆପଣା ଇଚ୍ଛା ଅନୁସାରେ ଚଳିବା, କି ଅନ୍ୟ କେଉଁଆଡ଼େ ଲକ୍ଷ ରଖିବା ଏସବୁ କାମରୁ ସେ ବିରତ ହୁଅନ୍ତି ।"

ପୁଣି ପ୍ରିନ୍ସ ଆନ୍ଦ୍ରେ ଭାବୁଥାନ୍ତି, "ଯେଉଁ ପ୍ରଧାନ କାରଣରୁ ଲୋକ ତାଙ୍କ କଥାକୁ ବିଶ୍ୱାସ କରେ—ସେ କାରଣ ହେଉଛି ଯେ ସେ ରୁଷର

ଲୋକ ଆଉ ସେ ଯେତେବେଳେ କହୁଥିଲେ "ଆମକୁ କି ଦଶା ଆସି ଘୋଟିଗଲା" ସେତେବେଳେ ତାଙ୍କ ସ୍ୱର ବାରହେଉଥିଲା ।"

ଉଣା ଅଧିକେ ଜାଣିଶୁଣି ସମସ୍ତେ ଏପରି ଭାବୁଥିଲେ । ତେଣୁ ରାଜ ଦରବାରରେ ଯେଉଁ କୂଟ ଚକ୍ରାନ୍ତ ମାନ ଚାଲିଥିଲା ତାକୁ ବିରୋଧ କରି ସମଗ୍ର ଜାତିର ଏକାଗ୍ର କାମନା ଅନୁଯାୟୀ ଯେତେବେଳେ କୁଟୁଜଭଙ୍କୁ ପ୍ରଧାନ ସେନାପତି ପଦରେ ନିଯୁକ୍ତ କରାଗଲା । ସମସ୍ତେ ସମ-ସ୍ୱରରେ ସ୍ୱାଗତ ଜଣାଇଥିଲେ ।

ବିଦାକେବେ ପାଗ ଖରାପ ରହିଲା ଉତ୍ତାରୁ ୨୪ ତାରିଖ ଦିନ ଉଜ୍ଜ୍ୱଳ ଖରା ପଡ଼ିଥିଲା । ସେଦିନ ପିଏରେ ଖାଇସାରି ମସ୍କୋରୁ ବାହାରିଲେ । ସେଠାରେ ସେ ଶୁଣିଲେ ଯେ ସେଦିନ ସଞ୍ଜବୁଡ଼େ ଗୋଟାଏ ତୁମୁଳ ଯୁଦ୍ଧ ହୋଇଯାଇ ସାରିଛି । ଲୋକେ କହିଲେ ଯେ, ତୋପ ଶବ୍ଦରେ ପେରହୁସ୍କୋଭେରେ ଦୁଲୁକୁ ଥିଲା । ସେ ଯୁଦ୍ଧରେ ବିଜୟ ମିଳିଲା ବା ପରାଜୟ ମିଳିଲା ପିଏରେର ଏ ପ୍ରଶ୍ନର ଉତ୍ତର କେହି ଦେଇପାରିଲେ ନାହିଁ । ଏ ହେଉଛି ସେ ଭର୍ଦ୍ଦିନୋରେ ୨୪ ତାରିଖର ଯୁଦ୍ଧ । ପାହାନ୍ତିଆ ଆଡ଼କୁ ପିଏରେ ମୋଜହାଇସ୍କ ପାଖ ପାଖ ହେଲେ । ମୋଜ୍ ହାଇସ୍କରେ ସବୁ ଘରେ ସୈନ୍ୟମାନେ ବସା କରି ରହିଥାନ୍ତି । ସରେଇ ଘରେ ପିଏରେ ତାର ଗାଡ଼ି ଆଉ ଗାଡ଼ିଆନଙ୍କୁ ଭେଟିଲେ । ସେ ସରେଇ ଘରର ବଖରାଏ ବି ଘର ଖାଲି ନଥିଲା । ସେ ସରେଇଟାଯାକ ଖାଲି ଅଫିସରମାନେ ଖୁନ୍ଦି ହୋଇ ରହିଥାନ୍ତି ।

ମୋଜ୍ ହାଇସ୍କଠୁଁ ଆଗକୁ ଗଲାବେଳକୁ ଦେଖାଗଲା ଯେ ସବୁଠି ଖାଲି ସୈନ୍ୟ ରହିଛନ୍ତି, ନହେଲେ ଚାଲିଛନ୍ତି କେସାକ୍, ପଦାତିକ, ଅଶ୍ୱାରୋହୀ, ଗାଡ଼ି, ତୋପବୁହା ଗାଡ଼ି, ତୋପ, ସବୁଠାରେ ଏହିପରି ।

ସେ ଭର୍ଦ୍ଦିନୋର କୁଦ ଆଗରେ ୨୪ ତାରିଖରେ ଯୁଦ୍ଧଟା ହୋଇଥିଲା । ୨୫ ତାରିଖରେ ଦୁଇପକ୍ଷ ଭିତରୁ କୌଣସି ପକ୍ଷରୁ ବି ଗୁଳି ଫୁଟିଲା ନାହିଁ ।

୨୭ ତାରିଖରେ ବୋରୋଦିନୋଠାରେ ଯୁଦ୍ଧ ହୋଇଥିଲା । ୨୫ ତାରିଖର ସକାଳେ ପିଏରେ ଘୋଡ଼ାଗାଡ଼ି ଚଢ଼ି ମୋଜାଇସ୍କରୁ ବାହାରିଲା । ଆହତ ସୈନ୍ୟମାନେ ଗାଡ଼ିରେ ବୁହା ହେଉଥାନ୍ତି ସେ ଅସଂଖ୍ୟ ଗାଡ଼ିର ଧାର ଲାଗିଥାଏ । ଗାଡ଼ିଗୁଡ଼ାକ ଧୀରେ ଧୀରେ ଯାଉଥାଏ । ସେହିସବୁ ଗାଡ଼ି ଗହଳି ଭିତରେ ଯାଇ ପିଏରେ ତାତାରିନୋଭୋରେ ପହଞ୍ଚିଲା । ଗୋଟାଏ ଢିପ ଉପରେ ପହଞ୍ଚି ସେ ଗାଡ଼ିରୁ ଓହ୍ଲାଇ ପଡ଼ିଲା । ସେତେବେଳେ ଦିନ ୧୧ଟା ବାଜିଥାଏ । ସୂର୍ଯ୍ୟ ଟିକିଏ ବାଁକୁ ଢଳିଥାନ୍ତି । ପାଗ ସଫା ଥାଏ । ଧୀର ପବନ ବୋହୁଥାଏ । ସାମ୍ନାରେ ଅର୍ଦ୍ଧଚନ୍ଦ୍ର ଆକୃତିରେ ପଡ଼ିଥାଏ ବିଶାଳ ଦୃଶ୍ୟପଟ, ଉଜ୍ଜ୍ୱଳ ଖରାରେ ସେ ଦୃଶ୍ୟ ଜକ୍ ଜକ୍ ଦିଶୁଥାଏ ।

ସେହି ଦୃଶ୍ୟପଟ ଅର୍ଦ୍ଧଚନ୍ଦ୍ର ପରି ଭୂଖଣ୍ଡ ବାଟଦେଇ ବଙ୍କେଇ ସାପେଇ ଚାଲି ଯାଇଥାଏ । ସ୍ମୋଲେନସ୍କକୁ ଗିବାକୁ ସଡ଼କ ଢିପ ଉପରେ ବାଁ ପଟେ ସେ ଭୂଖଣ୍ଡକୁ ଦୁଇଖଣ୍ଡ କରିଦେଇ ଚାଲିଥାଏ । ଗୋଟାଏ ଗାଁ ଭିତରବାଟେ ସେ ସଡ଼କଟି ପଡ଼ିଥାଏ ।

ସେ ଗାଁରେ ଗୋଟିଏ ଧଳା ପ୍ରାର୍ଥନା ମନ୍ଦିର । ଢିପଠାରୁ ପାଞ୍ଚ ପାହୁଣ୍ଡ ଦୂରରେ ବୋରୋଦିନୋ ଗାଁ । ସ୍ମୋଲେନସ୍କ ଯିବା ସଡ଼କଟି ଗାଁ ବାଟ ଦେଇ ତଳକୁ ତଳକୁ ଗୋଟାଏ ପୋଲ ଉପରେ ଯାଇଥାଏ । ବଙ୍କେଇ ବଙ୍କେଇ ପାହାଡ଼ ଉପରକୁ ଉଠିଥାଏ, ପାହାଡ଼ ତାଳୁରେ ଓହ୍ଲେଇ ଯାଇଥାଏ । ପୁଣି ରାସ୍ତାଟି ଉଠି ଉଠିକା ପଲ୍ଲୀଗାଁ ଭେଲୁଏଭକୁ ଯାଇଥାଏ । ଏଠାରୁ ଛଅ ଭର୍ସଟ୍ ବାଟ ଦୂରରେ ନେପୋଲିଅନ୍ ରହି ଥାଆନ୍ତି । ଦିଗ୍‌ବଳୟରେ ହଳଦିଆ ଦିଶି ଭାଲୁଏଭ୍ ପିଠିଆଡ଼େ ଗୋଟିଏ ବଣ ଗହଳି ଭିତରେ ରାସ୍ତାଟି ହଜି ଯାଇଥାଏ । ବାର୍ଚ୍ଚ ଓ ପାଇନ୍ ଗଛର ବଣ ଆଡ଼ୁଆଳରେ ବହୁତ ଦୂରରେ ରାସ୍ତାର ଡାହାଣ ପଟେ କଲତ୍ସ୍କିର ମଠର ପ୍ରାର୍ଥନା ମନ୍ଦିର ଉପରର ଗମ୍ବୁଜ ଆଉ ଛକ ଜକ ଜକ ଦିଶୁଥାଏ । ଦୂରର ନୀଳିମାଭିତରେ ଏଠି ସେଠି ହୋଇ ବଣର ବାଆଁ-ଡାହାଣେ ସୈନ୍ୟ ଛାଉଣିର ଅଗ୍ନି ନିଆଁର ଧୂଆଁ ପରି ଦିଶୁଥାଏ ଓ ରୁଷ ପକ୍ଷର ସୈନ୍ୟଦଳମାନ ଓ ଫରାସୀ

ପକ୍ଷର ସୈନ୍ୟ ଦଳମାନ ଅସ୍ପଷ୍ଟ ହୋଇ ଦିଶୁଥାନ୍ତି । ଡାହାଣ ପଟେ କାଲୋଶା ମସ୍କା ନଈମାନଙ୍କ ଗତିପଥ କରେ କରେ ଅଞ୍ଚଳଟା ଭଙ୍ଗା ଭଙ୍ଗା ଆଉ ପାହାଡ଼ିଆ । ପାହାଡ଼ମାନଙ୍କ ସନ୍ଧି ଭିତରେ ବେଦୁବୋଭୋ ଓ ଜାହାରନୋ ଏ ଗାଁ ଯୋଡ଼ିକ ଦିଶୁଥାଏ । ବାଁପଟେ ଭୂଇଁ ବେଶି ସମତଳ, ସେଠି ଶସ୍ୟ ଭର୍ତ୍ତି କ୍ଷେତ ଦିଶୁଥାଏ, ଆଉ ଗୋଟାଏ ଗାଁରୁ ଧୂଆଁ ଉଠୁଥାଏ, ସେ ଗାଁଟିକୁ ନିଆଁ ଲଗାଇ ପୋଡ଼ିଦିଆ ହୋଇଥାଏ ।

ପିଏରେ ଯେତେ ଯାହା ଦେଖିଲେ ସବୁ ଅନିଶ୍ଚିତ । ଆପଣା ମନ ଭିତରେ ଯେଉଁ ଭାବନା ଖେଳୁଥାଏ ତା ସହିତ ସମ୍ପୂର୍ଣ୍ଣ ସାମଞ୍ଜସ୍ୟ ରଖି ତା ସାମ୍ନାର ଦୃଶ୍ୟର କୌଣସି ଅଂଶ ଥାପି ପାରୁ ନଥାଏ । ସେ ମନେ ମନେ ଯେଉଁ ଯୁଦ୍ଧ କ୍ଷେତ୍ର ଦେଖିବ ବୋଲି ଭାବିଥିଲା, ପଦାରେ କୌଣସିଠାରେ ତାର ପତା ହିଁ ନଥିଲା, ସବୁଠି କେବଳ କ୍ଷେତ, ଉପତ୍ୟକା, ସୈନ୍ୟଦଳ, ଜଙ୍ଗଲ, ଅଗିନିଆଁ, ଗାଁ, କୁଦ ନ ହେଲେ ନଈ । ପିଏରେ ଯେତେ ଚେଷ୍ଟାକଲା ସେହି ଜୀବନ୍ତ ଦୃଶ୍ୟ ଉପରେ କେଉଁଠି ଠାଏ ହେଲେ ଗୋଟାଏ ଯୁଦ୍ଧ ଘାଟି ଦେଖି ପାରିଲା ନାହିଁ । କେଉଁ ସୈନ୍ୟମାନେ ରୁଷ୍ ପକ୍ଷରେ, କିଏ ଫରାସୀ ପଟର ତା ବି ସେ ବାରି ପାରିଲା ନାହିଁ ।

ସେ ଭାବିଲା 'ଯେ, ଏସବୁ କଥା ଯିଏ ବୁଝେ ସେଭଳି ଜଣକୁ ପଚାରି ବୁଝିବାକୁ ହେବ ।' ଜଣେ ସାମରିକ କର୍ମଚାରୀ ସେ ପ୍ରକାର ହୋଇଥିବାରୁ ବେସାମରିକ ମଣିଷଟାକୁ କୁତୂହଳରେ ଚାହିଁ ରହିଥିଲା ।

ପିଏରେ ତାକୁହିଁ ପଚାରିଲା—"ଆଜ୍ଞା ପଦେ କଥା ପଚାରିବାକୁ ମନ ହେଉଛି, ଅନୁମତି ଦିଅନ୍ତୁ । ଆଜ୍ଞା, ଆମ ସାମ୍ନାରେ ସେଇଟା କେଉଁ ଗାଁ ?" କର୍ମଚାରୀ ପଚାରିଲା ଭଙ୍ଗୀରେ ତାଙ୍କ ସାଙ୍ଗ ଆଡ଼କୁ ବୁଲିପଡ଼ି କହିଲେ, "ସେ ଗାଁ ନା ବୁର୍ଦ୍ଦୋନୋ ?" ଆଉ ଜଣକ ସଂଶୋଧନ କରି କହିଲା "ବରୋଜିନୋ" । କଥାବାର୍ତ୍ତା ହେବାକୁ ଟିକିଏ ଖିଞ୍ଚା ମିଳିଲା ଦେଖି କର୍ମଚାରୀଟି ଖୁସିହୋଇଯାଇ ପିଏରେର ଆହୁରି ପାଖକୁ ଗଲା ।

ପିଏରେ ପଚାରିଲା "ହେଇ ସେଠି ଯେଉଁ ସୈନ୍ୟ ଦେଖାଯାଉଛନ୍ତି ସେମାନେ କଣ ଆମ ପକ୍ଷର ?" କର୍ମଚାରୀ କହିଲା "ହଁ ସେମାନେ ଆମ ଲୋକ, ଦୂରରେ ଯେଉଁମାନେ ଦିଶୁଛନ୍ତି ସେମାନେ ଫରାସୀ ।" "କାହିଁ କେଉଁଠି ? କାହାନ୍ତି ?" ପିଏରେ ପଚାରିଲା "ଖାଲି ଆଖିରେତ ମଣିଷ ତାଙ୍କୁ ଦେଖି ପାରିବ ।" କର୍ମଚାରୀ କହିଲେ "ହେଇ ଦେଖନ୍ତୁ ।"

ନଈ ସେ କରେ ଯେଉଁଠି ଧୂଆଁ ଉଠୁଥିଲା କର୍ମଚାରୀ ସେହି ଆଡ଼କୁ ହାତ ଦେଖାଇଲେ । ପିଏରେ ଆଜି ଯେଉଁମାନଙ୍କୁ ଭେଟିଥିଲା ସେମାନଙ୍କ ମୁହଁରେ ଯେପରି ରୂକ୍ଷ ଗମ୍ଭୀର ଠାଣି ଫୁଟିଥିଲା ତାଙ୍କ ମୁହଁବ ସେହିପରି ଦିଶିଲା ।

"ଓଃ ! ଏଇମାନେ ଫରାସୀ ସୈନ୍ୟ ! ଆଉ ହେଇ ସେଠି ?" ଠିପର ବାଁ ପଟେ ଯେଉଁଠି ସୈନ୍ୟ ଦିଶୁଥିଲେ ପିଏରେ ସେ ଆଡ଼କୁ ହାତ ଦେଖାଇଲା ।

"ସେମାନେ ଆମ ପକ୍ଷର ସୈନ୍ୟ ।"

"ସତେ ନା ? ଆଉ ହେଇ ସେଠି ?" ପିଏରେ ପୁଣି ଦୂରରେ ଥିବା ଆଉ ଗୋଟିଏ କୁଦ ଆଡ଼କୁ ହାତ ଦେଖାଇଲା । ସେଠି ଗୋଟିଏ ଗଛ ଦିଶୁଥାଏ । ତା ପାଖରେ ଗୋଟାଏ ଗାଁ ଦିଶୁଥାଏ । ଗାଁଟି ପର୍ବତ ଫାଙ୍କ ଭିତରେ ରହିଥାଏ । ସେଠି ଅଳ୍ପ କଳାହୋଇ କ'ଣ ଦେଖାଯାଉଥାଏ ଓ ଅଗିନିଆଁର ଧୂଆଁ ଉଠୁଥାଏ ।

କର୍ମଚାରୀ ପୁଣି କହିଲେ "ଓ ! ସେଇଟା ପୁଣି ଆମ ଶତ୍ରୁପକ୍ଷ ।" (ସେ ଜାଗାଟା ଶେଭାରଡ଼ିନୋର ପରିଖା ବେଢ଼ା ସୈନ୍ୟଘାଟି) କାଲି ସେ କୁଦଟା ଥିଲା ଆମର, ଆଜି ସେଇଟା ଶତ୍ରୁର ।"

"ତେବେ ଆମ ଘାଟୀ କେଉଁଠା ?"

କର୍ମଚାରୀ ତୃପ୍ତିରେ ହସିଦେଇ କହିଲେ, ଓ ! ଆମ ଘାଟିକଥା ପଚାରୁଛନ୍ତି ନା ?

ମୁଁ ସବୁ ଭଲକରି ବୁଝାଇ ଦେଇ ପାରିବ ଯେ । ଆମର ଯେତେଘାଟି ଅଛି ସବୁ ତିଆରି କଲାବେଳେ ମୋର ସେଗୁଡ଼ିକ ସହ ସମ୍ପର୍କ

ଥିଲା । ସେଇଥିପାଇଁ ହେଇ ଦେଖନ୍ତୁ ଆମର କେନ୍ଦ୍ର ଘାଟି ବରୋଦ୍ଦନୋ ଗାଁରେ ରହିଛି । ଦେଖିପାରୁଛନ୍ତି ନା ? ତାହା ସାମ୍ନାରେ ଯେଉଁ ଗାଁଟି ଥିଲା, ଯେଉଁଠି ଗୋଟିଏ ଧଳା ପ୍ରାର୍ଥନା ମନ୍ଦିର ସେ ସେହି ଆଡ଼କୁ ହାତ ଦେଖାଇ ଦେଲେ । ହେଇ ଦେଖନ୍ତୁ, ଯେଉଁଠି ଖାଲୁଆ ଜମିରେ ନଡ଼ା କଟା ହୋଇ ଏବେ ବ ଧାଡ଼ି ଧାଡ଼ି ହୋଇ ଗଦା ହୋଇଛି, ସେଇଠି ଅଛି ପୋଲ । ସେଇଟା ଆମ ପକ୍ଷର କେନ୍ଦ୍ର ଯାଗା । ଆମ ଡାହାଣ କଇଟା ହେଇ ତେଣେ ଦୂରରେ ରହିଛି । (ଡାହାଣ ପଟେ ବହୁତ ଦୂରରେ ପାହାଡ଼ ଭିତରେ ଯେଉଁ ଖାଲମାନ ଦିଶୁଥାଏ ସେ ସେହି ଆଡ଼କୁ ହାତ ଦେଖାଇଲେ) ହେଇ ସେଠି ମସ୍କୱା ନଈ, ସେଇଠି ଆମେ ତିନ ତିନଟା ଘର ଠାଣୁଆ ବ୍ୟୁହ କରି ରଖିଛୁ । ଆମ ବାଁ ପାଖଟା···" କହୁ କହୁ କର୍ମଗୁରୁ ଅଟକିଗଲେ । କହିଲେ, "ବୁଝିଲେ ଆଜ୍ଞା, ସେଇଟା ବୁଝେଇବା ଟିକିଏ କଷ୍ଟ । କାଲି ବୁଝିଥିଲେନା, ଆମ ବାଁ କଇଟା ଥିଲା ଶେଭାରଦିନୋ - ଗାଁ । ହେଇ ସେଠି ଯେଉଁଠି ଓକ୍ ଗଛଟା ଅଛି ଦିଶୁଛି ନା ? କିନ୍ତୁ ବର୍ତ୍ତମାନ ଆମେ ଆମ ବାଁ ପାଖଟାକୁ ଓଠାର ଆଣିଲୁଣି । ବର୍ତ୍ତମାନ ତା ସୀମାଟା ଯାଇ ହେଇ ସେଠି, ଯେଉଁଠି ଧୂଆଁ ଉଠୁଛି, ଗାଁଟାଏ ଅଛି ସେମ୍ୟୋନଭସ୍କୟେ ଗାଁ ।" ରାଏଭସ୍କିଙ୍କ ବ୍ୟୁହ ଆଡ଼କୁ ହାତ ଦେଖାଇ ସେ ବୁଝେଇଲେ. "ଆଉ ହେଇଟି ଚାହାନ୍ତୁ, ତେବେ ଲଢେଇଟା ସେଠି ବୋଧହୁଏ ଲାଗିବ ନାହିଁ । ଯେତେଦୂର ସମ୍ଭବ ଶତ୍ରୁପକ୍ଷ ଅବଶ୍ୟ ସୈନ୍ୟଙ୍କୁ ସେଠିକି ଘୁଞ୍ଚେଇ ଆଣିଲାଣି, ତେବେ ସେଇଟା କଣ ଜାଣିଲେନା ? —ଗୋଟାଏ ଧୂଆଁ ବାଣ । ଶତ୍ରୁପକ୍ଷ ବୋଧହୁଏ ଆମ ଡାହାଣକର ପଟେ ବୁଲି ପଡ଼ିବାକୁ ଚେଷ୍ଟାକରିବ । ଛାଡ଼ନ୍ତୁ, ସେ ଯାହାହେଉ କାଲି ସକାଳୁ ହାଜର ପଡ଼ିଲାବେଳକୁ ବହୁତ ଲୋକଙ୍କର ପତ୍ତା ମିଳୁନଥିବ ।"

ହଠାତ୍ ବହୁତ ମଣିଷଙ୍କ ଭୁଣ୍ଡ ଶୁଭିଲା "ଆରେ ଆସିଲେରେ··· ହେଇତ ଦେଖ ଆସୁଛନ୍ତି, ସେମାନେ ଠାକୁରାଣୀଙ୍କି ଘେନି ଆସୁଛନ୍ତି । ଠାକୁରାଣୀ ବିଜେ କରୁଛନ୍ତି ହେଇଟି ଦେଖ···ଆଉ ମିନଟ୍କ ମଧ୍ୟରେ ପହଞ୍ଚିଯିବେ ।"

ବୋରେଦ୍ଦନୋରୁ ବାହାର ପାହାଡ଼କୁ ଚଢ଼ି ଚଢ଼ିକା ଭଜନାଳୟର ଗୋଟିଏ ଶୋଭାଯାତ୍ରା ଆସୁଥାଏ । ତା ଆଗେ ଆଗେ ଧୂଳିଆ ରାସ୍ତାରେ ପଦାତିକ ସୈନ୍ୟମାନଙ୍କର ଗୋଟିଏ ଦଳ ଭାର ଛାଁଟରେ ମାର୍ଚ୍ଚ କରି କରି ଆସୁଥାଏ । ସୈନ୍ୟମାନେ ସମ୍ମାନ ଦେଖାଇ ତାଙ୍କ ବନ୍ଧୁକ ଆଉ ସାମରିକ ଟୋପିମାନଙ୍କୁ ତଳକୁ ଓହଳାଇ ରଖିଥାନ୍ତି । ତାଙ୍କ ପଛେ ପଛେ ଭଜନାଳୟର ପ୍ରାର୍ଥନା ସଙ୍ଗୀତ ବୋଲି ହେବାର ଶୁଭୁଥାଏ ।

ସୈନ୍ୟମାନେ ଓ ଚଷାମାନେ ମୁଣ୍ଡ ଖୋଲିରଖି ତା ପାଖକୁ ଦୌଡ଼ି ଦୌଡ଼ି ଆସିଲେ । ସେମାନେ ପିଏରେ ପାଖରେ ପହଞ୍ଚିଗଲେ ।

ପାଟି ଶୁଭୁଥାଏ, "ଆମ ରକ୍ଷାକାରଣୀ ଠାକୁରାଣୀଙ୍କି ନେଇ ଆସୁଛନ୍ତି ହୋ । ଇଭର୍ସ୍କିର ଠାକୁରାଣୀ ମା'ଙ୍କୁ ଆଣୁଛନ୍ତି ।" ଆଉଜଣେ ସଂଶୋଧନ କରିଦେଲା, "ନାଇମ ସ୍ମୋଲେନ୍‌ସ୍କର ମା ଠାକୁରାଣୀ"

ଗାଁରେ ଯେଉଁ ସୈନ୍ୟମାନେ ଥିଲେ ପୁଣି ଯେଉଁ ସୈନ୍ୟମାନେ ତୋପ ବାଟି ତିଆରି କାମରେ ଲାଗିଥିଲେ ସେମାନେ ସମସ୍ତେ ତାଙ୍କ କୋଡ଼ି କାଙ୍କ ତଳେ ଫୋପାଡ଼ିଦେଇ ସେ ଶୋଭା ଯାତ୍ରାକୁ ଭେଟିବେ ବୋଲି ଧାଇଁ ଧାଇଁ ଆସିଲେ । ଧୂଳିଆ ରାସ୍ତାରେ ସୈନ୍ୟ ଦଳଟିଏ ଚାଲିଥାଏ, ତା ପଛରେ ଧର୍ମ ପୁରୋହିତମାନେ ପ୍ରାର୍ଥନା ବେଳର ବେଶ ପିନ୍ଧି ଚାଲିଥାନ୍ତି । ଜଣେ ଚୁଟିଆ ହୋଇ ବୁଢ଼ାଟିଏ ଆସୁଥାନ୍ତି । ଧର୍ମଯାଜକ ଯେଉଁ ଓଢ଼ଣା ପିନ୍ଧନ୍ତି ସେ ସେଇଥିରୁ ଗୋଟିଏ ପିନ୍ଧିଥାନ୍ତି । ତାଙ୍କ ପଛେ ପଛେ ତାଙ୍କଠାରୁ ପଦରେ ସାନ ଧର୍ମଯାଜକମାନେ ଓ ଗିର୍ଜା ଘରର ସଙ୍କୀର୍ତ୍ତନଆମାନେ ଚାଲିଥାନ୍ତି । ତାଙ୍କ ପଛେ ପଛେ ସୈନ୍ୟମାନେ ଓ କର୍ମଚାରୀମାନେ ଏକ ପ୍ରକାଣ୍ଡ ଠାକୁରାଣୀ ଛବି କାନ୍ଧେଇ ଚାଲିଥାନ୍ତି ।

ସେ ଛବି ରୂପାରେ ବନ୍ଧା ହୋଇଥାଏ, ତା ମୁହଁ କଳା କଳା ଦିଶୁଥାଏ । ସ୍ମଲେନ୍‌ସ୍କରୁ ଯେଉଁ ଠାକୁରାଣୀ ଛବି ଅଣା ହୋଇଥାଏ, ଆଉ ଯେଉଁ ଛବି ସେହି ଦିନଠୁଁ ସୈନ୍ୟ ବାହିନୀର ସଙ୍ଗେ ସଙ୍ଗେ ଥାଏ ଏ ସେହି

ଛବି । ତା ଆଗରେ ପଛରେ ଚାରିକଡ଼ରେ ଦଳ ଦଳ ହୋଇ ସୈନ୍ୟମାନେ ଚାଲିଥାନ୍ତି ଓ ଦୌଡ଼ୁଥାନ୍ତି । ସେମାନେ ମାନ୍ୟ ଦେଖାଇ ମୁଣ୍ଡରୁ ଟୋପି ଖୋଲି ପକାଇ ଥାନ୍ତି, ଆଉ ମଝିରେ ମଝିରେ ଭୂଇଁରେ ଠାକୁରାଣୀଙ୍କ ଗୋଡ଼ ତଳେ ପଡ଼ୁଥାନ୍ତି ।

ହଠାତ୍ ସେ ଦଳ ବିଭାଗ ହୋଇ ଯାଇ ପିଏରେ ଆଡ଼କୁ ମାଡ଼ି ଆସିଲା । ଜଣେ କିଏ ଭାରି ଉଚ୍ଚପଦସ୍ଥ ଲୋକ, ସେ ଛବି ଆଡ଼କୁ ଆସୁଥାନ୍ତି; ଲୋକେ ଯେମିତି ଅତି ତର ତର ହୋଇ ତାଙ୍କ ପାଇଁ ବାଟ ଛାଡ଼ି ଦେଉଥାନ୍ତି, ସେଇଥିରୁ ଏହା ଜଣା ଯାଉଥାଏ ।

ସେ କୁତୁଜଭ । ସେ ସୈନ୍ୟ ଘାଟି ଚାରିକଡ଼େ ବୁଲି ବୁଲି ପରିଦର୍ଶନ କରୁଥିଲେ । ତାତାରି ନୋଭେକୁ ଲେଉଟିଲା ବେଳକୁ ବାଟରେ ସେ ସଂକୀର୍ତ୍ତନରେ ମିଶିଗଲେ । ତାଙ୍କର ବିଚିତ୍ର ଚେହେରା ଦେଖି ପିଏରେ ସାଙ୍ଗେ ସାଙ୍ଗେ ତାଙ୍କୁ ଚିହ୍ନି ପକାଇଲେ ।

ସେ ଏକ ଭାରି ଲମ୍ବ ଯାମିରଙ୍କ କୋଟ୍ ଗଳେଇଥାନ୍ତି । ତହିଁରେ ତାଙ୍କର ପ୍ରକାଣ୍ଡ ମୋଟା ଦେହଟାର ପିଠି ନଇଁ ଯାଇ ଥାଏ । ତାଙ୍କର ଧଳାମୁଣ୍ଡ ଖୋଲାଥାଏ । ତାଙ୍କର ଫୁଲିଲା ଫୁଲିଲା ମୁହଁରେ ଧଳା କଣା ଆଖିଟା ଦିଶୁଥାଏ । ସେ ଢଳି ଢଳି ଚାଲୁଥାନ୍ତି । ସାନ ସାନ ପାହୁଣ୍ଡ ପକାଇ ଏକରକୁ ସେକର ଏମିତି ନସର ପୁସର ହୋଇ ବଡକ ଚାଲିଲାପରି ଚାଲୁଥାନ୍ତି । ସେ ସେହି ସମ୍ପ୍ରଦାୟ ଭିତରକୁ ପଶିଯାଇ ଧର୍ମ ପୁରୋହିତଙ୍କ ପଛଆଡ଼େ ଠିଆ ହେଲେ । ସେ ତାଙ୍କର ଅଭ୍ୟସ୍ତ ମୁଦ୍ରା କରି ହାତରେ ହୀର ଛକ ଦେଇ ଛକ ଚିହ୍ନ କଲେ । ହାତ ଭୂମିରେ ଲାଗିବା ଯାକେ ତଳକୁ ନୁଇଁ ପଡ଼ିଲେ । ଏକ ପ୍ରକାଣ୍ଡ ଦୀର୍ଘନିଶ୍ୱାସ ଛାଡ଼ି ସେ ତାଙ୍କର ଧୋବଲା ମୁଣ୍ଡକୁ ନୁଆଇଁ ପ୍ରଣାମ କଲେ । କୁତୁଜଭଙ୍କ ପଛେ ପଛେ ସେନାପତି ବେନିଗ୍‌ସେନ୍ ଓ ତାଙ୍କ ଗହଣରେ ଥିବା ସବୁ କର୍ମଚାରୀ ମଧ୍ୟ ପ୍ରଣାମ କଲେ । ସେନାପତି ସେଠାରେ ଥିବାରୁ ସବୁ ଉଚ୍ଚ ପଦସ୍ଥ କର୍ମଚାରୀମାନେ ସେଠାକୁ ବଳେ ଓଟାରି ହୋଇ ଆସିଥିଲେ; କିନ୍ତୁ ତା ସତ୍ତ୍ୱେ ସେମାନଙ୍କ ଆଡ଼କୁ ନ ଚାହିଁ ସୈନ୍ୟମାନେ ପ୍ରାର୍ଥନା କରିବାକୁ ଲାଗିଲେ ।

ପ୍ରାର୍ଥନା ଯେମିତ ସରଗଲା ସେମିତ କୁଭୁଦଭ, ସେ ଠାକୁରାଣୀ ଛବ ପାଖକୁ ଚାଲିଯାଇ ଦୁମ୍‌କନା ଆଣ୍ଠୁ ମାଡ଼ି ବସି ପଡ଼ି ମାଟିରେ ମୁଣ୍ଡ ଲଗାଇଦେଇ ଗୋଡ଼ତଳେ ପଡ଼ିଗଲେ । ତାପରେ ବହୁତ ବେଳଯାଏ ସେ ଉଠିବାକୁ ଚେଷ୍ଟା କରୁଥାନ୍ତି । କିନ୍ତୁ ତାଙ୍କ ଦେହର ଦୁର୍ବଳତା, ପୁଣି ତାଙ୍କର ପ୍ରକାଣ୍ଡ ଓଜନ ଶରୀର, ପାଇଁ ସେ ଉଠିପାରୁ ନଥାନ୍ତି । ଭୂଇଁରୁ ଉଠିବାକୁ ଚେଷ୍ଟା କରିବାକୁ ତାଙ୍କୁ ଯେଉଁ ଶ୍ରମ ପଡ଼ୁଥାଏ, ସେଥିରେ ତାଙ୍କର ଧୋବଲା ମୁଣ୍ଡଟି ଥରି ଯାଉଥାଏ । ଶେଷରେ ସେ ଉଠିଲେ ।

ତା'ପରେ ଶ୍ଳେଷ୍ଟ ପିଲାପରି ଓଠକୁ ଗୋଳା କରି ସେ ଛବିକୁ ଚୁମ୍ବନ କଲେ ଏବଂ ପ୍ରଣାମ କଲେ । ତାଙ୍କର ଗୋଟିଏ ହାତ ଭୂଇଁରେ ଛୁଆଁ ଇଥାନ୍ତି । ଅନ୍ୟାନ୍ୟ ସେନାପତିମାନେ ତାଙ୍କ ଆଦର୍ଶ ଅନୁକରଣ କଲେ । ତା'ପରେ କର୍ମଚାରୀମାନେ ମଧ୍ୟ ସେପରି କଲେ । ତାଙ୍କ ପଛେ ପଛେ ସୈନ୍ୟମାନେ ଧାଇଁ ଧାଇଁ ଚାଲିଲେ । ସେମାନଙ୍କ ମୁହଁରେ ଉତ୍ତେଜନା ଖେଳୁଥାଏ । ସେମାନେ ଠେଲା ଠେଲି ଅଣନିଶ୍ୱାସୀ ହୋଇ ଆଗକୁ ଆଗକୁ ଦୌଡ଼ୁଥାନ୍ତି । ପିଏରେ ପଛଆଡ଼ୁ ଦଳ ଦଳ ମଣିଷଙ୍କ ଠେଲା ଖାଇ ଟଳିଟଳିକା ଆଗକୁ ଠେଲି ହୋଇ ଚାଲିଥାଏ । ସେ ଚାରିଆଡ଼କୁ ଚାହିଁଲା । କିଏ ଜଣେ କହିଲା "କାଉଣ୍ଟ ! ପିଅତର କିରିଲିଚ । ଆପଣ ଏ ଜାଗାକୁ କେମିତି ଆସିଲେ ? ପିଏରେ ବୁଲିପଡ଼ି ଚାହିଁଲା ।

ସେ ଦେଖିଲା ବୋରିସ୍ ଦ୍ରୁବେତ୍ସ୍କ । ସେ ଗୋଟାଏ ହାତରେ ତା' ଆଣ୍ଠୁ ଉପର ପୋଷାକକୁ ଝାଡ଼ିବାରେ ଲାଗିଥାଏ । (ବୋଧହୁଏ ସେ ଛବି ଆଗରେ ପ୍ରଣାମ କଲାବେଳେ ସେଥିରେ ଧୂଳି ଲାଗିଯାଇଥିଲା ।) ବୋରିସ୍ ହସି ହସି ପିଏରେ ଆଡ଼କୁ ଆସିଲା । ବୋରିସ ଭାରି ସୁନ୍ଦର ପୋଷାକ ପିନ୍ଧିଥାଏ । ସେ ଯେଉଁ ପୋଷାକ ପିନ୍ଧିଥାଏ ସେମିତି ପୋଷାକ ଲଢ଼େଇ ଲାଗିଥିଲା ବେଳେ ପିନ୍ଧିବା ବିଧି । ସେ ଗୋଟାଏ ଲମ୍ବା ସାମରିକ କୋଟ ପିନ୍ଧିଥାଏ ଓ କୁଭୁଦଭଙ୍କ ପରି ତା' କାନ୍ଧରେ ବି ଗୋଟାଏ ଘୋଡ଼ା ଚଢ଼ିବା ବେଳର ଚାବୁକ୍‌ଟିଏ ଓହଳିଥାଏ ।

କୁତୁଜଭ ସେତେବେଳକୁ ଗାଁରେ ପହଞ୍ଚି ଯାଇଥାନ୍ତି । ଆଗ ଯେଉଁ ଘର ପାଇଲେ ସେହି ଘରର ପ୍ରାଇଟରେ ସେ ବସି ପଡ଼ିଲେ । ସେ ବସିବେ ବୋଲି ଜଣେ କୋସକ ସୈନିକ ଦୌଡ଼ିଯାଇ ଗୋଟାଏ ବେଞ୍ଚଧରି ଆସିଲା । ଆଉ ଜଣେ କୋସକ ସୈନିକ ତରତର କରି ତା ଉପରେ ଗୋଟାଏ କମ୍ବଳ ପାରିଦେଲା । କୁତୁଜଭ ସେଇ ବେଞ୍ଚ ଉପରେ ବସି ପଡ଼ିଲେ । ଭାରି ଚମତ୍କାର ପୋଷାକ ପିନ୍ଧା ଦଳେ ଅଫିସର ତାଙ୍କୁ ବେଢ଼ିଗଲେ ।

ଶୋଭାଯାତ୍ରା ଆହୁରି ଦୂରକୁ ଦୂରକୁ ଚାଲି ଯାଉଥାଏ । ତା ପଛେ ପଛେ ଗହଳି ଧାଇଁ ଥାଏ । କୁତୁଜଭଙ୍କଠୁଁ ଡଜଣ ପାହୁଣ୍ଡ ଦୂରରେ ପିଏରେ ଠିଆ ହୋଇରହି ବୋରିସ୍ ସଙ୍ଗରେ କଥାଭାଷା ହେଉଥାଏ ।

ପିଏରେ ବୋରିସ୍ ଆଗରେ ତାର ଇଚ୍ଛା ପ୍ରକାଶ କରି କହିଲା ଯେ, ତାର ଇଚ୍ଛା ସେ ଯୁଦ୍ଧରେ ଅଂଶ ନେବ ଓ ସୈନ୍ୟଘାଟି ବୁଲି ବୁଲି ପରିଦର୍ଶନ କରିବ ।

ବୋରିସ ତାକୁ କହିଲା, "ରୁହନ୍ତୁ, ଆପଣ କ'ଣ କଲେ ଭଲହେବ ମୁଁ କହୁଛି ଶୁଣନ୍ତୁ । ମୁଁ ଆପଣଙ୍କ ସଙ୍ଗରେ ରହି ବହୁମାନ କରି ଆପଣଙ୍କୁ ସୁବିଧା କରିଦେବି । କାଉଣ୍ଟ ବେନିଗସେନ୍ ଯେଉଁଠି ରହିବେ ଆପଣ ସେଇଠି ରହିଲେ ସବୁ ଭଲ କରି ଦେଖି ପାରିବେ । ମୁଁ ତାଙ୍କରି ପାଖରେ ରହୁଛି । ମୁଁ ତାଙ୍କୁ ଏକଥା କହିବି । ଆପଣ ଯଦି ଘାଟି ବୁଲିପାଖ ବୁଲି ଦେଖିବେ କହୁଛନ୍ତି ତ ଆମ ସଙ୍ଗରେ ଆସନ୍ତୁ । ଆମେ ତ ଏଇ ସଙ୍ଗେ ସଙ୍ଗେ ବାଁ ପାଖ ଆଡ଼କୁ ଯାଉଛୁଁ । ଆଉ ମୋର ପ୍ରାର୍ଥନା, ଆମେ ସେଣୁ ଫେରି ଆସିଲେ ଆପଣ ଆଜ ରାତିକ ମୋରି ପାଖରେ ରହିବେ । ଆମେ ଏକାଠି ତାସ ଖେଳିବା । ଦ୍ମିତ୍ରୀ ସାର୍ଗିଚ୍‌କୁ ଆପଣ ଜାଣିଥିବେ ନିଶ୍ଚୟ । ହେଇ ତା ବସା "ଗର୍କି ସହରରେ ତୃତୀୟ ଘର ଆଡ଼କୁ ସେ ହାତ ଦେଖାଇଲା" । ପିଏରେ କହିଲା—

"କିନ୍ତୁ ଆମ ଡାହାଣ ପାର୍ଶ୍ୱଟାକୁ ଦେଖିବାକୁ ପରା ମୋର ଇଚ୍ଛା ହେଉଥିଲା । ମୁଁ ଶୁଣିଚି ସେଇ ପାର୍ଶ୍ୱଟା କୁଆଡ଼େ ଭାରି ଟାଣୁଆ । ମୁଁ

ଘରୁଥିଲା ମସ୍କୋ ନଗରଠୁ ଆରମ୍ଭ କରି ଗ୍ରୁଜଶି ଗ୍ରାମଆଡ଼ଯାକେ ଥରେ ବୁଲି ଆସିଥାନ୍ତି ।”

“ହଁ ଇଚ୍ଛା ହେଲେ ପରେ ଯାଇପାରିବେ, ତେବେ ଅସଲ ହେଉଛି ବାଁ ପାଖଟା ।” ପିଏରେ କହିଲା “ହଉ ହଉ । ଆଚ୍ଛା ପ୍ରିନ୍ସ ବଲ୍‌କନସ୍କିଙ୍କ ସୈନ୍ୟଦଳ କେଉଁଠି ରହିଛନ୍ତି ? ମତେ ଟିକିଏ ଦେଖାଇ ଦିଅନ୍ତେ ନାହିଁ ?”

“ଆନ୍ଦ୍ରେ ନିକୋଲାଇଏଭିଚଙ୍କ ଦଳଟି ? ଆମେ ସେବାଟେ ଯିବା ଯେ । ମୁଁ ଆପଣଙ୍କୁ ତାଙ୍କ ପାଖକୁ ନେଇଯିବି ।”

ପିଏରେର ଅନ୍ୟାନ୍ୟ ଚିହ୍ନାଥିବା ଲୋକେ ତା ସଙ୍ଗରେ ଆସି ମିଶିଲେ ।

ମସ୍କୋର ହାଲ ଚାଲ କ’ଣ ସେ ବିଷୟରେ ତା ଉପରେ ଯେତେ ପ୍ରଶ୍ନ ବୃଷ୍ଟି ହେଲା ତାର ଉତ୍ତର ଦେବାକୁ କି ସେମାନେ ସବୁ ତାକୁ ଯେତେକଥା କହିବାକୁ ବସିଲେ ସେସବୁ କଥା ଶୁଣିବାକୁ ପିଏରେକୁ ଆଦୌ ବେଳ ହେଲାନାହିଁ । ସମସ୍ତିଙ୍କ ମୁହଁରେ ଉତ୍ତେଜନା ଆଉ ଉଦ୍‌ବେଗ ପୂରି ରହିଥାଏ । କିନ୍ତୁ ପିଏରକୁ ଲାଗୁଥାଏ ଯେ କେତେଗୁଡ଼ିଏ ମୁହଁରେ ଯେଉଁ ଉତ୍ତେଜନା ଖେଳୁଥାଏ ତାର କାରଣ ସେମାନଙ୍କ ବ୍ୟକ୍ତିଗତ ସାଫଲ୍ୟ ବିଷୟକ ପ୍ରଶ୍ନମାନଙ୍କରେ ଖୋଜିଲେ ମିଳିବ । ଅନ୍ୟ କେତେଗୁଡ଼ିଏ ମୁହଁରେ ଯେଉଁ ଆଉ ପ୍ରକାରେ ଉତ୍ତେଜନାର ଚିହ୍ନାଣୀ ଖେଳୁଥାଏ ତାକୁ ସେ ଭୁଲିପାରିଲା ନାହିଁ । ସେ ଚିହ୍ନାଣୀ ଦେଖି ସମସ୍ୟାମାନ ମନେ ପଡ଼ୁଥାଏ । କିନ୍ତୁ ସେ ସମସ୍ୟା ଜଣ ଜଣଙ୍କର ବ୍ୟକ୍ତିଗତ ସଫଳତାର ସମସ୍ୟା ନୁହେଁ ଯେ, ଜୀବନ ମରଣର ସାର୍ବଜନୀନ ସମସ୍ୟା ।

କୁତୁଜଭ ପିଏରେର ଚେହେରାକୁ ଦେଖି ପକାଇଲେ, ଆଉ ତା ଚାରିପାଖେ ଯେଉଁ ଦଳ ବେଢ଼ିଥାନ୍ତି ସେମାନେ ତାଙ୍କ ନଜରରେ ପଡ଼ିଗଲେ ।

"ତାଙ୍କୁ ମୋ ପାଖକୁ ଡାକିଦିଅ ।" କୁତୁଜଭ କହିଲେ ।

ଜଣେ ପାର୍ଶ୍ୱବର୍ତ୍ତୀ କର୍ମଚାରୀ ଯାଇ ପିଏରେଙ୍କୁ ମହିମାଙ୍କ ଇଚ୍ଛା ଜଣାଇଲା ଓ ପିଏରେ ସେ ଆଡ଼କୁ ଚାଲିଲା ।

ଇତ୍ୟବସରରେ ବୋରିସ୍ ରାଜପରିଷଦ ସୁଲଭ ବୁଦ୍ଧି ଦେଖାଇ ପିଏରେ ସହିତ ପ୍ରଧାନ ସେନାପତିଙ୍କ ଆଡ଼କୁ ଚାଲିଯାଇଥିଲା ।

ସତେକି ଆଗରୁ କଥା କହୁଥିଲା । ସେହି କଥା ଲମ୍ବାଇ ଚାଲିଛି । ସେମିତି ଭାବ ଦେଖାଇ ଅତି ସହଜ ସାଧାରଣ ଭଙ୍ଗୀରେ ଶାନ୍ତ ସ୍ୱରରେ କହିଗଲା "ଗାଁରେ ଚଷା ସୈନ୍ୟମାନେ ମରିବାକୁ ଇଚ୍ଛାକରି ସଫାଧଳା ଜାମିଜମାନ ପିନ୍ଧି ଆସି ପହଞ୍ଚିଛନ୍ତି ଜାଉଣ୍ଟ । ବାପରେ କି ବୀରତ୍ୱ ।"

ବୋରିସ ଯେ ପିଏରେ ଆଗରେ ଏପରି କହିଲା ତାର ଉଦ୍ଦେଶ୍ୟ ବାରି ହୋଇ ପଡ଼ୁଥିଲା । ତା କଥା ପ୍ରଧାନ ସେନାପତିଙ୍କ କାନରେ ବାଜୁ ଏଇଥିପାଇଁ ସେ ଏପରି କହିଲା । ସେ ଜାଣିଥିଲା ଯେ ଏକଥା ଶୁଣିଲେ କୁତୁଜଭଙ୍କ ଧ୍ୟାନ ତେଣେ ଚାଲିଯିବ । ସତକୁ ସତ କୁତୁଜଭ ତାକୁ କହିଲେ "କଣ ଚଷା ସୈନ୍ୟମାନଙ୍କ ବିଷୟରେ ଆପଣ କହୁଥିଲେ ?"

"ମହିମା ସେମାନେ କାଲିକା ପାଇଁ ସଜ ହେବା ଲାଗି ଧଳା ଜାମିଜମାନ ପିନ୍ଧିଲେଣି, ମରିବାକୁ ପ୍ରସ୍ତୁତ ଥିବେ ବୋଲି ।"

କୁତୁଜଭ କହିଲେ "ଆଃ ! ଭାରି ଚମତ୍କାର, ଭାରି ଆଶ୍ଚର୍ଯ୍ୟ ମଣିଷ ସେମାନେ ।" ଆଖି ବୁଜିଦେଇ ମୁଣ୍ଡ ହଲାଇ ହଲାଇ ଗୋଟାଏ ଦୀର୍ଘଶ୍ୱାସ ପକାଇ ସେ ପୁଣି କହିଲେ "ଭାରି ଚମତ୍କାର, ଭାରି ଆଶ୍ଚର୍ଯ୍ୟ ଲୋକ ।"

ସେ ପିଏରେଙ୍କୁ କହିଲେ "ନାମ୍ ଟିକେ କହନ୍ତୁ ଅଜ୍ଞା ।" ହଁ, ଭାରି ରୁଚିକର ବାସ୍ନା । ଆପଣଙ୍କ ସ୍ତ୍ରୀଙ୍କର ଉପାସକମାନଙ୍କ ମଧ୍ୟରୁ ମୁଁ ଜଣେ । ସେତିକ ମୋର ସୌଭାଗ୍ୟ । ତାଙ୍କର ସବୁ ଭଲତ ? ଆପଣ ମୋ ବସାରେ ରହିଲେ ଧନ୍ୟ ହେବି ।

ତାପରେ ସବୁ ବୁଢ଼ାଲୋକ ଯେପରି ଶୂନ୍ୟ ଦୃଷ୍ଟିରେ ସ୍ୱରଆଡ଼କୁ ଚୃହାଁନ୍ତି କୁତୁଜଭ ବି ସେମିତି ଚୃହାଁଲେ ।

ବୋରସ ତାର ସେନାପତିଙ୍କ ଆଗରେ କ'ଣ ଦ'ପଦ କହିଲା । କାଉଣ୍ଟବେନିଗସେନ୍ ପିଏରେ ସଙ୍ଗରେ କଥାଭାଷା ହେଲେ । ସେ ପ୍ରସ୍ତାବ କଲେ ଯେ, 'ସେମାନଙ୍କ ସଙ୍ଗରେ ପିଏରେ ବି ସୈନ୍ୟସ୍ଥଳୀ ଧାଡ଼ିଏ ଧାଡ଼ିଏ ବୁଲିବାକୁ ଆସୁ ।

ଅଧଘଣ୍ଟାଏ ପରେ କୁତୁଜଭ ତାତାରିନୋଭକୁ ଲେଉଟି ଯାଉଥାନ୍ତି । ଏଣେ ବେନିଗସେନ୍ ଓ ତାଙ୍କ ପାର୍ଶ୍ୱ ରକ୍ଷୀମାନେ ଆଉ ତାଙ୍କ ସଙ୍ଗରେ ପିଏରେ ଏହିପରି ସମସ୍ତେ ଏକାଠି ମିଶି ସୈନ୍ୟସ୍ଥଳୀର ଅବସ୍ଥା ପରିଦର୍ଶନ କରୁଥାନ୍ତି ।

ଟିପ ଉପରୁ କର୍ମଚାରୀ ଜଣକ ସୈନ୍ୟବାହିନୀର କେନ୍ଦ୍ରସ୍ଥଳ ବୋଲି ପିଏରକୁ ଯେଉଁ ଜାଗାଟାକୁ ଦେଖାଇ ଦେଇଥିଲେ ଓ ଯେଉଁଠି ନଈ କୂଳରେ ନୂଆ ହୋଇ କଟା ହୋଇଥିବା ମିଠା ମିଠା ମହକୁଥିବା ଘାସ ଗଦା ଗଦା ହୋଇଥାଏ, ପିଏରେ ଗର୍କିରୁ ବାହାରି ସେହି ପୋଲ ଆଡ଼କୁ ଗଲେ । ସେମାନେ ପୋଲ ପାରିହୋଇ ବୋରୋଦିନୋ ଗାଁକୁ ଗଲେ । ପୁଣି ବାଁ ଆଡ଼କୁ ବୁଲିଗଲେ, ତାପରେ ଅସଂଖ୍ୟ ତୋପ ଅସଂଖ୍ୟ ସୈନ୍ୟମାନଙ୍କ କରପଟେ ହୋଇ ଗୋଟାଏ ମୁଣ୍ଡିଆ ଉପରକୁ ଆସିଲେ । ସେଠି ଚାଉଁଳି ସୈନ୍ୟମାନେ ମାଟି ଖୋଳା କାମରେ ଲାଗିଥାନ୍ତି । ଏଇଟା ସେଇ ଘାଟି ଯାହାର ସେତେବେଳେ ସଠିକ ନା ଦିଆ ହୋଇଥାଏ । ପରେ ତା ନାଁ ହେଲା ରାଏଭସ୍କିର୍ ଘାଟି ବା ମୁଣ୍ଡିଆ ଉପର ଘାଟି ।

ପିଏରେ ଏ ଘାଟିକୁ ବିଶେଷ କରି ନଜର କଲେ ନାହିଁ । ବୋରୋଦିନୋ ସମତଳରେ ଅନ୍ୟ ଯେ କୌଣସି ସ୍ଥାନ ଅପେକ୍ଷା ଏଇ ସ୍ଥାନଟା ଯେ ତା ପକ୍ଷରେ ସବୁଠୁ ବେଶି ସ୍ମରଣୀୟ ହୋଇ ରହିବ ଏକଥା ସେତେବେଳେ ତାର ସ୍ୱପ୍ନରେ ବି ନଥାଏ ।

ତାପରେ ସେମାନେ ଗୋଟାଏ ଖାଲ ପାରିହୋଇ ସେମ୍ୟନୋଭସ୍କୋ ଗାଁରେ ପହଞ୍ଚିଲେ । ସେଠି ସୈନ୍ୟମାନେ କୁଡ଼ିଆଘର ଆଉ

ଆମାର ଘରମାନଙ୍କ ଦେହରୁ କାଠଗୁଣ୍ଡମାନ ଓଟାରି ନେଇ ନେଇ ଶେଷରେ ଯାହା ଥାଏ ସେତକ ଝିଙ୍କି ନେଇଯାଉଥାନ୍ତି । ତାପରେ ସେମାନେ ଘୋଡ଼ାରେ ଚଢ଼ି ପାହାଡ଼ ତଳକୁ ଗଲେ, ପୁଣି ପାହାଡ଼ ଉପରେ ଚଢ଼ିଲେ । ସେଇଠୁ ଗୋଟାଏ ଯବଧାନ କ୍ଷେତ ଭିତରେ ପଶିଗଲେ, ସେ ଏମିତ କ୍ଷେତ ଯେ ତାହା ମଡ଼ାଚକଟା ହୋଇ ଯାଇଥାଏ, ସତେକି ତା ଉପରେ କୁଆପଥର ମାଡ଼ ହୋଇଥାଏ । ବନ୍ଧୁକ୍ଷା ସୈନ୍ୟମାନେ ନୂଆ କରି ଯେଉଁ ବାଟ ତିଆରି କରିଥାନ୍ତି ସେମାନେ ତାପରେ ସେହି ବାଟରେ ଗଲେ । ହଳ ହୋଇଥିବା କ୍ଷେତମାନଙ୍କ ହିଡ଼େ ହିଡ଼େ ଗୁଳି ଗୁଳି ମାଟିକାମ ହେଉଥିବା ଯାଗାରେ ଯାଇ ପହଞ୍ଚିଲେ, ସେତେବେଳଯାଏ କ ସେଠି ଲୋକେ ଲାଗିଥାନ୍ତି ।

ମାଟି ପାଖରେ ଅଟକି ଯାଇ ବେନାଷ ସେନ୍ ଲେଭ୍ରାରଦ୍ୱେ ମାଟି ଆଡ଼କୁ ଗୁହିଁଲେ । ତାର ଆରହାନ ସେଭରହନୋ ଥିଲା ରୁଷ୍ ପକ୍ଷର ଅଧିକାରରେ । ସେଠି କେତେ ଘୋଡ଼ାସବାର ଦିଶିଯାଉଥାନ୍ତି । କର୍ମଚାରୀମାନେ କହିଲେ ଯେ ନେପୋଲିଅନ୍ ଓ ମୁରାଟ୍ ସେଠି ଅଛନ୍ତି । ସେଠି ଯେଉଁ ଅଳ୍ପ କେତେ ଜଣ ଘୋଡ଼ାସବାର ଗୋଟିଏ ଗ୍ରେଟ ଦଳ-ହୋଇ ଦୂରକୁ ଦିଶିଯାଉଥାନ୍ତି, ସମସ୍ତେ ଆଗ୍ରହ କୁତୂହଳରେ ତେଣେ ଗୁହିଁ ରହିଲେ । ପିଏରେ ବି ତେଣିକି ଗୁହିଁଥାଏ ; ବାରିବାକୁ ଚେଷ୍ଟା କରୁଥାଏ ଯେ ହେଇ ସେଠି ଯେଉଁ ଲୋକମାନଙ୍କ ଦେହେର ଅଳ୍ପ ଟିକିଏ ଟିକିଏ ବାରି ହେଉଛି । ସେଥିରୁ କେଉଁ ଜଣକ ସେଇଠି ନେପୋଲିଅନ୍ । ତାପରେ ସେ ଘୋଡ଼ାସବାରମାନେ ପାହାଡ଼ ତଳକୁ ଓହ୍ଲେଇ ଯାଇ ଆଖିରୁ ଅନ୍ତର ହୋଇଗଲେ ।

କ୍ନ୍ୟାଜ୍‌କୋଭେ ଗାଁରେ ଗୋଟାଏ ଭଙ୍ଗା ଅମାର ଘର ଭିତରେ କହୁଣିରେ ଭରଦେଇ ସେହି ଅଗଷ୍ଟ ମାସର ଉଜ୍ଜ୍ୱଳ ସଞ୍ଜରେ ପ୍ରିନ୍‌ସ ଆନ୍ଦ୍ରେ ପଡ଼ିଥାନ୍ତି । ତାଙ୍କ ସୈନ୍ୟଦଳର ଛାଉଣୀରେ ସବା ଶେଷ ମୁଣ୍ଡରେ ସେ ଯାଗାଟା । ସେ ଘରର ଖଣ୍ଡିଆ କାନ୍ଥରେ ଯେଉଁ ଫାଟଟା ଥାଏ ସେଇ ଫାଟ ବାଟେ ସେ ପଦାକୁ ଗୁହିଁ ଥା'ନ୍ତି । ବାଡ଼ରେ ଗୁଡ଼ାଏ ପୋଲଡ଼ ବାଛି ଗଛ, ସେଗୁଡ଼ାକୁ ପଇଁତିରିଶି ବର୍ଷ ଲେଖାଏ ବୟସ ହେବ । ସେ

ସେହି ଗଛ ଗୁଡ଼ିକୁ ରୁହିଁ ଥା'ନ୍ତି । ଆଜି ଦେଖୁଥାନ୍ତି ଯବଧାନର କ୍ଷେତ ଆଡ଼କୁ । ସେଠି ଯବ ଧାନର କ୍ଷେତମାନ ଏଣେତେଣେ ହୋଇ ପଡ଼ିଥାଏ । ଆଜି ସେ ଋହୁଁଥାନ୍ତି ସେକରର ସେ ବୁଦାଗୁଡ଼ାକ ଆଡ଼କୁ । ଯେଉଁ ସୈନ୍ୟମାନେ ରୋଷେଇ ବସାଇଥାନ୍ତି ବୋଲି ଚୁଲିଗୁଣିରୁ ଧୂଆଁ ଉଠୁଥାଏ ।

ଏ ମୁହୂର୍ତ୍ତରେ ପ୍ରିନ୍‌ସ ଆନ୍ଦ୍ରେଙ୍କୁ ଲଗୁଥାଏ ଯେ ସେ ତାଙ୍କ ଜୀବନଟା ପଙ୍ଗୁ ହୋଇଗଲା, ନିରର୍ଥକ ହୋଇଗଲା, ତାଙ୍କ ଜୀବନଟା ତାଙ୍କୁ ଗୋଟାଏ ବୋଝ । ତଥାପି ସାତବର୍ଷ ତଳେ ଅଷ୍ଟରଲିଜ୍ ଯୁଦ୍ଧ ପୂର୍ବରୁ ତାଙ୍କୁ ଯେମିତି ଚଂ ଚଂ ଲଗୁଥିଲା ଏବେବି ସେମିତି ଲଗୁଥାଏ ।

କାଲି ଯେଉଁ ଯୁଦ୍ଧ ହେବ ସେଥିପାଇଁ ଉପରୁ ତାଙ୍କ ପାଖକୁ ଯେତେ ଯେତେ ହୁକୁମ୍ ଆସି ପହଞ୍ଚୁଥାଏ ସବୁ ସେ ପାଇଥାନ୍ତି ଓ ସେହି ଅନୁସାରେ ସୈନ୍ୟମାନଙ୍କୁ ଯାହା ଯାହା ହୁକୁମ ଦେବା ଦରକାର ସବୁ ସେ ଦେଇସାରିଥାନ୍ତି । ତଥାପି ତାଙ୍କର ଶାନ୍ତି ନଥାଏ । ନାନା ଚିନ୍ତାରେ ସେ ଆକ୍ରାନ୍ତ ହେଉଥାନ୍ତି । ସେ ଚିନ୍ତାର ବିଷୟ ଅତି ସରଳ ଅତି ଜଣାଶୁଣା, ତେଣୁ ଅତି ଭୟଙ୍କର । ସେସବୁ ଚିନ୍ତା ତାଙ୍କ ପାଖ ଛାଡ଼ୁ ନଥାଏ । ସେ ଜାଣିଥିଲେ ଯେ ଚହିଁଆରଦିନ ଯେଉଁ ଲଢ଼େଇଟା ହେବ ସେ ଏ ପର୍ଯ୍ୟନ୍ତ ଯେତେ ଲଢ଼େଇରେ ଯୁଦ୍ଧ କରିଛନ୍ତି ସବୁଠୁ ତା ହେବ ବେଶି ଭୟଙ୍କର । ଜୀବନର ଏଇ ପ୍ରଥମ ଥର ସେ ଆପଣା ମୃତ୍ୟୁକଥା ଭାବିଲେ । ସେ ଯେଉଁପରି ଢଙ୍ଗରେ ପ୍ରକୃତରେ ନିଜ ଜୀବନ କଟାଉଛନ୍ତି ତାହାର ସମ୍ପର୍କରେ ଯେ ସେ ଆପଣା ମରିବା କଥା ଭାବିଲେ ତାହା ନୁହେଁ । କି ସେ ମରିଗଲେ ଅନ୍ୟମାନଙ୍କ ଉପରେ ତାର କ'ଣ ପ୍ରଭାବ ପଡ଼ିବ ଏପରି ଭଙ୍ଗୀରେ ବି ସେ ଆପଣା ମୃତ୍ୟୁ କଥା ଚିନ୍ତା କରୁନଥାନ୍ତି । କେବଳ ଖାଲି ଆପଣା ସମ୍ପର୍କରେ, ଖାଲି ଆପଣା ଆତ୍ମା ସମ୍ପର୍କରେ, ସେ ଆପଣା ମରିବା କଥାଟା ଭାବୁଥାନ୍ତି । ସେହି ମୃତ୍ୟୁର ସମ୍ଭାବନା ତାଙ୍କ ଆଗରେ ଏତେ ସରଳ ହୋଇ, ଏତେ ଭୟଙ୍କର ହୋଇ, ଏତେ ପରିଷ୍କାର ହୋଇ ଛିଡ଼ା ହେଲା ଯେ, ତାଙ୍କୁ ଲଗିଲା ସତେଯେପରି ତାର ଗୋଟାଏ ସ୍ଥୂଳ ବାସ୍ତବତା ଅଛି । ଏହି ମୃତ୍ୟୁର ସ୍ୱପ୍ନ ଦେଖୁ ଦେଖୁ ତାଙ୍କ ମନ

ଏପରି ଅବସ୍ଥାକୁ ଉଠିଗଲା ଯେ ଆଗେ ଯେତେ ଯାହା ତାଙ୍କ ମନରେ ପୂରି ରହିଥିଲା ସବୁ ସତେକି ଏକ ପ୍ରକାର ଶୀତୁଆ ଧଳା ଆଲୁଅରେ ଝଲ୍ ଝଲ୍ ହୋଇ ଉଠିଲା । ସେଥିରେ ଛାଇ ପଡ଼ୁନଥାଏ, ତହିଁରେ ପାଖ ଦୂର ଜଣାପଡ଼ୁନଥାଏ, ତାର ପରିସର କି ପରିଧି ନଥାଏ । ତାଙ୍କର ସମଗ୍ର ଜୀବନର ଛବି ତାଙ୍କ ଆଗରେ ଗୋଟାଏ ମ୍ୟାଜିକ୍ ଲଣ୍ଠଣର ଛବି ପରି ଦିଶିଯାଉଥାଏ, ଲାଗୁଥାଏ ଯେପରିକି ଗୋଟାଏ କୃତ୍ରିମ ଆଲୁଅରେ କାଚବାଟେ ସେ ସେହି ଛବିକୁ ଏତେକାଳ ଦେଖି ଆସୁଥିଲେ ଆଉ ବର୍ତ୍ତମାନ କାଚ ଖୋଲିପାଇଛି ଆଉ ପରିଷ୍କାର ଦିନ ଆଲୁଅରେ ସେ ସେହି ଅସୁନ୍ଦର ରଙ୍ଗ ସାଲୁବାଲୁ ଛବିଗୋଡ଼ାକୁ ଦେଖୁଛନ୍ତି । ତାଙ୍କ ଜୀବନର ସେହି ମ୍ୟାଜିକ୍ ଲଣ୍ଠଣରେ ପ୍ରଧାନ ପ୍ରଧାନ ଛବିଗୁଡ଼ାକ ଆଉଥରୁ ଆହୁରି ଥର ଥର କରି କଳ୍ପନାରେ ଘୁରିଁ ଘୁରିଁ ସାମ୍ନାରେ ମୃତ୍ୟୁ ଦିଶୁଥିଲାବେଳେ ଯେଉଁ ଶୀତଳ ଦିନର ଆଲୁଅ ପଡ଼ୁଥିଲା ପରି ତାଙ୍କୁ ଲାଗୁଥାଏ । ସେହି ଆଲୁଅରେ ସେ ଛବିଗୁଡ଼ାକୁ ଦେଖି ଦେଖି ସେ ମନକୁ ମନକୁ କହିହେଉଥାନ୍ତି—

"ହଁ, ହଁ, ସେହି ଛବିଗୁଡ଼ାକ । ସେହି ଗୁଡ଼ାକ ହିଁ ସେହି ପ୍ରତାରଣାମୟ, ସେଇଗୁଡ଼ାକ ଦେଖି ଦେଖି ମୋ ମନରେ ଉତ୍ତେଜନାର ଯନ୍ତ୍ରଣା ହେଉଥିଲା, ପୁଣି ଆନନ୍ଦରେ ପୁଲକ ଉଠୁଥିଲା । ସେହିଗୁଡ଼ାକ ହିଁ ଏଇ ଗୁଡ଼ିକ ।"

ସେ ଭାବୁଥାନ୍ତି "ସତେ ତ, ଏଇତ ସେଗୁଡ଼ାକ । ମୋଟା ମୋଟା ହେଇ ର'ଠ ହୋଇ ଅଙ୍କା ହୋଇଥିବା ରଦ ଛବିଗୁଡ଼ାକ, ଆଗେ ମତେ ଲାଗୁଥିଲା କେଡ଼େ ଚମତ୍କାର, କେଡ଼େ ବିସ୍ମୟକର । ଯଶ— ଖାନଦାନି ସମାଜରେ ବୁଲ୍‌ଚଲ୍—ସ୍ତ୍ରୀଲୋକ ପ୍ରତି ପ୍ରେମ, —ପିତୃଭୂମି— ଆଗେ କେଡ଼େ ଚମତ୍କାର ଛବିପରି ଏଗୁଡ଼ାକ ମୋ ଆଖିକି ଦିଶୁଥିଲା । କି ଗୂଢ଼ ଅର୍ଥ ତହିଁରେ ପୂରି ରହିଥିଲା ବୋଲି ମତେ ଲାଗୁଥିଲା ! ଅଥଚ ଯେଉଁଦିନ ମୋପାଇଁ ଉଇଁ ଆସୁଛି ତାର ଶୀତଳ ଆଲୁଅରେ ଦେଖିଲା-ବେଳକୁ କେଡ଼େ ନଷ୍ଟ ଭ କେଡ଼େ ଅବର୍ଜିଆ ଏଗୁଡ଼ାକ ମୋତେ ଦିଶୁଛି ।"

ତାଙ୍କ ଜୀବନର ତିନୋଟି ପ୍ରଧାନ ଦୁଃଖ ଅତି ନିବିଷ୍ଟ ଭାବରେ ତାଙ୍କ ଧ୍ୟାନକୁ ଧରି ରଖିଥିଲା । ଗୋଟିଏ ନାରୀ ପ୍ରତି ତାଙ୍କର ପ୍ରେମ, ତାଙ୍କ ବାପାଙ୍କ ମୃତ୍ୟୁ, ଫରାସୀମାନଙ୍କ ଆକ୍ରମଣ, ସେତେବେଳକୁ ଋଷ୍ ଦେଶରେ ଅର୍ଦ୍ଧେ ସେମାନେ ଦଖଲ କରି ବସିଲେଣି ।

ସେ ତିକ୍ତ ସ୍ୱରରେ ପାଟିକରି କହିଲେ – "ପ୍ରେମ ! ......ସେହି ନିକ ଝିଅଟା ସତ୍ୟ ଯେଉଁଟା ଲାଗୁଥିଲା ସତେ ଅବା କେତେ ରହସ୍ୟମୟ ଶକ୍ତି ତାହା ଭିତରେ ପୂରି ରହି ଉଚ୍ଛୁଳି ପଡ଼ୁଛି । କେତେ ଭଲ ପାଉଥିଲିଟି ମୁଁ ତାକୁ । ତାକୁ ହିଁ ବିଷୟୀଭୂତ କରି ପ୍ରେମ ସୁଖ ଆନନ୍ଦର କେତେ କବିତାମୟ ଯୋଜନାମାନ ମୁଁ ଗଢ଼ି ବସିଥିଲି । ହାୟ ମୋର ସରଳପ୍ରାଣ ଯୁବା ହୃଦୟ । ମୁଁ ପୁଣି ବିଶ୍ୱାସ କରୁଥିଲି ଯେ ଆଦର୍ଶ ପ୍ରେମ ବୋଲି ଗୋଟାଏ କିଛି ଅଛି ଯାହାକୁ ଆଶା କରି ବର୍ଷେକାଳ ମୁଁ ନଥିଲେ ବି ସେ ମୋର ପ୍ରତି ସତ୍ ହୋଇ ରହିଥିବ । ମୁଁ ଭାବୁଥିଲି ଯେ ମୁଁ ନା ଆସିଲି ବୋଲି କାହାଣୀରେ ଯେଉଁ ପକ୍ଷୀ କପୋଣୀ କଥା ଅଛି ତାରି ପରି ସେ ମୋପାଇଁ ଝୁରି ଝୁରି ଝଡ଼ି ଯାଉଥିବ । ଏତେ ସରଳ ଲାଗୁଥିଲା କଥାଟା । ...ଆଉ ବର୍ତ୍ତମାନ ଆଉ ପ୍ରକାରେ ମରଳ ଲାଗୁଛି, କେତେ ବିଭତ୍ସଭାବେ ସରଳ । କେତେ ଘୃଣ୍ୟ ।

ମୋ ବାପା ବି ଲଣ୍ଡାପାହାଡ଼ ପ୍ରାସାଦଟାକୁ ଗଢ଼ିଥିଲେ, ଭାବିଥିଲେ, କ'ଣ ନା ସେସବୁ ତାଙ୍କ ଘର ତାଙ୍କ ଜମି ତାଙ୍କ ପବନ ତାଙ୍କ ରଇତ ।

କିନ୍ତୁ ନେପୋଲିଅନ ମାଡ଼ି ଆସିଲେ, ମୋ ବାପାଙ୍କ ଅସ୍ତିତ୍ୱ ବିଷୟଟି ତାଙ୍କୁ ଜଣା ନଥିଲା ଅଥଚ ସେ ତାଙ୍କ ବାଟରୁ କାଠିକୁଟା ଖଣ୍ଡେ ଉଠେଇ ଓଡ଼େଇ ଦେଲାପରି ସେ ମୋ ବାପାଙ୍କୁ କୁଆଡ଼େ ଉଡ଼େଇ ଦେଲେ । ତାଙ୍କ ଲଣ୍ଡା ପାହାଡ଼ ଧୂଳିରେ ମିଶେଇ ଦିଆହେଲା । ତା ସଙ୍ଗେ ସଙ୍ଗେ ତାଙ୍କ ଜୀବନଟା ବି ଗଲା ଧ୍ୱଂସ ହୋଇ । ପ୍ରିନସେସ୍ ମେରିଆ କହନ୍ତି ଏ ଗୋଟାଏ ପରୀକ୍ଷା, ଏ ପରୀକ୍ଷା ଭଗବାନ ପଠାଇଛନ୍ତି । ଏ ପରୀକ୍ଷାରୁ ଆଉ କ'ଣ ମିଳିବ ? ସେତ ଆଉ ନାହାନ୍ତି । ସେତ ଆଉ

ଆସିବେ ନାହିଁ । ସେ ଆଉ ଲେଉଟି ଆସିବେ ନାହିଁ । ସେ ଆଉ ନାହାନ୍ତି ! ତେବେ ଆଉ କାହା ପାଇଁ ଏ ପରୀକ୍ଷା ? ଏଇ ଜନ୍ମଭୂମି ପାଇଁ । ମସ୍କୋ ସହର ଭସ୍ମ ହେବାପାଇଁ । କିନ୍ତୁ କାଲିତ ମୁଁ ଯୁଦ୍ଧରେ ମରିବି । ହୁଏତ କୌଣସି ଫରାସୀ ଲୋକ ହାତରେ ମୋ ପ୍ରାଣ ଯିବ, ସେଇ ଯେମିତି ଆମ ପକ୍ଷର ଜଣେ ସୈନ୍ୟ କାଲି ମୋ କାନ ପାଖରେ ଫୁଟାଇ ଦେଲା ସେମିତି । ତାପରେ ଫରାସୀମାନେ ମାଡ଼ିଆସି ମୋ ମୁଣ୍ଡକୁ ଓ ଗୋଡ଼କୁ ଧରି ମୋତେ ଟେକିନେଇ ଗୋଟାଏ ଗାତ ଭିତରେ ଫୋପାଡ଼ି ଦେବେ ଯେମିତି କି ମୋ ଦେହଟା ସଢ଼ିଗଲେ ତାଙ୍କ ନାକକୁ ଗନ୍ଧ ବାଜିବ ନାହିଁ, ତାପରେ ଜୀବନର ନୂଆ ନୂଆ ଅବସ୍ଥା ଆସି ପହଞ୍ଚିବ । ମୁଁ ସେସବୁ କଥା କିଛି ଜାଣିପାରିବି ନାହିଁ କି ମୁଁ ନଥିବି ଆଦୌ ।"

ସେ ସେହି ଧାଡ଼ି ଧାଡ଼ି ବାର୍ଚ଼ ଗଛ ଆଡ଼କୁ ଚାହିଁ ରହିଲେ, ସେ ଗଛଗୁଡ଼ାକ ହଳଦିଆ ଦିଶୁଥାଏ, ଶାଗୁଆ ଦିଶୁଥାଏ । ହଲ୍‌ଚଲ୍ ନାହିଁ, ନଥିରି । ଗଛମାନଙ୍କ ଧଳା ବକଳ ଖରାରେ ଜକ ଜକ ଦିଶୁଥାଏ ।

"ହଉ ତେବେ ମୁଁ ମରେ । ମାରିପକାନ୍ତୁ କାଲି ମୋତେ ସେମାନେ । ନ ରହେଁ ଆଉ ଏ ସଂସାରରେ । · ·ସବୁ ଯେମିତି ଅଛି ସେମିତି ରହିଥାଉ, ଖାଲି ମୋର ସବୁ ସରିଯାଉ ।"

ସେଇ ଜୀବନ ଭିତରେ ସେ ନାହାନ୍ତି, ଏହିପରି ଚିନ୍ତା ସେ ପରିଷ୍କାର ଭାବେ ମନଭିତରେ ଭାବିନେଲେ ଆଉ ହଠାତ୍ ଲାଗିଲା ଯେ, ଆଲୁଅ ଛାଇରେ ଗଢ଼ା ସେହି ବାର୍ଚ଼ ଗଛଗୁଡ଼ାକ, ଆକାଶରେ ମୋଡ଼ି ମୋଡ଼ିକିଆ ମେଘଗୁଡ଼ାକ, ଅଗିନିଆଁରେ ଧୂଆଁ ଚାରିପାଖେ ଯାହା ଯେତେ ଦିଶୁଥିଲା ସେସବୁ ଗୁଡ଼ାକର ରୂପ ବଦଳିଗଲା । ସେଗୁଡ଼ାକ ସତେକି କମିଆଁ, କେଡ଼େ ଭୟଙ୍କର ଲାଗିଲା । ତାଙ୍କ ପିଠିରେ ଉପରୁ ତଳକୁ ଗୋଟାଏ କ'ଣ ଚାଲିଗଲା । ଭୟ କରି ଉଠିପଡ଼ି ସେ ଅମାରି ଘରୁ ପଦାକୁ ବାହାରିଯାଇ ଏଣେତେଣେ ଚାଲି ଚାଲି ବୁଲିଲେ ।

ଅମାରି ଘର ପଛଆଡ଼ୁ ତାଙ୍କ ପାଟି ଶୁଭିଲା—"କିଏ ସେ ସେଠି ?" ପ୍ରିନ୍‌ସ ଆନ୍ଦ୍ରେ ପଚାରିଲେ ।

ସଙ୍କୋତ ଦେଖାଇ ଲାଜରା ଲାଜରା ହୋଇ ଗୃଲି ଗୃଲି ସେ ଅମାର ଘର ଭିତରେ ପଶିଲେ । କ୍ୟାପଟେନ୍ ତିମୋଖିନ୍, ତାଙ୍କ ନାକଟା ନାଲଆ । ଆଗେ ସେ ଦୋଲହଭଙ୍କ ସୈନ୍ୟଦଳରେ ପ୍ରଧାନ କର୍ମଗୃଷ୍ଣ ହୋଇଥିଲେ । ଏବେ କର୍ମଗୃଷ୍ଣ ଅଭାବ ପଡ଼ିଯିବାରୁ ତାଙ୍କୁ ଉପର ପଦକୁ ଉନ୍ନତ କରଦେଇ ଗୋଟାଏ ସୈନ୍ୟଦଳର ସେନାପତି କରି ଦିଆଯାଇ-ଥାଏ । ତାଙ୍କ ପଛେ ପଛେ ଜଣେ ଆଡ଼ଜୁଟାରେ ଆସିଲେ ଓ ସୈନ୍ୟ-ଦଳର ଦରମାଦିଆ କର୍ମଗୃଷ୍ଣ ଆସିଲେ ।

ପ୍ରିନ୍ସ ଆନ୍ଦ୍ରେ ତରତର ହୋଇ ଉଠି ପଡ଼ିଲେ, କର୍ମଗୃଷ୍ଣମାନେ ସେମାନଙ୍କ କର୍ତ୍ତବ୍ୟ ସମ୍ପର୍କରେ ତାଙ୍କୁ ଯେଉଁ ଯେଉଁ କଥା ଜଣାଇବେ ବୋଲି ତାଙ୍କ ପାଖକୁ ଆସିଥିଲେ ତାଙ୍କଠୁଁ ସେସବୁ କଥା ଶୁଣିଲେ, ତାପରେ ତାଙ୍କୁ ବିଦା କରିବାକୁ ବସିଥିଲେ ଏବଂ ଏହି ସମୟରେ ଅମାର ପଛଆଡ଼ୁ ଗୋଟିଏ ଚିହ୍ନା ଗଳାରେ କିଏ ପାଟି ବସେଇ ବସେଇ କଥା କହୁଥିବାର ତାଙ୍କୁ ଶୁଭିଗଲା ।

ସେଠି ଜଣେ କିଏ କ'ଣ ଗୋଟାକରେ ଝୁଣ୍ଟି ପଡ଼ି କହିଲା "ଆଚ୍ଛା ସଇତାନ କାହାଙ୍କା—"

ପ୍ରିନ୍ସ ଆନ୍ଦ୍ରେ ଅମାର ଝାନ୍ହର ଜଳାବାଟେ ଉଙ୍କିମାରି ଦେଖିଲେ, ସେପଟେ ପିଏରେ । ସେତିକି ତଳେ ପଡ଼ିଥିବା ଗୋଟାଏ ଖୁଣ୍ଟରେ ଧକ୍କା ବାଜି ପିଏରେ କଚ୍ଚଡ଼ି ହୋଇ ପଡ଼ିବା ଉପରେ । ପ୍ରିନ୍ସ ଆନ୍ଦ୍ରେଙ୍କୁ ଆପଣା ସମ୍ପ୍ରଦାୟର ଲୋକଙ୍କୁ ଦେଖିବାକୁ ଭଲ ଲାଗୁନଥିଲା, ବିଶେଷତଃ ପିଏରଙ୍କୁ ଦେଖିଲାମାତ୍ରେ ମସ୍କୋରେ ସେ ଯେତେବେଳେ ଶେଷଥରକ ରହିଥିଲେ ସେତେବେଳେ ଯେଉଁ ଯନ୍ତ୍ରଣାଦାୟକ ମୁହୂର୍ତ୍ତଗୁଡ଼ାକ ସେଠି ସେ ବିତାଇ ଆସିଥିଲେ ସେସବୁ ତାଙ୍କର ମନେ ପଡ଼ିଯାଉଥାଏ ।

ସେ ପାଟିକଲେ "ଆରେ ପ୍ୟେ ଅପୂରୁବ । କି ଯୋଗରେ ପଡ଼ି ତୁମେ ଏଠିକି ଆସିଲ ହେ ? ଏଠି ତୁମକୁ ଦେଖିବି ବୋଲି ମୁଁ କେବେ ଭାବିନଥିଲି ।"

ପିଏରେ ସେହି ସଙ୍ଗେ ସଙ୍ଗେ ଲକ୍ଷ୍ୟ କରି ପକାଇଲା ଯେ ସେ ଯେତେବେଳେ ଏକଥା କହୁଥିଲେ ସେତେବେଳେ ତାଙ୍କ ଆଗରେ ଆଉ ମୁହଁ ଗୋଟାକରେ ସେ ଖାଲି ଅଶ୍ରଦ୍ଧା ଥିଲା ତା ନୁହେଁ, ବରଂ ତାଙ୍କୁ ବେଣି, ଏକପ୍ରକାର ପରିଷ୍କାର ଶତ୍ରୁତା ହିଁ ସେ ଗୃହାଣୀ ଓ ଭଙ୍ଗୀରେ ଫୁଟି ବାହାରୁଥିଲା । ପିଏରେ ଅତି ଆଗ୍ରହରେ ସେ ଅମାର ଘର ପାଖକୁ ଆସିଥିଲା କିନ୍ତୁ ପ୍ରିନ୍‌ସ ଆନ୍ଦ୍ରେଙ୍କ ମୁହଁରେ ଭାବଭଙ୍ଗୀ ଦେଖି ସେ ଅଟକି-ଗଲା । ତାକୁ କେମିତି ଅସ୍ୱସ୍ତି ଜଣାପଡ଼ିଲା ।

ପିଏରେ କହିଲା "ମୁଁ ଆସିଗଲି...ବୁଝିଲେ...ଖାଲି ଏମିତି... ଏ ବଡ଼ ଚମତ୍କାର..." ସେଦିନ ଯା'କ ପିଏରେ ବାରମ୍ବାର ଘୁଁ କୁ ଘୁଁ ଏ ସେହି 'ଚମତ୍କାର' ଶବ୍ଦଟାକୁ ବହୁତବାର ଆବୃତ୍ତି କରିଥିଲା ଅଥଚ ତାର ମାନେ ବୁଝିନଥିଲା ।

ସେ କହିଲା "ଯୁଦ୍ଧଟା କେମିତି ହେବ ସେଇଆ ଦେଖିବାକୁ ମୋର ମନ ହେଲା ।"

କର୍ମଚାରୀମାନେ ବିଦାୟ ନେଇ ଚାଲି ଯାଇଥାନ୍ତେ, କିନ୍ତୁ ଲାଗୁଥାଏ ଯେପରିକି ପ୍ରିନ୍‌ସ ଆନ୍ଦ୍ରେ ତାଙ୍କର ପୁରୁଣା ବନ୍ଧୁ ସଙ୍ଗରେ ଏକୁଟିଆ ରହିବାକୁ ମନ ହେଉନଥାଏ ବୋଲି ସେ ସେମାନଙ୍କୁ ଅଟକି ଯିବାକୁ ବଳାଇ କହିଲେ, ଆଉ ଚା' ଖାଇବାକୁ କହିଲେ । ବେଞ୍ଚମାନ ଥୁଆ ହେଲା, ଚା ଆଣାହେଲା । କର୍ମଚାରୀମାନେ ଟିକିଏ ଆଶ୍ଚର୍ଯ୍ୟ ହୋଇ ପିଏରର ପ୍ରକାଣ୍ଡ ମୋଟା ଶରୀରକୁ ଚାହିଁଲେ । ମସ୍କୋ ବିଷୟରେ ସେ ଅନେକ କଥା କହିଲେ ଆଉ ଉଭୟପକ୍ଷର ସୈନ୍ୟମାନଙ୍କ ଅବସ୍ଥିତି କଥା ଶୁଣିଲେ । ପିଏରେ ସୈନ୍ୟମାନଙ୍କ ଅବସ୍ଥିତି ଉପରେ ଆଖି ପକାଇ ଆଣିବାକୁ ଟିକିଏ ସୁବିଧା ପାଇଥିଲା । ପ୍ରିନ୍‌ସ ଆନ୍ଦ୍ରେ ପାଟି ଫିଟାଇଲେ ନାହିଁ । ତାଙ୍କ ମୁହଁ ଏଡ଼େ ଗମ୍ଭୀର ଦିଶୁଥାଏ ଏମିତି ଦୁର୍ ଦୁର୍ କଲାପରି ଦିଶୁଥାଏ ଯେ ପିଏରେ ତା ମତାମତଗୁଡ଼ାକ ତାଙ୍କ ଆଗରେ ଗପିଲା ପରି ନ କହି ସରଳ ହୃଦୟରେ ତିମୋହିନକୁ କହିଲାପରି କହୁଥାଏ ।

ପ୍ରିନ୍‌ସ ଆନ୍ଦ୍ରେ ପଚାରିଲେ "ଆଚ୍ଛା, ତାହେଲେ ଆମ ସୈନିକ-ମାନେ କେଉଁଠି କିପରି ଭାବରେ ସଜା ହୋଇ ରହିଛନ୍ତି ସବୁ ତମେ ବୁଝିଛ ନା କ'ଣ ?"

"ହଁ, ଅନ୍ତତଃ—ତେବେ ଆପଣ ଏମିତ କେମିତ କହୁଛନ୍ତି ? ମୁଁ ତ ଆଉ ନିଜେ ଯୁଦ୍ଧ କରିବା ଲୋକ ନୁହେଁ । ସବୁ ଆଉ କେଉଁଠୁ ଭଲ-କରି ବୁଝିଛି ବୋଲି ମୁଁ କହିପାରିବି ? ତେବେ ମୁଁ ଖାଲି ମୋଟାମୋଟି ବ୍ୟବସ୍ଥାଟା ବୁଝିପାରିଛି, ଏତିକି ।"

ପ୍ରିନସ ଆନ୍ଦ୍ରେ କହିଲେ "ତାହେଲେ ତ ହେଲା, ଅନ୍ୟମାନେ କେହି ଯେତେ ବୁଝିପାରିଛନ୍ତି ତୁମେ ତାଠୁ ବେଶି ଜାଣିଚ ।"

ଚଷମା ଉପରୁ ପ୍ରିନ୍‌ସ ଆନ୍ଦ୍ରେଙ୍କ ଆଡ଼କୁ ଅନେଇଁ ପିଏରେ ତାଙ୍କ କଥାକୁ ଅବିଶ୍ୱାସ କରି କହିଲା "ସତେ ? ଆଚ୍ଛା କୁତୁଜଭଙ୍କୁ ଯେ ପ୍ରଧାନ ସେନାପତି ନିଯୁକ୍ତ କରାହୋଇଛି ସେ ବିଷୟରେ ଆପଣଙ୍କର ମତ କ'ଣ ?"

ପ୍ରିନ୍‌ସ ଆନ୍ଦ୍ରେ କହିଲେ "ତାଙ୍କ ନିଯୁକ୍ତି, ଖବର ଶୁଣି ମୁଁ ଭାରି ଖୁସି ହେଲି । ସେ ବିଷୟରେ ମୁଁ ସେତିକି ଜାଣିଛି ।"

ପିଏରେ ପଚାରିଲେ "ତେବେ ଆପଣ ଭାବୁଛନ୍ତି କାଲିକା ଯୁଦ୍ଧରେ ଆମର ବିଜୟ ହେବ ?"

ପ୍ରିନ୍‌ସ ଆନ୍ଦ୍ରେ ଅନ୍ୟମନସ୍କ ହୋଇ କହିଲେ "ନିଶ୍ଚୟ, ନିଶ୍ଚୟ ।" ସେ ପୁଣି କହିଲେ "ମୋର କ୍ଷମତା ଥିଲେ ମୁଁ ଗୋଟାଏ କଥା କରିଥାନ୍ତି । ମୁଁ ଶତ୍ରୁକୁ ବନ୍ଦୀ କରନ୍ତି ନାହିଁ । ଶତ୍ରୁମାନଙ୍କୁ ବନ୍ଦୀ କରି ନେବାରେ ଲାଭ କ'ଣ ? ସେଇଟା ହେଲା ପୌରାଣିକ ଶୌର୍ଯ୍ୟ । ଫରାସୀ ସୈନ୍ୟମାନେ ମୋ ଘର ଭସ୍ମ କରିସାରି ଏବେ ମସ୍କୋ ସହର ଭସ୍ମ କରିବେ ବୋଲି ମାଡ଼ି ଆସୁଛନ୍ତି । ସେମାନେ ମୋ ଇଜ୍ଜତ ସାରିଛନ୍ତି । ପୁଣି ପ୍ରତି ମୁହୂର୍ତ୍ତରେ ମତେ ବେଇଜ୍ଜତ କରୁଛନ୍ତି । ସେମାନେ ମୋ ଶତ୍ରୁ । ମୋ ବିଚାରରେ ସେଗୁଡ଼ା ସବୁ ଅପରାଧୀ ଲୋକ । ତିମୋହିନଙ୍କର ସେହି ମତ, ସମୁଦାୟ ସୈନ୍ୟ ବାହିନୀର ବି ସେହି ମତ । ସେମାନଙ୍କୁ ମାରି ପକାଇବାକୁ ପଡ଼ିବ ।"

ପିଏରେ ଉଜ୍ଜ୍ୱଳ ଆଖିରେ ପ୍ରିନ୍‌ସ ଆଡ଼କୁ ଚାହିଁ କହିଲା "ନିଶ୍ଚୟ । ମୁଁ ଆପଣଙ୍କ ସଙ୍ଗେ ସମ୍ପୂର୍ଣ୍ଣ ଏକମତ ।"

ମୋଜ ହାଇସ୍କ ପାହାଡ଼ରେ ଥିଲା ବେଳଠୁଁ ଲଗାଇ ଯେଉଁ ପ୍ରଶ୍ନଟା ତାଙ୍କୁ ହନଯାକ ହଇରାଣ କରୁଥିଲା ଲଗିଲା ସତେକି ତାର ସମ୍ପୂର୍ଣ୍ଣ ସମାଧାନ ହୋଇଗଲା, ତାର ଉତ୍ତର ତାଙ୍କୁ ପରିଷ୍କାର ହଣିଗଲା ।

ଯୁଦ୍ଧ ଓ ଆସନ୍ନା ଲଢ଼େଇର ସମୁଦାୟ ତାତ୍ପର୍ଯ୍ୟ ଓ ଗୁରୁତ୍ୱ ତାଙ୍କୁ ହଣିଗଲା । ସେହିନଯାକ ସେ ଯାହା ଯାହା ଦେଖିଥିଲେ, ଯେତେ ଯେତେ ଅର୍ଥହୀନ ଅର୍ଥହୀନ ଗମ୍ଭୀର ମୁହଁ ଉପରେ ସେ ଆଖି ବୁଲାଇ ଆଣିଥିଲେ ସବୁ ବର୍ତ୍ତମାନ ନୂଆ ଆଲୁଅରେ ତାଙ୍କୁ ହଣିଥିଲା । ସେ ଯେତେ ଲୋକଙ୍କୁ ଦେଖିଥିଲେ, ପଦାର୍ଥ ବିଜ୍ଞାନର ଭାଷାରେ ବର୍ଣ୍ଣନା କଲେ ସେ ସେମାନଙ୍କ ଭିତରେ ଥିବା ଦେଶପ୍ରେମର "ନିହିତ ଉତ୍ତାପ"କୁ ଦେଖିପାରିଲେ । ସେମାନେ ଶାନ୍ତ ସଂଯତ ହୋଇ ବରଂ ଗୁରୁତ୍ୱ ନଦେଲା ପରି ଭାବ ଦେଖାଇ ମୃତ୍ୟୁ ପାଇଁ ଆପଣା ଆପଣାକୁ ପ୍ରସ୍ତୁତ କରୁଛନ୍ତି ବୋଲି ବୁଝିଲେ । ତାର କାରଣ ମଧ୍ୟ ସେହି ଦେଶପ୍ରେମର "ନିହିତ ଉତ୍ତାପ" ଭିତରେ ହିଁ ଦେଖିପାରିଲେ ।

ପ୍ରିନ୍‌ସ ଆନ୍ଦ୍ରେ କହିଲେ "ଆମେ ଶତ୍ରୁ ସୈନ୍ୟଙ୍କୁ ବନ୍ଦୀ କରିନେବା ଉଚିତ ହେବ ନାହିଁ । ଆମେ ଯଦି ସେତିକି କାମ ବନ୍ଦକରାଇ ଦେବା ତେବେ ତାହା ସମୁଦାୟ ଯୁଦ୍ଧର ଚେହେରା ବଦଳାଇ ଦେବ ଓ ଯୁଦ୍ଧ ଆଉ ସେତେ ନିଷ୍ଠୁର ବୋଲି ଲଗିବ ନାହିଁ । ଯୁଦ୍ଧଟାକୁ ଗେଲରେ ଗେଲରେ ନେବାଟା ହିଁ ବେଶି କଷ୍ଟକର କଥା । ଯୁଦ୍ଧ କରି ଆସି ଉଦାରତା ଦେଖାଇବାର ଖେଳ, ଆଉ ଏମିତି ସବୁ ବଡ଼ ବଡ଼ କଥା, ଏଇଗୁଡ଼ାକ ହିଁ ବେଶି ସଇତାନ । ଏଇ ଉଦାରତା ଆଉ ମହାନୁଭବତାଟା କେମିତିଆ ଜାଣ ?

ଯେମିତି ଗୋଟାଏ ଛେଳିଟାଏ କଟା ହୋଇଥିଲେ ତାକୁ ଦେଖିଦେଇ ଜଣେ ଭଦ୍ରମହିଳାଙ୍କ ଦେହ କ'ଣ ହୋଇଯାଏ ତାଙ୍କର ମହାନୁଭବତା ଉଦାରତା ଯେମିତିଆ ଏ ସେମିତିଆ । ତାଙ୍କ ହୃଦୟରେ ଏତେ କରୁଣା ପୁରିଛି ଯେ ସେ ରକ୍ତ ଦେଖିଲେ ସହିପାରିବେ ନାହିଁ । ଅଥଚ ମାଉଁସ ରନ୍ଧା ହୋଇଥିଲେ ବଡ଼ ରୁଚିରେ ସେ ତାକୁ ଖାଆନ୍ତି ।

ଲୋକେ ସବୁ ଘରେ ବଡ଼ ବଡ଼ କଥା ଭୁଣ୍ଡରେ କହନ୍ତି । ଯୁଦ୍ଧରେ ଆଇନ୍, ଶତ୍ରୁ ପ୍ରତି ଉଦାରତା ଦେଖାଇବା, ବୀରର ଧର୍ମ, ଶାନ୍ତି ପତାକା, ଆହତ ଲୋକଙ୍କ ପ୍ରତି ମାନବିକତା ଏମିତି କେତେ କଥାର ନାଁ ଭୁଣ୍ଡରେ କହନ୍ତି । ସେଗୁଡ଼ାକ ସବୁ ବାଜେକଥା । ୧୮୦୫ ସାଲରେ ମୁଁ ଶାନ୍ତି ପତାକା ଆଉ ବୀରର ଧର୍ମ ବହୁତ ବହୁତ ଦେଖିଛି । ଶତ୍ରୁ ଆମକୁ ଠକା-କାଟିଲ, ଆମେ ତାଙ୍କୁ ଠକାକାଟିଲୁ । ସେମାନେ ଅନ୍ୟ ଲୋକଙ୍କ ଘର ଲୁଟି ନିଅନ୍ତି, ନକଲି ଟଙ୍କା ଚଳାନ୍ତି, ଫେର୍ ଆହୁରି କ'ଣ ନା ଆସି ପିଲାଙ୍କୁ ମାରିପକାନ୍ତି, ବାପାଙ୍କୁ ମାରିପକାନ୍ତି । ସେଉଠୁ କହନ୍ତି ଯୁଦ୍ଧର ଆଇନ ମାନିବା କଥା, ହାରି ଯାଇଥିବା ଶତ୍ରୁ ପ୍ରତି ଦୟା କରିବା କଥା । ସେସବୁ ଚଳିବ ନାହିଁ । ଶତ୍ରୁ ହାରିଲେ ବନ୍ଦୀ ଆମେ କରିବୁ ନାହିଁ । ଆମେ ଚାଲିବୁ ମାରି ପଳାଇବାକୁ ନହେଲେ ମୃତ୍ୟୁବରଣ କରିବାକୁ । ଏସବୁ କଥାକୁ ମୁଁ ଯେଉଁ ବାଗରେ ଭାବି ଦେଖିଛି ମତେ ଯେତେ ଯନ୍ତ୍ରଣା ଭିତର ଦେଇ ଯେ ତା କରିବ ସେ......"

ପ୍ରିନ୍ସ ଆନ୍ଦ୍ରେ ଆଗେ ଭାବୁଥିଲେ ଯେ ଶତ୍ରୁପକ୍ଷ ଯେମିତି ସ୍ମଲେନସ୍କ ଦଖଲ କଲେ ସେମିତି ଯଦି ମସ୍କୋ ବି ଦଖଲ କରିବ କରୁ, ତାଙ୍କର କିଛି ଯାଏଆସେ ନାହିଁ । କିନ୍ତୁ କଥା କହୁ କହୁ ହଠାତ୍ ତାଙ୍କ ତଣ୍ଟି ଭିତର ଥରିଗଲା । ସେ ଅଟକିଗଲେ । ସେ ଭୁନତାନ ହୋଇ ଅନେକଥର ଏକର ସେକର ବୁଲି ଲାଗିଲେଣି, ପୁଣି ସେ କଥା କହିଲାବେଳେ ଜରୁଆ ରୋଗୀର ଆଖି ପରି ତାଙ୍କ ଆଖି ଦାଉ ଦାଉ ଜଳିଲା ଆଉ ତାଙ୍କ ଓଠ ଥରି ଉଠିଲା ।

ସେ କହିଲେ "ଯୁଦ୍ଧରେ ଏ ଉଦାରତାର ଖେଳ ଯଦି କେହି ନ ଖେଳନ୍ତି ତେବେ ଆମେ ଯୁଦ୍ଧ କରିବାକୁ ଯାଆନ୍ତୁ ନାହିଁ । କେବଳ ଏଇ ବର୍ତ୍ତମାନ ଯେମିତି ହୋଇଛି, ଗୋଟାଏ ବିଶିଷ୍ଟ ଉଦ୍ଦେଶ୍ୟ ଅଛି ଯେଉଁଥି-ପାଇଁ ନିଶ୍ଚିତ ମୃତ୍ୟୁବରଣ କରିବାକୁ ପଡ଼ିବ, କେବଳ ଏହିପରି ଅବସ୍ଥା ନ ପଡ଼ିଲେ ଆମେ ଯୁଦ୍ଧ କରିବାକୁ ପାଆନ୍ତୁ ନାହିଁ । ପାଓ୍ୱେଲ ଇଭାନଚ୍ ମିଖାଇଲ ଇଭାନଚ୍‌କୁ ଅପମାନ ଦେଇଛି, ଏମିତିଆ କାରଣ ପାଇଁ ସେତେବେଳେ ଆଉ ଯୁଦ୍ଧ ଲାଗନ୍ତା ନାହିଁ । କିନ୍ତୁ ବର୍ତ୍ତମାନ ଯଦି ଯୁଦ୍ଧ

ଲାଗିଛି ତ ପ୍ରକୃତରେ ତାକୁ ଯୁଦ୍ଧ ବୋଲି କହିବାକୁ ହେବ । ତାହେଲେ ଯୁଦ୍ଧର ଖରଚପଣିଆଟା ଇଆଡ଼ୁ ସମ୍ପୂର୍ଣ୍ଣ ଭିନ୍ନେ ହୁଅନ୍ତା । ତା ହୋଇଥିଲେ ନେପୋଲିଅନ୍ ଏଇ ଯେଉଁ ୱେଷ୍ଟଫାଲିଆର ଲୋକଙ୍କୁ, ହେସିଆନ ଲୋକଙ୍କୁ ଆମ ବିରୁଦ୍ଧରେ ଆଉ ଚଳାଇ ଆଣୁଛନ୍ତି ସେମାନେ ଏଠି ରୁଷ ଦେଶ ଭିତରେ ଆମ ସଙ୍ଗରେ ଯୁଦ୍ଧ କରିବାକୁ ଆସିନଥାନ୍ତେ । ଆମେ କାହିଁକି ଯୁଦ୍ଧରେ ମାତିଛୁଁ ସେକଥା ନଜାଣି ଅଷ୍ଟ୍ରିଆ ଓ ପ୍ରୁସିଆ ଦେଶକୁ ଯୁଦ୍ଧ କରିବାକୁ ଯାଇନଥାନ୍ତୁ ।

ଯୁଦ୍ଧ ଗୋଟାଏ ଭଦ୍ର ମଉଜ ନୁହେଁ, ମଣିଷ ଜୀବନରେ ସେ ସବୁଠୁ ବେଶି ପ୍ରପଞ୍ଚ ଜନିଷ । ଆମେ ସେ କଥାଟା ବୁଝିବା ଦରକାର । ଯୁଦ୍ଧର ଖେଳ ଖେଳିବା କଦାପି ଉଚିତ ନୁହେଁ ।

ସେମିତି ଗୁରୁତର ଆବଶ୍ୟକ ପଡ଼ିଲା ବୋଲି ଆମେ ଯୁଦ୍ଧ କରୁଛୁଁ ଅଥଚ ସେ ଗୋଟାଏ ଅତି ଭୟାନକ ଜନିଷ, ଅତି ଗୁରୁ ଗମ୍ଭୀର ହୋଇ ଭାବ ବିଚାର ଆମେ ଯୁଦ୍ଧକୁ ଗ୍ରହଣ କରିବା କଥା ।

କଥାଟା ମୋଟାମୋଟିରେ ଏଇଆ, ଯେ ମିଛ ଆଉ ଠକାମି ଛାଡ଼, ଯଦି ଯୁଦ୍ଧ କରୁଚ ତ ମନେରଖ । ଏଇଟା ଯୁଦ୍ଧ, ପିଲେ ଖେଳ ନୁହେଁ, ତା ନହେଲେ ଯେଉଁ ଲୋକଗୁଡ଼ାକ ଅଳସୁଆ, ଯାହାଙ୍କର ବୁଦ୍ଧି ସ୍ଥିର ନୁହେଁ ମତିଟା ଚପଳ, ଯୁଦ୍ଧଟା ତାଙ୍କର ଭାରି ପ୍ରିୟ ଖେଳ ହୋଇଯିବ ।

ସଂସାରରେ ଯେତେ ବୃତ୍ତି ଅଛି ସୈନିକର ବୃତ୍ତି ତା ଭିତରେ ସବୁଠୁ ବେଶି ସମ୍ମାନାସ୍ପଦ । ଯୁଦ୍ଧ କ'ଣ ? ଯୁଦ୍ଧରେ ଜିତିବାକୁ ହେଲେ କ କ ଉପାୟ ଦରକାର ? ଯୁଦ୍ଧ ଦୁନିଆର ନ୍ୟାୟ ନୀତିଗୁଡ଼ିକ କଣ ? ଯୁଦ୍ଧର ଅଭ୍ୟାସ ହେଲା ହତ୍ୟା । ଯୁଦ୍ଧର ଏଇସବୁ ଉପାୟ ଲାଗେ,—ଯେ ଲୁଚି ଲୁଚି ଉଣ୍ଡି ଉଣ୍ଡି ଖବର ସଂଗ୍ରହ କରିବା, ଆମେ ବିଶ୍ୱାସଘାତକତା କରିବା, ପର କେମିତି ବିଶ୍ୱାସଘାତକତା ହେବ ତାକୁ ସେ ବିଷୟରେ ଉତ୍ସାହ ଦେବା । ଦେଶ ଧ୍ୱଂସ କରିବା, ସୈନ୍ୟବାହିନୀକୁ ପୋଷିବା ସକାଶେ ଦେଶର ଲୋକଙ୍କ ସମ୍ପତ୍ତି ଲୁଟିନେବା, ଆଉ ଡକାୟତି କରିବା, ଛଳନା ଦେଖାଇବା, ଠକିବା, ମିଛ କହିବା, ଏଇଗୁଡ଼ାକ । ଯୁଦ୍ଧର

କୁଟନୀତି ପୁଣି ସୈନିକ ଗୋଷ୍ଠୀର ସୁନୀତି—ଆଉ ଉପାସ୍ଥ ହେଉଛି ସ୍ୱାଧୀନତାର ସମ୍ପୂର୍ଣ୍ଣ ବିଲୋପ, ତାକୁ କୁହାଯାଏ ଡସିପ୍ଲିନ୍, ଆଉ ଅଳସୁଆମି, ଅଜ୍ଞତା, ନିଷ୍ଠୁରତା, ଚରିତ୍ରହୀନତା, ମଦୁଆଗିରି । ଏସବୁ ସତ୍ତ୍ୱେ ସୈନିକ ଗୋଷ୍ଠୀଟା ସବୁ ଶ୍ରେଣୀ ଭିତରେ ସବୁଠୁ ଉଚ୍ଚରେ । ସମସ୍ତେ ସେ ଗୋଷ୍ଠୀକୁ ସମ୍ମାନ କରନ୍ତି । ଖାଲି ଚୀନ୍ ଦେଶର ରାଜାମାନଙ୍କୁ ଛାଡ଼ିଦେଲେ ଆଉ ସବୁ ଦେଶର ରାଜାମାନେ ସାମରିକ ପୋଷାକ ପିନ୍ଧନ୍ତି । ଯେଉଁ ଲୋକଟା ସବୁଠାରୁ ବେଶି ଲୋକଙ୍କୁ ହତ୍ୟା କରିପାରେ, ସେମାନେ ତାକୁ ପୁରସ୍କାର ଦିଅନ୍ତି······

ଆମେ କାଲି ଯେମିତି କରିବୁ ସେମିତି ସେମାନେ ପରସ୍ପରକୁ ହତ୍ୟା କରିବା ସକାଶେ ଭେଟାଭେଟି ହୁଅନ୍ତି । ଲକ୍ଷ ଲକ୍ଷ ଲୋକଙ୍କୁ ସେମାନେ ହାଣି କାଟିପକାନ୍ତି, ଖଣ୍ଡିଆ ଦଣ୍ଡିଆ କରନ୍ତି, ତାପରେ ଯେତେ ଲୋକଙ୍କୁ ସେମାନେ ମାରିପକାଇଲେ ସେମାନଙ୍କ ଆତ୍ମାର ସଦ୍‌ଗତି କାମନା କରି ପୂଜାପାଠ କରି ଭଗବାନଙ୍କୁ ପ୍ରାର୍ଥନା କରନ୍ତି (ଗଣିଲାବେଳେ ମନରୁ ଫାନ୍ଦି ସେଥିରେ ସଂଖ୍ୟା ମିଶାଇ ଦିଅନ୍ତି), ତାପରେ ସେମାନେ ତାଙ୍କ ବିଜୟର ଯଶ ଗାଆନ୍ତି, ଆଉ ଭାବନ୍ତି ଯେତେ ବେଶି ଲୋକ ହାଣ ଖାଇଲେ ବିଜୟଟା ସେତିକି ବଡ଼ ହେଲା । ପରିଷ୍କାର ସ୍ୱରରେ ପ୍ରିନ୍‌ସ ଆନ୍ଦ୍ରେ ଚିଲେଇ ଉଠିଲେ । କହିଲେ "କହିଲ ଭଲା କେମିତି ଭଗବାନ ସ୍ୱର୍ଗରେ ଥାଇ ତଳକୁ ଅନାଇଁ ତାଙ୍କୁ ଦେଖୁଥିବେ ତାଙ୍କ କଥା ଶୁଣୁଥିବେ ।

ଆଃ ! ବାବୁରେ, ଏଇ କେଇଦିନ ହେଲା ଜୀବନଟା ମତେ ପିତା ଲାଗୁଛି । ମୁଁ ଦେଖୁଚି ଯେତେ କଥା ବୁଝିବା ଉଚିତ ନୁହେଁ ମୁଁ ସେତେଗୁଡ଼ାଏ କଥା ବୁଝିସାରିଲିଣି ।

ଜ୍ଞାନ ବୃକ୍ଷର କେଉଁ ଫଳଟା ଭଲ କେଉଁ ଫଳଟା ମନ୍ଦ ତାକୁ ଖାଇଲେ ମଣିଷର କିଛି ଭଲ ହୁଏ ନାହିଁ ।······ଛାଡ଼, ଆଉ ବେଶିଦିନ ନାହିଁ ଯେ !" ହଠାତ୍ ସେ କହିଲେ "ତମକୁ ନିଦ ମାଡ଼ିଲାଣି ଆଉ ମୋର ବି ଶୋଇବା ବେଳ ହେଲାଣି । ଯାଅ, ଗର୍କିସହରକୁ ଫେରିଯାଅ ।"

ପ୍ରିନ୍ସ ଆନ୍ଦ୍ରେଙ୍କ ଆଡ଼କୁ ଉପ୍ପାଉଁ ସନ୍ଧାନଭୂକ୍ତର ଗୃହାଣୀରେ ଅନାଇଁ ପିଏରେ କହିଲେ "ନାଇଁ ନାଇଁ ।"

ପ୍ରିନ୍ସ ଆନ୍ଦ୍ରେ କହିଲେ "ତୁମେ ଚାଲିଯିବା ଦରକାର । ଯୁଦ୍ଧ ଲାଗିବା ଆଗରୁ ମଣିଷ ଟିକଏ ଭଲରେ ଶୋଇବା ଦରକାର ।" ସେ ପିଏରେ ପାଖକୁ ଚଞ୍ଚଳ ଚାଲିଯାଇ ତାଙ୍କୁ କୁଣ୍ଢେଇ ପକେଇ ଚୁମ୍ବନ କରି ବଡ଼ ପାଟିରେ କହିଲେ, "ଯାଅ ପଳା, ବିଦାୟ । ଆମେ ପୁଣି ଆଉ ପରସ୍ପରକୁ ଦେଖିବା କି ନ ଦେଖିବା ତଥାପି······" ସେ ତରତର ହୋଇ ବୁଲିପଡ଼ି ଅମାର ଘର ଭିତରକୁ ପଶିଗଲେ ।

ଅନ୍ଧାର ପଡ଼ିଥିଲା, ତାଙ୍କ ମୁହଁର ଭଙ୍ଗୀରେ ବିରକ୍ତି ଥିଲା କି ସ୍ନେହ ଆଦର ଥିଲା ପିଏରେ ଦେଖିପାରିଲା ନାହିଁ ।

ପିଏରେ କିଛି ସମୟ ଚୁପ୍‌ଚାପ୍ ହୋଇ ଠିଆ ହୋଇ ରହିଲା, ତାଙ୍କ ପାଖକୁ ଯିବ କି ଗର୍କି ଫେରିଯିବ ସେ କିଛି ଠିକଣା କରିପାରୁନଥାଏ । "ନା, ମତେ ତାଙ୍କର ଦରକାର ନାହିଁ ।" ପିଏରେ ମନେ ମନେ ନିଷ୍ପତ୍ତି କଲା, ଭାବିଲା "ମୁଁ ଜାଣିପାରୁଛି ଯେ ଏଇ ଆମର ଶେଷ ଦେଖା ।" ସେ ଖୁବ୍ ବଡ଼ ଦୀର୍ଘଶ୍ୱାସ ପକାଇଲା । ତାପରେ ଘୋଡ଼ାରେ ଚଢ଼ି ଗର୍କି ଫେରିଗଲା ।

ପ୍ରିନ୍ସ ଆନ୍ଦ୍ରେ ସେ ଅମାର ଘରେ ଗୋଟାଏ କମ୍ବଳ ଉପରେ ଶୋଇ ପଡ଼ିଲେ, କିନ୍ତୁ ତାଙ୍କୁ ନିଦ ମାଡ଼ିଲା ନାହିଁ ।

ସେ ଆଖି ବୁଜିଲେ । ତାଙ୍କର ମନ ଭିତରେ ତା ପଛକୁ ତା ପଛ ହୋଇ ନାନା ଦୃଶ୍ୟ ନାନା ରୂପ ଚାଲିଗଲା । ବହୁତ ବେଳଯାକେ ସେ ଗୋଟାଏ ଚିତ୍ରକୁ ଅତି ଆନନ୍ଦରେ ଦେଖିଲେ । ସେ ପରିଷ୍କାର ଭାବେ ଦେଖୁଥାନ୍ତି, ପିଟରର୍ସବର୍ଗ ସହରରେ ସଞ୍ଜବେଳ । ନାତାଶା ତାଙ୍କ ଆଗରେ ବର୍ଣ୍ଣନା କରୁଥାଏ । ତା ଆଗରେ ଗ୍ରୀଷ୍ମଋତୁରେ ଛତୁ ଖୋଜୁ ଖୋଜୁ ସେ କେମିତି ଗୋଟାଏ ପ୍ରକାଣ୍ଡ ଜଙ୍ଗଲ ଭିତରେ ବାଟ ଭୁଲିଯାଇଥାଏ । କଥା କହିଲାବେଳେ ନାତାଶାର ମୁହଁରେ ଆବେଗ ଓ ଉତ୍ତେଜନା ଖେଳିଯାଉଥାଏ । ଭଙ୍ଗା ଭଙ୍ଗା ଭାଷାରେ ସେ ତାଙ୍କ ଆଗରେ ସେ

ଅନ୍ଧାର ବନ ଗହନରେ କଥା ଆଉ ସେତେବେଳେ ସେ କ'ଣ ଭାବୁଥାଏ ସେହି କଥାମାନ ବର୍ଣ୍ଣନା କରୁଥାଏ । ସେତେବେଳେ ଜଣେ ମହୁମାଛି ପାଳିବା ଲୋକ ସଙ୍ଗରେ ତାର ଦେଖା ହୋଇଥିଲା ଯେ ତା ସଙ୍ଗରେ—ତାର କ କଥା ହୋଇଥିଲା ସେ ବର୍ଣ୍ଣନା କରୁଥାଏ । କହୁ କହୁ ପ୍ରତି ମୁହୂର୍ତ୍ତରେ ସେ ତାର କାହାଣୀ ବର୍ଣ୍ଣନା ଅଟକାଇ କହୁଥାଏ "ନାଇଁ, ମୁଁ ପାରିବି ନାହିଁ, ମୁଁ ଯାକୁ ଠିକଣା କରି ବର୍ଣ୍ଣନା କରିପାରୁନାହିଁ । ନାଇଁ ତୁମେ ମୋ କଥା ବୁଝିପାରିବ ନାହିଁ ।" ଅଥଚ ପ୍ରିନ୍‌ସ ଆନ୍ଦ୍ରେ ତାକୁ ବୋଧ କରିବାକୁ ଚେଷ୍ଟା କରୁଥାନ୍ତି ଯେ ସେ ତା କଥା ବୁଝିଛନ୍ତି ଓ ଯାହା ସେ କହିବାକୁ ଚାହୁଁଛି ସବୁ ସେ ଭଲ କରି ବୁଝିପାରୁଛନ୍ତି । ନାତାଶାର ତା ନିଜ କଥାରେ ଶାନ୍ତି ଆସୁନଥାଏ । ତାକୁ ଲାଗୁଥାଏ ଯେ ସେଦିନ ସେ ଆପଣା ଭିତରେ ଯେଉଁ ଗଭୀର କବିତାମୟ ଅନୁଭୂତି ପାଇଥିଲା ଆଉ ଯାହା ସେ ପ୍ରକାଶ କରିବାକୁ ଚେଷ୍ଟା କରୁଥିଲା ତା ଭାଷା ସେ ଅନୁଭୂତିକୁ ଆଦୌ ଠିକଣା କରି ପ୍ରକାଶ କରିପାରୁନଥାଏ । ସେ କହିଥିଲା "ଏଡ଼େ ଚମତ୍କାର ଲାଗୁଥାଏ, ଆଉ ସେଇ ବୁଢ଼ାଟି ବଣ ଭିତରେ ଏଡ଼େ ଅନ୍ଧାର ହୋଇଥାଏ......ଏଭଳି ଦୟାଦ୍ର୍ର ଚାହାଣୀ ତାର......ନା, ମୁଁ ତାକୁ ବର୍ଣ୍ଣନା କରିପାରୁ ନାହିଁ ।"

ଏତିକ କହି ସେ ନାଲି ପଡ଼ିଯାଇ ରହିଗଲା । ସେତେବେଳେ ତା ଆଖିକି ଅନାଇଁ ରହି ପ୍ରିନ୍‌ସ ଆନ୍ଦ୍ରେ ଯେପରି ଆନନ୍ଦରେ ହସ ହସିଥିଲେ ସେ କଥା ସ୍ମରଣ କରି ଏବେବି ସେମିତି ହସିଲେ ।

ସେ ଭାବିଲେ, "ମୁଁ ତା କଥା ବୁଝିଥିଲି । ଖାଲି ବୁଝିପାରିଥିଲି ନୁହେଁ, ଆହୁରି ବେଶୀ । ସେ ତ ଆଧ୍ୟାତ୍ମ ଶକ୍ତି, ସେହି ଆନ୍ତରିକତା, ଆତ୍ମାର ସେ ସ୍ପଷ୍ଟ ଉନ୍ମୁକ୍ତ ପ୍ରକାଶ, ଗୋଟା ସୁଦ୍ଧା ତାହାର ଆତ୍ମାର, ଯେଉଁ ଆତ୍ମା ତାର ଦେହ ସଙ୍ଗରେ ବାନ୍ଧି ହୋଇ ରହିଥିଲା, ତାଠିଁ ତାର ସ୍ପଷ୍ଟ ଆତ୍ମାକୁ ମୁଁ ଭଲ ପାଇଥିଲି...ଏଡ଼େ ତୀବ୍ର ଭାବରେ, ଏଡ଼େ ଆବେଗରେ ଭଲ ପାଇଥିଲି ।"

ହଠାତ୍ ତାଙ୍କର ମନେ ପଡ଼ିଗଲା କେମିତି ତାଙ୍କର ସେ ଭଲ ପାଇବା ସରିଗଲା । ସେ କହିଲେ "ସେଇ ଲୋକଟା, ଏସବୁ କଥାକୁ ସେ

ଖାତରେ ହିଁ କଲାନାହିଁ । ଏସବୁ ତ ତାର କଳ୍ପନାରେ ହିଁ ନଥିଲା, ଏସବୁ ତା ଆଖିକୁ ଦିଶିଲା ନାହିଁ । ସେ ଚାହିଁ ଦେଖିଲା ଗୋଟିଏ ସୁନ୍ଦର ନବ ଯୌବନା ଯୁବତୀ ଆଉ ତା ସଙ୍ଗରେ ତା ଜୀବନଟାକୁ ଚିରଦିନ ସକାଶେ ଛନ୍ଦି ଦେବାକୁ ତାର ପସନ୍ଦ ହେଲା ନାହିଁ । ଆଉ ମୁଁ ?···ସେ ଲୋକଟା ତ ଏବେ ବି ବଞ୍ଚିଛି, ଖୁସିରେ ବି ଅଛି ।"

ହଠାତ୍ ଦେହରେ ତତଲା ପାଣି ପଡ଼ିଗଲା ପରି ଗୃହକର୍ତ୍ତା ପ୍ରିନ୍ସ ଆନ୍ଦ୍ରେ ଡେଇଁ ପଡ଼ିଲେ । ଆଉ ଅମାର ଘର ଆଗରେ ଏପାଖରୁ ସେପାଖ ବୁଲିବାକୁ ଲାଗିଲେ ।

ଅଗଷ୍ଟ ମାସରେ ପଚିଶ ତାରିଖ ଦିନ ବୋରଦିନୋ ଯୁଦ୍ଧ ଆରମ୍ଭ ହେବା ପୂର୍ବରୁ ଫରାସୀ ସମ୍ରାଟଙ୍କ ରାଜପ୍ରାସାଦର ପ୍ରଧାନ କର୍ମକର୍ତ୍ତା (ପ୍ରିଫେକ୍ଟ) ମସିଅ ଦେ୍ୟା ବୋସେ ଓ କର୍ଣ୍ଣେଲ ଫାବିଏ ଏ ଲୁଦେଁ ଭାଲୁଏଭ୍‌ରେ ନେପୋଲିଅନଙ୍କ ଛାଉଣୀରେ ଆସି ପହଞ୍ଚିଲେ । ଦେ୍ୟାବୋସେ ପ୍ୟାରିସ୍ ସହରରୁ ଆସିଥାନ୍ତି, ଫାବିଏ ଆସିଥାନ୍ତି ମାଦ୍ରିଦ୍ ସହରରୁ ।

ଦେ୍ୟା ବୋସେ ପୋଷାକ ପାଲଟି ଦରବାରି ପୋଷାକ ପିନ୍ଧିଲେ । ସମ୍ରାଟଙ୍କ ପାଇଁ ସେ ଯେଉଁ ପେଡ଼ି ନେଇ ଆସିଥାନ୍ତି ତାକୁ ତାଙ୍କ ଆଗେ ଆଗେ ବୋହି ନେବାକୁ ଆଦେଶ ଦେଇ ସେ ନେପୋଲିଅନଙ୍କ ତମ୍ବୁର ପ୍ରଥମ ବଖରା ଭିତରକୁ ପଶିଗଲେ । ସେ ବଖରାରେ ସେ ପାର୍ଶ୍ୱରକ୍ଷୀଙ୍କ ସଙ୍ଗେ କଥାଭାଷା ହେଉଥାନ୍ତି ଆଉ ସେ ପେଡ଼ିଟା ଖୋଲୁଥାନ୍ତି ।

ତମ୍ବୁରୁ ଦୁଆରମୁହଁ ପାଖରେ ଫାବ୍‌ଭିଏ ଠିଆ ହୋଇ ଚିହ୍ନା ସେନାପତିମାନଙ୍କ ସଙ୍ଗରେ କଥାଭାଷା ହେଉଥାନ୍ତି ।

ସମ୍ରାଟ୍ ନେପୋଲିଅନ୍ ସେ ପର୍ଯ୍ୟନ୍ତ ଶୋଇବା ବଖରା ଭିତରୁ ବାହାରି ନଥାନ୍ତି, ସେ ତାଙ୍କ ନିତ୍ୟକର୍ମ ସାରୁଥାନ୍ତି । ଜଣେ ସେବାକାରୀ ତାଙ୍କ ଦେହକୁ ଗୋଟାଏ ବ୍ରୁସ୍ ଧରି ରଗଡ଼ି ଦେଉଥାଏ ଯେ ସେ ଖୁସିରେ ମଝିରେ ମଝିରେ ଗୋଟାଏ ଗୋଟାଏ ଗଳାଖଙ୍କାରି ଆଉ ଘୁମୁରି ଛାଡ଼ି ଛାଡ଼ି ଆଗ ତାଙ୍କର ମୋଟା ପିଠିକୁ ତାପରେ ତାଙ୍କର ମାଉଁସିଆ ଭାଲୁଆ ଛାତିକୁ ତା ଆଡ଼କୁ ବୁଲାଇ ଦେଉଥାନ୍ତି । ଆଉ ଜଣେ

ଋଷୀ ସୈନ୍ୟମାନେ ଯେଉଁ ନେଳିଆ ପୋଷାକ ପିନ୍ଧନ୍ତି, ସେଇ ପୋଷାକ ପିନ୍ଧି ନେପୋଲିଅନ୍ ଦମ୍ଭ ଆଉ କ୍ଷିପ୍ର ପାଦୁଣ୍ଡ ପକାଇ ଦେଖା କରିବା ବଖରା ଆଡ଼କୁ ଗ୍ଲଲିଗଲେ । ସମ୍ରାଟ୍ ସେ ଘର ଭିତରକୁ ପଶିଗଲା ମାତ୍ରେ କେମିତି ସମ୍ରାଟଙ୍କ ମୁହଁ ସାମ୍ନାରେ ଦୁଇଟା ଚୌକିରେ ସାମ୍ରାଜ୍ଞୀ ପଠାଇଥିବା ଉପହାରଟିକ ସଜାଇ ଥୋଇ ଦେଇଥିବେ, ସେଥିପାଇଁ ମଲିଆଁ ବୋସେ ଭାରି ବ୍ୟସ୍ତ ହୋଇ ଲାଗି ପଡ଼ିଥିଲେ । କିନ୍ତୁ ପୋଷାକ ପିନ୍ଧିବା ଓ ସେ ଘରେ ପହଞ୍ଚିବା ଏସବୁ କାମ ସମ୍ରାଟ୍ ଏଡ଼େ ତରତରରେ କରି ପକାଇଲେ ଯେ ସେ ଆସିଲାମାତ୍ରେ ଦେଖି ଆଶ୍ଚର୍ଯ୍ୟ ହେଲାଭଳି ବନ୍ଦୋବସ୍ତ ଶେଷ କରିବାକୁ ବୋସେ ବେଳ ପାଇଲେ ନାହିଁ ।

ସେମାନେ ସବୁ କଣ କରୁଛନ୍ତି, ନେପୋଲିଅନ୍ ଆସିଲାମାତ୍ରେ ତା ଦେଖିଦେଲେ । ସେମାନେ ପ୍ରସ୍ତୁତ ହୋଇ ସାରିଥାନ୍ତି, ଏକଥା ବି ସେ ଅନୁମାନ କରିପାରିଲେ ।

ସେ ଦେଖି ଆଶ୍ଚର୍ଯ୍ୟ ହେବେ ଖୁସି ହେବେ, ଏଥିପାଇଁ ସେମାନେ ଯେଉଁ ଆୟୋଜନ କରୁଛନ୍ତି, ସେ ଆୟୋଜନ କରିବାର ସୁଖରୁ ତାଙ୍କୁ ବଞ୍ଚିତ କରିବାକୁ ସେ ଗ୍ରହିଁଲେ ନାହିଁ । ମସିଅଁ ଦୋ ବୋସେଙ୍କୁ ଯେମିତିକି ସେ ଦେଖି ନାହାଁନ୍ତି । ସେ ଏହାପରି ଛଳନା କରି ଫାବ୍‌ଭିଏଙ୍କୁ ହାତଠାରି ଡାକିଲେ ଓ ମୁହଁ ଭ୍ରୂକୁଟି କରି ତୁନି ହୋଇ ଫାବ୍‌ଭିଏ ଯାହା କହୁଥାନ୍ତି ତା ଶୁଣିଲେ । ଫାବ୍‌ଭିଏ ତାଙ୍କ ଆଗରେ ସୈନ୍ୟବାହିନୀର ବୀରତ୍ୱ ଓ ଅନୁରକ୍ତି କଥା କହୁଥାନ୍ତି । ୟୁରୋପ ମହାଦେଶର ଆରମୁଣ୍ଡରେ ସାଲାମାଙ୍କାରେ ଯେଉଁ ଲଢ଼େଇ ଲାଗିଛି, ସେହି ଲଢ଼େଇ କଥା କହୁଥାନ୍ତି । ସେ କହୁଥାନ୍ତି, ସେ ସୈନ୍ୟମାନଙ୍କର କେବଳ ଗୋଟାଏ ସ୍ୱପ୍ନ—କେମିତି ସେମାନେ ସେମାନଙ୍କ ସମ୍ରାଟଙ୍କର ଯୋଗ୍ୟ ହେବେ, ଖାଲି ସେତିକି । ସେମାନଙ୍କର କେବଳ ଗୋଟାଏ ଭୟ,—କାଳେ ସେମାନଙ୍କ ସମ୍ରାଟ ତାଙ୍କ ଉପରେ ବିରକ୍ତ ହେବେ ।

ଯୁଦ୍ଧର ଫଳ ଅତି ଶୋଚନୀୟ ହୋଇଥାଏ । ଫାବ୍‌ଭିଏ ବର୍ଣ୍ଣନା କରି କହିଲା ବେଳେ ନେପୋଲିଅନ୍ କେତେଗୁଡ଼ାଏ ବ୍ୟଙ୍ଗୋକ୍ତି

କରୁଥାନ୍ତି, ସତେ ଯେପରିକି ସେ ଜାଣିଥିଲେ ଯେ ତାଙ୍କ ଅନୁପସ୍ଥିତିରେ ସେ ଯୁଦ୍ଧର ଫଳ ଅନ୍ୟପ୍ରକାର ହେବ ନାହିଁ ବୋଲି ସେ ଆଗରୁ ଜାଣିଥିଲେ ।

"ଆଚ୍ଛା, ମସ୍କୋରେ ମୁଁ ସେ କ୍ଷତିକୁ ପୂରଣ କରିନେବି, ନମସ୍କାର ।" ନେପୋଲିଅନ୍ କହିଲେ ।

ସେଇଠୁ ସେ ବୋସେଙ୍କ ଆଡ଼କୁ ହାତ ଠାରିଲେ । ସେତେବେଳକୁ ବୋସେ ତାଙ୍କର କମିଆଁ ପ୍ରସ୍ତୁତ କରି ରଖିଥାନ୍ତି, ଦୁଇଟା ଚୌକି ଉପରେ ସେ କଣ ଥୋଇ ଦେଇଥାନ୍ତି, ତା ଉପରେ ଗୋଟାଏ ଢାଙ୍କୁଣି ପକାଇ ଦେଇଥାନ୍ତି ।

ରାଜପରିଷଦମାନେ ଯେମିତି ମୁଣ୍ଡକୁ ଖୁବ୍ ତଳକୁ ନୁଆଁଇ ଦଣ୍ଡବତ କରନ୍ତି, ବୋସେ ସେମିତିଆ ଦଣ୍ଡବତଟିଏ କଲେ । କେବଳ ବୋର୍ବୋଁ ବଂଶର ସମ୍ରାଟମାନଙ୍କର ପୁରୁଣା ସେବାଏତମାନଙ୍କୁ ହିଁ ସେମିତି ଦଣ୍ଡବତ କରିବା କାଇଦା ଜଣାଥିଲା ।

ନେପୋଲିଅନ୍ ତାଙ୍କୁ ଭାରି ଖୁସିରେ କଥା କହି ତାଙ୍କ କାନକୁ ଚୁମୁଟି ଦେଲେ । ତାଙ୍କ ମୁହଁର କଠିନତା ହଠାତ୍ ବଦଳିଗଲା । ସେଠି ଫୁଟି ଉଠିଲା ଅତି ସ୍ନେହ ଆଦରର ଠାଣି । ସେ କହିଲେ "ଭାରି ଚଞ୍ଚଳ ଆସିଚ । ତମକୁ ଦେଖି ଭାରି ଖୁସି ହେଲି । ଆଚ୍ଛା, ପ୍ୟାରିସ୍ କ'ଣ କହୁଛି ?"

ବୋସେ କର୍ତ୍ତବ୍ୟ ପାଳନ କଲା ଭଙ୍ଗୀରେ କହିଲା "ମହିମା, ସମୁଦାୟ ପ୍ୟାରିସ୍ ମହିମାଙ୍କ ବିଚ୍ଛେଦରେ ଦୁଃଖ କରୁଛି । ନେପୋଲିଅନ ଜାଣିଥିଲେ ଯେ ଏଇକଥା କି ଏମିତିଆ କିଛି କହିବାକୁ ବୋସେ ବାଧ୍ୟ, ନେପୋଲିଅନଙ୍କ ମୁଣ୍ଡ ଥଣ୍ଡା ଥିଲାବେଳେ ସେ ବୁଝିଥିଲେ ଯେ ଏକଥାଗୁଡ଼ାକ ମିଛକଥା, ତଥାପି ତାଙ୍କଠୁଁ ଏକଥା ଶୁଣିବାକୁ ତାଙ୍କୁ ଖୁସି ଲାଗୁଥାଏ । ସେ ପୁଣି ଦୟାକରି ତାଙ୍କ କାନଧରି ଚୁମୁଟି ଦେଲେ । ସେ କହିଲେ "ତମକୁ ଏତେବାଟ ଦୌଡ଼େଇ ନେଲି ସେଥିପାଇଁ ମୁଁ ଦୁଃଖିତ ।"

ବୋସେ କହିଲେ "ମଣିମା, ଅନ୍ତତଃ ମଣିମା ଯାଇ ମସ୍କୋର ଫାଟକ ସାମ୍ନାରେ ହେବେଣି ସେଇଠି ମଣିମାଙ୍କୁ ଭେଟିବି ବୋଲି ମୁଁ ଭାବିଥିଲି ।"

ନେପୋଲିଅନ ହସିଦେଲେ । ମୁଣ୍ଡଟେକି ଅନ୍ୟମନସ୍କ ଭାବେ ଡାହାଣ ଆଡ଼କୁ ଅନାଇଁଲେ । ଜଣେ ପାର୍ଶ୍ୱରକ୍ଷୀ ଗୁରୁଗମ୍ଭୀର ଠାଣିରେ ଗୋଟାଏ ସୁନା ନାସଦାନ ଘେନି ଆସି ପହଞ୍ଚି ତାଙ୍କୁ ବଢ଼େଇ ଦେଲା, ନେପୋଲିଅନ ତାକୁ ନେଲେ ।

ଖୋଲା ନାସଦାନକୁ ନାକ ପାଖରେ ଦେଖାଇ ନେପୋଲିଅନ କହିଲେ "ହିଁ, ଏ ଭ୍ରମପାଇଁ ଗୋଟାଏ ଖୁବ୍ ମଜଜ ବୁଲାଟାଏ ହୋଇଥିଲା । ତମକୁ ବୁଲିବାକୁ ଭଲ ଲାଗେ, ଆଉ ଅନତିବିଳମ୍ବରେ ତୁମେ ମସ୍କୋ ସହର ଦେଖିବ । ଏସିଆ ମହାଦେଶର ଗୋଟିଏ ରାଜଧାନୀ ଦେଖିବ ବୋଲି ତମେ ତ ବୋଧହୁଏ କେବେ କଳ୍ପନା କରିନଥିଲ, ବାଟଟା ବି ଖୁବ୍ ଭଲରେ କଟିବ ତମର ।"

ବୋସେ କୃତଜ୍ଞତା ଦେଖାଇ ଦଣ୍ଡବତ ହେଲେ ।

ନେପୋଲିଅନ ଲକ୍ଷ୍ୟ କଲେ ଯେ ସବୁ ସଭାସଦମାନେ ଗୋଟାଏ ଘୋଡ଼ଣୀ ତଳେ ଲୁଚି ରହିଥିବା କଣ ଗୋଟାଏ ଜିନିଷ ଆଡ଼କୁ ଏକ ଦୃଷ୍ଟିରେ ଅନାଇଁ ରହିଛନ୍ତି । ନେପୋଲିଅନ କହିଲେ "ଆରେ, ସେଇ ପୁଣି କ'ଣ ?"

ରାଜସଭାର ପରିଷଦ ସୁଲଭ କ୍ଷିପ୍ର ଗତିରେ ବୋସେ ଦୁଇ ପାହୁଣ୍ଡ ପଛକୁ ଗୁଞ୍ଚିଗଲେ, ଅଧା ବୁଲିପଡ଼ିଲେ ଯେମିତି ସମ୍ରାଟଙ୍କ ଆଡ଼କୁ ତାଙ୍କ ପିଠି ନ ଦିଶିବ ଆଉ ଠିକ୍ ସେହି ମୁହୂର୍ତ୍ତରେ ଘୋଡ଼ଣିଟାକୁ ଉଠାଇ ନେଲେ ଆଉ କହିଲେ, "ସାମ୍ରାଜ୍ଞୀ ମଣିମାଙ୍କ ପାଖରୁ ଏ ଉପହାର ପଠାଇଛନ୍ତି ।"

ସେଇଟା ଗୋଟିଏ ଛବି, ଶିଳ୍ପୀ ଜେରାର୍ଡ଼୍ ନାନା ଉଜ୍ଜ୍ୱଳ ରଙ୍ଗରେ ସେ ଛବିକୁ ଆଙ୍କିଥାନ୍ତି । ନେପୋଲିଅନ ଓ ଅଷ୍ଟ୍ରିଆ ସମ୍ରାଟଙ୍କ ଝିଅ ଏ

ଦୁହିଁଙ୍କର ଯେଉଁ ପୁଅଟି ହୋଇଥିଲା ଓ ଯେଉଁ ପିଲାଟିକୁ କୌଣସି ଅଜଣା କାରଣରୁ ସମସ୍ତେ ରୋମ୍ ଦେଶର ରାଜା ବୋଲି କହୁଥିଲେ ଏ ଛବିଟି ସେହି ଶିଶୁର ।

ଶିଶୁଟି ଭାରି ସୁନ୍ଦର, ତା ମୁଣ୍ଡରେ କୁଞ୍ଚୁକୁଞ୍ଚିକିଆ ବାଳ, ଯୀଶୁଖ୍ରୀଷ୍ଟ ତାଙ୍କ ମା ସିଷ୍ଟିନ୍ ମାଡୋନାଙ୍କ ସଙ୍ଗରେ ଛବିରେ ଅଙ୍କା ହୋଇ ଯେମିତି ତାଙ୍କ ଆଖିଯୋଡ଼ିକ ଦିଶେ ଏ ପିଲାଟିର ଆଖିଯୋଡ଼ିକ ବି ସେମିତି ସୁନ୍ଦର । ଛବିରେ ଅଙ୍କା ହୋଇଥାଏ ପିଲାଟି ଗୋଟିଏ ବାଡ଼ିଆ ଆଉ ଗୋଟିଏ ପେଣ୍ଡୁ ଧରି ଖେଳୁଛି । ପେଣ୍ଡୁଟି ପୃଥିବୀ ଭୂମଣ୍ଡଳର ରୂପକ, ଆଉ ହାତରେ ଧରିଥିବା ବାଡ଼ିଆଟି ରାଜଦଣ୍ଡର ରୂପକ ।

ଯାହାକୁ ଲୋକେ ରୋମ ଦେଶର ରାଜା କହନ୍ତି, ସେ ଗୋଟାଏ ପୃଥିବୀ ଭୂମଣ୍ଡଳ ପେଣ୍ଡୁକୁ ରାଜଦଣ୍ଡରେ ଧରି ଫୋପାଡ଼ି ଦେଉଛି, ଏପରି ଛବି ଆଙ୍କି ଶିଳ୍ପୀ କି ଅର୍ଥ ସୂଚାଇବାକୁ ଚେଷ୍ଟା କରିଛନ୍ତି ସେକଥା ଭଲକରି ବୁଝାଯାଉନଥାଏ ସତ, କିନ୍ତୁ ଯେଉଁମାନେ ପ୍ୟାରିସ୍ ସହରରେ ସେ ଛବିକୁ ଦେଖିଥିଲେ ସେମାନଙ୍କୁ ସେ ଛବିର ରୂପକ ଯେମିତି ଲାଗିଥିଲା ନେପୋଲିଅନଙ୍କୁ ମଧ୍ୟ ସେ ରୂପକ ସେହିପରି ଅତି ପରିଷ୍କାର ଓ ଅତି ଆନନ୍ଦକର ଜଣାପଡ଼ିଲା ।"

ସେ ଛବି ଆଡ଼କୁ ସୁନ୍ଦର ଭଙ୍ଗୀରେ ହାତ ବଢ଼ାଇ ନୋପୋଲିଅନ କହିଲେ "ରୋମ୍‌ର ରାଜା ! ଭାରି ଚମତ୍କାର !"

ସେ ଛବିକୁ ତମ୍ବୁ ସାମ୍ନାକୁ ଟେକିନେଇ ଯିବାକୁ ସେ ଆଦେଶ ଦେଲେ କାରଣ ତମ୍ବୁ ନିକଟରେ ତାଙ୍କର ଯେଉଁ ପୁରୁଣା ରକ୍ଷୀଦଳ ଠିଆ ହୋଇଥିଲେ ସେମାନେ ତାଙ୍କ ପୁଅ ସମ୍ରାଟଙ୍କ ପୁଅ ଓ ଭାବି ଉତ୍ତରାଧିକାରୀ ସେ ରୋମର ରାଜାଙ୍କୁ ଦେଖିବାର ଆନନ୍ଦରୁ ଯେପରି ବଞ୍ଚିତ ହେବେନାହିଁ ।

ବହୁତ ଆଗ୍ରହୀ ସ୍ୱରରେ ଜୟ ଶବ୍ଦ ଶୁଭିଲା । "ଜୟ ସମ୍ରାଟଙ୍କର ଜୟ ! ଜୟ ରୋମର ରାଜାଙ୍କର ଜୟ ! ସମ୍ରାଟ ଚିରଜୀବି ହୁଅନ୍ତୁ !"

ଜଳଖିଆ ଖାଇସାରି ନେପୋଲିଅନ ସୈନ୍ୟବାହିନୀ ପ୍ରତି ତାଙ୍କର ଘୋଷଣା ଲେଖିନେବାକୁ ଡାକିଦେଲେ । ଡାକିଲେ, "ସୈନ୍ୟଗଣ !

ଆପଣମାନେ ଯେଉଁ ଯୁଦ୍ଧକୁ ୰ୂର ହେଉଥିଲେ ଏ ସେହି ଯୁଦ୍ଧ ଆସିଗଲା । ବିଜୟ ଆପଣମାନଙ୍କ ହାତରେ ରହିଛି । ବିଜୟ ଆମର ଏକାନ୍ତ ପ୍ରୟୋଜନ । ଆମର ଦରକାର—ଆରାମରେ ରହିବାକୁ ଘର ଓ ଆପଣା ଦେଶକୁ କପର ଶୀଘ୍ର ଫେରଯିବା, ସବୁ ଏ ବିଷୟ ପରେ ଆମେ ପାଇଯିବା ।

ଅଷ୍ଟରଲିଜ୍ ଯୁଦ୍ଧ ବେଳେ ଫ୍ରିଏଣ୍ଡଲ୍ୟାଣ୍ଡ ଯୁଦ୍ଧ ବେଳେ, ଭିଟେବ୍‌ସ୍କ ଯୁଦ୍ଧରେ, ସ୍ମୋଲେନ୍‌ସ୍କ ଯୁଦ୍ଧରେ ଆପଣମାନେ ଯେପରି କାର୍ଯ୍ୟକରିଥିଲେ ଏ ଯୁଦ୍ଧରେ ବି ସେହିପରି କାର୍ଯ୍ୟ କରନ୍ତୁ । ଆଜି ଆପଣମାନେ ଯେଉଁ ଯଶ ଅର୍ଜନ କରିବେ ଆମ ଦେଶରେ ଭବିଷ୍ୟତ ବଂଶଧରମାନେ ଯେପରି ତାକୁ ସ୍ମରଣ କରି ଗର୍ବରେ ଫୁଲିଉଠୁଥିବେ ଆଜି ସେହିପରି କାର୍ଯ୍ୟ ଆପଣମାନେ କରନ୍ତୁ । ଆପଣମାନଙ୍କ ପ୍ରତ୍ୟେକଙ୍କ ବିଷୟରେ ସେମାନେ ଯେପରି କହିବେ ! ମସ୍କୋ ସହର ସାମ୍ନାରେ ଯେଉଁ ପ୍ରସିଦ୍ଧ ଯୁଦ୍ଧ ହୋଇଥିଲା ସେ ଯୁଦ୍ଧରେ ସେ ଥିଲେ ।”

ନେପୋଲିଅନ ତମ୍ବୁ ଭିତରୁ ପଦାକୁ ବାହାରି ପଡ଼ିଲାକ୍ଷଣି ତାଙ୍କ ପୁଅର ଛବି ଆଗରେ ରକ୍ଷୀଦଳଙ୍କ ଚିତ୍କାର ଦୁଇଗୁଣ ହୋଇ ବଢ଼ି ଉଠିଲା । ନେପୋଲିଅନ ଭ୍ରୂକୁଞ୍ଚିତ କଲେ ।

ସେହି ଛବି ଆଡ଼କୁ ରାଜ ଠାଣିରେ ସୁନ୍ଦର ଭଙ୍ଗୀରେ ହାତ ଦେଖାଇ ଦେଇ କହିଲେ “ତାଙ୍କୁ ଏଠୁ ନେଇଯାଆନ୍ତୁ । ଯୁଦ୍ଧ ଭୂମିକୁ ଦେଖିଲା ଭଳି ତାଙ୍କର ବୟସ ହୋଇନାହିଁ ।”

ସେହି ରାତରେ ସୈନ୍ୟଦଳମାନଙ୍କୁ ଅତି ଯତ୍ନରେ ନିରେଖି ନିରେଖି ପରିଦର୍ଶନ କରିସାରି ଲେଉଟି ଆସି ନେପୋଲିଅନ କହିଲେ ପାଲି ଉପରେ ସାରସବୁ ଖଞ୍ଜା ସରିଛି । ଖେଳଟା କାଲିକି ଆରମ୍ଭ ହେବ ।

ତାଙ୍କ ସାମ୍ନାରେ ଯାହା ରହିଥିଲା ସେଥିରେ ସେ ଏତେ ବ୍ୟସ୍ତ ହୋଇ ରହିଥିଲେ ଯେ ତାଙ୍କ ଆଖିକି ନିଦ ଆସିଲା ନାହିଁ । ତାଙ୍କୁ ସର୍ଦ୍ଦି ହୋଇଥାଏ, ସଞ୍ଜବୁଡ଼େ ପାଗ ସନ୍ତସନ୍ତିଆ ହେବାରୁ ତାଙ୍କ ସର୍ଦ୍ଦି

ଆହୁରି ବଢ଼ି ଗଲା । ଦେହକୁ ଥଣ୍ଡା ଧରିଥିଲେ ସେ ଘଣ୍ଟ ଘଣ୍ଟା ବେଳେ ଉଠିପଡ଼ି ବଡ଼ ଜୋରରେ ଛିଙ୍କି ଛିଙ୍କିକା ତମ୍ବୁର ପ୍ରଧାନ ବଖୁରିକୁ ଚାଲିଗଲେ । ରୁଷ୍ ସୈନ୍ୟ ହଟିଯାଇଛନ୍ତି କି ନାହିଁ ବୋଲି ସେ ପଚାରିଲେ । ସେ ଉତ୍ତର ପାଇଲେ ଯେ ଶତ୍ରୁ ପକ୍ଷର ନିଆଁ ଆଲୁମାନ ଯେଉଁଠି ଥିଲା ସେଇଠି ଅଛି । ଉତ୍ତର ଶୁଣି ସେ ପ୍ରଶଂସାରେ ମୁଣ୍ଡ ହଲାଇଲେ ।

ଯେଉଁ ପାର୍ଶ୍ୱରକ୍ଷୀ ସେତେବେଳେ କର୍ତ୍ତବ୍ୟ ଉପରେ ଥିଲେ ସେହି ତମ୍ବୁ ଭିତରକୁ ଆସିଲେ ।

ନେପୋଲିଅନ ତାଙ୍କୁ ପଚାରିଲେ "କଣ କହୁଚ ରାପ୍, ଆଜି ଆମ ଧନ୍ଦାଟା ଭଲ ଉତୁରିବ କି ନାହିଁ ?"

ରାପ୍ କହିଲେ "ଏଥିରେ କୌଣସି ସନ୍ଦେହ ନାହିଁ ମଣିମା ।" ନେପୋଲିଅନ ତାଙ୍କ ଆଡ଼କୁ ଚାହିଁଲେ ।

ରାପ୍ କହିଲେ "ମଣିମାଙ୍କର ମୋତେ ସ୍ମୋଲେନ୍ସ୍କରେ କଣ କହିବାକୁ ଆଜ୍ଞା ହୋଇଥିଲା ହେଉ ଅଛି କି ନାହିଁ କେଜାଣି । ସେତେବେଳେ ଶ୍ରୀମୁଖରୁ ଆଜ୍ଞା ହୋଇଥିଲା ମଦଟା କଡ଼ା ସରିଛି, ତାଙ୍କୁ ନିଶ୍ଚୟ ପିଇବାକୁ ପଡ଼ିବ ।"

ନେପୋଲିଅନ, ଭ୍ରୂକୁଞ୍ଚିତ କଲେ । ବହୁତ ସମୟ ହାତରେ ମୁଣ୍ଡ ଥୋଇ ତୁନି ହୋଇ ବସିରହିଲେ ।

କହିଲେ "ଏଇ ସୈନ୍ୟବାହିନୀ ବିଚରାଟି ସ୍ମୋଲେନସ୍କ ଯୁଦ୍ଧ ପରଠୁଁ ଏ କେଉଁ ପାତଳ ପଡ଼ିଗଲାଣି । ବୁଝିଲ ରାପ୍, ଭାଗ୍ୟଦେବୀ ସତେକି ଫରାସୀ ଦେଶର ଗୋଟାଏ ବେଶ୍ୟା ପରି । ମୁଁ ସବୁଦିନେ ଏମ କଥା କହିଆସିଛି, ମତେ ସେମିତି ବି ଲାଗୁଛି ।" ପୁଣି ପ୍ରଶ୍ନ ପଚାରିଲା ପରି କହିଲେ "କିନ୍ତୁ ମୋର ରକ୍ଷୀସେନା କେମିତି ଅଛନ୍ତି ରାପ୍ ? ସେମାନେ ଅଭୁଟ ରହିଛନ୍ତି ତ ?"

"ହଁ ମଣିମା," ରାପ୍ ଜବାବ ଦେଲେ । ନେପୋଲିଅନ ଗୋଟିଏ ଔଷଧ ମିଶା ଲେମଞ୍ଜୁସ ନେଇ ପାଟିରେ ପକାଇଲେ, ତା'ପରେ ତାଙ୍କ

ଘଣ୍ଟାକୁ ଚାହିଁଲେ । ତାଙ୍କୁ ନିଦ ମାଡ଼ୁ ନଥାଏ । ଏଣେ ସକାଳ ହେବାକୁ
କାହିଁ କେତେ ଡେରିଥାଏ । ସମୟ କଟାଇବା ସକାଶେ ନୂଆ
ଆଦେଶ ଲେଖିବା କଥା ବି ନଥାଏ କାରଣ ଯାହା ଉପଦେଶ ଦେବା
କଥା ସେ ସବୁତ ଦିଆ ସରିଥାଏ । ବରଂ ଏତେ ବେଳକୁ ସେହି
ଅନୁସାରେ କାର୍ଯ୍ୟ ହେଉଥିବ । ନେପୋଲିଅନ୍ ଶର୍ଯ୍ୟାରେ ହୋଇ ପଚାରିଲେ
‘ରକ୍ଷୀ ସେନାର ଦଳମାନଙ୍କୁ ବିସ୍କୁଟ୍ ଆଉ ଚାଉଳ ବାଣ୍ଟି ଦିଆ-
ହୋଇଛି ।’’ ‘ହଁ ମଣିମା ।’’ ‘‘ଚାଉଳ ବି ?’’ ରାପ୍ କହିଲା ଯେ ଚାଉଳ
ଦେଇ ଦେବାକୁ ସମ୍ରାଟଙ୍କ ଆଦେଶ ସେ ଜଣାଇ ଦେଇଛନ୍ତି, କିନ୍ତୁ
ନେପୋଲିଅନ ଅସନ୍ତୁଷ୍ଟ ହେଲାପରି ଭଙ୍ଗୀ ଦେଖାଇ ମୁଣ୍ଡ ହଲାଇଲେ,
ସତେ ଯେପରିକି ସେ ସନ୍ଦେହ କରୁଥାନ୍ତି ଯେ ତାଙ୍କ ଆଦେଶ ପ୍ରକୃତରେ
ପାଳନ କରା ହେଲା କି ନାହିଁ । ଗୋଟିଏ ଚାକର ମଦ ନେଇ ଆସି
ପହଞ୍ଚିଲା । ରାପ୍‌ଙ୍କ ପାଇଁ ଆଉ ଗିଲାସେ ଆଣି ଦେବାକୁ ସେ ହୁକୁମ୍
ଦେଲେ । ଆପଣା ଗିଲାସରୁ ଭୁନଭାନ ହୋଇ ସେ ଦିଢୋକ ପିଇଲେ ।
ତାପରେ ଗିଲାସକୁ ନାକରେ ଶୁଙ୍ଘି ଶୁଙ୍ଘି ସେ କହିଲେ, ‘‘ସ୍ୱାଦ କି
ବାସ୍ନା କିଛି ବାରିଲା ଭଳି ମୋର ଶକ୍ତି ନାହିଁ । ମତେ ଏ ସର୍ଦ୍ଦି ବିରକ୍ତ
ଲାଗିଲାଣି । ଲୋକେ ଔଷଧ ଔଷଧ ବୋଲି କହନ୍ତି । ସାମାନ୍ୟ ସର୍ଦ୍ଦି ଟିକିଏ
ତ ଭଲହୋଇ ପାରୁନାହିଁ ଆଉ ଔଷଧରେ କ’ଣ ହେବ ? କର୍‌ଭିସାର୍ଟ
ମୋତେ ଏ ଔଷଧ ଲେମୋଞ୍ଜମ ଗୁଡ଼ାକ ଦେଇଥିଲେ, ସେଥିରେ କିଛି
କାମ ହେଉନାହିଁ । କି ରୋଗ ଏ ଡାକ୍ତରମାନେ ଭଲ କରିପାରିବେ ?
ସେମାନେ କିଛି ଭଲ କରିପାରିବେ ନାହିଁ । ଆମ ଦେହ ବଞ୍ଚିବା ସକାଶେ
ଗୋଟିଏ ଯନ୍ତ୍ର । ସେଇଥିପାଇଁ ସେ ଖଞ୍ଜା ହୋଇରହିଛି । ସେଇ ହେଉଛି
ତାର ସ୍ୱଭାବ । ବାଧା ନଦେଇ ଦେହ ଉପରେ ଜୀବନର ଭାର ଦେବା
ତାର ସ୍ୱଭାବ । ଜୀବନ ତା ଭିତରେ ରହି ନିଜକୁ ନିଜେ ରକ୍ଷା କରୁ ।
ତୁମେ ତା ଉପରେ ବୋଝେ ଔଷଧ ଲଦି ଦେଇ ତାକୁ ଅଚଳ
କରିଦେଇ ଯାହା କରି ପାରନ୍ତ ସେ ଆପେ ତହିଁରୁ ଅଧିକ କରିବ ।
ଆମ ଦେହ ଗୋଟାଏ ଚମତ୍କାର ଘଣ୍ଟା । କେତେ ସମୟ ଯାଏ ସେ
ଚାଲୁଥିବ ତା ଆଗରୁ ନିର୍ଦ୍ଦିଷ୍ଟ ହୋଇ ରହିଛି । ତାକୁ ପୁଣି ଥରେ
ଖୋଲିପକାଇବାକୁ ଘଣ୍ଟା ଗଢ଼ାଳି କାରିଗରର କ୍ଷମତା ନାହିଁ । ସେ ଖାଲି

ଆଖିରେ ଅନ୍ଧ ପୋଟଳା ବାନ୍ଧି ତାଙ୍କୁ ଦଣ୍ଡ ଦିଆଯିବ । ଆମ ଦେହଟା ଖାଲି ଜୀବନ କଞ୍ଚିବା ସକାଶେ ଗୋଟାଏ କଳ ମାତ୍ର । ଖାଲି ସେତିକି ।”

ସଂଜ୍ଞା ନିର୍ଦ୍ଧାରଣ କରିବା ତାଙ୍କର ଗୋଟିଏ ଦୁର୍ବଳତା । ବୋଧହୁଏ କଥା କହୁ କହୁ ସେ ସଂଜ୍ଞା ନିର୍ଦ୍ଧାରଣ କରିବାକୁ ଆରମ୍ଭ କରିଦେଇ ଥିଲେ ବୋଲି ସେ ହଠାତ୍ ଗୋଟିଏ ନୂଆ ବିଷୟରେ ସଂଜ୍ଞା ନିର୍ଦ୍ଧାରଣ କରିବାକୁ ବସିଥିଲେ । କହିଲେ “ଯୁଦ୍ଧ କୌଶଳ କାହାକୁ କହନ୍ତି ଜାଣିଚ ରାପ୍ ? ଯୁଦ୍ଧ କୌଶଳ ହେଉଛି ଗୋଟିଏ ନିର୍ଦ୍ଦିଷ୍ଟ ମୁହୂର୍ତ୍ତର ଶତ୍ରୁପକ୍ଷ ଅପେକ୍ଷା ଅଧିକ ବଳୁଆ ହେବ । ଦେଶ୍. ସେତିକି ।”

ରାପ କିଛି ଜବାବ ଦେଲେନାହିଁ । ନେପୋଲିଅନ କହିଲେ “କାଲି ଆମକୁ କୁତୁଜଭଙ୍କ ସଙ୍ଗରେ କାରବାର କରିବାକୁ ପଡ଼ିବ । ହଉ ଦେଖିବା । ତୁମର ମନେଥିବ, ବ୍ରାଉନାଉ ଯୁଦ୍ଧବେଳେ ସେ ପ୍ରଧାନ ସେନାପତି ଥିଲେ ଯେ ତିନ ସପ୍ତାହ ଭିତରେ ଥରଟିଏ ବି ତାଙ୍କ ସୈନ୍ୟମାନଙ୍କ ଅବସ୍ଥିତି ଦେଖିଆସିବା ସକାଶେ ଘୋଡ଼ାରେ ବି ଚଢ଼ି ନାହାନ୍ତି । ହଉ ଦେଖିବ ।”

ସେ ପୁଣି ଘଣ୍ଟା ଦେଖିଲେ । ସେତେବେଳକୁ ମୋଟେ ରାତି ଚାରିଟା ବାଜିଥାଏ । ତାଙ୍କୁ ନିଦ ମାଡ଼ୁ ନଥାଏ । ମଦ ଟିକିକ ପିଇ ଦେଇ ସାରିଥାନ୍ତି । କ'ଣ ପୁଣି କରିବେ ସେଥିପାଇଁ କିଛି କାମ ନଥାଏ । ସେ ଠିଆ ହୋଇପଡ଼ିଲେ, ଏକର ସେକର ହୋଇ ବୁଲିଲେ, ଗରମ କୋଟ ଗଳେଇ ପକେଇ ମୁଣ୍ଡରେ ଟୋପି ପିନ୍ଧି ତମ୍ବୁ ଭିତରୁ ପଦାକୁ ବାହାରି ପଡ଼ିଲେ । ଅନ୍ଧାର ରାତି, ସନ୍ତ ସନ୍ତିଆ ହୋଇଥାଏ । ମେଘ କୁଣ୍ଡା ଝାଡ଼ୁଥାଏ ଯେ ପ୍ରାୟ ତାର ଶବ୍ଦ ଶୁଭୁନଥାଏ । ନିକଟରେ ଫରାସୀ ରକ୍ଷୀ ଦଳଙ୍କ ଗୁଳିରେ ଗୁଳିର ନିଆଁ ଧିମେଇଁ ଧିମେଇଁ ଜଳୁଥାଏ । ଦୂରରେ ଧୂଆଁ ଭିତରେ ଦିଶୁଥାଏ ଋଷ ପକ୍ଷର ସୈନ୍ୟ ଧାଡ଼ିମାନଙ୍କରେ ଗୁଳି ନିଆଁ ହୁଲୁ ହୁଲୁ ହୋଇ ଜଳୁଥାଏ । ପବନ ଥମିଥାଏ । ଫରାସୀ ପକ୍ଷର ସୈନ୍ୟମାନେ ଆପଣା ଆପଣା ଘାଟି ଜାଗାକୁ ଯାଉଥାନ୍ତି ଯେ ହଲ୍ ଚଲ୍ ହେବା ଶବ୍ଦ ଓ ଘୋଡ଼ାଙ୍କ ଟାପୁ ଶବ୍ଦ ଅଳ୍ପ ଅଳ୍ପ ଶୁଭିଯାଉଥାଏ ।

ନେପୋଲିଅନ ତମ୍ବୁ ଆଗରେ ଏକର ସେକର ହୋଇ ବୁଲୁଥାନ୍ତି ନିଆଁ ଆଡ଼କୁ ଚାହୁଁଥାନ୍ତି । ଟାପୁ ଶବ୍ଦକୁ କାନେଇଥାନ୍ତି । ଜଣେ ଡେଙ୍ଗା ରକ୍ଷୀ ସୈନ୍ୟ କରବାଟେ ସେ ଚଲେ । ସେ ଗୋଟାଏ ରୁମ ଲୁଆର ଟୋପି ପିନ୍ଧିଥାଏ । ସମ୍ରାଟଙ୍କୁ ଦେଖିଲାକ୍ଷଣି ଗୋଟାଏ କଳାଖୁଣ୍ଟପରି ସେ ସଳଖ ହୋଇ ଠିଆ ହେଲା । ନେପୋଲିଅନ ତା ଆଡ଼କୁ ମୁହଁ କରି ସ୍ଥିର ହୋଇ ଠିଆ ହେଲେ ।

''କେଉଁ ସାଲରୁ ତୁମେ ଚାକିରୀ କରଛ ?,' ସେ ପଚାରିଲେ, ''ସୈନ୍ୟମାନଙ୍କ ସଙ୍ଗେ କଥାବାର୍ତ୍ତା କଲାବେଳେ ସେ ଯେପରି ସ୍ନେହ ଶରଧାରେ କଥା କହନ୍ତି ଆଉ ଯେପରି ସୈନିକ ସୁଲଭ ସ୍ପଷ୍ଟ ରୋକଠୋକ୍ ଭାଷାରେ କଥା କହନ୍ତି ସେହିପରି ଭାବରେ ସେ ତାକୁ କହିଲେ । ସୈନିକ ଉତ୍ତର ଦେଲା, ''ବା । ପୁରୁଣା ଲୋକଙ୍କ ଭିତରୁ ଜଣେ ! ସୈନ୍ୟ ଦଳ ଭିତରେ ସମସ୍ତଙ୍କୁ ଭାତ ମିଳୁଛି ନା ।''

'ହଁ ମଣିମା ।''

ନେପୋଲିଅନ ମୁଣ୍ଡ ହଲାଇଲେ । ସେଠୁ ଚାଲିଗଲେ । ସାଢ଼େ ପାଞ୍ଚଟା ବେଳକୁ ନେପୋଲିଅନ ଘୋଡ଼ାରେ ଚଢ଼ି ଶେଭାର୍ଦ୍ଦିନ ଗାଁକୁ ଗଲେ ।

ସିନ୍ଦୂର ଫାଟୁଥାଏ । ଆକାଶ ପରିଷ୍କାର ହେଲା । ଖାଲି ପୂର୍ବ ଦିଗବଳୟରେ ଗୋଟିକିଆ ମେଘ ଦିଶୁଥାଏ, ତୋଫାନର ମେଘ ଖଣ୍ଡପରି । ସକାଳର ନିଷ୍ପ୍ରଭ ଆଲୁଅରେ ଛୁଟା ଛୁଟା ଘୁଷୁରୀ ନିଆଁ ଜଳି ଲାଗିଥାଏ ।

ଡାହାଣ ପଟେ ଗୁମ୍ ଗୁମ୍ ଶବ୍ଦ କରି କେବଳ ଗୋଟାଏ ତୋଳ ତୋପ ଛାଡ଼ିଗଲା । ପୁଣି ଗୋଟାଏ ଦ୍ୱିତୀୟ ଗୁଳିର ଶବ୍ଦ ଶୁଭିଲା, ପୁଣି ତୃତୀୟ ଗୁଳିର ପବନ ଦୁଲୁକି ଉଠୁଥାଏ । ପୁଣି ଲଗାଲଗି ହୋଇ ଡାହାଣ ପଟେ ଚତୁର୍ଥ ଓ ପଞ୍ଚମ ଗୁଳି ମହା ସମାରୋହରେ ଚାଲିଲା ବୋଲି ଶବ୍ଦ ଶୁଭିଲା ।

ଆଗ ଆଗ ଯାଇଥିବା ଗୁଳିମାନଙ୍କ ଶବ୍ଦ ସଣଯାଇନଥାଏ । ପୁଣି ଅନ୍ୟାନ୍ୟ ତୋପ ଗୁଳିର ଶବ୍ଦ ଶୁଭିଲା । ତୋପ ଗୁଳି ଗୋଡ଼ାକ ପାଖେ ଆଉ ଗୋଟାଏ ପହଞ୍ଚିବାକୁ ଚେଷ୍ଟାକଲା ଭଳି ତା ଉପରୁ ଗୋଡ଼ଆ ଗୋଡ଼ ହୋଇ ଚାଲିଥାଏ । ସେଗୁଡ଼ାକର ଗର୍ଜନ ଏକାଠି ମିଶିଯାଉ ଥାଏ ।

ନେପୋଲିଅନ ତାଙ୍କ ପାର୍ଶ୍ୱରକ୍ଷୀ ଦଳକୁ ସଙ୍ଗରେ ଧରି ଶେଭାର୍ଦ୍ଦିନୋ ଘାଟିକୁ ଘୋଡ଼ାରେ ଚଢ଼ି ଚାଲିଗଲେ ।

ଖେଳ ଆରମ୍ଭ ହୋଇଯାଇଥାଏ ।

ପ୍ରିନ୍ସ୍ ଆନ୍ଦ୍ରେଙ୍କୁ ଦେଖିସାରି ପିଏରେ ଗର୍କିଗାଁକୁ ଫେରିଆସି ତାର ଗାଡ଼ି ଚାଳକକୁ ହୁକୁମ ଦେଲେ । ତହିଁଆର ଦିନ ସକାଳେ ବଡ଼ି ପାହାନ୍ତାରୁ ଘୋଡ଼ାକୁ ଗାଡ଼ିରେ ଯୋଚିଦେଇ ସେମାନେ ତାକୁ ଡାକିବେ । ଗୋଟାଏ ପର୍ଦ୍ଦା ପଛ ଆଡ଼େ ଗୋଟାଏ କ'ଣ ଥାଏ । ବୋରିସ ତା ପାଇଁ ସେ ଜାଗାଟିକିକ କରାଇଦେଇଥାଏ । ଗାଡ଼ିବାଲାକୁ ନିର୍ଦ୍ଦେଶ ଦେଇସାରି ସେଇ୍ୱ ସଙ୍ଗେ ସଙ୍ଗେ ଚଟ୍‌କିନା ସେ କଣରେ ଶୋଇପଡ଼ିଲା ।

ତହିଁ ଆରଦିନ ସକାଳେ ପିଏରେର ଯେତେବେଳେ ଭଲକରି ନିଦ ଭାଙ୍ଗିଗଲା ସେତେବେଳେ ସେ କୁଡ଼ିଆ ଭିତରେ କେହି ନ ଥାନ୍ତି । ସେ ଘରର ସାନ ସାନ ଝରକାରେ ଖିଡ଼କି ଗୁଡ଼ାକ ଖଡ଼ ଖଡ଼ ହୋଇ ଥରୁଥାଏ । ଗାଡ଼ି ଚାଳକ ତା କଡରେ ଠିଆ ହୋଇ ତାକୁ ହଲାଇ ହଲାଇ ଡାକିଚାଲିଥାଏ "ହଜୁର । ହଜୁର !" ସେ ତା କାନ୍ଧକୁ ଧରି ହଲାଇ ହଲାଇ ଏମିତି ବାରମ୍ବାର ଡାକୁଥାଏ । ତା ଆଡ଼କୁ ଚାହିଁ ବି ନ ଥାଏ, ସତେ ଯେପରିକି ସେ ଆଶା ଛାଡ଼ି ଦେଇଥାଏ ଯେ କେବେ ଆଉ ନିଦରୁ ଉଠିବ ନାହିଁ ବୋଲି ।

ତେଣୁ ଉଠି ପିଏରେ କହିଲା "କ'ଣ ହେଲା ? ଆରମ୍ଭ ହୋଇଗଲାଣି କି ? ବେଳ ହେଲାଣି କି ?

ଗାଡ଼ି ଚାଳକ ଜଣେ ପୁରୁଣା ସୈନିକ । ସେ କହିଲା "ଗୁଳି ଶବ୍ଦ ଶୁଣନ୍ତୁ ହଜୁର । ସବୁ ଆଜ୍ଞାମାନେ ଚାଲିଯାଇ ସାରିଲେଣି । ମହିମା ତ କେତେବେଳୁ ଗଲେଣି ।"

ପିଏରେ ତର ତର ହୋଇ ପୋଷାକ ପିନ୍ଧିଲେ । ତାପରେ ପିଣ୍ଡାକୁ ଦୌଡ଼ିଆସିଲେ । ଖୁବ ସୁନ୍ଦର ସକାଳଟିଏ ହୋଇଥାଏ । ଉଜ୍ଜଳ ସଜ ସକାଳ, କାକର ପଡ଼ିଥାଏ, ଉସତ୍ ଲାଗୁଥାଏ । ସୂର୍ଯ୍ୟ ମେଘର ପର୍ଦ୍ଦା ଉହାଡ଼ରେ ଢାଙ୍କି ହୋଇ ରହିଥିଲା ଯେ ଠିକ୍ ସେତିକି ବେଳେ ସେ ଫୁଟି ବାହାରି ଥାଏ । ଫୁଟିଯାଇଥିବା ମେଘର ଜଳାବାଟେ ସୂର୍ଯ୍ୟ କିରଣ ଘୁଣିହୋଇ ବାହାରୁଥାଏ । ଗୋଟିକ ସେପଟର ଘର ଗୃନ୍ଦ ଉପରେ ଖେଳି ପଡ଼ିଥାଏ । ଆଉ କାକରରେ ଓଦା ସର ସର ସଡ଼କ ଧୂଳି ଉପରେ, ବାଡ଼ମାନଙ୍କ ଉପରେ, ଘରର ଝରକାମାନଙ୍କ ଉପରେ ଆଉ ସେ ଘର ପାଖରେ ଠିଆହୋଇ ଥିବା ପିଏରର ଗାଡ଼ିର ଘୋଡ଼ାଙ୍କ ଉପରେ ଖେଳି ପଡ଼ିଥାଏ । ଖୋଲା ପବନରେ ତୋପମାନଙ୍କ ଗର୍ଜନ ପରିଷ୍କାର ହୋଇ ବାରିହୋଇ ପଡ଼ୁଥାଏ ।

ଗାଁ ସଡ଼କରେ ଜଣେ ପାର୍ଶ୍ୱରକ୍ଷୀ ଘୋଡ଼ାକୁ କଦମ ଡିଆଁଇ ଡିଆଁଇ ଆସି ପହଞ୍ଚିଲେ । ତାଙ୍କ ପଛେ ପଛେ ଜଣେ କୋଶାକ ସୈନିକ ।

ପାର୍ଶ୍ୱରକ୍ଷୀ ପାଟିକଲେ "ବେଳ ହୋଇ ଗଲାଣି କାଉଣ୍ଟ, ବେଳ ହୋଇଗଲାଣି ?" ପିଏରେ ହୁକୁମ ଦେଲା ଯେ ତା ପଛେ ପଛେ ଜଣେ ଘୋଡ଼ାସବାର ଚାଲିବ । ତା ଆରଦିନ ଯେଉଁ ଢିପ ଉପରେ ଥାଇ ସେ ଯୁଦ୍ଧ ଭୂମିକୁ ଦେଖିଥିଲା ସେଇ ରାସ୍ତା ଏ ରାସ୍ତାଏ ଚାଲି ଚାଲିକା ସେଠିକି ଗଲା । ଏଲ ଢିପ ଉପରେ ଦଳେ କର୍ମଚାରୀ ରୁଣ୍ଡ ହୋଇଥାନ୍ତି । ସେମାନେ ଫରାସୀ ଭାଷାରେ କଥା ଭାଷା ହେଉଥାନ୍ତି । ପିଏରେ ଶୁଣୁଥାନ୍ତି । ସେ ଦେଖିଲା କୁତୁଜଭଙ୍କ ଧଳା ମୁଣ୍ଡ ତାଙ୍କ କାନ୍ଧ ପାଖେ ଝୁଙ୍କି ପଡ଼ିଛି ; ତାଙ୍କର ଧଳା ଟୋପି ଓ ତହିଁରେ ଯେଉଁ ନାଲି ଫିତା ଲାଗିଥିଲା ତା ବ ପିଏରେର ଦୃଷ୍ଟିରେ ପଡ଼ିଲା । କୁତୁଜଭ ତାଙ୍କ ସାମ୍ନାରେ ବଡ଼ ସଡ଼କକୁ ଗୋଟାଏ ଦୂରବୀକ୍ଷଣ ଯନ୍ତ୍ରରେ ଚାହିଁ ରହିଥାନ୍ତି ।

ଢିପକୁ ଉଠିବା ପାହାଚ ବାଟେ ଚଢ଼ି ଯାଉ ଯାଉ ପିଏରେ ସାମ୍ନାକୁ ଚାହିଁଲା ଓ ଯେଉଁ ଦୃଶ୍ୟ ଦେଖିଲା ତାର ସୌନ୍ଦର୍ଯ୍ୟରେ ତା ଭିତରେ ଗୋଟାଏ ଆନନ୍ଦର ଚମକ ଖେଳିଗଲା । ଏ ସେହି ଦୃଶ୍ୟ ଯାହା ସେ ତା ଆଗଦିନ ଦେଖି ପ୍ରଶଂସା କରିଥିଲା । କିନ୍ତୁ ବର୍ତ୍ତମାନ ସେଠି ଖାଲି

ସୈନ୍ୟଗହଳ ପୂରି ରହିଥାଏ । ଆଉ ବନ୍ଧୁକମାନଙ୍କ ଧୂଆଁରେ ସେ ଜାଗାଟା ପୂରିଥାଏ । ସୂର୍ଯ୍ୟ ଥାଏ ପିଏରେର ପଛଆଡ଼ ବାମପଟେ । ସକାଳର ପରିଷ୍କାର ପବନରେ ସେହି ଦୃଶ୍ୟ ଉପରେ ସୂର୍ଯ୍ୟର ତେରେଛା କିରଣରେ ସୁନେଲି ଆଉ ନାଲିଆ ଆଲୁଅ ଝଟିପଡ଼ୁଥାଏ । ମଝିରେ ମଝିରେ ଲମ୍ବା ଲମ୍ବା କଳା କଳା ଛାଇ ପଡ଼ିଥାଏ । ସେହି ଦୃଶ୍ୟ ପିଠିପଟେ ଯେଉଁ ଦୂର ଦୂରର ଜଙ୍ଗଲ ଦିଶୁଥାଏ ସେଗୁଡ଼ାକ ଦିଗବଳୟରେ ଅର୍ଦ୍ଧବୃତ୍ତ ପରି ରହିଯାଇଥାଏ । ଦିଶୁଥାଏ ସତେକି କେଉଁ ହଳଦିଆ ଶାଗୁଆ ବର୍ଣ୍ଣର ମୂଲ୍ୟବାନ ପଥରରେ ସେ ଖୋଳା ହୋଇରହିଛି । ସେହି ଜଙ୍ଗଲ ମଝିରେ ଭାଲୁଏଭ ପଛଆଡ଼େ ପଡ଼ିଥାଏ ପ୍ରକାଣ୍ଡ ସ୍ମଲେନସ୍କ ସଡ଼କ । ସେଠି ସୈନ୍ୟ ଭର୍ତ୍ତି ହୋଇ ରହିଥାନ୍ତି । ସେହି ଦୃଶ୍ୟ ଆଗରେ ସୁନେଲି କ୍ଷେତ ଦିଶୁଥାଏ, ଆଉ ଜଙ୍ଗଲ ଭିତରେ ଖୋଲାଜାଗାମାନ ଦିଶୁଥାଏ । ଖରାରେ ଝଟକୁଥାଏ । ସବୁଠିଁ କି ଡାହାଣେ ବାଏଁ ସାମ୍ନାରେ, ସବୁଠି ପୂରିଥାନ୍ତି । ସମୁଦାୟ ଦୃଶ୍ୟଟା ଦିଶୁଥାଏ ଉତ୍ତେଜନା ପୂର୍ଣ୍ଣ, ଚମକପ୍ରଦ, ପୁଣି ଅପ୍ରତ୍ୟାଶିତ । କିନ୍ତୁ ପିଏରେର ଦୃଷ୍ଟି ସବୁଠୁ ଅଧିକ ଆକର୍ଷଣ କଲା ଯୁଦ୍ଧଭୂମିର ଦୃଶ୍ୟ ଆଉ ବରୋଦିନୋରେ କୋଲୋଚ୍ ନଈର ଦୁଇ ପାଖର ଖାଲର ଦୃଶ୍ୟ ।

କୋଲୋଚ୍ ନଈର ଚାରିଆଡ଼େ, ବରଦିନୋରେ ତାର ଦୁଇ ପାଖରେ, ବିଶେଷତଃ ବାଁ ପଟେ ଯେଉଁଠି ସନ୍ତ ସନ୍ତିଆ ଜଳ ଭୂଇଁ ଭିତରେ ଭୋଇନା ନଈ ଯାଇ କୋଲୋଚ୍ ନଈରେ ପଡ଼ିଛି । ଏ ସବୁଠିଁ ଦୃଶ୍ୟ ଉପରେ କୁହୁଡ଼ି ଏପର୍ଯ୍ୟନ୍ତ ଓହଳ ରହି ଧୀରେ ଧୀରେ ତରଳି ଯାଉଥାଏ ଭାଗ ଭାଗ ହୋଇଯାଉଥାଏ, ଉଜ୍ଜ୍ୱଳ ଖରାରେ ଝକ ଝକ ଦିଶୁଥାଏ ଓ ତା ତଳେ ଯେଉଁ ରୂପ ସବୁ ଦିଶୁଥାଏ ସେହି କୁହୁଡ଼ିରେ ସେସବୁ ପକ୍ଷୀ ରାଇଜର ରୂପ ପରି ଦିଶୁଥାଏ । ବନ୍ଧୁକର ଧୂଆଁ ଏଇ କୁହୁଡ଼ିରେ ମିଶିଯାଇ ଥାଏ । ସବୁଆଡ଼େ ଏହି କୁହୁଡ଼ି ଭିତରେ ଟିପେ ଟିପେ ସୂର୍ଯ୍ୟ ଆଲୁଅ ଝଟକ ଲାଗିଥାଏ, କେଉଁଠି ପାଣିରୁ କୁହୁଡ଼ିକୁ ଛୁରିକ ପଡ଼ୁଥାଏ, କେଉଁଠି କାକର ଟୋପାରୁ, କେଉଁଠି ସୈନ୍ୟମାନଙ୍କ

ସଙ୍ଗୀନ ମୁନରୁ,--ସେହି ଯେଉଁ ସୈନ୍ୟମାନେ ନଈ କୂଳରେ ଆଉ ବରୋଦିନ ଗାଁରେ ଗହଳ ହୋଇରହିଥାନ୍ତି । ପୁଣି ଏଇ କୁହୁଡ଼ି ଭିତରେ ଦିଶୁଥାଏ ଗୋଟିଏ ଧୋବଲା ଗିର୍ଜା, ମନ୍ଦିର, ଆଉ ଏଠି ସେଠି ହୋଇ ବରୋଦିନ ଗାଁର ଘରମାନଙ୍କ ଛାତ । ସେହି ଯେଉଁଥିରେ ଗୁଳି ବାରୁଦ ଥାଇ ତୋପମାନ ବୁହାହୋଇ ଚାଲିଥାଏ, ସେଗୁଡ଼ାକ ମଝିରେ ମଝିରେ ଜଦବା ମେଞ୍ଚା ମେଞ୍ଚା ପରି ଦିଶିଯାଉ ଥାଏ । ଧୂଆଁ ଆଉ କୁହୁଡ଼ି, ସେହି ମେଲା ଫରଚ୍ଛ ସମତଳ ଉପରେ ଘୁସୁରି ଘୁସୁରି ଚାଲିଗଲା ବେଳେ ସେହି ସମୁଦାୟ ଦୃଶ୍ୟଟାକୁ ଚାଲୁଥାଏ । ବରୋଦିନୋର ଚାରିକରେ ଥିବା ସମତଳରେ ଅନ୍ଧାରିଆ ଧୂଆଁର ମେଘ ଉଠୁଥାଏ । କୁହୁଡ଼ି ଭିତର କୁହୁଡ଼ି ଉପର, ବିଶେଷତଃ ଗାଁ ପଛ ସୈନ୍ୟ ଧାଡ଼ିଯାକ, ଜଙ୍ଗଲ ଭିତରେ, ଉପତ୍ୟକା ଭିତର ପାହାଡ଼ ତଳ ଘାସ ପଡ଼ିଆ ଉପର, ଢିପ ଉପର ସବୁଠି ଧୂଆଁର ମେଘ ଭୁସ ଭୁସ୍ କରି ଉଠୁଥାଏ । ସତେକି କୌଣସି ଜନସ୍ଥରୁ ଏ ଧୂଆଁ ବାହାରୁନାହିଁ ଶୂନ୍ୟରୁ ବାହାରୁଛି । କେତେବେଳେ ଗୁଟିକିଆ ହୋଇ ମଧ୍ୟ ଠାଏ ଠାଏ ଉଠୁଛି । କେତେବେଳେ ଏକାବେଳେକେ ବହୁତ ଧୂଆଁ ମେଘ, କେତେବେଳେ ବେଶି ସମୟ ଗୁଡ଼ି ଗୁଡ଼ିକା ମଝିରେ ମଝିରେ, ତାପରେ ପଛକୁ ପଛକୁ ଲଗା ଲଗି ହୋଇ ଚାଲିଛି । ଏଇ ଯେତେ ଧୂଆଁର ମେଘଗୁଡ଼ାକ, ସେଗୁଡ଼ାକ ଫୁଲି ଫୁଲି ଉଠୁଥାଏ, ଆଉ ଗଡ଼ି ଗଡ଼ି ଚାଲିଥାଏ । ଗୋଟାଏ ଆଉ ଗୋଟାଏ ସଙ୍ଗରେ ମିଶି ଯାଉଥାଏ ପୁଣି ବିଭାଗ ହୋଇ ଅଲଗା ହୋଇ ଦୂରକୁ ପଳାଇ ଯାଉଥାଏ । ସେହି ବିସ୍ତୃତ ସମତଳ ଉପରେ ପଛକୁ ପଛ ହୋଇ ମାଳ ମାଳ ହୋଇ ଚାଲିଥାଏ ସେ ଧୂଆଁର ମେଘ । ଆଶ୍ଚର୍ଯ୍ୟ କଥା ହେଉଛି ଯେ ସେ ଦୃଶ୍ୟକୁ ରମଣୀୟ କରୁଥାଏ ସେହି ଫୁଲ ଫୁଲା ଧୂଆଁ ମେଘମାନ ଆଉ, ସେ ଧୂଆଁ ବାହାରିବା ପଛେ ପଛେ ଯେଉଁ ଗୁଡ଼ୁମ ଗୁଡ଼ୁମ ଶବ୍ଦ ତାହାକୁ ଶୁଭୁଥାଏ ।

ପିଏରେର ମନହେଉଥାଏ ସେ ସେଠି ସେହି ଧୂଆଁ ମଝିରେ ଜକ ଜକ ବନ୍ଧୁକ ସଙ୍ଗୀନ ଗହଳି ମଝିରେ ସେହି ହଲଚଲ ଆଉ ଚହଳ ମଝିରେ ଥାଆନ୍ତା କି ! ସେ ଯେମିତି ଚାହିଁ ଦେଖୁଥିଲା ସେମିତି ଅନ୍ୟ

ସମସ୍ତେ ବି ସେ ଯୁଦ୍ଧ ଭୂମିକୁ ଚାହିଁ ଦେଖୁ ଥିଲେ । ପିଏରେଙ୍କୁ ଲାଗୁଥାଏ ସେମାନଙ୍କ ହୃଦୟରେ ବି ସେହି ଭାବ ଆସୁ ଛି । ତା ଆଗରୁ ଏ ଲୋକଙ୍କ ମୁହଁରେ ଯେଉଁ 'ଗରମ ଭାବରେ ନିହିତ ଉତ୍ତାପ'ର ତେଜ ସେ ଲକ୍ଷ୍ୟ କରିଥିଲା ଓ ପ୍ରିନସ୍ ଆନ୍ଦ୍ରେଙ୍କ ସଙ୍ଗେ କଥାଭାଷା କଲା ଉତ୍ତାରୁ ଯାହା ସେ ଖୁବ୍ ଭଲ କରି ବୁଝି ପାରିଥିଲା ସେ ବର୍ତ୍ତମାନ ଦେଖିଲା ଯେ ସମସ୍ତଙ୍କ ମୁହଁ ସେହି 'ଗରମ ଭାବରେ ନିହିତ ଉତ୍ତାପ'ରେ ସତେକି ଦାଉ ଦାଉ ହୋଇ ଜଳୁଛି ।

କୁତୁଜଭ ଯୁଦ୍ଧ ଭୂଇଁରୁ ଆଖି ନ ବୁଲାଇ ପାଖରେ ଥିବା ଜଣେ ସେନାପତିଙ୍କୁ କହିଲେ ।

"ଯାଅ ବାବା ଯାଅ, ପ୍ରଭୁ ଯୀଶୁଖ୍ରୀଷ୍ଟ ତୁମର ସହାୟ ହୁଅନ୍ତୁ ।" ଯେଉଁ ସେନାପତି ଏହି ଆଦେଶ ପାଇଲେ ସେ ସେହି ଢିପ ଉପରୁ ଓହ୍ଲାଇ ଯିବା ବାଟରେ ପିଏରେ ପାଖଦେଇ ଦୌଡ଼ି ଦୌଡ଼ି ଗଲେ ।

ପ୍ରଧାନ ସେନାପତିଙ୍କ ଗହଣରେ ଥିବା ଦଳ ଭିତରୁ କିଏ ଜଣେ ତାଙ୍କୁ କ'ଣ ପଚାରିବାରୁ ତା ଉତ୍ତରରେ ସେ ଗମ୍ଭୀର ଓ କ୍ଷୁବ୍ଧ ସ୍ୱରରେ କହିଲେ ।

"ଘୋଡ଼ା ଚଢ଼ି ଆଉ ପାଖକୁ ଯିବାକୁ ପଡ଼ିବ ... !"

ପିଏରେ ଭାବିଲା 'ମୋତେ ବି ଯିବାକୁ ପଡ଼ିବ ! ମୁଁ ବି ଯିବି ।' ସେ ବି ସେହି ଆଡ଼େ ଗଲା ।

ଜଣେ କୋସାକ୍ ସୈନିକ ସେହି ସେନାପତିଙ୍କ ପାଖରେ ଗୋଟିଏ ଘୋଡ଼ା ଆଣି ପହଞ୍ଚାଇଲା । ସେ ସେହି ଘୋଡ଼ା ଉପରେ ଚଢ଼ିଲେ । ଯେଉଁ ଲୋକ ପିଏରେର ଘୋଡ଼ାମାନଙ୍କୁ ଧରିରଖିଥିଲା ପିଏରେ ତା ପାଖକୁ ଗଲା । ସେଥିରୁ କେଉଁ ଗୋଟିକ ସବୁଠୁ ଶାନ୍ତ ଘୋଡ଼ା ବୋଲି ପିଏରେ ତାକୁ ପଚାରି ବୁଝିଲା । ତାପରେ ସେ ଘୋଡ଼ାରେ ବସିପଡ଼ି ତାର କେଶରକୁ ମୁଠେଇ ଧରି ଘୋଡ଼ା ପେଟରେ ଗୋଇଠି ଗେଞ୍ଜିଦେଲା । ତାକୁ ଲାଗିଲା, ତା ଚଷମା ଖସିପଡ଼ୁଛି ଆଉ ସେ ଘୋଡ଼ାର

ଲଗାମ କ ଘୋଡ଼ାର କେଶରରୁ ହାତ ଉଠାଇନେଇ ପାଶବନାହିଁ ।
ସେ ସେହି ସେନାପତିଙ୍କ ପଛେ ପଛେ ଘୋଡ଼ାକୁ କଦମ ଡିଆଇଁ
ଛୁଟାଇ ଦେଲ । ଢିପ ଉପରେ ଯେଉଁମାନେ ଥାଇ ଦେଖୁଥିଲେ ସେମାନେ
ତାକୁ ଚାହିଁ ଚାହିଁ ମୁରୁକ ମୁରୁକ ହସୁଥାନ୍ତି ।

ପିଏରେ ଯେଉଁ ସେନାପତିଙ୍କ ପଛେ ପଛେ ଧାଇଁଥାଏ ସେ ଘୋଡ଼ା
ଦୌଡ଼ାଇ ପାହାଡ଼ ତଳକୁ ଚ୍ଛଲଗଲେ । ତାପରେ ହଠାତ୍ ତେରେଛ୍ଛ
ହୋଇ ବାଁ ପଟକୁ ବଙ୍କେଇ କୁଆଡ଼େ ଚ୍ଛଲଗଲେ ଯେ ପିଏରେ ଆଉ
ତାଙ୍କୁ ଦେଖିପାରିଲେ ନାହିଁ । ପିଏରେ ସିଧା ସମ୍ନାକୁ ଗୋଟିଏ ପଦାତିକ
ସୈନ୍ୟ ଦଳଙ୍କ ମଝିକୁ ଘୋଡ଼ାକୁ କଦମ ଡିଆଁଇ ଚ୍ଛଲଗଲ, ସେମାନେ
ତା ଆଗେ ଆଗେ ମାର୍ଚ୍ଚ କରି ଚ୍ଛଲଥିଲେ । ସେ ବାଁକୁ ବୁଲିପଡ଼ି
ଡାହାଣକୁ ବୁଲିପଡ଼ି ତାଙ୍କଠୁଁ ପଳାଇବାକୁ ଚେଷ୍ଟାକଲ । କିନ୍ତୁ
ସବୁଠି ସୈନ୍ୟ ଭର୍ତ୍ତି ହୋଇଥିଲେ । ସମସ୍ତଙ୍କ ମୁହଁରେ ଉଦ୍‌ବେଗ୍ନତା,
କୌଣସି ଏକ ଅଦୃଶ୍ୟ ଅଥଚ ଅତି ଜରୁରୀ କାର୍ଯ୍ୟରେ ଯେପରିକ ସମସ୍ତେ
ବ୍ୟସ୍ତ । ଏଇ ଯେଉଁ ମୋଟା ଲୋକଟା ଧଳା ଟୋପି ପିନ୍ଧି କୌଣସି ଅଜଣା
କାରଣରେ ସେମାନଙ୍କୁ ଘୋଡ଼ା ଟାପୁତଳେ ମାଡ଼ି ମକଚି ପକାଉଥାଏ
ସମସ୍ତେ ତା'ଆଡ଼କୁ ସେହି ଏକ ପ୍ରକାର ବିରକ୍ତି ଓ ପ୍ରଶ୍ନ ମିଶା ଚ୍ଛହାଣୀରେ
ଚାହିଁ ରହୁଥାନ୍ତି ।

ଜଣେ ତା' ଆଡ଼କୁ ରଡ଼ି ଛାଡ଼ିଲ "ଆରେ ଏ ଲୋକଟା ଗୋଟାଏ
ସୈନ୍ୟଦଳ ମଝିକି କାହିଁକି ଘୋଡ଼ା ଚଢ଼ି ପଶି ଆସିଲ ?" ଆଉ ଜଣେ
ବନ୍ଧୁକ ଲଙ୍ଗରେ ତା' ଘୋଡ଼ାକୁ ଗେହାଏ ମାରିଲ । ପିଏରେ ଜିନ୍ ଉପରେ
ନଇଁ ପଡ଼ିଥାଏ । ତା' ଘୋଡ଼ା ଯେତେବେଳେ ଟେକିହୋଇ ଦି ଗୋଡ଼ରେ
ଠିଆ ହୋଇଗଲ ସେ ତାକୁ ସମ୍ଭାଳି ପାରୁନଥାଏ । ତାପରେ ଘୋଡ଼ାକୁ
କଦମ ଡିଆଁଇ ସୈନ୍ୟମାନଙ୍କ ଆଗରେ ଥିବା ଖାଲି ଜାଗାକୁ ସେ
ଚ୍ଛଲଲ ।

ତା' ଆଗରେ ସେ ଗୋଟାଏ ପୋଲ ଦେଖିଲ । ପୋଲ ପାଖରେ
ଠିଆହୋଇ ସୈନ୍ୟମାନେ ଗୁଳି ଚଳାଉଥାନ୍ତି । ପିଏରେ ସେମାନଙ୍କ

ଆଡ଼କୁ ଘୋଡ଼ାଚଢ଼ି ଚାଲିଲା । ସେ କୋଲଗ୍ଚ ନଈର ପୋଲଆଡ଼କୁ ଦୌଡ଼ିଲା । ସେ ଜାଣିନଥାଏ ଯେ ଗର୍କି ଓ ବୋରୋଦିନର ମଝିରେ ଥିବା ସେହି ପୋଲକୁ ଫରାସୀ ସୈନ୍ୟମାନେ ତାଙ୍କର ପ୍ରଥମ ଲଢ଼େଇରେ ଆକ୍ରମଣ କରିଥାନ୍ତି । ପିଏରେ ଦେଖିଲା ଯେ ତାର ସାମ୍ନାରେ ଗୋଟାଏ ପୋଲ । ଆଉ ସୈନ୍ୟମାନେ ଧୂଆଁ ଭିତରେ ପୋଲ ଦି କରରେ ଆଉ ତା ଆଗଦିନ ସେ ଯେଉଁ ପଡ଼ିଆ ଦେଖିଥିଲା ସେଠି କ'ଣ କରୁଥାନ୍ତି । ସେ ଜାଗାରେ ଗୁଳି ଫୁଟାଇବା ଆଦୌ ବନ୍ଦ ହୋଇନଥାଏ, ତଥାପି ପିଏରେର ଆଦୌ ଧାରଣା ନଥିଲା ଯେ ସେଇଟା ସେ ଯୁଦ୍ଧର କେନ୍ଦ୍ରସ୍ଥଳ । ଗୁଳିଆଡ଼େ ବନ୍ଧୁକଗୁଳି ସାଇଁ ସାଇଁ ଗୁଳିଥାଏ । ତା ଉପରବାଟେ ତୋପ ଗୁଳି, ଉଡ଼ି ଗୁଳିଥାଏ । ନଈ ଆରପାଖରେ ଶତ୍ରୁ ସୈନ୍ୟ ଥାଆନ୍ତି କିନ୍ତୁ ତାଙ୍କୁ ବି ସେ ଲକ୍ଷ୍ୟ କଲାନାହିଁ । କେତେ ଲୋକ ତାରି ପାଖରେ ମରି ପଡ଼ୁଥାନ୍ତି, ଖଣ୍ଡିଆ ହୋଇପଡ଼ୁଥାନ୍ତି କିନ୍ତୁ ସେମାନଙ୍କୁ ବି ସେ ବହୁତ ଡେରିରେ ଲକ୍ଷ୍ୟ କଲା ।

ପୁଣି ଜଣେ ତା' ଆଡ଼କୁ ଲକ୍ଷ୍ୟ କରି ବଡ଼ ପାଟିରେ କହିଲା "ଆସ୍ତୁ ଏ ଲୋକଟା ସେଠି ଲଢ଼େଇ ଧାଡ଼ି ସାମ୍ନାରେ ରହି କ'ଣ କରୁଛି ଦେଖିତ ?"

ଲୋକେ ତାକୁ ପାଟିକଲେ "ବାଁକୁ ଘୁଞ୍ଚି ଯାଅ" "ଡାହାଣକୁ ଘୁଞ୍ଚିଯାଅ" । ପିଏରେ ଡାହାଣକୁ ବୁଲିଗଲା । ତା'ପରେ ଅଜାଣାତରେ ଗୁଳିଯାଇ ସେନାପତି ରାଏଭ୍ସ୍କିଙ୍କର ଜଣେ ପାର୍ଶ୍ୱରକ୍ଷୀ ପାଖରେ ପହଞ୍ଚିଲା । ତାଙ୍କୁ ସେ ଚିହ୍ନିଥିଲା । ଆଉଜୁଟାଣ୍ଟ ରାଗରେ ତା' ଆଡ଼କୁ ଚାହିଁଲେ, ତା ଉପରେ ଗର୍ଜନ କରିବାକୁ ବସିଥିଲେ, ଚିହ୍ନିପାରି ମୁଣ୍ଡ ହଲାଇଲେ ।

"ଆପଣ ଏଠିକି କେମିତି ଆସିଲେ ?" କହିଦେଇ ସେ ଘୋଡ଼ାରେ ଚଢ଼ି ପଳାଇ ଗଲେ । ପିଏରେକୁ ଅଡୁଆ ଅଡୁଆ ଲାଗୁଥାଏ, ସେ ଜାଗାରେ ସେ ଖାପି ପାରୁନାହିଁ କି ତା' ଦେଇ କିଛି କାମ ହେବ ନାହିଁ ଏହିପରି ତାକୁ ଲାଗୁଥାଏ । ତାକୁ ମାଡ଼ ପଡ଼ୁଥାଏ ଫେର୍ କାଳେ

କାହାର ସେ ବାଟ ବନ୍ଦ କରିବ । ସେ ତାଙ୍କ ପଛେ ପଛେ ଘୋଡ଼ା ଛୁଟାଇ ଚାଲିଲା ଏବଂ ପଚାରିଲା "ଏଠି କ'ଣ ହେଉଛି ? ଯିବି ମୁଁ ଆପଣଙ୍କ ସଙ୍ଗରେ ?"

"ରହନ୍ତୁ ଏକ ମିନଟ୍‌ରେ ଆସୁଛି, ଏକ ମିନଟ୍‌ରେ ଆସୁଛି ।" ଏତକ କହିଦେଇ ପଡ଼ିଆରେ ଥିବା ଜଣେ ମୋଟା କର୍ଣ୍ଣେଲଙ୍କ ପାଖକୁ ସେ ଘୋଡ଼ାଛୁଟାଇ ଚାଲିଯାଇ ତାଙ୍କୁ କ'ଣ ଖବରଦେଇ ପିଏରେଙ୍କୁ କଥା କହିଲେ । ହସିଦେଇ ପଚାରିଲେ "ଆପଣ ଏଠିକି କୁଆଡ଼େ ଆସିଛନ୍ତି ତଥାପି ଆପଣଙ୍କ କୁତୁହଳ ରହିଛି ?"

"ହଁ ହଁ" ପିଏରେ କହିଲା ।

କିନ୍ତୁ ଆଡ୍‌ଜୁଟାଣ୍ଟ ଘୋଡାରେ ମୁହଁ ବୁଲାଇଦେଇ ଆଗକୁ ଚାଲିଗଲେ । ଆଡଜଟାଣ୍ଟ କହିଲେ "ଏଠି ବରଂ ଭଲ ଅଛି, କିନ୍ତୁ ବାଁ ପଟକୁ ବାଗ୍ରାସିଅନଙ୍କ ବାହିନୀରେ ଭୟଙ୍କର ଅବସ୍ଥା, ନିଆଁ ପରି ଜଳୁଛି ସେଠି ।"

ପିଏରେ ପଚାରିଲା, "ସତେନା ? କେଉଁଠି ସେ ଜାଗାଟା ?"

ଆଡଜୁଟାଣ୍ଟ କହିଲେ "ଆସୁନାହାନ୍ତି ମୋ ସାଙ୍ଗରେ । ଢିପ ଉପରକୁ ଯିବା, ସେଠୁ ସବୁ ଦିଶିବ ଯେ । ଆମ ଘାଟିର ଅବସ୍ଥା ବରଂ ସହିହେବ । ଆସିବ ?" ପିଏରେ ଚାରିଆଡକୁ ଚାହିଁ ତା' ଘୋଡାର ସହିସକୁ ଖୋଜି ଖୋଜି କହିଲା "ହଉ ହଉ ମୁଁ ଆପଣଙ୍କ ସଙ୍ଗରେ ଯିବି ।" ସେତିକିବେଳେ ପ୍ରଥମଥରକ ପାଇଁ ପିଏରେ ଯୁଦ୍ଧରେ ଆହତ ଲୋକଙ୍କୁ ଦେଖିଲା । କିଏ ଟଳିଟଳିକା ଚାଲୁଥାନ୍ତି । କିଏ ଖଟିଆରେ ବୁହାହୋଇ ନିଆହେଉଥାନ୍ତି । ତା' ପୂର୍ବଦିନ ସେ ଯେଉଁ ପଡ଼ିଆବାଟେ ଘୋଡାଚଢ଼ି ଯାଇଥିଲା, ଯେଉଁଠି ଧାଡ଼ି ଧାଡ଼ି ହୋଇ ବାସ୍ନା ଶୁଖିଲା ଘାସ ପଡ଼ିଥିଲା ସେ ଧାଡ଼ି ଧାଡ଼ି ଘାସ ଉପରେ ଜଣେ ସୈନିକ ପଡ଼ିରହିଛି । ତା' ମୁଣ୍ଡର ଟୋପି ଖସିପଡ଼ିଛି । ତା' ମୁଣ୍ଡଟା ଅଖାଡୁଆ ହୋଇ ପଛକୁ

ଝୁଣ୍ଟିକି ପଡ଼ୁଥାଏ । ହାଲ ଚଳ୍ ନାହିଁ, ସେଇଠି ସେ ପଡ଼ି ରହୁଥାଏ । ସେ ଜାହା ଆସୁଥିଲା, ଏ ଲୋକଟିକି କାହିଁକି ଉଠେଇ ନେଲେ ନାହିଁ ସେମାନେ ? କିନ୍ତୁ ସେ ଦେଖିଲା ଆଡଜୁଟାଣ୍ଟ ବି ସେଇଆଡେ ଚାହିଁ ରହିଛନ୍ତି । ତାଙ୍କ ମୁହଁ ସେପରିକି ଏକା ଭଙ୍ଗୀରେ ରହିଛି । ସେ ଆଉ କିଛି ନ କହି ଚୁପ ରହିଲା ।

ପିଏରେ ତାର ସହିସକୁ ଖୋଜି ପାଇଲା ନାହିଁ । ସେହି ଖାଲ ଭିତର ଦେଇ ସେ ଆଡଜୁଟାଣ୍ଟଙ୍କ ସଙ୍ଗରେ ରାଏ ଭସ୍କିଙ୍କ ଘାଟିଆଡକୁ ଘୋଡାରେ ଚଢ଼ି ଗଲା । ତାଙ୍କ ଘୋଡା ଆଡଜୁଟାଣ୍ଟଙ୍କ ଘୋଡା ପଛେ ପଛେ ଚାଲିଥାଏ । ମଝିରେ ମଝିରେ ତାକୁ ଠେଲିଏ ଲେଖାଁ ଦେଉଥାଏ । ଆଡ୍‌ଜୁଟାଣ୍ଟ ପଚାରିଲେ, "ମୋତେ ଲାଗୁଛି ଘୋଡାରେ ଚଢ଼ିବା ବୋଧହୁଏ ଆପଣଙ୍କର ଅଭ୍ୟାସ ନାହିଁ । ନୁହେଁ ?"

ପିଏରେ ବିବ୍ରତ ସ୍ୱୀକାରୋକ୍ତିରେ ଚାହିଁ ଦେଇ କହିଲା "ନାଇଁ, ମୋ' ଘୋଡା ଠିକ ଅଛି । ତେବେ କେବେ କେମିତି କଷ୍ଟେ ମଷ୍ଟେ ଏପରି ଡେଇଁ ଡେଇଁକା ଚାଲୁଛି ।" ଆଡଜୁଟାଣ୍ଟ କହିଲେ "ଆରେ !...ଯା ଦେହରେ ଚୋଟ ଲାଗିଛି ଯେ । ଆଗପାଖ ଡାହାଣ ଗୋଡରେ ଆଣ୍ଠୁ ଉପରେ ମାଡ ବାଜିଛି । ନିଶ୍ଚୟ ଗୋଟିଏ ବନ୍ଧୁକ ଗୁଳି । ଆପଣଙ୍କୁ ସମ୍ବର୍ଦ୍ଧନା ଜଣାଉଛି କାଉଣ୍ଟ, ଗୁଳି ମାଡର ପ୍ରଥମ ଦୀକ୍ଷା ଆପଣ ପାଇ ସାରିଛନ୍ତି ।"

ସେମାନେ ଧୂଆଁ ଭିତରେ ପଶି ଷଷ୍ଠ ବନ୍ଧୁକବାହିନୀ ଭିତର ଦେଇଗଲେ । ସେ ବାହିନୀକୁ ଆଗକୁ ଅଣାଯାଇଥାଏ ଓ ସେଇ ବାହିନୀରୁ କାନ ଅତରା ଫଟାଇ ଅବିରାମ ତୋପଗୁଳି ଚାଲିଥାଏ । ତା'ପରେ ସେମାନେ ଗୋଟିଏ ଅଣଓସାରି ଜଙ୍ଗଲ ଦାଇଲା ଭିତରୁ ଘୋଡ଼ା ଚଢ଼ିଗଲେ ! ସେଠି ଶୀତଳ ଲାଗୁଥାଏ । ନିସ୍ତବ୍ଧ ସ୍ଥାନ । ଶରତ ଋତୁର ନାନା ବାସ୍ନା ଆସୁଥାଏ । ପିଏରେ ଓ ଆଡଜୁଟାଣ୍ଟ ଘୋଡାରୁ ଓହ୍ଲାଇପଡ଼ି ପାଦରେ ଚାଲି ଚାଲି ପାହାଡ ଉପରକୁ ଚଢ଼ିଗଲେ ।

ଘାଟିରେ ପହଞ୍ଚି ଆଣ୍ଡ୍ରୁଜ୍ ପଚାରିଲେ "ସେନାପତି ଏଠି ଅଛନ୍ତି ।" କିଏ ଜଣେ କହିଲା "ଏଇଠି ତ ବର୍ତ୍ତମାନ ଥିଲେ ।" ଡାହାଣ ଆଡ଼କୁ ହାତ ଦେଖାଇ କହିଲା "ଏଇଆଡ଼େ ଗଲେ ।"

ଆଣ୍ଡ୍ରୁଜ୍ ପିଏରେ ଆଡ଼କୁ ଚାହିଁରହିଲେ ଯେମିତିକି ସେ ଭାବି ପାରିଲେନାହିଁ ଯେ ପିଏରକୁ କ'ଣ କରିବେ ?

ପିଏରେ କହିଲା, ମୋ ପାଇଁ ବ୍ୟସ୍ତ ହୁଅନ୍ତୁ ନାହିଁ । ମୁଁ ଭାବୁଛି ଢିପ ଉପରକୁ ଚାଲିଯିବି । ଆପତ୍ତି ନାହିଁତ ?

"ହଁ ଯାଆନ୍ତୁ, ସେଠୁ ଆପଣଙ୍କୁ ସବୁ ଦିଶିବ । ସେଠିବି ସେତେ ବିପଦ ନାହିଁ । ମୁଁ ପଛେ ଆପଣଙ୍କୁ ଡାକିନେବାକୁ ଯିବିଯେ –"

ପିଏରେ ଘାଟିପାଖକୁ ଗଲା । ଆଣ୍ଡ୍ରୁଜ୍ ଘୋଡ଼ାଚଢ଼ି ଚାଲିଗଲେ । ସେମାନେ ଆଉ ପରସ୍ପରକୁ କେବେ ଦେଖିଲେ ନାହିଁ । ବହୁତ ଦିନ ଗଲାପରେ ପିଏରେ ଖବର ପାଇଲା ଯେ ସେଦିନ ସେ ଆଣ୍ଡ୍ରୁଜ୍ଙ୍କର ଗୋଟିଏ ବାହା ନଷ୍ଟ ହୋଇଗଲା ।

ସେହି ସେ ଢିପର ମାଟି । ପରେ ଋଷ ପକ୍ଷର ଲୋକେ ତାକୁ କହିଲେ ତୋପଘାଟିର ଢିପ ବା ରାଏଭସ୍କିଙ୍କ ତୋପଘାଟି । ଫରାସୀ ଲୋକେ ତାକୁ କହିଲେ "ପ୍ରସିଦ୍ଧ ଘାଟି", "ମାରକ ଘାଟି" ଆଉ ମଝି ଘାଟି ।" ସେ ଜାଗାରେ ଅୟୁତ ଅୟୁତ ସୈନ୍ୟ ମୃତ୍ୟୁ ମୁହଁରେ ପଡ଼ିଥିଲେ । ଫରାସୀ ପକ୍ଷ ସେ ଜାଗାକୁ ଅସଲ ଗୁରୁତ୍ୱକାଠି ଆସ୍ଥାନ ବୋଲି ଭାବୁଥିଲେ ।

ଘାଟିଟା ଗୋଟାଏ ଢିପ । ତା' ତିନିପଟେ ଖମା ଖୋଳାହୋଇଥାଏ । ସେଇ ଖାଇ ସେ କରେ ସେ ଜାଗାରେ ଦଶଟା ତୋପ ଖଞ୍ଜା ହୋଇଥାଏ । ମାଟି ହିଡ଼ ଭିତରେ ଯେଉଁ ଫାଙ୍କ ଥାଏ ସେହି ଫାଙ୍କବାଟେ ସେ ତୋପସବୁ ଗୁଳି ବରଷୁଥାଏ ।

ସେହି ଘାଟି ସଳଖରେ ଏକ ଧାଡ଼ିରେ ତା' ହିଁ' ପାଖରେ ଅନ୍ୟାନ୍ୟ ତୋପ ଖଞ୍ଜା ହୋଇଥାଏ । ସେଥିରୁ ବି ଅହରହ ଗୁଳି ଚାଲିଥାଏ । ତୋପ

ଧାଡ଼ିକ ଘରୁ ଅଳ୍ପ ଗୁଡ଼ ତା' ପଛଆଡ଼େ ପଦାତିକ ସୈନ୍ୟମାନେ ଥାଆନ୍ତି । ପିଏରେ ଯେତେବେଳେ ହ୍ରଦ ଉପରକୁ ଚଢ଼ିଗଲା ତାର ଆଦୌ ଧାରଣା ନଥିଲା ଯେ ଏଇ ଜାଗାଟା ଯାହାକୁ ସାନ ସାନ ଖାଇ ମାନ ବେଢ଼େଇ ହୋଇ ରହିଥାଏ ଓ କେତେଟା ତୋପ ଜଗି ରଖିଥାଏ, ଏଇ ଜାଗାଟା ସମୁଦାୟ ଯୁଦ୍ଧଭୂଇଁ ଭିତରେ ସବୁଠାରୁ ବେଶି ଗୁରୁତ୍ୱପୂର୍ଣ୍ଣ ସ୍ଥାନ ।

ସେ ମନେ ମନେ ଭାବୁଥାଏ (କେବଳ ଏଇଥିପାଇଁ ଏପରି ଭାବୁଥାଏ ଯେ ସେ ନିଜେ ସେଠିଥିଲା) ଯେ ସେ ଜାଗାଟାରେ ଆଦୌ କୌଣସି ଗୁରୁତ୍ୱ ନଥିଲା ।

ତୋପ ଘାଟିକୁ ଯେଉଁ ମାଟି ହିଡ଼ଟା ଘେରି ଦିଆହୋଇଥାଏ ତହିଁର ଗୋଟିଏ ମୁଣ୍ଡରେ ବସିପଡ଼ି ପିଏରେ ଚାରିଆଡ଼କୁ ଚାହିଁଲେ । ଅଜାଣତରେ ତା' ମୁହଁରେ ଆନନ୍ଦର ହସ ଫୁଟିଉଠିଲା । ବେଳେ ବେଳେ ସେ ଠିଆ ହୋଇ ପଡୁଥାଏ । ତା' ମୁହଁରେ ସେହି ହସ ଲାଗିଥାଏ । ସେ ତୋପ ଘାଟି ଚାରିକରେ ବୁଲି ଆସୁଥାଏ । ସେ ଚେଷ୍ଟା କରୁଥାଏ ଯେପରିକି ସୈନ୍ୟମାନଙ୍କ ଯିବା ବାଟରେ ସେ ପ୍ରତିବନ୍ଧକ ନହୁଏ । ସୈନ୍ୟମାନେ ତୋପ ଭିତରେ ଗୁଳିବାରୁଦ ପୂରାଉଥାନ୍ତି । ତୋପ ଫୁଟାଉଥାନ୍ତି, ଆଉ ବସ୍ତା ବସ୍ତା ଗୁଳିବାରୁଦ ବୋହି ତାହାର କରିବାଟ ଦେଇ ବାରମ୍ବାର ଧାଁ ଧପଡ଼ କରୁଥାନ୍ତି । ତୋପଗୁଡ଼ାକ ବାରମ୍ବାର ଫୁଟି ଲାଗିଥାଏ । ଗୋଟାକ ପରେ ଗୋଟାଏ ଚାଲିଥାଏ । ଶବ୍ଦରେ କାନ ଅତଡ଼ା ପଡୁଥାଏ । ଚାରିପାଖ ଅଞ୍ଚଳ ଧୂଆଁରେ ଢାଙ୍କି ହୋଇଯାଇଥାଏ ।

ଯେଉଁ ପଦାତିକ ସୈନ୍ୟମାନେ ତୋପ ଘାଟିକୁ ଜଗି ରହିଥାନ୍ତି ତାଙ୍କ ମୁହଁରେ ଭୟର ଅଭିବ୍ୟକ୍ତି ଫୁଟି ଉଠୁଥାଏ । କିନ୍ତୁ ତୋପ ଘାଟିରେ, ଯେଉଁଠି ଅଳ୍ପ ଲୋକ ଥା'ନ୍ତି ଆଉ ସେମାନେ ଆପଣା କାମରେ ଲାଗିଥାନ୍ତି, ଖାଇରେ ଥିବା ଲୋକଙ୍କ ଠାରୁ ଅଲଗା ହୋଇ ରହିଥାନ୍ତି, ଆଉ ଏଠି ଏ ଲୋକଙ୍କଠି ଖେଳୁଥାଏ ଗୋଟାଏ ବ୍ୟଗ୍ରଉତ୍ତେଜନା, ସମସ୍ତଙ୍କଠି ସେହି ଏକ ପରିବାରରେ ମନଭାବ ପରି ସେଇ ଗୋଟାଏ ଭାବନା ଥାଏ ।

ପ୍ରଥମେ ଯେତେବେଳେ ପିଏରେ ଆସି ପହଞ୍ଚିଲା ତା'ର ଅସାମରିକ ଚେହେରା ଆଉ ଧଳା ଟୋପି ଦେଖି ଏହି ସାନ ଦଳଟିର ସମସ୍ତେ ମନେମନେ ଖରାପ ଧାରଣା କରିଥିଲେ । ସୈନ୍ୟମାନେ ତା' ପାଖବାଟେ ଦୌଡ଼ି ଦୌଡ଼ି ଗଲାବେଳେ, ଆଶ୍ଚର୍ଯ୍ୟହୋଇ ଏପରିକି ଆତଙ୍କିତ ହୋଇ ତା' ଆଡ଼କୁ କଣେଇଁ କଣେଇଁ ଚାହିଁ ଦେଇ ଯାଉଥିଲେ ।

ଜଣେ ପୁରୁଣା ତୋପ କର୍ମଚାରୀ ପିଏରେ ପାଖକୁ ଆସିଲେ । ସେ ଜଣେ ଡେଙ୍ଗା ଲୋକ, ତାଙ୍କର ଡେଙ୍ଗା ଡେଙ୍ଗା ଗୋଡ଼, ମୁହଁରେ ଦେହରେ ବସନ୍ତ ଚିହ୍ନ । ସେ ବାଁରେଇ ହୋଇ ଆସିଲେ ଯେପରିକି ତୋପର ପଛଆଡ଼େ କେମିତି ତୋପଟା କାମ କରୁଛି ଏହି କଥା ଦେଖିବାକୁ ସେ ଆସିଛନ୍ତି । ସେ ପିଏରେ ଆଡ଼କୁ ପଚରିଲା ପଚରିଲା ମୁହଁରେ ଚାହିଁ ରହିଲେ ।

ଜଣେ ପିଲାଳିଆ ଗୋଲ୍ ମୁହଁ ସାନ କର୍ମଚାରୀ । ସେ ଗୋଟିଏ ପିଲା ପରି ଦିଶୁଥାଏ, ଜଣାଯାଉଥାଏ ଯେ ସେ ସୈନ୍ୟତାଲିମ୍ ବିଦ୍ୟାଳୟରୁ ନୂଆହୋଇ ବାହାରିଛି । ତା' ମାର୍ଫତ୍‌ରେ ଯେଉଁ ଯୋଡ଼ିଏ ତୋପଥାଏ ସେ ଭାରି ନିଷ୍ଠା ସହକାରେ ସେ ତୋପ ଯୋଡ଼ିକର ଖବର ବୁଝୁଛି । ସେ ଆସି ରୁଢ଼ ସ୍ୱରରେ ପିଏରେକୁ କହିଲା !

"ଆଜ୍ଞା, କ୍ଷମା କରନ୍ତୁ ଆପଣଙ୍କୁ ମତେ କହିବାକୁ ପଡ଼ୁଛି ଆପଣ ବାଟରୁ ଉଠିଯାଉନ୍ତୁ ଆଜ୍ଞା, ଏଠି ଆପଣ ରହିପାରିବେ ନାହିଁ ।"

ସୈନ୍ୟମାନେ ପିଏରେ ଆଡ଼କୁ ଚାହିଁ ଅପ୍ରଶଂସା ଦେଖାଇ ମୁଣ୍ଡ ହଲାଇଲେ । କିନ୍ତୁ ସେମାନେ ଯେତେବେଳେ ଜାଣିପାରିଲେ ଯେ ଧଳାଟୋପି ପିନ୍ଧା ଲୋକଟା କାହାରି କିଛି ଅନିଷ୍ଟ କରୁନାହିଁ; ହୁଏତ ମାଟି ବନ୍ଧର ଢାଲୁରେ ସ୍ଥିରହୋଇ ବସୁଛି ନହେଲେ ସୈନ୍ୟମାନେ ଗଲାବେଳେ ଲାଜକୁଳିଜରା ହୋଇ ଭଦ୍ର ହସଟିଏ ହସି ବାଟ ଛାଡ଼ି ଦେଉଛି। ଆଉ ତା' ଉପରେ ଗୁଳି ଚାଲିଥିଲା ବେଳେ ସେ ତୋପ ଘାଟି ଚାରିକରେ

ଏତେ ଶାନ୍ତ ସଂଯତ ହୋଇ ଚାଲି ଚାଲି ବୁଲୁଛି ଯେ ସତେକି ସେ ଘରୁଛି ସହରର ରାସ୍ତା କଡ଼ର ବଗିଚାରେ ସେ ବୁଲୁଛି । ସୈନ୍ୟମାନଙ୍କ ତାପ୍ରତି ଯେଉଁ ସନ୍ଦେହ ଭାବଗ ଉପୁଜିଥିଲା ତା' ଉଭେଇଗଲା ଓ ତା'ପରିବର୍ତ୍ତେ ତା' ପ୍ରତି ତାଙ୍କର ଏକ ପ୍ରକାର ମନଖୋଲା ସ୍ନେହ ଜନ୍ମିଲା । ସୈନ୍ୟଦଳରେ ଯେଉଁ କୁକୁର, ଗଞ୍ଜା କୁକୁଡ଼ା, ଛେଳି ଓ ଅନ୍ୟ ଜନ୍ତୁ ଥାଇ ସୈନ୍ୟଦଳର ଭାଗ୍ୟରେ ଭାଗୀ ହୁଅନ୍ତି ତାଙ୍କ ପ୍ରତି ସୈନ୍ୟମାନଙ୍କର ଯେଉଁ ସ୍ନେହ ଜନ୍ମେ ଅବିକଳ ସେହିପରି ଭାବ ତା'ପ୍ରତି ବି ତାଙ୍କର ହେଲା । ଅତି ତଞ୍ଚଳ ସୈନ୍ୟମାନେ ପିଏରେଙ୍କୁ ତାଙ୍କ ନିଜ ସାନ ଦଳର ଜଣେ ବୋଲି ମନେ ମନେ ଗ୍ରହଣ କରିନେଲେ । ମନେ ମନେ ତାଙ୍କୁ ଆପଣାର ସାଙ୍ଗ ମଧ୍ୟ କରିନେଲେ । ତାଙ୍କୁ ଗୋଟାଏ ନାଁ ବି ଦେଇଦେଲେ, କହିଲେ 'ଆମ ଭଦ୍ରଲୋକ' ଆଉ ନିଜ ନିଜ ଭିତରେ ତା'କଥା କୁହା କୁହି ହୋଇ ମଉଜରେ ହସାହସି ହେଲେ ।

ପିଏରେଠୁଁ ଦି ପାହୁଣ୍ଡ ଦୂରରେ ଗୋଟାଏ ତୋପଗୁଳି ମାଟିରେ ପଡ଼ିଲା ଯେ ମାଟି ଉଡିଗଲା । ଆପଣା ଲୁଗାପଟାରୁ ମାଟି ଗୁଣ୍ଡା ଝାଡ଼ିଦେଇ ପିଏରେ ମୁରୁକି ମୁରୁକି ହସି ତା' ଚାରିଆଡକୁ ଚାହିଁଲା ।

ଜଣେ ହୃଷ୍ଟପୁଷ୍ଟ ନାଲିମୁହାଁ ସୈନିକ ବଡ ହସଟାଏ ହସି ମୁହଁ ନେଫେଡ଼ି ତାର ଧଳା ଧଳା ଟାଣୁଆ ଦାନ୍ତ ଦେଖାଇ ପଚାରିଲା—

"ଆପଣଙ୍କୁ ଡର ମାଡୁନାହିଁ କେମିତି ଆଜ୍ଞା ମତେ ତ ଏକଥା ଭାରି ଆଶ୍ଚର୍ଯ୍ୟ ଲାଗୁଛି ।" ପିଏରେ ପଚାରିଲା "କାହିଁ ? ଆପଣଙ୍କୁ କ'ଣ ଡରମାଡ଼ୁଛି ?" ସୈନିକ କହିଲା "ନିଶ୍ଚୟ, ଏଥିରେ କ'ଣ ସନ୍ଦେହ ଅଛି ? ସେ ମାଇକିନିଆଟା ପାଖରେ ଟିକିଏ ବି ଦୟାମାୟା ନାହିଁ । ସେ ଧାଇଁକିନା ମଣିଷର ଦେହ ଭିତରକୁ ପଶିଯିବ । ସେଇଠୁ ମଣିଷର ଅନ୍ତନାଡ଼ି କୁଆଡେ ଉଡ଼ି ପଳେଇବ । ନଜର ରହିବ କିଏ ?" ସେ ହସିଲା । ପିଏରେ ପାଖରେ ବହୁତ ଗୁଡ଼ିଏ ସୈନିକ ଭିଡ଼ହୋଇ ଠିଆ ହୋଇଥିଲେ । ସେମାନଙ୍କ ମୁହଁରେ ସ୍ନେହ ଓ ବନ୍ଧୁତାର ଠାଣି ଦିଶୁଥାଏ । ସେମାନେ ସତେକି ଭାବୁନଥିଲେ ଯେ ଅନ୍ୟମାନେ ଯେପରି ଭାବରେ କଥା

କହନ୍ତି ପିଏରେ ବି ସେପରି ଭାବରେ କଥା କହିବ । ସେ ଯାହା କରୁଥାଏ ତାକୁ ଦେଖି ସେମାନେ ଭାରି ଖୁସି ହେଉଥାନ୍ତି ।

"ଆମେ ସୈନିକ, ଯୁଦ୍ଧ ଆମ କାମ । କିନ୍ତୁ ଜଣେ ଭଦ୍ରଲୋକ ପକ୍ଷରେ,—ଏ ବଡ଼ ବିସ୍ମୟ କଥା । ଜଣେ ଭଦ୍ରଲୋକ ପକ୍ଷରେ ଏତ ଆଶ୍ଚର୍ଯ୍ୟ ପ୍ରକାରରେ ଅସମ୍ଭବ ! ଅଦ୍ଭୁତ !"

ଯେଉଁ ସୈନିକମାନେ ପିଏରେର ଚାରିକରେ ବେଢ଼ିଥାନ୍ତି ସାନପିଲା କର୍ମଚାରୀଟି ତାଙ୍କ ଉପରକୁ ପାଟିକଲା—"ସମସ୍ତେ ନିଜ ନିଜ ଜାଗାକୁ ଚାଲିଯା" । ଜଣାଯାଉଥାଏ ଯେ ଏ ପିଲାଟି ସେହି ପ୍ରଥମଥରକ ନହେଲେ ଆଗରୁ ଥରେ ହୋଇଥିଲେ ସେହି ଥରକ ଦ୍ୱିତୀୟ ଥର କର୍ମଚାରୀ ହୋଇ କାମ କରୁଥାଏ, ତେଣୁ ସେ ସୈନ୍ୟମାନଙ୍କ ପ୍ରତି ଓ ତା'ର ଉପରସ୍ଥ କର୍ମଚାରୀମାନଙ୍କ ପ୍ରତି ବହୁତ ମାପିଚୁପି ମାମୁଲି କାଇଦା କଟକଣା ରଖି ବ୍ୟବହାର କରୁଥାଏ ।

ସମୁଦାୟ ଯୁଦ୍ଧକ୍ଷେତ୍ର ଉପରେ କମାଣର ଗର୍ଜନ ଓ ବନ୍ଧୁକର ଢୋ'ଢା ଶବ୍ଦ ବେଳକୁ ବେଳ ବଢ଼ି ଚାଲିଥାଏ, ବିଶେଷତଃ ବାଁ ପଟେ ଯେଉଁଠି ବାଗ୍ରାଡ଼ିଅନଙ୍କ ମାଟି ବନ୍ଧ ଥାଏ ସେଠି ଆହୁରି ବେଶୀ । କିନ୍ତୁ ପିଏରେ ଯେଉଁଠି ଥାଏ ସେଠୁ ଧୂଆଁ ଭିତରେ ପ୍ରାୟ କିଛି ଦିଶୁନଥାଏ । ତା ଛଡ଼ା ସମୁଦାୟ ପୃଥିବୀରୁ ଅଲଗାହୋଇ ରହିଥିବା ଭାଇ ଭାଇ ହୋଇ ସେଇ ସାନ ଦଳଟିର କାର୍ଯ୍ୟ କଳାପ ଲକ୍ଷ୍ୟ କରିବାରେ ପିଏରେର ସବୁଯାକ ଧ୍ୟାନ ଲାଗିରହିଥାଏ । ଯୁଦ୍ଧ ଭୂମିର ଦୃଶ୍ୟ ଦେଖି ଓ ଶବ୍ଦ ଶୁଣି ପ୍ରଥମେ ତା ମନ ଅଜାଣତରେ ଯେଉଁ ଆନନ୍ଦ ହୋଇଥିଲା ଶୁଖିଲା ଘାସ ପଡ଼ିଆରେ ଗୋଟିକିଆ ମଲା ସୈନ୍ୟଟିଏ ଏକୁଟିଆ ହୋଇ ପଡ଼ି ରହିଛି ଦେଖି ଆସିଲା ବେଳଠାରୁ ମନରେ ସେ ଭାବ ବଦଳି ଯାଇଥାଏ । ବର୍ତ୍ତମାନ ମାଟି ବନ୍ଧ ଢାଲୁରେ ବସି, ସେ ତା ଚାରିଆଡ଼େ ବୁଲୁଥିବା ମଣିଷମାନଙ୍କୁ ନିଘା କରୁଥାଏ ।

ଦଶଟା ବାଜିଲା ସରିକି ତୋପ ଘାଟିରୁ ପ୍ରାୟ କୋଡ଼ିଏ ଜଣ ଲୋକ ବୁହାହୋଇ ନିଆହୋଇ ଯାଇଥାନ୍ତି । ଯୋଡ଼ାଏ ତୋପ ମାଡ଼ ଖାଇ

ଅଖଣ୍ଡ ହୋଇ ପଡ଼ିଥାଏ । ଆହୁରି ଲଗାତାର ହୋଇ ତୋପ ଘାଟି ଉପରେ ତୋପ ଗୁଳିମାନ ଆସି ପଡ଼ୁଥାଏ । ଦୂରରୁ କହୁଁ କହୁଁ ସୁସୁ ଘରଘର ଶବ୍ଦ କରି ଗର୍ଜନ ଗର୍ଜିବା ତୋପ ଗୁଳିମାନ ଉଡ଼ିଆସୁଥାଏ ।

କିନ୍ତୁ ତୋପ ଘାଟିରେ ଥିବା ଲୋକଙ୍କ ନଜରରେ ସତେକି ତା ପଡ଼ୁନଥାଏ । ଯିଏରପଟେ ମଉଜ ଗପ ଆଉ ଥଟ୍ଟା ତାମସା ଶୁଭୁଥାଏ । ଗୋଟାଏ ତୋପଗୁଳି ଜଣକ ଆଡ଼େ ସିଠି ମାରି କରି ଆସିଲା ଯେ ସେ ସୈନିକଟି ତାକୁ ଡାକ ହାକ କରୁଥାଏ " ଏଣେ ଆସ ନାହିଁ ସୁନ୍ଦରୀ ।"

ଆଉ ଗୋଟାଏ ତୋପଗୁଳି ଆସି ପଦାତିକ ସୈନ୍ୟମାନଙ୍କ ଗହଳରେ ପଡ଼ିଲା ଯେ ଆଉ ଜଣେ ସୈନ୍ୟ ହସିଦେଇ କହିଲା "ପଦାତିକ ମାନଙ୍କୁ ଥରେ ଦୟା କର ଗୋ – ତାଙ୍କ ପାଳଟା କାହିଁକି ବାକି ରହିବ ।"

ଗୋଟାଏ ତୋପ ଗୁଳି ଉଡ଼ି ଉଡ଼ିକା କଣ ଆସୁଛି ଦେଖି ଜଣେ ଚଷା ଲେପେଟେଇ ପଡ଼ିଲା ଯେ ଆଉ ଜଣେ ସୈନିକ ତାକୁ ଟାପରା କରି କହିଲା "କ'ଣ ହେଲା ? ଜଣେ ବନ୍ଧୁ ଆସୁଛନ୍ତି ଦେଖିଲକି ?"

ହଳେ ସୈନ୍ୟ ମାଟି ବନ୍ଧ ପାଖେ ଏକାଠି ହୋଇ ଆଗରେ ଯୁଦ୍ଧ ଭୂଇଁରେ କ'ଣ ହେଉଛି ଦେଖୁଥାନ୍ତି । ସେମାନେ ମାଟି ବନ୍ଧ ଉପରେ ହାତ ଦେଖାଇ କହିଲେ –

"ଦେଖ ଦେଖ ଶତ୍ରୁ ପକ୍ଷ ଆମର ଆଗୁଆ ଘାଟି ଗୁଡ଼ାକ ଦଖଲ କରି ଗଲେଣି, ହେଇ ! ଆମ ଲୋକ ପଛକୁ ହଟି ଆସୁଛନ୍ତି ।"

ବୁଢ଼ା ସର୍ଜେଣ୍ଟ ତାଙ୍କ ଉପରକୁ ପାଟିକରି କହିଲା "ତମେ ତମ କାମ କରହୋ । ସେମାନେ ଯଦି ପଛକୁ ଚାଲିଆସିଲେ ତେବେ ପଛରେ କ'ଣ କାମଥିବ ବୋଲି ଆସିଲେନା, ଆଉ କାହିଁକି ? ଜଣେ ସୈନିକର କାନ୍ଧକୁ ଧରି ସାର୍ଜେଣ୍ଟ ତାକୁ ତା ଆଣ୍ଠୁରେ ଗୋଟାଏ ଠେଲା ମାରିଲା । ସେଉଠୁ ହସର ରୋଳ ଉଠିଲା । ପାଖ ଲୋକେ ପାଟି କରୁଥାନ୍ତି "ପଞ୍ଚମ କମାଣ ଯା ଗଡ଼ଯା –" ଯେଉଁ ଲୋକେ ସେ ତୋପ ଭିତରେ ଗୁଳି ବାରୁଦ ଖଞ୍ଜୁଥାନ୍ତି ସେମାନେ ଖୁସି ହୋଇ ପାଟିକଲେ "ହେଁ ଇଁ ଓଁ – ଓଟାର ସମସ୍ତେ ମିଶି

ଆସ୍ତ କର ଓଚାର–"ବାଲ ମୁହଁ ଥଚଲ ସୈନକ ଦାନ୍ତ ଦେଖାଇ ହସି ହସି କହିଲ "ଆଲେ ଆଲେ, ଆଜ ଚିକଏ ହୋଇଥିଲେତ ଆମ ଭଦ୍ରଲୋକଙ୍କ ମୁଣ୍ଡରୁ ଟୋପିଟା ଉଡ଼େଇ ନେଇଥାନ୍ତା । ଆଜ କ'ଣ ? ଗୋଟାଏ ତୋପ ଗୁଳ ଗୋଟାଏ ଚକରେ ଆଉ ଜଣକର ଗୋଡ଼ରେ ଆସି ବାଜଥାଏ ଯେ ସେ ଗୁଳଟାକୁ ସେ ଗାଳଦେଇ କହିଲ "ଆଲେ ବଜ୍ଜାତ୍ ମାଇକନଆ ତୁ କ'ଣ କଲୁ ଲେ ।"

ଗାଉଁଲ ଚଷା ସୈନକମାନେ ଆହତ ଲୋକଙ୍କ ପଛେ ପଛେ ତୋପମାନଙ୍କ ସନ୍ଧରେ ତଳେ ଗୁରୁଣ୍ଡୁ ଥାନ୍ତ ଯେ ଆଉ ଜଣେ ସୈନକ ସେମାନଙ୍କୁ କହିଲ "ହୋ କୋକଣିଆଳାଏ, ଆମଜାଉ ଭାତ କେମିତ ରକ୍ଷା ପାଇବ ତମର ସେଥିକ ନଜର ନାଇଁ ହଇହୋ ! ଆଃ ! କାଉ ଗୁଡ଼ାଏତ !

ଏତକ ଶୁଣିଲାରୁ ସିଧା ହୋଇଗଲେ । "ଗାଉଁଲ ସୈନ୍ୟମାନଙ୍କ ଉପରକୁ ସେମାନେ ପାଟି କରୁଥାନ୍ତ । ଯେଉଁ ସୈନକଟିର ଗୋଡ଼ଟା ଉଡ଼ି ଯାଇଥାଏ ତାକୁ ଗୁହଁ ଗାଉଁଲ ସୈନକମାନେ ଦୋଦୋପାଞ୍ଚ ହେଉଥାନ୍ତ ଯେ ତାଙ୍କୁ ଥଟ୍ଟା ନକଲ କର ସେମାନେ କହୁଥାନ୍ତ "ଉହୁହୁ ଭାବରେ... ଆମକୁ ଏ ମୋଟେ ଭଲ ଲାଗୁନାହିଁ, ନାଇଁ ଏ ଚଳବନାଇଁ ଆମ ଦେଇ–"

ପିଏରେ ନଜା କଲ ଯେ ସେମାନଙ୍କ ଭିତରେ ପ୍ରତ ତୋପ ଗୁଳ ପଡ଼ଲା ଉତ୍ତାରୁ ପ୍ରତଥର କେହି ମଲ ଉତ୍ତାରେ କ ଖଣ୍ଡିଆ ହେଲା ଉତ୍ତାରୁ ସମସ୍ତଙ୍କ ଆନନ୍ଦ ଉତ୍ତେଜନା ସତେକ ଆଗଠୁ ଅଧିକ ବଢ଼ି ବଢ଼ି ଉଠୁଥାଏ ।

ତୋଫାନର ଦାଉ ସେମାନଙ୍କ ଉପରକୁ ଝାମ୍ପ ମାରିବାକୁ ଆସି ଯେତକ ପାଖକୁ ପାଖ ହୋଇ ଆସୁଥାଏ ସେହି ଲୋକଙ୍କ ମୁହଁରେ ସେମାନଙ୍କ ଭିତରେ ଜଳୁଥିବା ନଆଁର ଝଲକ ସେତକ ଉଜ୍ଜଳ ହୋଇ ଅଧିକ ଝଟକୁ ଥାଏ । ଲାଗୁଥାଏ ସତେକ ବିପଦକୁ ଭେଟିବାକୁ ଆଉ ରୋକିବାକୁ ସେ ତେଜ ଫୁଟି ବାହାରୁଛି ।

ସାମ୍ନାରେ ଯୁଦ୍ଧ ଭୂଇଁରେ କ'ଣ ଘଟୁଛି ସେକଥା ଦେଖିବାକୁ ପିଏରେ ଚାହୁଁ ନ ଥାଏ । ଏଠି କ'ଣ ଘଟୁଛି ସେ ସବୁକୁ ବେଶି ନଘାଦେଇ ଲକ୍ଷ୍ୟକରୁଥାଏ, ସେହି ଯେଉଁ ନଆଁଟା ବଢ଼ି ବଢ଼ି ଉଠୁଥାଏ । ଯାହାକୁ ଆପଣା ଅନ୍ତର ଭିତରେ ବି ସେ ଅନୁଭବ କରୁଥାଏ ସେ ନିର୍ବିଘ୍ନ ମନରେ ତାକୁହିଁ ଧ୍ୟାନ କରୁଥାଏ ।

ତୋପ ଘାଟି ଆଗରେ ବୁଦା ଜଙ୍ଗଲରେ ଓ କାମେଙ୍କା ନଈ ଗୁଣଆଡ଼େ ଯେଉଁ ପଦାତିକ ସୈନ୍ୟବାହିନୀ ଥିଲେ ଦିନ ଦଶଟା ବାଜିଲା ବେଳେ ସେମାନେ ପଛକୁ ହଟି ହଟି ଆସିଲେ । ତୋପ ଘାଟିରେ ଥାଇ ଏମାନେ ଦେଖିଲେ ଯେ ସେହି ପଦାତିକ ସୈନ୍ୟମାନେ ଦୌଡ଼ି ଦୌଡ଼ି ପଳାଇ ଆସୁଥାନ୍ତି । ତୋପଘାଟି କରବାଟେ ଦୌଡ଼ି ପଳାଉଥାନ୍ତି ଓ ତାଙ୍କ ଭିତରୁ ଯେଉଁମାନେ ଆହତ ହୋଇଥାନ୍ତି ତାକୁ ବନ୍ଧୁକରେ ବସାଇ ବୋହି ନେଉଥାନ୍ତି । ଜଣେ ସେନାପତି ତାଙ୍କ ପାର୍ଶ୍ୱରକ୍ଷୀମାନଙ୍କୁ ସଙ୍ଗରେ ଧରି ତୋପ ଘାଟିକୁ ଆସିଲେ । ସେ କର୍ଣ୍ଣେଲ ସହ କଥା କହି ପିଏରେ ଆଡ଼କୁ ରାଗରେ ଚାହିଁ ଯେଉଁ ପଦାତିକ ସୈନ୍ୟମାନେ ତୋପଘାଟି ପଛଆଡ଼େ ରହି ତାକୁ ଜଗିଥିଲେ ସେମାନଙ୍କୁ ତଳେ ଶୋଇ ରହିବାକୁ ହୁକୁମ ଦେଲେ । ତାହେଲେ ସେମାନେ ଗୁଳିମାଡ଼ ଆଡ଼କୁ ବେଶି ମେଲା ହୋଇରହିବେ ନାହିଁ । ଏତକ ହୁକୁମ ଦେଇ ସେ ସେଠାରୁ ପୁଣି ଚାଲିଗଲେ । ତାପରେ ପଦାତିକ ସୈନିକମାନଙ୍କ ଗହଳିରେ ତୋପ ଘାଟିରେ ଟିକଏ ଡାହାଣ ଆଡ଼କୁ ଗୋଟାଏ ଟମକ ବାଜିବାର ଶବ୍ଦ ଶୁଭିଲା । ବଡ଼ ପାଟିରେ ଆଦେଶ ଦିଆଯିବାର, ଶବ୍ଦ ଶୁଣି ଧାଡ଼ି ଧାଡ଼ି ହୋଇ ପଦାତିକ ସୈନ୍ୟ ଆଗକୁ ମାଡ଼ଯାଉଛନ୍ତି ।

ପିଏରେର ମାଟିବନ୍ଧ ଉପରବାଟେ ଥିବା ଗୋଟିଏ କର୍ମଚାରୀର ଚେହେରାଠାରେ ଆଖି ଲାଖିଗଲା । ତାର ପିଲାଳିଆ ମୁହଁଟି ଶୁଖିଯାଇଥାଏ । ସେ ପଛ ପଟକୁ ଚାଲି ଚାଲି ଯାଉଥାଏ । ସେ ତାର ଖଣ୍ଡାଟିକୁ ତଳକୁ ନୁଆଁଇ ଧରିଥାଏ ଓ ଚାରିଆଡ଼କୁ ଡରି ଡରି ଚାହୁଁ ଥାଏ ।

ଧାଡ଼ ଧାଡ଼ ହୋଇ ପଦାତିକ ସୈନ୍ୟ ଧୂଆଁ ଭିତରେ ଅଦୃଶ୍ୟ ହୋଇଗଲେ କିନ୍ତୁ ସେମାନେ ବଡ଼ ପାଟିକରୁ ଥାନ୍ତି ଓ ବେଳେବେଳେ ବନ୍ଧୁକ ଫୁଟୁଥିବାର ଶବ୍ଦ ଶୁଭୁଥାଏ । କେତେ ମିନଟ୍ ପରେ ସେଠୁଆଡ଼ୁ ଦଳ ଦଳ ହୋଇ ଆହତ ସୈନ୍ୟ ଆସିଲେ । ଆଉ କେତେଗୁଡ଼ାଏ ଖଟିଆ ବୁହାହୋଇ ଆସିଲା । ତୋପ ଘାଟି ଉପରେ ଆହୁରି ବେଶି ବେଶି ତୋପ ଗୁଳି ଆସି ପଡ଼ିଲା । ବହୁତ ଲୋକ ତଳେ ପଡ଼ିଥାନ୍ତି ଯେମାନଙ୍କୁ କେହି ଉଠାଇ ନଥାନ୍ତି । ସୈନ୍ୟମାନେ ଆହୁରି ତରତର ହୋଇ କାର୍ଯ୍ୟବ୍ୟସ୍ତ ହୋଇ ତୋପମାନଙ୍କ ପାଖରେ ଏକର ସେକର ହେଉଥାନ୍ତି । କେହିଆଉ ପିଏରକୁ ଆଦୌ ଲକ୍ଷ୍ୟ କଲେ ନାହିଁ । ସେ ବାଟ ବନ୍ଦ କରୁଛି ବୋଲି ଦି ଥର ରାଗରେ ତା ଉପରକୁ ପାଟିହେଲା । ଉଚ୍ଚତମ କର୍ମଚାରୀ ମୁହଁ ଭ୍ରୂକୁଟି କରି ଗୋଟାଏ ତୋପ ପାଖରୁ ଆଉ ଗୋଟାଏ ତୋପ ପାଖକୁ ତର ତର ହୋଇ ଧାଁ ଧପଡ଼ କରୁଥିଲେ । ପିଲା କର୍ମଚାରୀଟିର ଗାଲ ଆଉରି ବେଶି ନାଲି ଦିଶୁଥାଏ । ସେ ଆହୁରି ନଟେଇ ନଟେଇ ସୈନିକମାନଙ୍କୁ ଆଦେଶ ଦେଉଥାଏ । ସୈନ୍ୟମାନେ ଗୁଳି ବାରୁଦ ବଢ଼ାଇ ଦେଉଥାନ୍ତି ବୁଲି ପଡ଼ୁଥାନ୍ତି, ଗୁଳି ବାରୁଦ ଖୁନ୍ଦୁଥାନ୍ତି ଆଉ ବହୁତ ବଡ଼ି ବଡ଼ି ଫୁର୍ତ୍ତି କରି ଆପଣା ଆପଣା କାର୍ଯ୍ୟ କରୁଥାନ୍ତି । ସେମାନେ ଯନ୍ତ୍ର ଚାଳିତ ମେସିନ୍ ପରି କାର୍ଯ୍ୟ କରୁଥାନ୍ତି ।

ତୋଫାନ ମେଘ ଆହୁରି ପାଖକୁ ପାଖକୁ ଝାମ୍ପ ମାରିବାକୁ ଲାଗି ଲାଗି ଆସୁଥାଏ । ସମସ୍ତଙ୍କ ମୁହଁରେ ସେଉଁ ନିଆଁ ଜଳି ଉଠୁଥାଏ ପିଏରେ ଲକ୍ଷ୍ୟ କରୁଥାଏ ସେ ଯେପରିକି ଆହୁରି ତେଜ ତେଜ ଉଠୁଛି । ସାନପିଲା କର୍ମଚାରୀଟି ଧାଇଁ ଆସିଲା । ଟୋପିରେ ହାତ ଲଗାଇ ତାର ଉପରିସ୍ଥ କର୍ମଚାରୀକୁ ସଲାମ ଦେଇ କହିଲା—

"ଆପଣଙ୍କୁ ନିବେଦନ କରୁଛି କର୍ଣ୍ଣେଲ ଆଜ୍ଞା, ଆଉମାତ୍ର ଆଠଥର ଗୁଳି ମାରିବା ସକାଶେ ବାରୁଦ ଅଛି । ଏପରି ସ୍ଥଳେ ଗୁଳି ଚଳାଇ ରଖିବା କ'ଣ ଆପଣଙ୍କର ଆଦେଶ ?"

ଉପରିସ୍ଥ କର୍ମଚାରୀ ମାଟିବନ୍ଧ ସେପାଖକୁ ଚାହିଁ ପାଟିକଲେ "ପେନ୍ଥା ପେନ୍ଥା ଗୁଳି ଆସିଲା ।"

ହଠାତ୍ କ'ଣ ଗୋଟାଏ ଘଟିଗଲା । ପିଲା କର୍ମଚାରୀଟି ଆର୍ତ୍ତଚୀତ୍କାର କରି ଚକର ଖାଇ ମାଟିରେ ବସି ପଡ଼ିଲା, ସତେକି ଗୋଟାଏ ଚଢ଼େଇ ପକ୍ଷୀରେ ଗୁଳି ବାଜିଛି । ପିଏରେର ଆଖିକି ସବୁ କେମିତି ଅଚହ୍ନା ଅସ୍ପଷ୍ଟ ଆଉ ଅନ୍ଧାରୁଆ ହେଲା ।

ଗୋଟାକ ପରେ ଗୋଟାଏ ହୋଇ ତୋପ ଗୁଳିଗୁଡ଼ିକ ମାଡ଼ି ଆସି ମାଟି ବନ୍ଧରେ ପଡ଼ିଲା । ଆଗରୁ ପିଏରେ ପ୍ରାୟ ଏଭଳି ଶବ୍ଦ ଶୁଣି ନ ଥିଲା; କିନ୍ତୁ ବର୍ତ୍ତମାନ ଏହାଛଡ଼ା ସେ ଅନ୍ୟ ଶବ୍ଦ ଶୁଣିପାରିଲା ନାହିଁ । ତୋପ ଘାଟିର ଡାହାଣ ପଟେ ସୈନ୍ୟମାନେ "ଜୟ ! ଜୟ !" ପାଟିକରି ଦୌଡ଼ୁଥାନ୍ତି । କିନ୍ତୁ ପିଏରଙ୍କୁ ଲାଗିଲା ସେମାନେ ଆଗକୁ ଦୌଡ଼ୁଛନ୍ତି, ନା ପଛକୁ ଦୌଡ଼ୁଛନ୍ତି ।

ପିଏରେ ମାଟି ବନ୍ଧରେ ଯେଉଁଠି ବସିଥିଲା ଠିକ୍ ସେଠାରେ ବନ୍ଧ ତାଳୁରେ ଗୋଟାଏ ତୋପ ଗୁଳି ପଡ଼ିଲା । ମାଟିଗୁଡ଼ା ଚାରିଆଡ଼େ ଚରିଗଲା । ପିଏରେର ଆଖିଆଗରେ ଗୋଟାଏ ଗୋଲ୍ ହୋଇ କଳାହୋଇ କ'ଣ ଝକ୍ କରି ଉଠି ଆଉ ଗୋଟାଏ କ'ଣ ଭିତରକୁ ପଶିଗଲା । ଜଣେ ଗାଡ଼ିଲ ସୈନିକ ତୋପ ଘାଟି ଆଡ଼କୁ ଆସୁଥାଏ ସେ ସେ ପଛକୁ ପଳାଇଲା ।

କର୍ମଚାରୀ ପାଟିକଲେ ସବୁ ତୋପରେ ପେନ୍ଥା ଗୁଳି ପୁରାଅ ।

ଜଣେ ସାର୍ଜେଣ୍ଟ ସେ କର୍ମଚାରୀଙ୍କ ପାଖକୁ ଦୌଡ଼ିଆସି ତରତରରେ ଫୁସ୍ ଫୁସ୍ କରି କହିଲେ (ଯେମିତି ଭୋଜି ଲାଗିଥିଲା ବେଳେ ସମସ୍ତ ସମସ୍ତେ ପରଶିବା ଲୋକ ଗୃହସ୍ୱାମୀ ଆଗରେ କହେ ଯେ କୁଦେଆଁମାନେ ଯେଉଁ ମଦ ମାଗୁଛନ୍ତି ସେ ମଦ ଆଉ ନାହିଁ, ସେହିପରି ସ୍ୱରରେ) ଯେ ଆଉ ବାରୁଦ ନାହିଁ ।

ପିଏରେ ଆଡ଼କୁ ବୁଲିପଡ଼ି କର୍ମଚାରୀ ପାଟିକରେ "ବଦ୍‌ମାସ କାହିଁକି; କ'ଣ ଛେନାଗୁଡ଼ ଯେ ସେମାନେ କରୁଛନ୍ତି ।" ପ୍ରଧାନ କର୍ମଚାରୀଙ୍କ ମୁହଁ ନାଲି ଦିଶୁଥାଏ । ମୁହଁରୁ ଝାଳ ଗମ୍ ଗମ ବୋହୁଥାଏ । ତାଙ୍କର ମୁନିଆଁ ମୁନିଆଁ ଆଖି ହଟା ଜକ ଜକ ଦିଶୁଥାଏ ।

ପିଏରେ ଆଉକୁ ନ ଗ୍ୱହିଁ ସେ ସୈନିକକୁ କହିଲେ "ବଳକା ମାଲ୍ ଯେଉଁଠି ଅଛି ସେଠିକି ଧାଇଁଯାଇ ବାରୁଦ ବାକ୍ସ ନେଇଆସ ।"

ପିଏରେ କହିଲା "ମୁଁ ଯିବି ।" ତାକୁ ଜବାବ ନ ଦେଇ କର୍ମଗ୍ୱରୀ ଆଉ ମୁଣ୍ଡକୁ ଗ୍ୱଲି ଯାଇ ପାଟିକଲେ—

"ଗ୍ୱଲମାରୁ ବନ୍ଦ କର...ଅପେକ୍ଷା କର ।"

ଯେଉଁ ସୈନିକକୁ ବାରୁଦ ବାକ୍ସ ଆଣିବାକୁ କୁହାହୋଇଥିଲା ସେ ଧାଇଁ ଗଲାବେଳେ ପିଏରେ ଦେହରେ ଧକା ଲାଗିଲା । ଦୌଡ଼ି ଯାଉ ଯାଉ ସେ କହିଲା "ଆଃ ! ଆଜ୍ଞା ! ଏ ଜାଗା ଆପଣଙ୍କ ପାଇଁ ନୁହେଁ !"

ପିଏରେ ସେହି ସୈନିକ ପଛେ ପଛେ ଦୌଡ଼ିଲା । ପିଲା କର୍ମଗ୍ୱରୀଟି ଯେଉଁ ସ୍ଥାନରେ ବସିଥିଲା ସେବାଟେ ସେ ଗଲାନାହିଁ ।

ପିଏରେ ତଳକୁ ତଳକୁ ଦୌଡ଼ି ଦୌଡ଼ି ଗଲାବେଳେ ଆଗ ଗୋଟାଏ ତୋପଗୁଳି, ସେଉଠୁ ଆଉ ଗୋଟାଏ, ସେଉଠୁ ବୃଷ୍ଟିପ୍ରାୟ ତା ଉପରବାଟେ ଦେଇ ଉଡ଼ି ଉଡ଼ି ଗ୍ୱଲି ଗଲା । ତା ସାମ୍ନାରେ, ପୁଣି ବାଏଁ ଡାହାଣେ ଥିବା ଭୂଇଁରେ ତୋପଗୁଳି ପଡୁଥାଏ ।

ସେ ଯେତେବେଳେ ଶାଗୁଆ ବର୍ଣ୍ଣର ବାରୁଦ ବାକ୍ସ ପାଖକୁ ଦୌଡ଼ିଗଲା । ହଠାତ୍ ସେ ଭାବାହୋଇ ଭାବିଲା "ମୁଁ କୁଆଡ଼େ ଗ୍ୱଲିଛି ?" ଆଗକୁ ଯିବ କି ପଛକୁ ଯିବ କିଛି ଠିକଣା କରି ନପାରି ସେ ଅଟକି ଗଲା । ହଠାତ୍ ତା ଦେହରେ ଏକ ଭୟଙ୍କର ଚମକ ଲାଗି ସେ ପଛକୁ ଛିଟିକି ହୋଇ ମାଟିରେ ପଡ଼ିଗଲା । ଠିକ୍ ସେହି ମୁହୂର୍ତ୍ତରେ ଝକ୍ କରି ଏକ ନିଆଁ ଜଳି ଉଠିଲା ଯେ ତା ଆଖି ଝଲସି ଗଲା । ଆଉ ଏକ ପ୍ରବଳ ଗର୍ଜନ, ଏକ ସୁ ସୁ ଶବ୍ଦ, ଗୋଟାଏ ଭୁସ୍କରି କଣ ପଡ଼ିବା ଶବ୍ଦରେ ତାର କାନ ଦୁଇଟା ବଧୀର ହୋଇଗଲା ।

ପିଏରେର ହୋସ୍ ହେଲାରୁ ସେ ଦେଖିଲା ଯେ ସେ ଭୂଇଁରେ ହାତ ଭରଦେଇ ବସିଛି । ସେ ଯେଉଁ ବାରୁଦ ବାକ୍ସ ପାଖରେ ଥିଲା ତା ଆଉ ନାହିଁ । ପୋଡ଼ା ଘାସ ଉପରେ ପୋଡ଼ା ହୋଇ ଗୁଡ଼ାଏ ଶାଗୁଆ ପଟା ଆଉ କନା ବିକ୍ଷିପ୍ତ ହୋଇ ପଡ଼ିଛି । ଗୋଟାଏ ଘୋଡ଼ା ଡେଇଁ ଡେଇଁ ପଳାଉ ଥାଏ ଯେ ତା ପଛଆଡ଼େ ଗାଡ଼ିର ଭଙ୍ଗା ଦାଣ୍ଡିଆ ଖଡ଼୍ ଖଡ଼୍ ହୋଇ ଘୁସୁରି ଘୁସୁରି ଯାଉଥାଏ । ପିଏରେ ଯେମିତି ଭୂଇଁରେ ପଡ଼ିଥିଲା ସେମିତି ଭୂଇଁରେ ଗୋଟାଏ ଘୋଡ଼ା ମଧ୍ୟ ପଡ଼ିଥାଏ । ସେ ଅତି ଵିକଳ ଆର୍ତ୍ତଧ୍ୱନି କରୁଥାଏ । ତାର ସେ ଚିତ୍କାର ଏକାଧାରରେ ଲାଗି ରହିଥାଏ ।

ପିଏରେ ଭୟରେ ଅଭିଭୂତ ହୋଇ ଡେଇଁ ପଡ଼ି ଉଠି ତୋପଘାଟି ଆଡ଼କୁ ଦୌଡ଼ିଗଲା । ତାକୁ ଲାଗୁଥାଏ ତା ଚାରିଆଡ଼େ ଯେଉଁ ବିଭୀଷିକା ଘେରି ରହିଛି ତହିଁରେ ସେ ତୋପ ଘାଟିଟାହିଁ ଏକମାତ୍ର ଆଶ୍ରୟ ସ୍ଥଳ ।

ପିଏରେ ସେ ତୋପ ଘାଟି ଆଡ଼କୁ ଦୌଡ଼ ପକେଇଲାବେଳେ ଲକ୍ଷ୍ୟ କଲାଯେ ସେ ତୋପ ଘାଟିରୁ କୌଣସି ଶବ୍ଦ ଆସୁନାହିଁ । କିନ୍ତୁ ସେଠାରେ ଲୋକ ଅଛନ୍ତି । ସେମାନେ ସବୁ କ'ଣ ଗୋଟାଏ କାମରେ ଲାଗିଛନ୍ତି । ସେମାନେ କିଏ ଏକଥା ଦେଖିବାକୁ ତାଙ୍କୁ ବେଳ ନ ଥିଲା । ସେ ଦେଖିଲା ଯେ ପ୍ରଧାନ କର୍ମଚାରୀ ତା ଆଡ଼କୁ ପିଠି କରି ମାଟି ବନ୍ଧ ଉପରେ ଶୋଇଛନ୍ତି ସତେ ଯେପରିକି ତଳେ କ'ଣ ଗୋଟାଏ ଜିନିଷକୁ ସେ ଭାରି ନିଘା ଦେଇ ଚାହିଁ ରହିଛନ୍ତି । ସେ ଦେଖିଲା ଆଉ ଜଣେ ସୈନ୍ୟକୁ ଆଉ କେତେ ଲୋକ ଧରି ରଖିଥିଲେ ହେଁ ସେ ସେମାନଙ୍କ କବଳରୁ ଖସିଯିବାକୁ ଟାଣି ଓଟାରି ହୋଇ ପାଟି କରୁଥାଏ "ହୋ ସାଙ୍ଗମାନେ—" । ତାପରେ ସେ ଅଉରି କଣ ଦେଖିଲା ଯେଉଁଟା ତାକୁ ବଡ଼ ଆଶ୍ଚର୍ଯ୍ୟ ଲାଗିଲା ।

କିନ୍ତୁ କର୍ଣ୍ଣେଲ ଯେ ମରିଗଲେଣି । ଆଉ ଯେଉଁ ସୈନିକଟି "ହୋ ସାଙ୍ଗମାନେ" ବୋଲି ପାଟି କରୁଛନ୍ତି ସେ ବନ୍ଦୀ ହୋଇଛି । ଏସବୁ କଥା ତା ମୁଣ୍ଡରେ ପଶିବା ଆଗରୁ ସେ ଦେଖିଲା ଯେ ତା ଆଖି ଆଗରେ ଆଉ

ଜଣେ ସୈନିକର ପିଠିରେ ବନ୍ଧୁକର ସଙ୍ଗୀନ ମୂନ ଭୁଷି ତାକୁ ହତ୍ୟା କରିଗଲା । ସେ ସେହି ତୋପ ଘାଟିରେ ପହଞ୍ଚିନ୍ତି କି ନାହିଁ ଠିକ୍ ଏତିକି ବେଳେ ଜଣେ ପତଳା ସୈନିକ ତାଙ୍କ ପାଖକୁ ଦୌଡ଼ି ଦୌଡ଼ି ଆସିଲା । ସେ ଲୋକଟାର ମୁହଁ ହଳଦିଆ ଦିଶୁଥାଏ, ତା ମୁହଁରୁ ଝାଳ ବୋହୁଥାଏ । ସେ ଗୋଟାଏ ନେଳିଆ ପୋଷାକ ପିନ୍ଧିଥାଏ । ସେ ହାତରେ ଗୋଟାଏ ଖଣ୍ଡା ଧରି କ'ଣ ପାଟି କରି କହୁଥାଏ । ସେମାନେ ମୁହାଁ ମୁହିଁ ହୋଇ ପାଖକୁ ପାଖ ହୋଇଗଲା ବେଳକୁ ପିଏରେ ଗୁଁକୁ ଗୁଁଏ ଆତ୍ମରକ୍ଷା କରିବାକୁ ଚେଷ୍ଟା କଲା । ସେ ହାତ ବଢ଼ାଇଦେଇ ଲୋକଟାର କାନକୁ ଆଉ ବେକକୁ ମୁଠାଇ ଧରି ପକାଇଲେ (ସେ ଜଣେ ଫରାସୀ କର୍ମଚାରୀ) । କର୍ମଚାରୀଟି ଖଣ୍ଡାକୁ ତଳେ ପକାଇ ଦେଇ ପିଏରେର ବେକକୁ ଧରି ପକାଇଲା । କେତେ ସେକେଣ୍ଡ ପର୍ଯ୍ୟନ୍ତ ଦୁହେଁ ଭୟାର୍ତ୍ତ ଆଖିରେ ପରସ୍ପରର ଅଚିହ୍ନା ମୁଁହକୁ ଚାହିଁ ରହିଲେ । ଦୁହେଁ ଗୋଳମାଳରେ ପଡ଼ିଥାନ୍ତି । କ'ଣ ସେମାନେ କରୁଛନ୍ତି ଓ କ'ଣ ତାଙ୍କର କରିବା ଉଚିତ୍ ଦୁହିଁଙ୍କ ଭିତରୁ କେହି ଜାଣି ପାରୁ ନାହାଁନ୍ତି । ଦୁହେଁ ଧନ୍ଦହୋଇ ଭାବୁଥାନ୍ତି, "ଏ କ'ଣ ହେଲା ? ମୁଁ ନିଜେ ଏ। ହାତରେ ବନ୍ଦୀହେଲି ନାଁ ମୁଁ ଏ।କୁ ବନ୍ଦୀ କରୁଛି ?" କିନ୍ତୁ ଫରାସୀ କର୍ମଚାରୀଟି ନିଃସନ୍ଦେହରେ ବେଶି ବିଶ୍ୱାସ କରୁଥାଏ ଯେ ସେ ବନ୍ଦୀ ହୋଇଛି, କାରଣ ପିଏରେର ବେଶି ଟାଣୁଆ ମୁଠା ଉପରେ ଟାଣିହୋଇ ତାର ବେକରେ ଆହୁରି ଜୋରରେ ଜାବପଡ଼ି ଯାଉଥାଏ । ଫରାସୀ ଲୋକଟି କ'ଣ କହିବାକୁ ଚେଷ୍ଟାକଲା । କିନ୍ତୁ ଠିକ୍ ଏତିକିବେଳେ ଭୟଙ୍କର ଗର୍ଜନ କରି ସେମାନଙ୍କ ମୁଣ୍ଡ ପାଖରେ ଗୋଟାଏ ତୋପଗୁଳି ଉଡ଼ିଗଲା । ଆଉ ଫରାସୀ କର୍ମଚାରୀ ଜଣକ ଏତେ ଚଞ୍ଚଳ ତା ମୁଣ୍ଡକୁ ଲେପେଟାଇ ଦେଲେ ଯେ ପିଏରେକୁ ଲାଗିଲା ଯେପରିକି ସେ ତୋପ ଗୁଳି ତା ମୁଣ୍ଡକୁବି ଉଡ଼ାଇ ନେଇଗଲା ।

ପିଏରେବି ଲେପ୍ଟେଇ ଯାଇ ଭୂଇଁରେ ହାତଭରି ଦେଇ ପଡ଼ିଗଲା । କେଉଁ ଜଣକ ବନ୍ଦୀ ହେଲା ସେ ବିଷୟରେ ମୁଣ୍ଡ ନ ଖେଳାଇ ଫରାସୀ ଲୋକଟି ତୋପ ଘାଟିକୁ ଦୌଡ଼ି ପଳାଇଲା ଓ ପିଏରେ ମଧ୍ୟ ପାହାଡ଼ ତଳକୁ ଦୌଡ଼ି ପଳାଇଗଲା । ପିଏରେ ମଲାଲୋକ ଓ ଖଣ୍ଡିଆ

ଲୋକଙ୍କୁ ଝୁଣ୍ଟି ଝୁଣ୍ଟି ଧାଉଁ ଥାଏ । ତାକୁ ଲାଗୁଥାଏ ସେମାନେ ତା ପାଦକୁ ଜାବୁଡ଼ି ଧରୁଛନ୍ତି ।

କିନ୍ତୁ ସେ ତଳେ ପହଞ୍ଚିବା ପୂର୍ବରୁ ଗହଳି ହୋଇ ଦଳ ଦଳ ଋଷ୍ ସୈନ୍ୟ ଆସୁଥିଲେ, ତାଙ୍କୁ ଭେଟିବା ପାଇଁ । ସେମାନେ ଧକ୍କା ଧକ୍କି, ପେଲା ପେଲି ହୋଇ ଆନନ୍ଦରେ ଉନ୍ମତ୍ତ ହୋଇ ତୋପ ଘାଟି ଆଡ଼କୁ ଦୌଡ଼ୁଥାନ୍ତି । ଏଇଟା ସେହି ଚଢ଼ାଉ, ଯେଉଁଥିପାଇଁ ୟେର-ମୋଲଭ୍ ନାଁ ନେଲେ । ୟେର ମୋଲଭ କହି ବୁଲିଲେ ଯେ କେବଳ ତାଙ୍କର ବୀରତ୍ୱ ଓ ସୌଭାଗ୍ୟ ଲାଗି ଯୁଦ୍ଧରେ ଏ ଅସମ୍ଭବ ଯଶ ପାଇବା ସମ୍ଭବ ହେଲା । ଏଇଟା ସେହି ଚଢ଼ାଉ ଯେତେବେଳେ କୁଆଡ଼େ ସେ ସେହି ଘାଟିଉପରେ ସେଇ ଜାର୍ଜଙ୍କ ସଙ୍କେତ ଛକିଗୁଡ଼ିକ ବିଛେଇ ଦେଇଥିଲେ । ସେ ଛକିଗୁଡ଼ିକ କୁଆଡ଼େ ତାଙ୍କ ପକେଟରେ ଥିଲା ।

ଫରାସୀମାନେ ତୋପ ଘାଟିଗୁଡ଼ିକ ଦଖଲ କରିଥିଲେ, ସେମାନେ-ପଳାଇଗଲେ । ଋଷ୍‌ପକ୍ଷର ସୈନ୍ୟମାନେ ତାଙ୍କୁ ଗୋଡ଼ାଇ ତୋପ ଘାଟିଠାରୁ ଏତେ ଦୂରକୁ ଚାଲିଗଲେ ଯେ ସେମାନଙ୍କୁ ଅଟକାଇବାକୁ ପଡ଼ିଲା । ସେମାନେ ତୋପ ଘାଟିରୁ ବନ୍ଦୀକରି ଫରାସୀ ସୈନ୍ୟମାନଙ୍କୁ ଆଣୁଥାନ୍ତି । ସେ ସୈନ୍ୟମାନଙ୍କ ଭିତରେ ଜଣେ ଆହତ ଫରାସୀ ସେନାପତି ଥିଲେ । ତାଙ୍କ ଚାରିକଡେ କର୍ମଚାରୀମାନେ ବେଢ଼ିଥାନ୍ତି । ତୋପ ଘାଟି ଆଡ଼ୁ ଫରାସୀ ଓ ଋଷ୍ ମିଶା ମିଶି ହୋଇ ଦଳ ଦଳ ଆହତ ସୈନ୍ୟ ଚାଲି ଚାଲି ଓ ଘୁ ସୁରି ଘୁସୁରି ଆସୁଥାନ୍ତି । ଆଉ କେତେକ ଖଟିଆରେ ବୁହା ହୋଇ ଅଣା ହେଉଥାନ୍ତି । ତାଙ୍କ ଭିତରେ ପିଏରେ କାହାକୁ କାହାକୁ ଚିହ୍ନୁଥିନ୍ତି । ତାଙ୍କ ମୁହଁ ଯନ୍ତ୍ରଣାରେ ବିକୃତ ଦିଶୁଥାଏ ।

ପିଏରେ ଯେଉଁ ତୋପ ଘାଟିରେ ଘଣ୍ଟାକରୁ ବେଶୀବେଳ କଟାଇଥିଲା, ସେଠି ପହଞ୍ଚି ଦେଖିଲା ଯେ ସେହି ଯେଉଁ ଛୋଟିଆ ଦଳଟି ଘାଇ ଭାଇ ହୋଇ ସେଠି ଆଗେଥିଲେ, ଆଉ ତାକୁ ବି ତାଙ୍କ ଭିତରେ ଜଣେ ବୋଲି ଆଦର କରିଥିଲେ ତାଙ୍କ ଭିତରୁ କେହି ଆଉ ଅବଶିଷ୍ଟ

ନଥିଲେ । ସେଠି ବହୁତ ଲୋକ ମଣ ମଡ଼ଥିଲେ, ଯାହାଙ୍କୁ ଆଗେ ସେ କେବେ ଦେଖି ନ ଥିଲା । କିନ୍ତୁ ବହୁତ ଲୋକଙ୍କୁ ସେ ଚିହ୍ନିଲା । ପିଲା କମିଗୁଗାଟି ମାଟିବନ୍ଧ ଧାଡ଼ରେ ରକ୍ତରେ ଭସି ସେମିତି ମେଞ୍ଚ ମେଞ୍ଚ ହୋଇ ବସିଥାଏ । ନାଲି ମୁହଁ ସାନ ସୈନିକଟି ଟେଡେବେଳେ ମଧ୍ୟ ଛଟପଟ ହେଉଥାଏ; କିନ୍ତୁ ସେମାନେ ତାଙ୍କୁ ବୋହିନେଲେ ନାହିଁ ।

ପିଏରେ ଡିପ ଅଡଡ଼ା ଡଳ ଆଡ଼କୁ ଦୌଡ଼ିଲା ।

ଯେଉଁ ଦଳ ଦଳ ଖଟିଆ ଯୁଦ୍ଧ ଭୂମିରୁ ବୁହା ହୋଇ ଗ୍ଭଲିଯାଉ ଥାଏ ପିଏରେ ନିରୁଦ୍ଦେଶ ଭାବରେ ଗ୍ଭଲି ଯାଉ ଯାଉ ଭାବୁଥାଏ "ଓଃ ! ଏଥର ସେମାନେ ଏ କାମ ବନ୍ଦ କରିବେ । ସେମାନେ ଏ ଯେଉଁ କାମ ବନ୍ଦ କରିଛନ୍ତି ଏଥର ତାଙ୍କୁ ଦେଖି ଆଖି ଖୋସିପକାଇବେ ଯେ ।"

କିନ୍ତୁ ଧୂଆଁ ଓଡ଼ଣାରେ ପଛଆଡ଼େ ସେତେବେଳେ ବି ସୂର୍ଯ୍ୟ ବହୁତ ଉଚ୍ଚରେ ଠିଆ ହୋଇ ରହିଥାଏ । ଆଉ ସାମ୍ନାପଟକୁ ବରଂ ଟିକିଏ ବାଁ ଆଡ଼କୁ ସେମେନୋଭ୍ସ୍କି ଗାଁ ଗ୍ଭରିକରେ ସେତେବେଳେ ବି ଧୂଆଁ ଭର୍ତ୍ତି ହୋଇ କ'ଣ ଗୋଟାଏ ଗୋଳିଆ ଘଣ୍ଟା ଲାଗିଥାଏ । ଆଉ ବନ୍ଧୁକ ଓ ତୋପ ଫୁଟିବାର ଶବ୍ଦ କମିବ କ'ଣ ଆହୁରି ବେଶି ଜୋରରେ ବେଶି ଉତ୍ତାଳ ହୋଇ ଶୁଭୁଥାଏ । ଯତେ ଯେପରିକି ଗୋଟାଏ ଲୋକ କାନ ବଧିରା କଲାଭଳି ପ୍ରଚଣ୍ଡ ଚିତ୍କାରରେ ତାର ସବୁଯାକ ବଳକୁ ଏକାଠି ଢାଳି ଦେଇ ହତାଶ ହୋଇ ଗୋଟାଏ ଶେଷ ଚେଷ୍ଟା କରୁଛି ।

ଗୋଟାଏ ବେଞ୍ଚ ଉପରେ ଗୋଟାଏ କମ୍ବଳ ବିଛା ହୋଇଥାଏ । ତାଉପରେ କୁଟୁଜଭ ବସିଥାନ୍ତି । ତାଙ୍କର ଧୋବଲା ମୁଣ୍ଡ ତଳକୁ ଓହଳି ପଡ଼ଥାଏ । ତାଙ୍କର ମୋଟା ଶରୀରଟା ଏକାଠି ଲେଉଟା କୋଡ଼ୁ ହୋଇ ରହିଥାଏ । ସେଦିନ ସକାଳେ ପିଏରେ ତାଙ୍କୁ ଦେଖିଲା ବେଳକୁ ସେ ଯେଉଁ ଘରେ ବସିଥିଲେ ସେଇଠି ସେ ବସିଥାନ୍ତି । ସେ କୌଣସି ଆଦେଶ ଦେଉନଥିଲେ, ଖାଲି ଏତିକି କରୁଥିଲେ ଯେ ଯେଉଁମାନେ ଆସି ଯାହା ପ୍ରସ୍ତାବ କରୁଥିଲେ ସେଥିପ୍ରତି ତାଙ୍କର ମତ କି ଅମତ ଜଣାଇ ଦେଉଥିଲେ । "ନାନା ପ୍ରସ୍ତାବ ଶୁଣି ଉତ୍ତରରେ ସେ ହୁଏତ କହୁଥିଲେ "ହଁ

ହଁ ସେମିତି କର ।" ତାଙ୍କ ପାଖରେ ଯେଉଁ ଆଡ଼ଜୁଟାଣ୍ଟମାନେ ରହିଥିଲେ ତନ୍ମଧ୍ୟରୁ ଆଗଜଣଙ୍କୁ ତାପରେ ଆଉଜଣଙ୍କୁ ସେ ଚିତ୍କାର କରି କହୁଥାନ୍ତି "ହଁ ବାପା, ବୁଲିଯାଅ, ଯାଇ ଦେଖିଆସ କ'ଣ ହେଉଛି ।" ନ ହେଲେ କେତେବେଳେ କହୁଥାନ୍ତି "ନାଇଁ ଯାଅନାହିଁ, ବରଂ ଆଉଟିକିଏ ଅପେକ୍ଷା କରିବା । ତାଙ୍କ ପାଖରେ ଯେତେ ଯେତେ ସମ୍ବାଦ ଆସି ପହଞ୍ଚୁ ଥାଏ ସେ ସବୁ ଶୁଣୁଥାନ୍ତି । କିଏ ଆଦେଶ ମାଗିଲେ ସେ ଆଦେଶ ଦେଉଥାନ୍ତି । କିନ୍ତୁ ସେ ଯେତେବେଳେ ଖବର ଗୁଡ଼ାକ ଶୁଣୁଥାନ୍ତି ସେତେବେଳେ ଯେଉଁ ଶବ୍ଦ ଗୁଡ଼ାକ ତାଙ୍କୁ କୁହାହେଉଥାଏ ତାର ଅର୍ଥ ବୁଝିବାକୁ ତାଙ୍କର ବେଶି ନଜର ନଥାଏ । ବରଂ ଲାଗୁଥାଏ ଯେପରିକି ସମ୍ବାଦ କରୁଥିବା ଲୋକର ମୁହଁ ଭଙ୍ଗୀରେ ଆଉ କିଛି, ତାଙ୍କ ସ୍ୱରରେ ଆଉ କିଛିପ୍ରତି ତାଙ୍କର ବେଶି ନଜର ନଥାଏ । ଯୁଦ୍ଧ ବିଷୟରେ ତାଙ୍କର ଯେଉଁ ଦୀର୍ଘ ବହୁବର୍ଷ ବ୍ୟାପି ଅଭିଜ୍ଞତା ତନ୍ମଧ୍ୟରୁ ସେ ଏକଥା ଶିଖିଥିଲେ ଓ ବାର୍ଦ୍ଧକ୍ୟର ପରିପକ୍ୱ ଜ୍ଞାନରୁ ସେ ଏକଥା ଚିହ୍ନିଥିଲେ, ଜାଣିଥିଲେ ଯେ ଲକ୍ଷ ଲକ୍ଷ ଲୋକ ଯେତେବେଳେ ମୃତ୍ୟୁ ସଙ୍ଗରେ ଟିଙ୍କା ଓଟରା ଲଗାଇଥାନ୍ତି ସେତେବେଳେ ଜଣେ ଲୋକ ସେମାନଙ୍କୁ ପରିଚାଳନା କରିପାରିବ ନାହିଁ, ଓ ଯୁଦ୍ଧ-ମାନଙ୍କର ଭାଗ୍ୟ ଯେ ନିଷ୍ପତ୍ତି ହୁଏ ସେ ପ୍ରଧାନ ସେନାପତିଙ୍କ ଆଦେଶ ଯୋଗରୁ ହୁଏ ନାହିଁ; କି ସୈନ୍ୟମାନଙ୍କୁ କେଉଁ କେଉଁ ଜାଗାରେ ଖଞ୍ଜି ରଖାହୋଇଥାଏ ସେଥିରେ ବି ସେ ନିଷ୍ପତ୍ତି ହୁଏନାହିଁ, କି କେତୋଟା ତୋପ ଖଞ୍ଜାହୋଇଛି ସେଥିରେ ହୁଏନାହିଁ କି କେତେଲୋକ ମଲେ ସେଥିରେ ମଧ୍ୟ ନିଷ୍ପତ୍ତି ହୁଏନାହିଁ । ସେ ଖାଲି ନିଷ୍ପତ୍ତି ହୁଏ ଏକ ଅଦୃଶ୍ୟ ଶକ୍ତିବଳରେ ; ସେ ସେନାବାହିନୀର ଆତ୍ମବଳ । ତେଣୁ ସେ ସେହି ଶକ୍ତିକୁ ଅନୁସରଣ କରୁଥିଲେ ଏବଂ ତାଙ୍କର ପାରୁପର୍ଯ୍ୟନ୍ତ ସେହି ଶକ୍ତିକୁହିଁ ଚାଳନା କରୁଥିଲେ ।

କୁଟୁଜଭଙ୍କ ମୁହଁର ସାଧାରଣ ଭଙ୍ଗୀରେ ଥିଲା ପ୍ରଗାଢ଼ କେନ୍ଦ୍ରୀଭୂତ, ନୀରବ ଅନୁଧ୍ୟାନ ଓ ନିର୍ବିଷ୍ଟତା । ବହୁ କଷ୍ଟରେ ସେ ତାଙ୍କ ଦୁର୍ବଳ ଜରାଗ୍ରସ୍ତ ଦେହକୁ ସମ୍ଭାଳି ରଖିଥିଲେ ।

ଏଗାରଟା ବେଳେ ସେ ସମ୍ବାଦ ପାଇଲେ ଯେ ଫରାସୀପକ୍ଷ ଯେଉଁ ଗିର୍ଜାକୁ ଦଖଲ କରିଥିଲେ ସେଠୁ ସେମାନଙ୍କୁ ତଡ଼ି ଦିଆହୋଇଛି । କିନ୍ତୁ

ପ୍ରିନ୍ସ ବାଗ୍ରାସିଅନ ଆହତ । କୁତୁଜଭ ଆର୍ତ୍ତନାଦ କରି ମୁଣ୍ଡ ହଲାଇଲେ ।

ସେ ଜଣେ ପାର୍ଶ୍ୱଚର ଆଡ୍‌ଜୁଟାଣ୍ଟଙ୍କୁ କହିଲେ "ଗଲେ, ପ୍ରିନସ ପିଅତର ଇଭାନୋଭିଚଙ୍କ ପାଖକୁ ଘୋଡ଼ାରେ ଚଢ଼ି ବୁଝିଆସିବେ ଘଟଣା କ'ଣ ।" ଭେର୍ଟେମବର୍ଗରେ ରାଜା ତାଙ୍କ ପାଖରେ ଠିଆ ହୋଇଥିଲେ । ତାଙ୍କ ଆଡ଼କୁ ବୁଲିପଡ଼ି କୁତୁଜଭ କହିଲେ—

"ପ୍ରଥମ ସେନାବାହିନୀର ସେନାପତିତ୍ୱ ଅର୍ପଣ କରନ୍ତୁ ମହିମା ।" ରାଜା ଚାଲିଗଲେ । କିନ୍ତୁ ତାପରେ ଅତିଶୀଘ୍ର କୁତୁଜଭଙ୍କ ପାଖରେ ଆସି ରାଜାଙ୍କ ଆଡ଼ଜୁଟାଣ୍ଟ ସମ୍ବାଦ ଦେଇ ପହଞ୍ଚିଲେ ଯେ ଆହୁରି ସୈନ୍ୟ ପଠାଇବାକୁ ପଡ଼ିବ । ଏତେ ଚଞ୍ଚଳ ସେ ସମ୍ବାଦ ଆସି ପହଞ୍ଚିଲା ଯେ ସେତେବେଳକୁ ରାଜା ସେମ୍‌ୟୁନ୍‌ସ୍କପ୍ସେ ଗାଁରେ ପହଞ୍ଚିନଥିବେ ।

କୁତୁଜଭ୍ ଭ୍ରୁକୁଞ୍ଚିତ କଲେ ଓ ପ୍ରଥମ ବାହିନୀରେ ସେନାପତି ହେବାପାଇଁ ଡୋକତୁରଭଙ୍କୁ ପଠାଇଦେଲେ ଓ ରାଜାଙ୍କୁ ଅନୁରୋଧ କରି କହିଦେବାକୁ କହିଲେ ଯେ ସେ ଫେରିଆସନ୍ତୁ, ନହେଲେ ତାଙ୍କ ଅନୁପସ୍ଥିତିରେ କୁତୁଜଭ ଚଳାଇପାରିବେନାହିଁ ବୋଲି ଭାବୁଛନ୍ତି । ସେତେବେଳେ ସମ୍ବାଦ ଆସିଲା ଯେ ଫରାସୀ ସେନାପତି ମୁରାତ୍ ବନ୍ଦୀ ହୋଇଛନ୍ତି ଓ ତାଙ୍କ ଗହଣରେ କର୍ମଚାରୀମାନେ ସେଥିପାଇଁ ତାଙ୍କୁ ଅଭିନନ୍ଦନ ଜଣାଇଲେ ।

କୁତୁଜଭ ହସିଦେଇ କହିଲେ—

"ଟିକିଏ ଅପେକ୍ଷା କରନ୍ତୁ ଆପଣମାନେ, ଆମେ ଯୁଦ୍ଧ ଜିତିଲେ ଆଜି ମୁରାତ ବନ୍ଦୀହେଲେ ଏଥିରେ ଆଶ୍ଚର୍ଯ୍ୟ କଥା କିଛିନାହିଁ । କିନ୍ତୁ ଆମେ ଆନନ୍ଦ ଉତ୍ସବ କରିବା କାମଟା ଟିକିଏ ଗଡ଼େଇ ଦେଲେ ଭଲହେବ ।" ତଥାପି ସୈନ୍ୟମାନଙ୍କୁ ଏହି ସମ୍ବାଦ କହିଦେବା ସକାଶେ ସେ ଜଣେ ଆଡ଼ଜୁଟାଣ୍ଟଙ୍କୁ ପଠାଇଲେ ।

ଧାଇଁ ଆସି କହିଲେ ଯେ ଫରାସୀମାନେ ଗିର୍ଜାଘର ଓ ସେମ୍‌ୟୁନସ୍କପ୍ସେ ଗାଁ ଦଖଲ କରିନେଲେଣି । କୁତୁଜଭଙ୍କ ମୁହଁ ଦେଖି ଓ

ଯୁଦ୍ଧ ଭୂମିର ଶବ୍ଦ ଶୁଣି' ଅନୁମାନ କଲେ ଯେ ସମ୍ବାଦଟା ଅତି ଖରାପ । ସତେକ ଗୋଡ଼ ଖେଳାଇବା ପାଇଁ ସେ ଠିଆହୋଇ ପଡ଼ିଲେ । ସ୍କୁରବିନନ୍‌ଙ୍କ ହାତକୁ ଧରି ପକାଇ ତାଙ୍କୁ ଗୋଟିଏ କରକୁ ଭିଡ଼ିନେଲେ ।

ସେ ଯ୍ୟୋରମୋଲଭଙ୍କୁ କହିଲେ "ତୁମେ ଯାଅ ବାବୁ, ଦେଖ କିଛି କରିହେବ କି ନାହିଁ ।"

କୁଟୁଜଭ ଥିଲେ ଗକରେ । ରୁଷ ସୈନ୍ୟବାହିନୀର ସେଇଟା କେନ୍ଦ୍ରସ୍ଥଳ । ରୁଷ୍ ପକ୍ଷର ବାଁ ପାଖ ଉପରେ ଯେଉଁ ଆକ୍ରମଣ ହେଉଥାଏ ତାକୁ ବାରମ୍ବାର ଅନେକଥର ପ୍ରତିହତ କରିଦିଆ ହୋଇଥାଏ । ଯୁଦ୍ଧଭୂମିର କେନ୍ଦ୍ରସ୍ଥଳରେ ଫରାସୀ ପକ୍ଷ ବୋରୋଦିନୋରୁ ଆଗକୁ ମାଡ଼ିଆସି ପାରି ନଥାନ୍ତି । ଉଭାରୋଭଙ୍କ ଘୋଡ଼ାସବାର ସୈନ୍ୟବାହିନୀ ବାଁ ପାଖରୁ ଫରାସୀମାନଙ୍କୁ ତଡ଼ିନେଇ ଯାଇଥାନ୍ତି ।

ତିନଟା ବେଳେ ଫରାସୀ ପକ୍ଷର ଆକ୍ରମଣ ବନ୍ଦ ହୋଇଗଲା । ଯେଉଁମାନେ ଯୁଦ୍ଧଭୂମି ଆଡ଼ୁ ଆସୁଥିଲେ ଓ ଯେଉଁମାନେ ତାଙ୍କ ପାଖରେ ଠିଆ ହୋଇଥିଲେ ସମସ୍ତଙ୍କ ମୁହଁରେ କୁଟୁଜଭ୍ ଦେଖିଲେଯେ ମଣିଷ ଆପଣା ଶେଷ ସୀମା ପର୍ଯ୍ୟନ୍ତ ପରିଶ୍ରମ କଲେ ତା ମୁହଁରେ ଯେପରି ଭଙ୍ଗୀ ଫୁଟେ ସେହିପରି ଭଙ୍ଗୀ ସେଠି ଅଛି । ସେ ଦିନର ଯୁଦ୍ଧର ସାଫଲ୍ୟ ଯେ ତାଙ୍କର କଳ୍ପନାତୀତ ହୋଇଥିଲା ଏଥିପାଇଁ ସେ ନିଜେ ସନ୍ତୁଷ୍ଟ ହୋଇଥିଲେ । କିନ୍ତୁ ତାଙ୍କ ଦେହର ଦୁର୍ବଳତାକୁ ସେ ଆଉ ସମ୍ଭାଳି ପାରୁନଥାନ୍ତି । ସେ ନିଦରେ ଶୋଇପଡ଼ିଲେ । ତାଙ୍କ ପାଖକୁ ତାଙ୍କ ଭୋଜନ ଅଣାଗଲା ।

ସେ ଖାଇ ବସିଥାନ୍ତି ଏହି ସମୟରେ ଆଡ଼ଜୁଟାଣ୍ଟ ଜେନେରେଲ ଓ୍ୱାଲଟ୍‌ଜଜେନ ଘୋଡ଼ାରେ ଚଢ଼ି ତାଙ୍କ ପାଟରେ ଆସି ପହଞ୍ଚିଲେ । ଓ୍ୱାଲଟଜଜେନଙ୍କ ପ୍ରତି ବାଗ୍ରାସିଅନଙ୍କର ବିଶେଷ ବିରକ୍ତି ଥାଏ । ବାଁ ପାଖରେ ଯୁଦ୍ଧର ଫଳାଫଳ ବିଷୟରେ ସମ୍ବାଦ ଦେବାପାଇଁ ସେ ବାର୍କଲେଙ୍କ ପାଖରୁ ଆସିଥାନ୍ତି । ଦଳ ଦଳ ହୋଇ ଆହତ ଲୋକ

ପଛ ଆଡ଼କୁ ଦୌଡ଼ ପଳାଇ ଆସୁଛନ୍ତି । ସୈନ୍ୟଦଳମାନଙ୍କ ଧାଡ଼ି ଭାଙ୍ଗି ଗଣ୍ଡଗୋଳ ହୋଇଯାଇଛି ।

ଏସବୁ କଥାଦେଖି ସବୁ ଘଟଣାକୁ ତଉଲି ଚତୁର ବାର୍କଲେ ନିଷ୍ପତ୍ତି କରିନେଲେ ଯେ ଯୁଦ୍ଧର ପରାଜୟ ଘଟିଛି । ପ୍ରଧାନ ସେନାପତିଙ୍କୁ ସେହିକଥା ଜଣାଇଦେବାକୁ ତାଙ୍କ ପାଖକୁ ଆପଣାର ପ୍ରିୟ ଆଡ଼ଜୁଟାଣ୍ଟଙ୍କୁ ପଠାଇଦେଲେ ।

କୁତୁଜଭ୍ ବଡ଼ କଷ୍ଟରେ ଗୋଟାଏ ଭଜା କୁକୁଡ଼ା ଛୁଆ ଚୋବାଉଥାନ୍ତି । ଓ୍ୱାଲଟ୍‌ଜୋଜନଙ୍କୁ ଦେଖିଲାକ୍ଷଣି ଖୁସିରେ ସେ ଆଖିକୁ ଘୂରାଇଲେ ।

ଅଧା ବେଖାତିର ହସ ହସି ବେଖାତିର ଢଙ୍ଗ ଦେଖାଇ ଓ୍ୱାଲଟ୍‌ଜୋଜେନ୍ ତାଙ୍କ ଟୋପିର ଆଗ ଛୁଇଁଲା ନ ଛୁଇଁଲା ପରି ମୁଦ୍ରାକରି କୁତୁଜଭଙ୍କ ପାଖକୁ ଚାଲିଆସିଲେ ।

ସେ କୁତୁଜଭଙ୍କ ପ୍ରତି ଦେଖାଇହେଲାପରି ବେଖାତିର ଢଙ୍ଗରେ ବ୍ୟବହାର କଲେ । ସେ ତାଙ୍କ ବ୍ୟବହାରରେ ଏହିକଥା ଦେଖାଇ ଦେବାକୁ ଚାହୁଁଥିଲେ ଯେ ସେ ନିଜେ ଯୁଦ୍ଧ ବିଦ୍ୟାରେ ବହୁତ ଶିକ୍ଷିତ, ଅଥଚ ଏଇ ନିକମା ବୁଢ଼ା ଲୋକଟାକୁ ମୁଣ୍ଡରେ ମୁଣ୍ଡାଇବା ପାଇଁ ରୁଷ୍ ପକ୍ଷରେ ତାଙ୍କୁ ଗୁରୁ ଦିଆ ହୋଇଛି । ତଥାପି କେଉଁ ଭଳି ଲୋକ ସଙ୍ଗରେ ତାଙ୍କୁ କାରବାର କରିବାକୁ ପଡ଼ୁଛି ସେ ତା ଭଲ ଜାଣିଛନ୍ତି । ଓ୍ୱାଲଟ୍‌ଜୋଜେନ୍‌ଙ୍କ ଜର୍ମାନ ମହଲରେ କୁତୁଜଭଙ୍କୁ କହୁଥିଲେ "ବୁଢ଼ା ଭଦ୍ରଲୋକ ।" ସେ କୁତୁଜଭଙ୍କୁ ଚାହିଁ ଭାବିଲେ ବୁଢ଼ା ଭଦ୍ରଲୋକ ଭାରି ଆରାମ କରୁଛନ୍ତି । କୁତୁଜଭଙ୍କ ଆଗରେ ଯେଉଁ ଜାତି ଜାତି ଭୋଜ୍ୟବସ୍ତୁ ବଢ଼ାହୋଇ ରହିଛି ତାକୁ ଚାହିଁଦେଇ ସେ ବାର୍କଲେ ପଠାଇଥିବା ସମ୍ବାଦ ଓ ତାଙ୍କ ନିଜ ଧାରଣା ମିଶାଇ କୁତୁଜଭଙ୍କ ଆଗରେ ସମ୍ବାଦ ବାଢ଼ି କହିଲେ "ଆମ ଅବସ୍ଥାନର ସବୁଯାକ ଘାଟି ଶତ୍ରୁ ହାତରେ ପଡ଼ିଯାଇଛି । ଶତ୍ରୁ ପକ୍ଷକୁ ତଡ଼ିଦେବା ବି ଅସମ୍ଭବ କାରଣ ତାଙ୍କୁ ତଡ଼ିବାକୁ ଆମର ସୈନ୍ୟ

ନାହାନ୍ତି । ସୈନ୍ୟମାନେ ଦୌଡ଼ି ପଳାଇଯାଉଛନ୍ତି । ତାଙ୍କୁ ଅଟକାଇବା ବି ସମ୍ଭବ ନୁହେଁ ।

କୁତୁଜଭ ରେଗ୍ରବାଜ ରେଗ୍ରବାଜ ଅଟକି ଯାଇ ଓ୍ୱାଲଟ୍‌ଜନେଙ୍କୁ ଚାହାଁହୋଇ ରହିଲେ, ଯେପରି ସେ ତାଙ୍କ କଥାର ଅର୍ଥ ବୁଝିପାରୁ ନାହାନ୍ତି । ବୁଢ଼ା ଭଦ୍ରଲୋକଙ୍କ ଉତ୍ତେଜନା ଲକ୍ଷ୍ୟକରି ଓ୍ୱାଲଟ୍‌ଜୋଜେନ ମୃଦୁକି ହସି କହିଲେ "ମୁଁ ନିଜେ ଯାହା ଦେଖିଆସିଲି ତା ମଣିମାଙ୍କ ଗୋଚରରୁ ଲୁଚାଇବା ଉଚିତ୍ ହେବନାହିଁ ବୋଲି ଭାବିଲି···ସୈନ୍ୟମାନଙ୍କୁ ବିଲ୍‌କୁଲ ଘଉଡ଼ ଦିଆହୋଇଛି ।"

ଝଟ୍‌କିନା ଉଠିପଡ଼ି ଓ୍ୱାଲଟ୍‌ଜୋଜେନଙ୍କ ଆଡ଼କୁ ମାଡ଼ିଯାଇ କୁତୁଜଭ ଚିତ୍କାର କରି ଉଠିଲେ ।

"କ'ଣ କହିଲେ ! କ'ଣ କହିଲେ ! ଆପଣ ଦେଖିଲେ ! ଆପଣ ଦେଖିଲେ ! ଏଁ ! ଆପଣଙ୍କର ଏଡ଼େ ସାହାସ !" ତାଙ୍କର ହାତ ଥରୁଥାଏ । ଥରଥର ହାତରେ ସେ ତାଙ୍କୁ ମାଡ଼ ମାରିବାକୁ ହାତଟେକିଲା ପରି ଭଙ୍ଗୀ ଦେଖାଇ କହିଲେ "ସତେ ! ଏଡ଼େ ସାହସ ହେଲାଣି ଆପଣଙ୍କର !" ତାଙ୍କ ନିଶ୍ୱାସ ଅଟକି ଯାଉଥାଏ । କହିଲେ "ମତେ ଏକଥା କହିବାକୁ ଏଡ଼େ ସାହସ ଆପଣଙ୍କର ! ଆପଣଙ୍କୁ କିଛି ଜଣାନାହିଁ । ଯାଆନ୍ତୁ ମୁଁ କହୁଛି ବୋଲି ସେନାପତି ବାର୍କଲେଙ୍କୁ କହିଦେବେ ଯେ ତାଙ୍କ ସମ୍ବାଦ ଭୁଲ, ପ୍ରଧାନ ସେନାପତି ହୋଇ ଯୁଦ୍ଧର ଗତି ବିଷୟରେ ମୁଁ ତାଙ୍କଠୁଁ ବେଶି ଜାଣେ ।"

ଓ୍ୱାଲଟ୍‌ଜୋଜେନ୍ କ'ଣ ଆପତ୍ତି କରି ଆସୁଥିଲେ କିନ୍ତୁ ତାଙ୍କ କଥା ବନ୍ଦ କରିଦେଇ ଗମ୍ଭୀର ହୋଇ କୁତୁଜଭ୍ କହିଲେ ବାଁ ପାଖେ ଶତ୍ରୁ ସେନାକୁ ଘଉଡ଼ ଦିଆହୋଇଛି । ଡାହାଣ ପାଖେ ଶତ୍ରୁ ସେନାକୁ ହରାଇ ଦିଆହୋଇଛି । ଯଦି ଆପଣ ଭୁଲ୍ ଦେଖିଛନ୍ତି ଆଜ୍ଞା ତେବେ ଯେଉଁ ସବୁ କଥା ଆପଣ ଜାଣନ୍ତି ନାହିଁ, ସେସବୁ ବିଷୟରେ ଦୟାକରି ତୁଣ୍ଡ ଖୋଲନ୍ତୁ ନାହିଁ । ଦୟାକରି ସେନାପତି ବାର୍କଲେଙ୍କ ପାଖକୁ ଫେରିଯାଇ ତାଙ୍କୁ କହନ୍ତୁ ଯେ କାଲି ଫରାସୀ ପକ୍ଷକୁ ଆକ୍ରମଣ କରିବି ବୋଲି ମୁଁ ନିଷ୍ପତ୍ତି କରି ସାରିଛି । ସେଥିରେ ଆଉ କୌଣସି ଦ୍ୱିଧା ନାହିଁ ।

ସମସ୍ତେ ଚୁପ ପଡ଼ିଯାଇଥାନ୍ତି । ବୃଦ୍ଧ ସେନାପତି କ୍ଲାନ୍ତ ହୋଇଯାଇ ଟାଣି ଟାଣି ନିଃଶ୍ୱାସ ଘୁଡ଼ୁଥାନ୍ତି । ତାଙ୍କ ଟାଣ ନିଃଶ୍ୱାସ ଶବ୍ଦ ଛଡ଼ା ଆଉ କିଛି ଶୁଣାଯାଉନଥାଏ ।

କୁଟୁଜଭ୍ କହିଗଲେ "ସବୁ ଘାଟିରୁ ଶତ୍ରୁକୁ ଘଉଡ଼ା ଦିଆ ହୋଇଛି । ସେଥିପାଇଁ ମୁଁ ଭଗବାନଙ୍କୁ ଧନ୍ୟବାଦ ଜଣାଉଛି । ଆଜି ଆମ ବୀର ସୈନିକମାନଙ୍କୁ ଧନ୍ୟବାଦ ଜଣାଉଛି । ଶତ୍ରୁ ହାରି ଯାଇଛି । ଆସନ୍ତା କାଲି ଆମେ ତାକୁ ପୁଣ୍ୟ ଭୂମି ଋଷ୍ ଦେଶରୁ ଘଉଡ଼ି ଦେବା ।"

କୁଟୁଜଭ୍ ଭଗବାନଙ୍କ ଉଦ୍ଦେଶ୍ୟରେ ହାତରେ କ୍ରୁଶଚିହ୍ନ କଲେ । କହୁ କହୁ ତାଙ୍କର କୋହ ଉଠୁଥାଏ ଯେ ସେ ଥରେ କଇଁ କଇଁ ହୋଇ କାନ୍ଦି ପକାଇଲେ ।

ଓ୍ୱାଲଟଜୋଜେନ୍ କାନ୍ଧ ନଚାଇ ଓଠ ମୋଡ଼ି ସେଠାରୁ ଚାଲିଗଲେ ।

ପାହାଡ଼ ଆଡ଼ୁ ଆସି ଜଣେ ପହଞ୍ଚିଲେ ସୁଶ୍ରୀ ଗଢ଼ଣ ମୋଟାଅଂଶିଆ ସେନାପତି । ତାଙ୍କ ମୁଣ୍ଡରେ କଳା ବାଳ । ସେ ରାଏଭସ୍କି ।

ଦିନଟାଯାକ ସେ ଯୁଦ୍ଧ କ୍ଷେତ୍ରରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ସ୍ଥାନରେ କଟାଇ ଆସିଥାନ୍ତି । କୁଟୁଜଭ୍ ତାଙ୍କୁ ଦେଖି କହିଲେ —

"ହେଇ ଆସିଲେ, ଆମର ବୀର ପୁରୁଷ ।" ରାଏଭସ୍କି ଆସି ସମ୍ବାଦ ଦେଲେ ଯେ ସୈନ୍ୟମାନେ ଆପଣା ଆପଣା ସ୍ଥାନରେ ଦମ୍ଭ ହୋଇ ଠିଆହୋଇଛନ୍ତି ଆଉ ଫରାସୀମାନେ ଆଉଥରେ ସୁଦ୍ଧା ଆକ୍ରମଣ କରିବାକୁ ସାହସ କରୁନାହାନ୍ତି ।

ତାଙ୍କ କଥା ଶୁଣିସାରି କୁଟୁଜଭ୍ ଫରାସୀ ଭାଷାରେ ପଚାରିଲେ "ଆଉ କେତେଜଣ ଯେମିତି ଭାବୁଛନ୍ତି, ଆପଣ ତ ସେମିତି

ଘରୁନାହାନ୍ତି ଯେ ଆମେ ଏଥର ପଛ ଝୁଆ ଦେଇ ନ ପକାଇଲେ ନ ଚଳେ, ନା କ'ଣ ?"

ଗଏଭସ୍କି କହିଲେ "ଆଦୌ ନୁହେଁ । ଯେତେବେଳେ ଯୁଦ୍ଧର ଫଳ ଅନିଶ୍ଚିତ ଥାଏ, ସେତେବେଳେ ଯେଉଁ ପକ୍ଷ ସବୁଠୁ ବେଶି ଜିଦ ଧରି ଜାଗା ମାଡ଼ି ରହେ ସେଇ ପକ୍ଷ ଜିତେ । ମୋ ମତରେ –"

କୁତୁଜଭ ତାଙ୍କ ପାର୍ଶ୍ୱରେ ଆଡ଼ଜୁଟାଣ୍ଟଙ୍କୁ ଡାକି କହିଲେ "କାଇସରଭ, ବସିପଡ଼ି ଲେଖି କାଲିକା ପାଇଁ ମୁଁ ଆଦେଶ ଡାକି ଦେଉଛି ।" ଆଉ ଜଣଙ୍କୁ କହିଲେ "ଆଉ ତୁମେ ଧାଇଁଯାଇ ସୈନ୍ୟ ବାହିନୀରେ ଚାରିଆଡ଼େ ଘୋଷଣା କରି ଦେଇ ଆସ ଯେ କାଲି ଆମେ ଆକ୍ରମଣ କରିବା ।"

ସେ ଯେତେବେଳେ ଗଏଭସ୍କିଙ୍କ ସଙ୍ଗରେ ଗପ କରୁଥିଲେ ଆଉ ଆଦେଶ ନାମା ଡାକି ଲେଖାଉ ଥିଲେ, ସେତେବେଳେ ବାରକ୍ଲେଙ୍କ ପାଖରୁ ଓ୍ୱାଲ୍‌ଜୋଜେନ୍ ଆସି କହିଲେ ଯେ ସେନାପତି ବାର୍‌କ୍ଲେ ଚିଠିଟିଏ ଲେଖି ପଠାଇଛନ୍ତି । ପ୍ରଧାନ ସେନାପତି ତାଙ୍କ ଆଦେଶକୁ ଲେଖିକରି ଦେଲେ ଖୁସିହେବେ ।"

କୁତୁଜଭ ଓ୍ୱାଲ୍‌ଜୋଜନ୍‌ଙ୍କ ଆଡ଼କୁ ନ ଚାହିଁ ଜଣେ ଆଡ଼ଜୁଟାଣ୍ଟଙ୍କୁ କହିଲେ ଏ ଲେଖା ଆଦେଶକୁ ବିଧିପ୍ରକାରେ ଲେଖିଦେବାକୁ । ଭୂତ ପୂର୍ବ ପ୍ରଧାନ ସେନାପତି ବାର୍‌କ୍ଲେ ଦ୍ୟୋତଲେ ଆପଣା ମୁଣ୍ଡରୁ ସବୁ ଦାୟୀତ୍ୱ ଖସାଇଦେବା ସକାଶେ ଚତୁରତା ସହକାରେ ଏହିପରି ଲେଖା ଆଦେଶଟି ଲେଖିବାକୁ ମନେକରି ଥିଲେ । ସମୁଦାୟ ସୈନ୍ୟ ବାହିନୀକୁ ଯେଉଁ ବଚନ ଅବର୍ଣ୍ଣନୀୟ ଯୋଗସୂତ୍ର ଏକାଠି ଗୁନ୍ଥି ରଖି ଗୋଟିଏ ମନୋଭାବରେ ପରିଚାଳିତ କରେ, ଯାହାକୁ କହନ୍ତି ସୈନ୍ୟବାହିନୀର ପ୍ରଧାନ ଶକ୍ତି ସେହି ଯୋଗସୂତ୍ର ବାଟେ କୁତୁଜଭଙ୍କ କଥା ଓ ତହିଁପାଇଁ ଦିନ ଓଲଟି ଶତ୍ରୁ ସଙ୍ଗେ ଯୁଦ୍ଧ କରିବା ପାଇଁ ତାଙ୍କର ଆଦେଶ ସେହି ମୁହୂର୍ତ୍ତରେ ସୈନ୍ୟବାହିନୀରେ ଏମୁଣ୍ଡ ସେମୁଣ୍ଡ କୁହାକୁହି ହୋଇ ଚାରିଆଡ଼େ ଖେଳିଗଲା । ଅବଶ୍ୟ

ସୈନ୍ୟବାହିନୀର ଦୂରତମ ପ୍ରାନ୍ତରେ ପହଞ୍ଚିଲା ସରକ କୁତୁଜଭଙ୍କ ଆଦେଶରେ ବାକ୍ୟ ଓ ଶବ୍ଦ ଅବିକଳ ସେହି ଏକା ପ୍ରକାର ହୋଇ ରହିନଥିଲା । ସୈନ୍ୟବାହିନୀର ଏମୁଣ୍ଡରୁ ସେମୁଣ୍ଡ ପର୍ଯ୍ୟନ୍ତ ଲୋକେ ଯେଉଁ ଗପ କୁହାକୁହି ହେଉଥିଲେ ସେଥିରେ କୁତୁଜଭ ପ୍ରକୃତରେ ଯାହା କହିଥିଲେ ସେଇଭଳିଆ ଗୋଟିଏ ଶବ୍ଦ ବି ନଥିଲା । କିନ୍ତୁ ତାଙ୍କ କଥାର ମୋଟାମୋଟି ତାତ୍ପର୍ଯ୍ୟଟା ଚାରିଆଡ଼େ ପ୍ରଚାରିତ ହୋଇଗଲା । ତାର ଏତିକି କାରଣ ଯେ କୁତୁଜଭ ଯାହା କହିଲେ ସେ କଥା ବୁଦ୍ଧି ବିଚାରରୁ ବାହାରିନଥିଲା । ପ୍ରଧାନ ସେନାପତିଙ୍କ ହୃଦୟ ଭିତରେ ଯେଉଁ ଭାବ ରହିଥିଲା ସେହିପରି ରୁଷ୍‌ଦେଶରେ ପ୍ରତ୍ୟେକ ଲୋକର ହୃଦୟ ଭିତରେ ସେଇ ଭାବ ରହିଥିଲା । ସେହି ଭାବରୁ ଉତ୍ପନ୍ନ ପଡ଼ି ସେ କଥା ବାହାରିଥିଲା ।

ସେହି କ୍ଲାନ୍ତ ଦ୍ୱିଧାଗ୍ରସ୍ତ ସୈନ୍ୟମାନେ ଯେତେବେଳେ ଶୁଣିଲେ ଯେ ତହିଁଆରଦିନ ରୁଷ୍ ପକ୍ଷ ତାଙ୍କର ଶତ୍ରୁପକ୍ଷକୁ ଆକ୍ରମଣ କରିବେ, ଆଗେ ଯେଉଁ କଥା ସେମାନେ ବିଶ୍ୱାସ କରିବାକୁ ଚାହୁଁଥିଲେ, ଯେତେବେଳେ ସୈନ୍ୟବାହିନୀର ଉପର ସ୍ତରରୁ ସେ କଥାରେ ସମର୍ଥନ ଶୁଣିଲେ, ସେତେବେଳେ ସେମାନଙ୍କ ମନରେ ପୁଣି ଭରସା ଓ ସାହସ ଫେରିଲା ।

ପ୍ରିନସ୍ ଆନ୍ଦ୍ରେଙ୍କ ସୈନ୍ୟଦଳ ବଳକା ସୈନ୍ୟଦଳଙ୍କ ସହିତ ରହିଥିଲା, ଆବଶ୍ୟକ ହେଲେ କାର୍ଯ୍ୟରେ ଲାଗିବ ବୋଲି । କିଛିକାମ ନକରି ତାଙ୍କ ସୈନ୍ୟ ଦଳକୁ ସେସମ୍ନୁଭସ୍କି ଗାଁ ପଛଆଡ଼େ ଅପେକ୍ଷା କରିବାକୁ ଆଦେଶ ହୋଇଥାଏ । ସେଇଠି ସେମାନେ ଥାଆନ୍ତି, ତାଙ୍କ ଉପରେ ପ୍ରବଳ ବନ୍ଧୁକ ଗୁଳି ବର୍ଷୁଥାଏ । ଦୁଇଟା ବାଜିବା ଆଗରୁ ସେ ସୈନ୍ୟମାନଙ୍କୁ ଆଗକୁ ଅଣାଯାଇ ଗୋଟିଏ ମଡ଼ା ଚକଟା ହୋଇଥିବା ଯବଧାନ କ୍ଷେତରେ ଠିଆ କରାଗଲା । ସେତେବେଳକୁ ସେଥିରୁ ଦୁଇଶହରୁ ବେଶି ଲୋକ କ୍ଷୟ ହୋଇଥାନ୍ତି । ସେସମ୍ନୁଭସ୍କି ଢିପ ଉପରେ ତୋପଧାଡି ଏହାର ମଝିରେ ସେହିଜାଗାରେ ସେ ସୈନ୍ୟଦଳକୁ ରଖାଗଲା ଯେଉଁ ଜାଗାରେ ସେହିଦିନ ହଜାର ହଜାର ଲୋକ ମରି ପଡ଼ିଲେ, ଆଉ

ସେଇଁଠିକି ସେବକ ପ୍ରାୟ ଦୁଇଟା ବେଳେ ଶତ୍ରୁପକ୍ଷର ଶହ ଶହ ତୋପ ଲକ୍ଷ୍ୟକରି ଏକାଠି ଗୁଳି ବର୍ଷଣ ଆରମ୍ଭ କରିଦେଲେ ।

ଏହି ଜାଗାରେ ଠିଆ ହୋଇରହି ଗୋଟିଏ ବି ଗୁଳି ନ ଫୁଟାଇ ସୈନ୍ୟଦଳଟି ତାର ତିନି ଭାଗରୁ ଭାଗେ ମଣିଷଙ୍କୁ ହରାଇଲା । ସାମ୍ନାରେ, ବିଶେଷତଃ ବାଁ ପଟେ ଧୂଆଁ ଭିତରେ ତୋପମାନ ପ୍ରଚଣ୍ଡ ଗର୍ଜନ କରି ଗୁଳିମାଡ଼ ଚଳାଇଥାନ୍ତି । ଧୂଆଁ ଆଉ ଘୁଞ୍ଚୁନଥାଏ । ସାମ୍ନାରେ ଭୂଇଁ ଧୂଆଁରେ ରୁନ୍ଧହୋଇ ଆଖିକି କିଛି ଦେଖାଯାଉନଥାଏ । ସେହି ଆଡ଼ୁ ରହସ୍ୟଜନକ ଭାବରେ ଅତି ଚଞ୍ଚଳ ଚଞ୍ଚଳ ସାଇଁ ସାଇଁ ହୋଇ ତୋପଗୁଳି ଉଡ଼ି ଉଡ଼ି ଆସୁଥାଏ ଓ ଧିରେ ଧିରେ ସର ସର ହୋଇ ବୋମା ମଧ୍ୟ ଆସୁଥାଏ । ବେଳେବେଳେ ସତେକି ସେମାନଙ୍କୁ ନିଃଶ୍ୱାସ ମାରିବାକୁ ତର ନ ଦେବା ସକାଶେ ତୋପଗୁଳି ଓ ବୋମା ସେମାନଙ୍କ ମୁଣ୍ଡ ଉପର ବାଟେ ଉଡ଼ି ପଳାଉଥାଏ; କିନ୍ତୁ ଅନ୍ୟ ସମୟରେ ଏକ ମିନିଟ୍‌କେ ସୈନ୍ୟଦଳ ଭିତରୁ ବହୁତ ବହୁତ ଲୋକ ଗୁଳିମାଡ଼ରେ ଉଡ଼ି ଯାଉଥାନ୍ତି; ଆଉ ସବୁବେଳେ ସେହି ସୈନ୍ୟଦଳର ଲୋକଙ୍କର ମୁର୍ଦ୍ଦାର ଘୋସାରି-ନେବା ଓ ଆହତ ଲୋକଙ୍କୁ ବୋହିନେବା କାମ ଲାଗି ରହିଥାଏ ।

ଯେଉଁମାନେ ସେପର୍ଯ୍ୟନ୍ତ ନମରି ବଞ୍ଚି ରହିଥିଲେ ପ୍ରତିମୁହୂର୍ତ୍ତରେ ସେମାନଙ୍କ ଜୀବନର ଆଶା କମି କମି ଆସୁଥାଏ । ସୈନ୍ୟଦଳଟି ଭାଗ ଭାଗ ହୋଇ ବିଭକ୍ତ ହୋଇଥାଏ । ଗୋଟିଏ ଭାଗ ଆଉ ଗୋଟିଏ ଭାଗ-ଠାରୁ ତିନିଶହ ପାହୁଣ୍ଡ ଅନ୍ତରରେ ଥାଏ । ତା ସତ୍ତ୍ୱେ ସମୁଦାୟ ସୈନ୍ୟ ଦଳରେ ସମସ୍ତଙ୍କ ମନରେ ଏକ ଭାବନା ପୂରିଥାଏ । ସମୁଦାୟ ସୈନ-ଦଳର ବହୁ ସୈନିକ ଏକାପ୍ରକାରେ ବିଷଣ୍ଣ ଓ ନୀରବ ହୋଇ ରହିଥାନ୍ତି । କେବେ କ୍ୱଚିତ୍ ଲୋକେ ଆପଣା ଆପଣା ଭିତରେ କଥାଭାଷା ହେଉଥାନ୍ତି, କିନ୍ତୁ ଯେତେ ଥର ଦୁଲ୍ ଦାଲ୍ ହୋଇ କଣ ପଡ଼ିବା ଶବ୍ଦ ଶୁଭୁଥାଏ ଓ "ଖଟିଆ ଆଣ" ବୋଲି ଡାକ ଶୁଭୁଥାଏ ସଙ୍ଗେ ସଙ୍ଗେ ସେମାନଙ୍କ କଥା ବାର୍ତ୍ତା ବି ଭୁଲି ପଡ଼ିଯାଉଥାଏ । କର୍ମଚାରୀମାନଙ୍କ ଆଦେଶ ମାନି ସେଠାରେ ଥିବା ବେଶି ସମୟ ସୈନ୍ୟମାନେ ଭଲେ

ବସିଥାନ୍ତି । ଜଣେ ତାର ଟୋପି ଖୋଲି ପକାଇ ଖୁବ୍ ଯତ୍ନରେ ଟୋପିର ଘେରକୁ ଦୁଗୁଣା କରି ଓଳଟାଇ ପକାଇଲା । ଜଣେ ତା ହାତରେ ଶୁଖିଲା ମାଟି ଢେଳାକୁ ମକଚି ଗୁଣ୍ଡ କରି ତା ସଙ୍ଗୀନରେ ଘସିଲା । ଜଣେ ତା କାନ୍ଧ ଉପର ପୋଷାକରେ ଗଣ୍ଠି କ ଘୁଞ୍ଚାଇ ଦେଇ ବାନ୍ଧିଦେଲା । ଆଉ ଜଣେ ତା ଗୋଡ଼ରେ ବନ୍ଧା ହୋଇଥିବା ପଟିକୁ ଖୋଲି ପୁଣି ବାନ୍ଧିଲା ଆଉ ତା ଜୋତାକୁ ଖୋଲିଲା । କେତେଜଣ ବସି ହଳ ହୋଇଥିବା କ୍ଷେତରେ ଢେଳାରେ ସାନ ସାନ କଣ୍ଢେଇ ଘର ତୋଳିଲେ । କେତେଜଣ ନଡ଼ାରେ ବେଣି ପକାଇଲେ । ଏହି କାମରେ ସମସ୍ତେ ବ୍ୟସ୍ତ ରହିଥିଲା ପରି ଦିଶୁଥିଲେ । ଯେତେବେଳେ ଲୋକେ ମରୁଥାନ୍ତି କି ଆହତ ହୋଇ-ପଡୁଥାନ୍ତି, ଯେତେବେଳେ ଖଟିଆ ଗୁଡ଼ାକ ଧାଡ଼ି ହୋଇ ଚାଲିଯାଉଥାଏ, ଯେତେବେଳେ ଋଷ୍ ପକ୍ଷରେ ସୈନ୍ୟମାନେ ପଛଘୁଞ୍ଚା ଦେଲେ, ଯେତେବେଳେ ଧୂଆଁ ଭିତରେ ଅସଂଖ୍ୟ ଅସଂଖ୍ୟ ଶତ୍ରୁ ସୈନ୍ୟ ଆଖିରେ ପଡ଼ିଲେ । କେହି ଏସବୁ କଥାକୁ ଧ୍ୟାନ ଦେଉ ନଥାନ୍ତି । ଯେତେବେଳେ ଋଷ ପକ୍ଷରେ ପଦାତିକ ବାହିନୀ କି ଘୋଡ଼ାସବାର ବାହିନୀ ଆଗକୁ ମାଡ଼ି ଆସୁଥାନ୍ତି, କିମ୍ବା ଯେତେବେଳେ ଋଷ ପକ୍ଷର ପଦାତିକ ବାହିନୀ ଚାଲିବାର ଦେଖାଯାଉ ଥା'ନ୍ତି ସେତେବେଳେ ଚାରିଆଡୁ ପ୍ରଶଂସାର ମନ୍ତବ୍ୟମାନ ଶୁଣାଯାଉଥାଏ । କିନ୍ତୁ ଲୋକେ ଅତି ଅବାନ୍ତର ଘଟନା ପ୍ରତି ବେଶି ନଜର ଦେଉଥାନ୍ତି, ସେହି ଯେଉଁ ସବୁ ଘଟନାର ଯୁଦ୍ଧ ସହିତ କୌଣସି ସମ୍ବନ୍ଧ ନଥାଏ । ଏ ଲୋକମାନଙ୍କ ଚିତ୍ତବୃତ୍ତି ଅତ୍ୟନ୍ତ ଶ୍ରାନ୍ତ ହୋଇ ପଡ଼ୁଥାଏ । ବୋଧହୁଏ ବୋଲି ନିତି ଦିନର ସାଧାରଣ ଘଟନାରେ ବିଶ୍ରାମ ପାଉଥାଏ । ସେମାନଙ୍କ ଧାଡ଼ି ଆଗବାଟେ ଥୋଡ଼ାଏ ତୋପ ବନ୍ଧୁକ ବୁହା ଗାଡ଼ି ଚାଲିଗଲା । ସେଥିରୁ ଗୋଟାଏ ଗାଡ଼ିରେ ଗୋଟାଏ ଘୋଡ଼ାକୁ ଶିକୁଳିରେ ବନ୍ଧା ହୋଇଥିବା ଦେଖି ଚାରିଆଡ଼େ ପାଟିଶୁଭିଲା ।

"ସାରି ସୈନ୍ୟଦଳ ଭିତରେ ଚାରିଆଡେ ପାଟି ଶୁଭିଲା "ଆରେ ହୋ, ଦେଖ ଦେଖ ସେ ଫାସ ବନ୍ଧା ଘୋଡ଼ାଟା କେମିତି ହେଉଛି । ... ତା ଗୋଡ଼ ବାହାର କରିଦିଅ । ନଇଲେ ସେ ପଡ଼ିଯିବ 'ସେ । ହୋ ! ମଲା ଯା ତାକୁ ଦିଶୁନାହିଁ ।"

ଆଉଥରେ ଗୋଟିଏ ଗ୍ରେଟିଆ ଧୂସର କୁକୁର ଉପରେ ସେମାନଙ୍କର ନଜର ପଡ଼ିଲା । କୁକୁରଟି କୁଆଡ଼ୁ ଆସି ପହଞ୍ଚିଯାଇଥିଲା କେହି ଜାଣନ୍ତି ନାହିଁ । ଲାଙ୍ଗୁଡ଼କୁ ଉପରକୁ ଟେକି କୁକୁରଟି ଏସର ପସର ହୋଇ ସୈନ୍ୟଦଳର ସାମ୍ନାରେ ଦୌଡ଼ୁଥାଏ । ହଠାତ୍ ତାପାଖରେ ଗୋଟାଏ ତୋପ ଗୁଳା ଆସି ପଡ଼ିଲା ଯେ କୁକୁରଟି କେଁ କେଁ ହୋଇ ଗୋଡ ସନ୍ଧରେ ଲାଙ୍ଗୁଡ଼କୁ ଯାକି ଦୌଡ଼ି ପଳାଇଲା । ସମୁଦାୟ ସୈନ୍ୟ-ଦଳରୁ ହୋ ହୋ ହୋଇ ହସ ଶୁଭିଲା । କିନ୍ତୁ ଏ ଭଳି ଅନ୍ୟ ଚେତନା ଥରକେ ମିନିଟିଏରୁ ବେଶି ସମୟ ରହୁନଥିଲା । ସେ ଲୋକମାନେ ଆଠ ଘଣ୍ଟା ହେଲା କିଛି ନଖାଇ କିଛି କାମ ନକରି ରହିଥାନ୍ତି । ସେମାନଙ୍କ ଭିତରେ ମୃତ୍ୟୁର ଭୟ ମୁହୂର୍ତ୍ତେ ସୁଦ୍ଧା କୋହଳ ହେଉନଥାଏ, ସେମାନଙ୍କ ମୁହଁ ସବୁ ବେଶି ବେଶି ଶୁଖିଲା ଆଉ ହାଉଆ ଦିଶୁଥାଏ ।

ସେହି ସୈନ୍ୟଦଳର ଅନ୍ୟମାନଙ୍କ ପରି ପ୍ରିନସ୍ ଆନ୍ଦ୍ରେଙ୍କ ମୁହଁ ବି ଶୁଖିଲା ହାଉଆ ଦେଖାଯାଉଥାଏ । ଯବଧାନ କଆର ସେକରେ ଯେଉଁ ଘାସ ପଡ଼ିଆ ଥାଏ ସେଇଠି ସେ ଗୋଟିଏ ସୀମାରେଖା ଠାରୁ ଆଉ ଗୋଟାଏ ସୀମାରେଖା ପର୍ଯ୍ୟନ୍ତ ଏକର ସେକର ହୋଇ ବୁଲି ବୁଲି ବୁଲୁଥାନ୍ତି । ତାଙ୍କ ହାତ ତାଙ୍କ ପିଠି ଆଡ଼େ ଛନ୍ଦି ପଡ଼ିଥାଏ । ଆଖି ତଳକୁ ଥାଏ । ସେ କୌଣସି ଆଦେଶ ଦେବା ଦରକାର ପଡୁନଥାଏ କି କିଛି କାମ ତାଙ୍କର ନଥାଏ । ଯେଉଁମାନେ ମରିଯାଉଥାନ୍ତି ତାଙ୍କୁ ସୈନ୍ୟ ଧାଡ଼ିରୁ ପଛକୁ ବୋହାରି ନିଆ ହେଉଥାଏ । ଯେଉଁମାନେ ଆହତ ହେଉଥାନ୍ତି ତାଙ୍କୁ ମଧ୍ୟ ବୋହି ନିଆ ହେଉଥାଏ । ପୁଣି ଧାଡ଼ିର ଫାଙ୍କ ମିଶାଇ ଦିଆ ହେଉଥାଏ । ଯଦି କେହି ସୈନ୍ୟ ଦୌଡ଼ି ପଳାଉଥାନ୍ତି ସେମାନେ ପୁଣି ତର ତର ହୋଇ ଲେଉଟି ଆସୁଥାନ୍ତି । ଆଗ ଆଗ ପ୍ରିନସ୍ ଆନ୍ଦ୍ରେ ଭାବୁଥିଲେ ଯେ ଲୋକଙ୍କ ସାହସ ତେଜି ରଖିବା ତାଙ୍କର କର୍ତ୍ତବ୍ୟ ଓ ସେମାନଙ୍କ ଆଗରେ ଗୋଟାଏ ଆଦର୍ଶ ଥୋଇବା ତାଙ୍କର କର୍ତ୍ତବ୍ୟ । ତେଣୁ ସେ ସେମାନଙ୍କ ଭିତରେ ବୁଲି ଆସିଥିଲେ । ଅଳ୍ପଶୀଘ୍ର ସେ ଅନୁଭବ କଲେ ଯେ ସେମାନଙ୍କୁ ସେ କିଛି ଶିଖାଇବା ଦରକାର ନାହିଁ । ପ୍ରତି ସୈନିକର ଯେପରି ହେଉଥାଏ ତାଙ୍କର ବି ସେପରି ସବୁଯାକ ଶକ୍ତି

ଏହି ଗୋଟିଏ କାର୍ଯ୍ୟରେ ନିୟୋଜିତ ହୋଇ ରହିଲେ ଯେ ଆପଣାର ଭୟାବହ ଅବସ୍ଥା ବିଷୟରେ ଭାବିନେବା କାର୍ଯ୍ୟରୁ କିପରି ଆପଣାକୁ ହଟାଇ କରି ରଖିବେ । ସେ ଗୋଟିଏ ଗୋଡ଼ ଉଠାଇ ଆଉ ଗୋଟିଏ ଗୋଡ଼କୁ ଘୋସାରି ଘୋସାରି ଘାସ ପଡ଼ିଆ ଉପରେ ବୁଲୁଥାନ୍ତି, ପାଦରେ ଘାସକୁ ଖସ୍ ଖସ୍ କରୁଥାନ୍ତି । ତାଙ୍କ ଯୋତାରେ ଯେଉଁ ଧୂଳି ଲାଗୁଥାଏ ତାକୁ ଅନେଷା କରୁଥାନ୍ତି । ତାପରେ ସେ ଘାସ କଣ୍ଟାଳିମାନଙ୍କର ଭୂଇଁରେ ଯେଉଁ ପାଦ ଚିହ୍ନ ପଡ଼ିଥାଏ ତାହାର ଉପରେ ପାଦ ପକାଇବାକୁ ଚେଷ୍ଟାକରି ସେ ଗଣିଲେ, ନହେଲେ ଆପଣା ପାହୁଣ୍ଡ ଗଣିକରି, ହିସାବ କଲେ ଯେ ଗୋଟାଏ ସୀମା ଗୋହିରିଠାରୁ ଆଉ ଗୋଟାଏ ସୀମା ଗୋହିରି ଯାଏ ସେ କେତେଥର ବୁଲି ବୁଲି ଗଲେ ଗୋଟାଏ ଭର୍ଷ୍ଟ ହେବ । ବେଳେ ବେଳେ ଗୋହିରି ଭିତରେ ଯେଉଁ ବଣୁଆ ଫୁଲ ଫୁଟିଥାଏ ସେ ତାକୁ ଛିଣ୍ଡାଇ ଦେଇ ହାତରେ ମକଚି ଦେଇ ସେ ଫୁଲର ପିତା ମିଠା ଗନ୍ଧ ମିଶା ବାସ୍ନା ଶୁଂଘୁଥାନ୍ତି । ଆଗଦିନ ତାଙ୍କ ମନରେ ଯେତେ ଭାବନା ଥିଲା ସେ ଭାବନାର ସଦ୍ଭାବ ତାଙ୍କ ମନରେ ନଥିଲା । କୌଣସି କଥା ସେ ଭାବୁ ନଥାନ୍ତି । ସେହି ଯେଉଁ ଶବ୍ଦ ଗୁଡ଼ାକ ଏକା ପରି ଲାଗି ରହିଥାଏ ସେହିଗୁଡ଼ିକୁ ସେ କାନ ଡେରି ଶୁଣୁଥାନ୍ତି, ସେହି ତୋପ ଶବ୍ଦର ଗୁଡୁମ ଗୁଡୁମ ଭିତରେ ଗୁଳି ଗୁଡ଼ାକର ସାଇଁ ସାଇଁ ଶବ୍ଦ । ପ୍ରଥମ ବାହିନୀର ସୈନ୍ୟମାନଙ୍କ ମୁହଁକୁ ଚାହିଁ ଚାହିଁ ବ୍ୟସ୍ତହୋଇ ପଡୁଥାନ୍ତି ; ପୁଣି ତାଙ୍କ ମୁହଁକୁ ଚାହୁଁ ଥାନ୍ତି । ଧୂଆଁ ଲଦା ଲଦି ଅଞ୍ଚଳ ଖଣ୍ଡିକ ଆଡୁ ଯେତେବେଳେ କ'ଣ ଗୋଟାଏ ସାଇଁ ସାଇଁ ହୋଇ ଉଡ଼ି ଆସୁଥାଏ ଭାବୁଥାନ୍ତି "ହେଇ ଆସିଲା । .... ଶୁଣି ଏଇଟା ଆମରି ପାଇଁ ଅସିଲା ।" ଭାବୁଥାନ୍ତି "ଗୋଟାଏ... ଆଉ ଗୋଟାଏ ! ଆହୁରି ! ପଡ଼ିଲା ।" ସେ ଅଟକି ଯାଇ ସୈନ୍ୟଦଳ ଆଡ଼କୁ ଚାହୁଁଥାନ୍ତି । ନାଇଁ, ଏଇଟା ଉଡ଼ିଚାଲିଗଲା । କିନ୍ତୁ ସେ ଆଉଟା ପଡ଼ିଥିଲା ।" ସେ ପୁଣି ଏକରି ସେକରି ହୋଇ ବୁଲୁଥାନ୍ତି, ସହଳ ପାହୁଣ୍ଡ ପକାଇ ଆର କଡ଼ର ସୀମା ଗୋହିରିରେ ପହଞ୍ଚିବାକୁ ଚେଷ୍ଟାକରୁଥାନ୍ତି !

ଫେର ସାଇଁ ସାଇଁ ଦୁମ୍ । ତାଙ୍କଠୁଁ ପାଞ୍ଚ ପାହୁଣ୍ଡ ଦୂରରେ ଗୋଟାଏ ତୋପଗୁଳି ମାଟିଭିତରକୁ ଚାଲିଗଲା ଯେ ଶୁଖିଲା ମାଟି ଛିଟିକି

ପଡ଼ିଲା । ତାଙ୍କ ପିଠି ଭିତର ତଳକୁ ତଳକୁ ହୋଇ ଶୀତେଇ ଉଠିଲା । ସେ ଫୈସନ୍ୟଦଳ ଆଡ଼କୁ ଗୃହିଁ ଭାବଲେ ବହୁତ ଲୋକଙ୍କ ଦେହରେ ଗୁଳି ବାଜଥିବ, ଯେହେତୁ ଦ୍ୱିତୀୟ ସୈନ୍ୟଦଳର ଲୋକେ ଏକାଠି ଏଠାରେ ଗହଳ କର ଦେଇଛନ୍ତି ।

ସେ ପାଟିକଲେ 'ଏଡ଼କମ୍ ମହାଶୟ, ଲୋକଙ୍କୁ କହ ଦଅନ୍ତୁ ଏକାଠି ପାଖକୁ ନ ଆସନ୍ତୁ । ଆଉ ପାଖରୁ ଗୋଟାଏ ଦଳର ଦଳପତି ଘୋଡ଼ାରେ ଚଢ଼ି ଆସିଲେ ।

ଜଣେ ସୈନିକର ଭୟାର୍ତ୍ତ ସ୍ୱର ଶୁଭିଲା ' ହୁସିଆର ।'' ଗୋଟାଏ ଚଢ଼େଇ ଅତି ତର ତରରେ ଡେଣା ଫଡ଼ ଫଡ଼ କରି ଘୂରେଇ ଘୂରେଇ ତଳେ ଓହ୍ଲାଇ ପଡ଼ିଲା ପରି ପ୍ରିନ୍ସ ଆନ୍ଦ୍ରେଙ୍କ ଠାରୁ ଦୁଇ ପାହୁଣ୍ଡ ଦୂରରେ ସେ ଦଳପତିଙ୍କ ଘୋଡ଼ା ପାଖରେ ଦୁମ କରି ଗୋଟାଏ ବୋମା ପଡ଼ିଗଲା । ଡରିବାଟା ଭୂଲ କି ଠିକ୍ ଏଭଳି ପ୍ରଶ୍ନକୁ ଆଲୋଚନା ନକରି ଘୋଡ଼ାଟା ନାକ ଫଡ଼ ଫଡ଼ କଲା । ଦି ଗୋଡ଼ରେ ଠିଆ ହୋଇ ପଡ଼ିଲା ଯେ ଦଳପତି ତା ପିଠିରୁ ଖସି ପଡ଼ିବା ଉପରେ । ତାପରେ ଡେଇଁ ଡେଇଁ ଧାଇଁ ପଳାଇଲା । ଘୋଡ଼ାର ହାବଭାବ ଦେଖି ଲୋକଙ୍କ ଭିତରେ ଚହଳ ପଡ଼ିଗଲା ।

ଆଡ଼ଜୁଟାଣ୍ଟ ତଳେ ପଡ଼ଯାଇ ପାଟିକଲେ ''ଶୋଇପଡ଼ ।'' ପ୍ରିନ୍ସ ଆନ୍ଦ୍ରେ ଅନିଶ୍ଚିତ ମନରେ ଠିଆ ହୋଇଥାନ୍ତି । ବୋମାରୁ ଧୂଆଁ ବାହାରୁ ଥାଏ ।

ସେ ଆଉ ଶୋଇରହିଥିବା ଆଡ଼ଜୁଟାଣ୍ଟ ଏ ଦୁହିଁଙ୍କ ମଝି-ରେ ବୋମାଟା ନଟୁ ପରି ଘୂରୁଥାଏ । ସେ ପାଖରେ ଘାସ ପଡ଼ିଆ ଆଉ କ୍ଷେତ ମଝିରେ ଗୋଟାଏ ଗୋହିରୀ ଭିତରେ ଗୋଟାଏ ବଣୁଆ ଫୁଲର ବୁଦା ଥାଏ ।

ପ୍ରିନସ ଆନ୍ଦ୍ରେଙ୍କ ମନରେ ଗୋଟାଏ ସମ୍ପୂର୍ଣ୍ଣ ନୂଆ ଅନୁଭୂତି ଖେଳୁଥାଏ । ବଡ଼ ଗହନ ସେ ଭାବ । ସେ ଘାସକୁ ନଟୁ ଦେହରୁ ମୋଡ଼ି ମୋଡ଼ିକା ସୂତା ପରି ଯେଉଁ ଧୂଆଁ ବାହାରୁ ଥାଏ ତାକୁ ଗୃହିଁ ଥାନ୍ତି, ଆଉ

ଆଶ୍ଚର୍ଯ୍ୟ ହୋଇ ଭାବୁଥାନ୍ତି "ଏଇ କ'ଣ ମୃତ୍ୟୁ ? ନା, ମୁଁ ମରି ପାରିବି ନାହିଁ । ମୁଁ ଜୀବନକୁ ଭଲପାଏଁ, ମୁଁ ଏ ଘାସକୁ ଭଲପାଏଁ । ଏ ମାଟିକୁ ଏ ପବନକୁ ଭଲପାଏ..."

ସେ ଏକଥା ଭାବୁଥାନ୍ତି ଅଥଚ ସେତେବେଳେବି ସେ ଭୁଲି ନଥାନ୍ତି ଯେ ଲୋକେ ତାଙ୍କ ଆଡ଼କୁ ଚାହିଁ ରହିଛନ୍ତି । ସେ ଆଡ଼ଜୁଟାଣ୍ଟଙ୍କୁ କହିଲେ "ବଡ଼ ଲଜ୍ଜାର କଥା ଏଡ଼ଙ୍କ ମହାଶୟ । କେମିତିଆ..."

ସେ ଆଉ କଥା ଶେଷକରି ପାରିଲେ ନାହିଁ । ସେହି ସଙ୍ଗେ ସଙ୍ଗେ ଗୋଟାଏ ଶବ୍ଦ ହେଲା, ଯେପରି କଏ କଣ ଚିରି ପକାଉଛି କି କ'ଣ ଗୋଟାଏ ଭୁସ୍‌ଭାସ୍ ହୋଇ ଗଡ଼ିଯାଉଛି କି ଯେପରିକି ଭଙ୍ଗା ବାସନ ତଳେ ପଡ଼ି ଚୂନା ହୋଇଯାଉଛି, ନିଶ୍ୱାସ ବନ୍ଦ କରିଦେଲା ଭଳି ଧୂଆଁ ଗୁଡ଼ାଏ ଭସ ଭସ ହୋଇ ବାହାରି ଆସିଲା । ପ୍ରିନ୍‌ସ ଆନ୍ଦ୍ରେ ପ୍ରଚଣ୍ଡ ହାବୁକା ଖାଇ ଘୂରି ଘୂରିକା ଯାଇ ଗୋଟାଏ ବାହା ପଦାକୁ ଛୁଆଁଡ଼ ଦେଇ ମୁହଁ ମାଡ଼ିହୋଇ ତଳେ କଗୁଡ଼ ହୋଇ ପଡ଼ିଲେ ।

ବହୁତ କର୍ମଚାରୀ ତାଙ୍କ ପାଖକୁ ଦୌଡ଼ି ଆସିଲେ । ତାଙ୍କ ତଳି ପେଟରେ ଡାହାଣ ପାଖରୁ ବହୁତ ରକ୍ତ ବୋହି ଘାସ ଉପରେ ରକ୍ତର ଧାର ଛୁଟିଥାଏ ।

କର୍ମଚାରୀମାନଙ୍କ ପଛଆଡ଼େ ଖଟିଆମାନ ଧରି ଗାଉଁଲି ସୈନ୍ୟମାନେ ଅପେକ୍ଷାକରି ରହିଥାନ୍ତି । ପ୍ରିନ୍‌ସ ଆନ୍ଦ୍ରେ ଛାତି ମାଡ଼ି ପଡ଼ି ରହିଥାନ୍ତି । ତାଙ୍କ ମୁହଁ ଘାସରେ ବୁଡ଼ିଯାଇଥାଏ । ସେ ତଥାପି ସାଇଁ ସାଇଁ ହୋଇ ଟାଣି ଟାଣି ନିଃଶ୍ୱାସ ମାରୁଥାନ୍ତି ଯେ ନିଃଶ୍ୱାସର ଶବ୍ଦ ଫମ୍ପା ଶୁଭୁଥାଏ ।

"କାହିଁକି ଆଉ ତୁମେ ଡେରି କରୁଛ ? ଚାଲ ଆସ ।" ଶିବିରୀମାନେ ତାଙ୍କ ପାଖକୁ ଯାଇ ତାଙ୍କ ଗୋଡ଼କୁ କାନ୍ଧକୁ ଧରିଲେ । କିନ୍ତୁ ସେ ଅତି ବିକଳ ହୋଇ ଆର୍ତ୍ତନାଦ କରୁଥାନ୍ତି । ସେମାନେ ମୁହଁ ଚାହାଁ ଚାହିଁ ହୋଇ ପୁଣି ତାଙ୍କୁ ଥୋଇଦେଲେ ।

କିଏ ଜଣେ ବଡ଼ ପାଟିରେ କହିଲା "ତାଙ୍କୁ ଟେକ ନିଅ, ଶୁଆଇ ଦିଅ, ଆଉ ସେଥିରେ କିଛି ନାହିଁ ।" ପୁଣି ସେମାନେ ତାଙ୍କୁ କାନ୍ଧକୁ ଧରି ଟେକନେଲେ ଆଉ ଖଟିଆ ଉପରେ ଶୁଆଇ ଦେଲେ ।

କର୍ମଚାରୀମାନେ ପରସ୍ପର ଭିତରେ କୁହା କୁହି ହେଉଥାନ୍ତି, "ହେ ଭଗବାନ ! ହେ ଭଗବାନ ! ଏ କ'ଣ ହେଲା !···ତଳ ପେଟରେ — ତାହାଲେ ତ ସବୁ ସରିଗଲା ।" ଆଡ଼ଜୁଟାଣ୍ଟ କହୁଥାନ୍ତି "ମୋ କାନବାଟେ ସଟେକ ଘସି ହୋଇ ଚାଲିଗଲା ।" ରକ୍ଷୀ ସୈନ୍ୟମାନେ କାନ୍ଧରେ ଖଟିଆ ବୋହି ଯେଉଁ ବାଟରେ ଆସିଥିଲେ ସେହି ବାଟେ ବାଟେ ତର ତର ହୋଇ ଚିକିତ୍ସାକେନ୍ଦ୍ର ଆଡ଼କୁ ଚାଲିଗଲେ ।

ସେମାନେ ବେତାଳିଆ ହୋଇ ତରତର ହୋଇ ଚାଲିଥାନ୍ତି ଯେ ଖଟିଆଟା ଦହଲି ଯାଉଥାଏ ।

ଜଣେ କର୍ମଚାରୀ ସେମାନଙ୍କ କାନ୍ଧରୁ ଧରିପକାଇ ପାଟିକଲେ 'ଏକା ସଙ୍ଗରେ ତାଳଦେଇ ପାଦ ପକାଅ ।"···ହେଉ ଶୁଭୁଛି ନା !··· ଆସ୍ତୁ ଚଷାଗୁଡ଼ାଏ ।"

ସବା ଆଗରେ ଥିବା ଚଷାଟି କହିଲା "ତାଳରେ ଚାଲ ! ଫେୟାଜର୍ ହୋ, ଶୁଣୁଚ ?"

ପଛରେ ଥିବା ଜଣକ ତା ପାଦରେ ପାଦ ମିଶାଇ ଚାଲୁ ଚାଲୁ କହିଲା "ଏଥର ହେଲା, ଭଲହେଲା ।"

ଟିମୋହିନ୍ ଧାଇଁଯାଇ ଖଟିଆ ଉପରେ ଭୁକିମାରି ଦେଖି ଥରିଲା ଥରିଲା ଗଳାରେ କହିଲା "ମଣିମା ଆଜ୍ଞା ! ଗୁମ୍ଭ ! ପ୍ରିନ୍ସ ।"

ପ୍ରିନ୍ସ ଆନ୍ଦ୍ରେ ଖଟିଆ ଉପରୁ ଆଖିଖୋଲି ତା ଆଡ଼କୁ ଚାହିଁଲେ । ଖଟିଆ ଭିତରେ ତାଙ୍କ ମୁଣ୍ଡ ଗଳି ପଡ଼ୁଥାଏ । ସେ ପୁଣି ଆଖିପତା ବୁଜିଦେଲେ ।

ଜଙ୍ଗଲ ମଝିରେ ଖୋଲା ଜାଗାରେ ଚିକିତ୍ସା କେନ୍ଦ୍ରଟାଏ ବସିଥାଏ । ସେଠି ରୋଗୀ ବୋହିବା ଗାଡ଼ିମାନ ଥାଏ । ରୁଷୀ ସୈନ୍ୟମାନେ ପ୍ରିନ୍ସ ଆନ୍ଦ୍ରେଙ୍କୁ ସେଠିକି ବୋହିନେଲେ ।

ଚିକିତ୍ସା କେନ୍ଦ୍ର ତିନୋଟି ତମ୍ବୁରେ ଚାଲିଥାଏ । ତମ୍ବୁଗୁଡ଼ିକ ଗୋଟିଏ ବାର୍ଚ ଜଙ୍ଗଲରେ ଧାଡ଼ିରେ ଚଉଲି ଜାଗାରେ ପଡ଼ିଥାଏ । ରୋଗୀ ବୁହା ଗାଡ଼ି ଓ ଘୋଡ଼ାଗୁଡ଼ିକ ବଣ ଭିତରେ ଠିଆ ହୋଇଥାନ୍ତି । ଘୋଡ଼ାଗୁଡ଼ିକଙ୍କ ନାକରୁ ମୁଣି ଓହଳା ଥାଏ ଯେ ସେମାନେ ତହିଁରେ ଯବଧାନ ଚୋବାଉ ଥାନ୍ତି । ଘରଚଟିଆମାନେ ସେମାନଙ୍କ ପାଖକୁ ଉଡ଼ିଯାଇ ସେମାନେ ପକାଇଦେଇ ଥିବା ଦାନା ଗୁଡ଼ିକ ଗୋଟାଇ ନେଇ ଯାଉଥାନ୍ତି । ରକ୍ତର ବାସ୍ନା ପାଇ କେଇଟା କୁଆ ଉଚ୍ଛନ୍ନ ହୋଇ ବୋବେଇ ବୋବେଇ ବାର୍ଚ ଗଛ ସନ୍ଧିରେ ଏପାଖ ସେପାଖ ଉଡ଼ୁଥାନ୍ତି । ତମ୍ବୁଗୁଡ଼ିକ କଡ଼େ ପାଞ୍ଚ ଏକରରୁ ବେଶି ଜାଗା ମାଡ଼ି ବସି ନାନା ପ୍ରକାର ବେଶ ପିନ୍ଧିଥିବା ଲହୁଲୁହାଣ ହୋଇଥିବା ଲୋକେ ବସିଥାନ୍ତି । ସେମାନଙ୍କୁ ଘେରି ରଖିଥାନ୍ତି ଦଳ ଦଳ ସୈନିକ; ସେମାନଙ୍କ ମୁହଁ ବିରସ ଦିଶୁଥାଏ । ସେମାନେ ତୀକ୍ଷ୍ଣ ଦୃଷ୍ଟିରେ ନଜର ରଖିଥାନ୍ତି । ସେମାନେ ଖଟିଆମାନ ବୋହି ସେ ଜାଗାକୁ ଆସିଥିଲେ । କର୍ମଚାରୀମାନେ ଶୃଙ୍ଖଳା ରକ୍ଷା କରିବାକୁ ଚେଷ୍ଟାକରି ସେମାନଙ୍କୁ ବାରମ୍ବାର ସେଠୁ ଘଉଡ଼ାଉ ଥାନ୍ତି କିନ୍ତୁ ତହିଁରେ କିଛି ଫଳ ହେଉନଥାଏ । କର୍ମଚାରୀମାନଙ୍କୁ ଭ୍ରୂକ୍ଷେପ ନକରି ସୈନିକ ମାନେ ସେଠି ଖଟିଆକୁ ଆଉଜି ଠିଆହୋଇ ସାମ୍ନାରେ ଯାହା ଘଟିଯାଉଛି ସେଆଡ଼କୁ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁ ରହିଥାନ୍ତି, ସତେ ଯେପରି ସେ ଦୃଶ୍ୟ ଭିତରେ କ'ଣ ସମସ୍ୟାକୁ ସେମାନେ ସମାଧାନ କରୁଥାନ୍ତି । ତମ୍ବୁ ଭିତରୁ ଶୁଭୁଥାଏ ଜଣେ କିଏ ବଡ଼ ପାଟିରେ ରାଗରେ ବାହୁନି ହେଉଥାଏ । ଅନେକ ବିକଳ ଆର୍ତ୍ତନାଦ ଶୁଭୁଥାଏ । ମଝିରେ ମଝିରେ ଜଣେ ଡାକ୍ତରଙ୍କ ସାହାଯ୍ୟକାରୀ ପାଣି ପାଇଁ ଧାଇଁ ଆସୁଥାଏ । ନଁ ହେଲେ ତାପରେ ହାତ ଦେଖାଇ ଦେବାକୁ ଯନ୍ତାକୁ ଦୌଡ଼ି ଆସୁଥାଏ । କେତେବେଳେ ତମ୍ବୁ ଭିତରକୁ ଯିବାକୁ ସେମାନଙ୍କର ପାଳି ପଡ଼ିବ ସେଇଥି ପାଇଁ ଅପେକ୍ଷା କରି ରହି ଆହତ ଲୋକମାନେ ଫମ୍ପା

ସ୍ୱରରେ ଗାଁ ଗାଁ ହେଉଥାନ୍ତି, କି ଆର୍ତ୍ତନାଦ କରୁଥାନ୍ତି, କି କାନ୍ଦୁଥାନ୍ତି ବା ପାଟି କରୁଥାନ୍ତି, ଗାଳି ନିସ୍ୱନ ପକାଉ ଥାନ୍ତି କି ଅବା ଅଧିକା ମଦ ଦିଅ ବୋଲି ମାଗୁଥାନ୍ତି । କେତେବେଳେ ରୋଗରେ ପ୍ରଳାପ କରୁଥାନ୍ତି । ପ୍ରିନସ୍ ଆନ୍ଦ୍ରେ ଜଣେ ସେନାପତି ବୋଲି ଆହତ ଚିକିତ୍ସା ନ ପାଇବା ଦଳଦଳ ଲୋକଙ୍କ ଭିତରେ ତାଙ୍କୁ ବୋହି ନେଇ ଗୋଟାଏ ତମ୍ବୁର ଅତି ପାଖକୁ ଅଣାଗଲା । ତାପରେ ଅନ୍ୟ ଆଦେଶ ପାଇବା ପାଇଁ ତାଙ୍କ ବୁହାଳିମାନେ ଅପେକ୍ଷା କରି ରହିଲେ । ପ୍ରିନସ୍ ଆନ୍ଦ୍ରେ ଆଖି ଖୋଲିଲେ । ତାଙ୍କ ଚାରିପଟେ କ'ଣ ହେଉଛି ସେ କଥା ସେ ବହୁତ ବେଳପାକେ କିଛି ବୁଝି ପାରିଲେ ନାହିଁ । ଘାସ ପଡ଼ିଆ ବାସନା ଫୁଲ ବୁଦା, ଉଡ଼ୁଥିବା କଳା ପେଣ୍ଡୁଟା, ଜୀବନ ପ୍ରତି ତାଙ୍କର ଯେଉଁ ମମତା ଆଉ ଆବେଗରେ ମାଡ଼ି ଆସିଥିଲା, ଏସବୁ ତାଙ୍କର ମନେ ପଡ଼ିଲା । ତାଙ୍କଠୁ ଦୁଇ ପାହୁଣ୍ଡ ଦୂରରେ ଗୋଟାଏ ଗଛ ଡାଳକୁ ଆଉଜି ଜଣେ ସୁନ୍ଦର ଚେହେରାର ଡେଙ୍ଗା ସାର୍ଜେଣ୍ଟ ଠିଆ ହୋଇଥାଏ, ତା ମୁଣ୍ଡ ବାଳ କଳା । ତା ମୁଣ୍ଡରେ ଆଉ ଗୋଡ଼ରେ ଗୁଳି ଲାଗିଛି ବାଜିଥାଏ । ସେ ବଡ଼ ପାଟିରେ କଥା କହୁଥାଏ ଓ ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରୁଥାଏ । ତା ଚାରିପଟେ ଦଳେ ଆହତ ଲୋକ ଓ ଖଟିଆ ବୁହାଳି ବେଢି ଯାଇଥାନ୍ତି ସେ ସେ ଯାହା କହୁଥାଏ ତାକୁ ଉତ୍କଣ୍ଠାର ସହିତ ଶୁଣିଯାଉଥାନ୍ତି ।

ସୈନିକଟି ଚାରିଆଡ଼କୁ ଚାହୁଁଥାଏ, ଆଉ କ'ଣ କଥା ଭାବୁଥାଏ । ଜରୁଆ ଲୋକର ଆଖିପରି ତାର କଳା କଳା ଆଖି ଜକ ଜକ ଦିଶୁଥାଏ । ସେ ବଡ଼ ପାଟି କରୁଥାଏ –

"ଆମେ ଲଗାଇ ଲଗାଇ ତାକୁ କୁଟି ପକାଉ ଥାଉଁ, ସେଉଠୁ ସେ ସବୁ ଛାଡ଼ିଦେଲା । ଆମେ ନିଜେ ତା ରାଜାକୁ ଧରିନେଲୁ । କଳକା ସୈନ୍ୟମାନେ ଠିକଣା ବେଳରେ ଆସି ପହଞ୍ଚି ଯାଇଥାନ୍ତି । କରେ ! ତେବେ ତାର ଆଉ ପତ୍ତା ରହିନଥାନ୍ତା ବାବୁରେ, କାହିଁକିନା ମୁଁ ତମକୁ କହୁଛି ଯେ ···"

କହୁବା ଲୋକଟିର ଗୃହଆଡ଼େ ଠିଆ ହୋଇଥିବା ଲୋକେ ଯେମିତ ତାକୁ ଚାହିଁଥିଲେ ପ୍ରିନ୍‌ସ ଆନ୍ଦ୍ରେ ସେମିତ ଉଜ୍ଜଳ ଆଖିରେ ତା ଆଡ଼କୁ ଚାହିଁଲେ । ତାଙ୍କୁ ଟିକଏ ଆଗ୍ରହ ଲଗିଲା । ସେ ଭାବଲେ, ' କଣ ହେବ ? ଅଇଗ୍ଭ ସେ ଏକ କଥା ନୁହେଁ କ ? ସେଠି ଆଉ କ'ଣ ହେବ ? ଏଠି ବା କ'ଣ ହୋଇଛି ? ମୁଁ ଜୀବନଟା ହରାଇବାକୁ ଏଡ଼େ ଦୁଃଖିତ ହେଲ କାହିଁକ ? ଏ ଜୀବନରେ କ'ଣ ଗୋଟାଏ ରହିଥିଲା ଯାହାକୁ ମୁଁ ବୁଝିପାରଲ ନାହିଁ କ ଏବେ ବ ବୁଝି ପାରୁନାହିଁ ।''

ତମ୍ବୁ ଭିତରୁ ଜଣେ ଡାକ୍ତର ପଦାକୁ ବାହାର ଆସିଲେ । ସେ ଯେଉଁ ଗ୍ଭଦର ବେଢ଼େଇ ହୋଇଥାନ୍ତି ସେଥିରେ ରକ୍ତର ଦାଗ ଲଗିଥାଏ । ତାଙ୍କ ହାତ ପାପୁଲ ଯୋଡ଼କ ସାନ ସାନ । ସେଥିରେ ମଧ ରକ୍ତ ଲଗିଥାଏ । ଗୋଟାଏ ହାତରେ ସେ ଗୋଟାଏ ପିକା ଧରଥାନ୍ତି । ବୁଢ଼ା ଆଙ୍ଗୁଠି ଆଉ କାଣି ଆଙ୍ଗୁଠିରେ ସେ ଖୁବ୍ ଯତ୍ନରେ ପିକାଟାକୁ ଧରଥାନ୍ତି ଯେପରକ ସେଥିରେ ବ ରକ୍ତ ଲଗିନଯିବ । ଡାକ୍ତର ମୁଣ୍ଡକୁ ପଛକୁ ଗ୍ଭଟିଦେଇ ଗ୍ଭରଆଡ଼କୁ ଗ୍ଭହିଁଲେ । କନ୍ତୁ ତାଙ୍କର ଦୃଷ୍ଟି, ସେ ଦଳ ଦଳ ଆହତ ମୁଣ୍ଡ ଉପର ଦେଇ ଗ୍ଭଲଗଲ । ଲଗୁଥାଏ ଯେପରକ ସେ ଟିକଏ ବଶ୍ରାମ ନେଉ଼ଥାନ୍ତି । ସେ ଅଳ୍ପ କେତେ ମିନଟ୍ ଡାହାଣରୁ ବାଁକୁ ମୁଣ୍ଡ ବୁଲେଇ ଆଣି ଦୀର୍ଘ ନିଃଶ୍ୱାସ ପକାଇ ତଳକୁ ମୁହଁ ପୋତଲେ ।

ଜଣେ ସାହାଯ୍ୟକାରୀ ପ୍ରିନ୍‌ସ ଆନ୍ଦ୍ରେଙ୍କ ଆଡ଼କୁ ହାତ ବଢ଼ାଇ ଡାକ୍ତରଙ୍କୁ ଦେଖାଇ ଦେବାରୁ ସେ କହଲେ—

''ଆଚ୍ଛା, ବର୍ତ୍ତମାନ ଆଣ ।'' ସେ ଖଟିଆ ବୁହାଳମାନଙ୍କୁ ତାଙ୍କୁ ତମ୍ବୁ ଭିତରକୁ ନେଇ ଆସିବାକୁ କହଲେ ।

ଯେଉଁ ଆହତ ଲୋକମାନେ ଅପେକ୍ଷା କର ରହିଥିଲେ ତାଙ୍କ ଭିତରେ ଗୋଟାଏ ପାଟି ଭୁଣ୍ଡ ହେଲା ।

ଜଣେ କିଏ କହଲ ''ପରକାଳରେ ବ ଖାଲ ବଡ଼ ଲୋକମାନେ ମଜା ମାରୁଥିବେ ।''

ପ୍ରିନ୍‌ସ ଆନ୍ଦ୍ରେଙ୍କୁ ଭିତରକୁ ନିଆ ହୋଇ ଗୋଟାଏ ଟେବୁଲ ଉପରେ ଶୁଆଇ ଦିଆଗଲା । ଟେବ୍‌ଲଟା ସେତିକି କ୍ଷଣିକା ଖାଲି ହୋଇଥାଏ ଯେ ଜଣେ ସାହାଯ୍ୟକାରୀ ତାଙ୍କୁ ପୋଛି ପକାଉଥାଏ । ତମ୍ବୁ ଭିତରେ କ'ଣ ଅଛି ପ୍ରିନ୍‌ସ ଆନ୍ଦ୍ରେ ପରିଷ୍କାର କରି ତାକୁ ବାରି ପାରିଲେ ନାହିଁ । ଚାରିଆଡ଼ୁ ଯେଉଁ ବିକଳ ଆର୍ତ୍ତନାଦ ଶୁଭୁଥିଲା ଆଉ ତାଙ୍କ ନିଜ ଜଙ୍ଘରେ ତଳ ପେଟରେ ଓ ପିଠିରେ ଯେଉଁ ଉତ୍କଟ ଯନ୍ତ୍ରଣା ହେଉଥିଲା ତହିଁରେ ତାଙ୍କ ଧ୍ୟାନ ରହିଥିଲା । ଚାରିଆଡ଼େ ସେ ଯାହା ଦେଖୁଥାନ୍ତି ସବୁ ଏକାଠି ଆକୃତି ହୋଇଯାଇ କେବଳ ଗୋଟାଏ ଧାରଣା ତାଙ୍କୁ ମିଳୁଥାଏ, ସେ ଧାରଣା କେବଳ ରକ୍ତ ବୋଳା ଫୁଙ୍ଗାମଣିଷ ମାଂସର; ନୁଆଁଣିଆ ତମ୍ବୁ ଭିତର ଯାକ ଖାଲି ତାହାର ଧାରଣାରେ ପୂର୍ଣ୍ଣ ହୋଇ ରହିଥାଏ ।

ତମ୍ବୁ ଭିତରେ ତିନିଟା ଟେବୁଲ୍ ପଡ଼ିଥାଏ । ଯୋଡ଼ାକରେ ଲୋକଥାନ୍ତି, ତୃତୀୟଟାରେ ପ୍ରିନ୍‌ସ ଆନ୍ଦ୍ରେଙ୍କୁ ଶୁଆଇ ଦିଆହେଲା । କିଛି ସମୟ ପର୍ଯ୍ୟନ୍ତ ତାଙ୍କ ପାଖକୁ କେହି ଆସିଲେ ନାହିଁ, ତେଣୁ ନିଜେ ଇଚ୍ଛା ନକରି ମଧ୍ୟ ଆର ଦୁଇ ଟେବୁଲରେ କ'ଣ ହେଉଛି ତା ତାଙ୍କୁ ଦେଖିବାକୁ ପଡ଼ିଲା । ତାଙ୍କଠାରୁ ଯେଉଁ ଟେବୁଲ୍‌ଟା ଟିକିଏ ପାଖ, ତାହାର ଉପରେ ଜଣେ ଲୋକ ବସିଥାଏ । ତା ପାଖରେ ଯେଉଁ ପୋଷାକଟା ଖୋଲାହୋଇ ଫୋପଡ଼ା ହୋଇଥାଏ ତାକୁ ଦେଖିଲେ ଜଣାଯାଉଥାଏ ଯେ ସମ୍ଭବତଃ ସେ କୋସାକ ସୈନ୍ୟ ଦଳର ଜଣେ ସୈନିକ । ଚାରିଜଣ ସୈନିକ ତାକୁ ମାଡ଼ି ବସିଥାନ୍ତି । ଜଣେ ଚଷମା ପିନ୍ଧା ଡାକ୍ତର ତା ପିଠିର ଗୋଟାଏ କ'ଣ ବାଦାମି ବର୍ଣ୍ଣର କଣ ଗୋଟାଏ କାଟି ପକାଉଥାନ୍ତି ।

"ଉଃ ! ଉଃ ! ଉଃ !" ତାହାର ଲୋକଟି ହଚର୍‌ ଘୁଷୁରୁ ଥାଏ । ତାପରେ ହଠାତ ତାର ମାଉଁସିଆ ଖରରେ ସିଦ୍ଧା ଟେକା ମୁହଁଟିକି ଉହୁଁ କେଇ ଧଳା ଧଳା ଦାନ୍ତ ବାହାରକରି ସେ ଭିଡ଼ ମୋଡ଼ ଗୁଡିପିଡି ହୋଇ ଏକାବେଳାରେ ଗୋଟାଏ ନଟରା କାନଫଟା ବୋବାଳି ଛାଡ଼ିଲା ।

ଆର ଟେବୁଲ୍ର ଚାରିକରେ ବହୁତ ମଣିଷ ଠିଆ ହୋଇଥାନ୍ତି । ସେ ଟେବୁଲ ଉପରେ ଗୋଟାଏ ଆକାରର ମୋଟାମଣିଷର ପିଠି ମାଡ଼ପଡ଼ି ଥାଏ, ମୁଣ୍ଡକୁ ଢଳେଇ ଦେଇଥାଏ । ତା ମୁଣ୍ଡର କୁଞ୍ଚୁକୁଞ୍ଚିଆ ବାଲ, ତା

ବାଳର ରଙ୍ଗ ଆଉ ତାର ଆକାର ପ୍ରିନ୍ସ ଆନ୍ଦ୍ରେଙ୍କୁ ବିଚିତ୍ର ପ୍ରକାର ଚିହ୍ନା ଚିହ୍ନା ଲାଗୁଥାଏ । ବହୁତ ଚକଚକ ସାହାଯ୍ୟକାରୀ ତାକୁ ମାଡ଼ି ବସିଥାନ୍ତି । ତାର ଗୋଟାଏ ଗୋଡ଼ ସବୁବେଳେ ହଲ ହଲ ହେଉଥାଏ । ମଝିରେ ମଝିରେ ଶିରାମାନ ଉଠିଲାପରି ଗୋଡ଼ଟା ଛଟ୍ ଛଟ୍ ହେଉଥାଏ । ଧଳା ମାଉଁସିଆ ଗୋଡ଼ଟାଏ । ଲୋକଟା କଇଁ କଇଁ ହୋଇ ଥରି ଥରି କାନ୍ଦୁଥାଏ । ଦୁଇଜଣ ଡାକ୍ତର ଚୁପ୍ ଚାପ୍ ହୋଇ ତାର ଆର ଗୋଡ଼ଟାରେ କ'ଣ କରୁଥାନ୍ତି । ସେ ଗୋଡ଼ଟା ନାଲିଆ ଦିଶୁଥାଏ । ରକ୍ତରେ ଜୁଡୁବୁଡୁ ହୋଇଥାଏ । ଡାକ୍ତର ଦୁଇଜଣଙ୍କ ଭିତରୁ ଜଣେ ଥରୁଥାନ୍ତି । ତାଙ୍କ ମୁହଁ ଶୁଖିଯାଉ ଥାଏ ।

ତାପରେ ଲୋକଟିର କାମସାରି ତା ଉପରେ ଗୋଟାଏ ଘୋଡ଼ାହେଲା ଘୋଡେଇଦେଇ ଚଷମା ପିନ୍ଧା ଡାକ୍ତର ଜଣକ ପ୍ରିନ୍ସ ଆନ୍ଦ୍ରେଙ୍କ ପାଖକୁ ଆସିଲେ । ସେ ତାଙ୍କ ମୁହଁକୁ ଚାହିଁ ଦେଇ ତରତର ହୋଇ ଚାଲିଗଲେ । ସେ ତାଙ୍କ ସାହାଯ୍ୟକାରୀ ଉପରେ ପାଟିକଲେ "ତାଙ୍କ ଦେହରୁ ଲୁଗାପଟା ଖୋଲୁନା କାହିଁକି ? କାହିଁକି ଅଙ୍ଗେଇ ଅଙ୍ଗେଇ ହେଉଛ ।"

ଡାକ୍ତରଙ୍କ ସାହାଯ୍ୟକାରୀ ଯେତେବେଳେ ଆସି କାମିଜର ହାତ ଉପରକୁ ଟେକିଦେଇ ତରତର କରି ତାଙ୍କ ପୋଷାକର ବୋତାମ ଖୋଲିପକାଇ ଲୁଗାପଟା କାଢ଼ିନେଲେ, ସେତେବେଳେ ପ୍ରିନ୍ସ ଆନ୍ଦ୍ରେଙ୍କ ସ୍ମରଣରେ ବହୁତ ଦିନ ତଳର ତାଙ୍କର ଛୁଆବେଳର କଥା ମନେପଡ଼ିଲା । ଡାକ୍ତର ତାଙ୍କ କ୍ଷତ ଜାଗା ଉପରେ ନଇଁ ପଡ଼ିଲେ । ହାତ ମାରି ଦେଖିଲେ ତାପରେ ଏକ ଦୀର୍ଘନିଃଶ୍ୱାସ ଛାଡ଼ିଲେ । ସେଇଠୁ ସେ ଆଉଜଣକୁ କ'ଣ ଠାରିଲେ । ତଳ ପେଟ ଭିତରେ ଅସହ୍ୟ ଯନ୍ତ୍ରଣା ହେବାରୁ ପ୍ରିନ୍ସ ଆନ୍ଦ୍ରେ ଅଚେତ୍ ହୋଇପଡ଼ିଲେ । ତାଙ୍କର ଚେତା ହେଲାବେଳକୁ ତାଙ୍କ ଜଙ୍ଘ ହାଡ଼ ଯାହା ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଯାଇଥିଲା ତାକୁ କାଢ଼ିନିଆ ହୋଇସାରିଥିଲା । ଆବୁଡ଼ା ଖାବୁଡ଼ା ହୋଇ ଯେଉଁ ଖଣ୍ଡ ଖଣ୍ଡ ମାଂସ ବାହାରିଥିଲା ତାକୁ କାଟିନିଆ ହୋଇସାରିଥିଲା ।

ଘା ସିଲେଇ ହୋଇ ସାରିଥିଲା । ତାଙ୍କ ମୁହଁରେ ପାଣିଛିଟି ଦିଆଗଲା । ସେ ଯେମିତି ଆଖି ଖୋଲିଲେ ଡାକ୍ତର ତାଙ୍କ ଉପରେ ନଇଁପଡ଼ି କିଛି ନ କହି ତାଙ୍କ ଓଠରେ ଚୁମ୍ବନ କରି ତରତର ହୋଇ ଚାଲିଗଲେ ।

ଏତେ ଯନ୍ତ୍ରଣା ଭୋଗି ସାରିଲା ଉତ୍ତାରୁ ପ୍ରିନ୍‌ସ ଆନ୍ଦ୍ରେଙ୍କୁ ଘର ଆରାମ ଆଉ ଶାନ୍ତି ଲାଗୁଥାଏ । ବହୁତ ସମୟ ହେଲା ତାଙ୍କୁ ଏଭଳି ଶାନ୍ତି ଜଣା ପଡ଼ିନଥିଲା । ତାଙ୍କ ଜୀବନର ସବୁଠାରୁ ଭଲ ସବୁଠାରୁ ସୁଖର ମୂହୁର୍ତ୍ତଗୁଡ଼ିକ ତାଙ୍କ କଳ୍ପନାରେ ଉଇଁ ଉଠୁଥାଏ । ବିଶେଷତଃ ଶୈଶବର ଆରମ୍ଭ ସମୟଟି, ସେହି ଯେତେବେଳେ ତାଙ୍କ ଦେହରୁ ଲୁଗାପଟା ଓହ୍ଲାଇଦେଇ ତାଙ୍କୁ ଶୁଆଇ ଥକା ହେଉଥିଲା, ଯେତେବେଳେ ତାଙ୍କ ଧାଇମା ବସି ବସି ତାଙ୍କୁ ଶୁଆଇ ପକାଇବାକୁ ଗୀତ ବୋଲୁଥିଲେ, ଆଉ ଯେତେବେଳେ ତକିଆରେ ମୁହଁ ମାଡ଼ିଦେଇ ପଡ଼ିରହି କେବଳ ଜୀବନ କଥା ଭାବିଲେହିଁ ତାଙ୍କୁ ଖୁସି ଲାଗୁଥିଲା । ସେହି ଦିନଗୁଡ଼ିକ ଅତୀତ ହିସାବରେ ତାଙ୍କ କଳ୍ପନାରେ ଭାସି ଉଠୁନଥିଲା ଯେ ଲାଗୁଥିଲା ସତ ଯେପରିକି ତାହାହିଁ ବର୍ତ୍ତମାନ ।

ଯେଉଁ ଆହତ ଲୋକଟିର ମୁଣ୍ଡକୁ ଦେଖି ସେ ଲୋକଟି ପ୍ରିନ୍‌ସ ଆନ୍ଦ୍ରେଙ୍କୁ ଚିହ୍ନା ଚିହ୍ନା ଲାଗୁଥିଲା, ଡାକ୍ତରମାନେ ତାହାର ଉପରେ କାମରେ ଲାଗିଥାନ୍ତି । ସେମାନେ ତାକୁ ଟେକୁଥାନ୍ତି ଆଉ ତାକୁ ବୋଧ ଶୋଧ କରି କହୁଥାନ୍ତି । "ଉଃ ! ଓହୋହୋ ! ଉହୁହୁ ! ମତେ ଦେଖାଅ ! ମୁଁ ତାକୁ ଦେଖିବି !" ପ୍ରିନ୍‌ସ ଆନ୍ଦ୍ରେଙ୍କୁ ଶୁଭୁଥାଏ ! ତାର ଉତ୍ପୀଡ଼ିତ କରୁଣ ବିଳାପ । ମଝିରେ ମଝିରେ ସେ କାନ୍ଦ ପକାଉଥାଏ । ତାର ବିଳାପ ଧ୍ୱନି ଶୁଣି ପ୍ରିନ୍‌ସ ଆନ୍ଦ୍ରେଙ୍କୁ ବି କାନ୍ଦ ମାଡ଼ୁଥାଏ । ହୁଏତ କୌଣସି ଯଶ ନପାଇ ସେ ଖାଲି ଏମିତି ମରିବାକୁ ବସିଥାନ୍ତି ବୋଲି, କି ମରିବାକୁ ଯାଉଛନ୍ତି ବୋଲି ତାଙ୍କ ମନରେ ଦୁଃଖ ହେଉଥାଏ ଯେଉଁ ପିଲାକାଳ ଆଉ ଫେରିଆସିବ ନାହିଁ ତାହାର ସ୍ମୃତି ମନେ ପଡ଼ିଯାଉଥାଏ ବୋଲି, କି ତାଙ୍କ ନିଜର ଯନ୍ତ୍ରଣା ହେଉଥାଏ ବୋଲି କି ଅନ୍ୟମାନେ ଯନ୍ତ୍ରଣାରେ ଛଟ ପଟ ହେଉଛନ୍ତି ଆଉ ସେ ଲୋକଟା ଏତେ

ବିକଳ ହୋଇ କାନ୍ଦୁଛନ୍ତି ବୋଲି, ଏମିତି କୌଣସି କାରଣରୁ ତାଙ୍କରିବ ମନେହେଉଥାଏ ସେ ପିଲାପରି ହୁଅନ୍ତେ, ଖୁବ୍ ଭଲ ଲୋକ ହୁଅନ୍ତେ, ସମ୍ପୂର୍ଣ୍ଣ ନହେଲେବି ବହୁପରିମାଣରେ ସୁଖଶାନ୍ତିରେ ରହନ୍ତେ । ଆହତ ଲୋକଟି ଆଗରେ ସେମାନେ ଆଣି ତାର କଟାହୋଇଥିବା ଗୋଡ଼ଟାକୁ ଦେଖାଇଲେ । ସେ ଗୋଡ଼ରେ ପାଦରେ ଗୋଟାଏ ବୁଟ୍ ଜୋତା ଥାଏ । ସେ ଗୋଡ଼ଟାଯାକ ଶୁଖିଲା ରକ୍ତ ବୋଳି ହୋଇଥାଏ । "ଉହୁହୁ !" ଲୋକଟା ଗୋଟାଏ ସ୍ତ୍ରୀ ଲୋକ କାନ୍ଦିଲା ପରି କାନ୍ଦିଲା । ଯେଉଁ ଡାକ୍ତର ତା ପାଖରେ ଠିଆ ହୋଇଥିଲେ ସେ ମୁହଁ ଘୋଡ଼ାଇ ଦୂରକୁ ଚାଲିଗଲେ ।

ପ୍ରିନ୍ସ ଆନ୍ଦ୍ରେ କାବାହୋଇ ମନେ ମନେ ଭାବୁଥାନ୍ତି "ହାୟ ଭଗବାନ ! ଏ କେମିତି ହେଲା । ଏ ଲୋକଟା ଏଠି କୁଆଡ଼େ ।"

ସେହି ନବଶ୍ରୟ ହତଭାଗ୍ୟ କାନ୍ଦୁଥିବା ଲୋକଟା ଯାହାର ଗୋଡ଼କଟା ହୋଇଥାଏ, ସେ ଚିହ୍ନିପାରିଲେ ଯେ ସେ ଲୋକଟା ଆନାତୋଲ କୁରଗିନ । ସେମାନେ ଯାହାକୁ କୁଣ୍ଢାଇ ଧରିଥାନ୍ତି, ଯାହାକୁ ପାଣି ଗ୍ଲାସେ ପିଇବାକୁ ଯାଚୁଥାନ୍ତି, ଯେ ତାର ଫୁଲିଯାଇଥିବା ଥର ଥର ଓଠ ସେ ଗିଲାସର ଫନ୍ଦଯାକେ ପହଞ୍ଚିପାରୁନଥାଏ ସେ ଲୋକଟା— ଆନାତୋଲ । ଆନାତୋଲ କାନ୍ଦି କାନ୍ଦି ଦେହ ଥରେଇ ଥରେଇ ନିଃଶ୍ୱାସଟାଏ ଓଟାରିଦେଲା । ତାଙ୍କ ଆଗରେ ଯାହାପୁଣି ରହିବ ସେ ବିଷୟରେ ପ୍ରିନ୍ସ ଆନ୍ଦ୍ରେଙ୍କର ପରିଷ୍କାର ଧାରଣା ନଥାଏ ଯେ ସେ ଭାବୁଥାନ୍ତି "ହଁ ଏ ସେଇ ! ହଁ । ସେଇ ଲୋକଟା କେମିତି ଗୋଟାଏ ଅତି ଘନିଷ୍ଠ ଭାବେ ମୋ ସଙ୍ଗରେ ଛନ୍ଦାଚନ୍ଦ ହୋଇରହିଛି ଅଥଚ ଆମ ବନ୍ଧନଟା ଅତି ଦୁଃଖର । ମୋର ପିଲାଦିନେ ବି ମୋ ଜୀବନ ସଙ୍ଗରେ ଏ ଲୋକଟାଏ କି ସଂପର୍କ ଅଛି ?" ତାର ଉତ୍ତର ନପାଇ ମନକୁ ମନ ସେ ଏହିପରି ପଚାରୁଥାନ୍ତି । ପ୍ରେମ ଓ ଶୁଦ୍ଧତାମୟ ଶୈଶବର ଦୁନିଆ ଭିତରୁ ହଠାତ୍ ଗୋଟିଏ ନୂଆ ଆଉ ଅପ୍ରତ୍ୟାଶିତ ସ୍ମୃତି ତାଙ୍କ ଆଗରେ ଉଠିପଡ଼ି ଠିଆହେଲା । ସେ ନାତାଶାକୁ ମନେ ପକାଇଲେ ସେ ଯେପରି ସେ ତାକୁ ୧୮୧୦ ସାଲରେ ଗୋଟିଏ ନାଚ ଉତ୍ସବରେ ପ୍ରଥମ ଥର

ଦେଖିଥିଲେ, ତାର ବେକ ଆଉ ହାତ ଥିଲା ସରୁ ସରୁ । ତା ମୁହଁ ଖୁସି ଖୁସି ଅଥଚ ଡର ଡର ଦିଶୁଥିଲା ଚରମ ସୁଖ ଅନୁଭୂତିରେ ମାତିଯିବା ପାଇଁ ସେ ଯେପରିକି ପ୍ରସ୍ତୁତ ହୋଇରହିଛି । ଆଗଠୁ ଦୃଢ଼ତରେ ଆଉ ଅଧିକ ସ୍ନେହଶୀତଳ ହୋଇ ତା ପ୍ରତି ତାଙ୍କର ପ୍ରେମ ଓ କରୁଣା ଉଚ୍ଛୁଳି ଉଠିଲା । ଏଇ ଯେଉଁ ଲୋକଟା ଗୋଟାଏ ଗୋଳମାଳିଆ ଦୃଷ୍ଟିରେ କାନ୍ଦଣା ମଝିରେ ତାଙ୍କଆଡ଼କୁ ଚାହିଁ ରହିଛି, ଯାହାର ଫୁଲିଲା ଫୁଲିଲା ଆଖିରେ ଲୁହ ପୂରି ରହିଛି ସେ ଆଉ ତାଙ୍କ ମଧ୍ୟରେ କି ବନ୍ଧନ ରହିଛି ତାହା ତାଙ୍କର ମନେ ପଡ଼ିଗଲା । ପ୍ରିନ୍‌ସ ଆନ୍ଦ୍ରେ ସବୁକଥା ହେଭୁକଲେ । ତାଙ୍କର ସୁଖୀ ହୃଦୟ ଏଇ ଯନ୍ତ୍ରଣାଦଗ୍ଧ ଲୋକଟା ପ୍ରତି ଅପାର କରୁଣା ଆଉ ସ୍ନେହରେ ପରିପୂର୍ଣ୍ଣ ହୋଇଉଠିଲା ।

ଆଉ ପ୍ରିନ୍‌ସ ଆନ୍ଦ୍ରେ ଆପଣଙ୍କୁ ରୋକି ପାରିଲେ ନାହିଁ । ଏଥର ସେ କାନ୍ଦି ପକେଇଲେ । ସେ କାନ୍ଦଣାରେ ଥିଲା ସାଧାରଣ ମନୁଷ୍ୟ-ଗୋଷ୍ଠୀ ପାଇଁ ସ୍ନେହ ଓ କରୁଣା, ପୁଣି ଆପଣାରେ ଥିଲା ସାଧାରଣ ମନୁଷ୍ୟର ଭୁଲ ଭ୍ରାନ୍ତି ପାଇଁ ଅନୁଶୋଚନା । ଆଉ ନିଜର ଭୁଲଭ୍ରାନ୍ତି ପାଇଁ ।

"ସହାନୁଭୂତି । ଆମର ଭାଇମାନଙ୍କ ପ୍ରତି ସ୍ନେହ । ଯେଉଁମାନେ ଆମକୁ ଭଲ ପାଆନ୍ତି ସେମାନଙ୍କ ପ୍ରତି ସ୍ନେହ, ଯେଉଁମାନେ ଆମ୍ଭମାନଙ୍କ ପ୍ରତି ବିଦ୍ୱେଷ ଭାବ ରଖିଛନ୍ତି, ସେମାନଙ୍କ ପ୍ରତି ସ୍ନେହ । ଆମର ଶତ୍ରୁମାନଙ୍କ ପ୍ରତି ସ୍ନେହ । ସେହି ପ୍ରେମହିଁ ଭଗବାନ ଏ ପୃଥିବୀରେ ପ୍ରଚାର କରିଥିଲେ । ସେହି ମୋତେ ଶିଖାଉଥିଲା ଅଥଚ ମୁଁ ବୁଝିପାରିଲି ନାହିଁ ।

ସେଇଥିପାଇଁ ତ ଏ ଜୀବନଟା ଛାଡ଼ି ଯିବାକୁ ମୋ ମନରେ ଦୁଃଖ ହେଉଛି, ବଞ୍ଚିଗଲେ ସେତିକି ହୋଇଥାନ୍ତା ମୋର ସମ୍ବଳ । କିନ୍ତୁ ବର୍ତ୍ତମାନ ବହୁତ ଡେରି ହୋଇଗଲା, ମୁଁ ସେ କଥାବି ଜାଣେ ।"

ହତାହତ ଲୋକଙ୍କୁ ଚାହିଁ ଚାହିଁ ଦେଖିବାକୁ ନେପୋଲିଅନଙ୍କୁ ଭଲ ଲାଗୁଥିଲା । ସେ ଭାବୁଥିଲେ ଯେ ସେପରି ଚାହିଁ ଦେଖିବା ଦ୍ୱାରା ତାଙ୍କର ନିଜର ଆତ୍ମା ଯେ ଅପରାଜେୟ ଏହିକଥା ପ୍ରମାଣିତ ହୁଏ ।

କିନ୍ତୁ ଏଥର ସେ ଗଭୀର ଭାବେ ଅଭିଭୂତ ହୋଇ ପଡ଼ିଲେ । ସେ ଯୁଦ୍ଧ ଭୂମିରେ ଗଦା ଗଦା ହୋଇ ହତାହତ ଲୋକ ପଡ଼ିରହିଥିଲେ । ସେ ଦୃଶ୍ୟ ଦେଖିଲେ, ଏଣେ ତାଙ୍କ ମୁଣ୍ଡ ଭାରି ଭାରି ଲାଗୁଥାଏ । ସେ ସମ୍ବାଦ ପାଇଲେ ଯେ ଏହି ହତାହତ ଲୋକଙ୍କ ଭିତରେ ତାଙ୍କର ଅତି ପରିଚିତ ପ୍ରାୟ କୋଡ଼ିଏ ଜଣ ସେନାପତି ବି ଅଛନ୍ତି । ସେ ଜାଣିପାରିଲେ ଯେ ଏକଦା ତାଙ୍କର ଯେଉଁ ସେନାବାହିନୀ ଅତି ପ୍ରବଳ ପରାକ୍ରାନ୍ତ ହୋଇଥିଲା ସେ ବର୍ତ୍ତମାନ କ୍ଳୀବ ଓ ଅକ୍ଷମ ହୋଇପଡ଼ିଛି । ଏହି ସବୁ କାରଣମାନ ଏକାଠି ହୋଇ ତାଙ୍କ ଉପରେ ଏପରି ଭାବେ ପ୍ରଭାବ ପକାଇଲା ଯେ ତାହା ଏକାବେଳେକେ ଅପ୍ରତ୍ୟାଶିତ ।

ସେ ଦିନ ଯୁଦ୍ଧଭୂମିର ସେହି ବିଭୀଷିକାମୟ ଦୃଶ୍ୟ ତାଙ୍କର ଅପରାଜୟ ଆତ୍ମାକୁ ପରାଭୂତ କଲା । ସେହି ଯାହାକୁ ସେ ଭାବୁଥିଲେ ତାଙ୍କର ପ୍ରତିଭା ବୋଲି ଆଜି ତାଙ୍କ ଠେକ ଓ ବଡ଼ ପଣର ପ୍ରମାଣ ବୋଲି ।

ସେ ଯୁଦ୍ଧ ଭୂମିରୁ ଅତି ଚଞ୍ଚଳ ଫେରିଯାଇ ସେଭାର୍ଦିନୋକୁ ଲେଉଟି ଗଲେ । ତାଙ୍କ ମୁହଁ ହଳଦିଆ ପଡ଼ିଯାଇଥାଏ । ଫୁଲିଲା ଫୁଲିଲା ଯୁଣୁକା ଯୁଣୁକା ଦିଶୁଥାଏ । ବିବର୍ଣ୍ଣ ଦିଶୁଥାଏ । ଆଖିରେ ତେଜ ନ ଥାଏ । ନାକ ନାଲି ପଡ଼ିଯାଇଥାଏ । ସ୍ୱର ବସିଯାଇଥାଏ । ପାଣିଝୁ ଶୁଭୁଥାଏ । ସେ ଗୋଟିଏ ଟୁଲ୍ ଉପରେ ବସିଥାନ୍ତି, ମୁହଁ ତଳକୁ ଥାଏ, ମନ ଅଜାଣତରେ ଗୁଳି ଶବ୍ଦକୁ କାନ ଡେରିଥାନ୍ତି । ରୋଗୀଲୋକ ଛଟପଟ ହୋଇ ଅପେକ୍ଷା କଲାପରି ସେ ଏ ଯୁଦ୍ଧ ଶେଷ ହେବାକୁ ଅପେକ୍ଷାକରି ରହିଥାନ୍ତି । ନିଜକୁ ଏ ଯୁଦ୍ଧର କ'ଣ ବୋଲି ଭାବିଥିଲେ ଅଥଚ ଏ ଯୁଦ୍ଧ ବନ୍ଦ୍ କରିବା ତାଙ୍କର ସାଧ୍ୟାତୀତ ଥିଲା । ଜୀବନର ଯେଉଁ କୃତ୍ରିମ ଛାୟାରୂପର ସେ ଏତେକାଳ ସେବାକରି ଆସିଲେ ଅନ୍ତତଃ ଟିକି ମୁହୂର୍ତ୍ତକ ପାଇଁ ତା ଉପରେ ବ୍ୟକ୍ତିଗତ ମନୁଷ୍ୟ ସୁଲଭ ଚେତନା ତାଙ୍କଠାରେ ପ୍ରାଧାନ୍ୟ ପାଇଲା । ଯୁଦ୍ଧ ଭୂମିରେ ସେ ଯେଉଁ ମୃତ୍ୟୁ ଓ ଯନ୍ତ୍ରଣାର ଦୃଶ୍ୟମାନ ଦେଖୁଥିଲେ ସେସବୁ ତାଙ୍କ ନିଜ ପ୍ରତି ଘଟିଥିଲେ କ'ଣ ହୋଇଥାନ୍ତା ସେ କଳ୍ପନା କଲେ । ତାଙ୍କ ମୁଣ୍ଡ ଆଉ ଛାତି ଯେ ଭାରି ଭାରି ଲାଗୁଥାଏ ସେଥିକରେ

ତାଙ୍କର ମନେ ପଡ଼ିଲା ଯେ ସେ ନିଜେ ଏପରି ମରିବା ସମ୍ଭବ । ଏପରି ଯନ୍ତ୍ରଣା ପାଇବା ସମ୍ଭବ ସେହି ମୁହୂର୍ତ୍ତରେ ମସ୍କୋ ଅଧିକାର କରିବା କି ଯୁଦ୍ଧ କ୍ଷୟ କରିବା କି ଯଶ ଅର୍ଜିବା ପାଇଁ ତାଙ୍କର ଆଦୌ ପ୍ରାଣ ଡାକୁନଥାଏ (ଆଉ ଅଧିକା ଯଶ ବା ତାଙ୍କର କ'ଣ ହୁଅନ୍ତା ?) ତାଙ୍କର ଗୋଟିଏ କଥାକୁ ମନ ବଳୁଥାଏ,—

ବିଶ୍ରାମ, ଶାନ୍ତି, ମୁକ୍ତି ।

କିନ୍ତୁ ସେ ଯେତେବେଳେ ସେମ୍ୟୁନଭସ୍କୋୟେ ଗାଁରେ ମୁଣ୍ଡିଆ ଉପରେ ଥିଲେ ସେତେବେଳେ ତୋପ ଫଉଜର ପ୍ରଧାନ କର୍ମଚାରୀ ତାଙ୍କ ପାଖରେ ପ୍ରସ୍ତାବ କଲେ ଯେ ସେହି ମୁଣ୍ଡିଆ ଉପରେ ଆହୁରି ଗୁଡ଼ାଏ ତୋପ ଖଞ୍ଜିଦେଲେ କ୍ୟାଜକୋଭୋ ଆଗରେ ଯେଉଁ ରୁଷ୍ ସୈନ୍ୟମାନେ ଅଛନ୍ତି ତାଙ୍କ ଉପରେ ଆହୁରି ତୋପ ଗୁଳିମାଡ଼ ଚଢ଼ାଇଲେ ହୁଅନ୍ତା । ନେପୋଲିଅନ ସେ ପ୍ରସ୍ତାବରେ ରାଜିହୋଇ ଆଦେଶ ଦେଲେ ଯେ ମୁଣ୍ଡିଆ ଉପରେ ତୋପ ଗୁଡ଼ିକ ଖଞ୍ଜିଲେ ଯାହା ଫଳହେବ ସେ ଖବର ତାଙ୍କୁ ଆଣିଦେବାକୁ ପଡ଼ିବ ।

ଜଣେ ଆଡ଼ଜୁଟାଣ୍ଟ ଆସି ସମ୍ବାଦ ଦେଲା ଯେ ସମ୍ରାଟଙ୍କ ଆଜ୍ଞାନୁଯାୟୀ ରୁଷ୍ ପକ୍ଷ ଉପରେ ଦୁଇଶହ ତୋପ ଗୁଳି ବର୍ଷୁଛନ୍ତି କିନ୍ତୁ ତଥାପି ସେମାନେ ଜାଗା ମାଡ଼ି ରହିଛନ୍ତି, ହଟୁ ନାହାନ୍ତି । ଆଡ଼ଜୁଟାଣ୍ଟ କହିଲେ "ଆମ ପକ୍ଷର ଗୁଳିରେ ସେମାନେ ଧାଡ଼ିକି ଧାଡ଼ି କଟାହୋଇ ପଡ଼ୁଛନ୍ତି, କିନ୍ତୁ ତଥାପି ତାଙ୍କର ସୈନ୍ୟମାନେ ଦୃଢ଼ହୋଇ ଠିଆହୋଇଛନ୍ତି ।"

ନେପୋଲିଅନ ଗାଢ଼ ସ୍ୱରରେ କହିଲେ "ସେମାନେ ଆହୁରି ସେଥିରୁ ମାଗୁଛନ୍ତି ।"

ଆଡ଼ଜୁଟାଣ୍ଟ ତାଙ୍କ କଥା ବୁଝି ପାରିଲେ ନାହିଁ, ପଚାରିଲେ "ମଣିମା ?"

ନେପୋଲିଅନ ମୁହଁ ଭ୍ରୂକୁଟୀ କରି ଡାମରକୁଆ ପରି କର୍କଶ ପାଟିରେ ବୋବେଇ ଉଠିଲେ "ସେମାନଙ୍କର ଆହୁରି ବେଶି ଦରକାର, ହଉ ଯାଆନ୍ତୁ ସେମାନେ ।"

ସେତେବେଳକୁ ତାଙ୍କର ବିନା ଆଦେଶରେ ସେ ପ୍ରକୃତରେ ଯାହା ଖୋଜୁନଥିଲେ ତାହା ହୋଇଯାଉଥିଲା ଓ ସେ ଆଦେଶଟା ଖାଲି ଏଇଥି ପାଇଁ ଦେଲେ ଯେ ସେ ଭାବିଲେଯେ ସେ ସେପରି ଆଦେଶ ଦେବେ ବୋଲି ତାଙ୍କଠାରୁ ଆଶା କରାଯାଉନଥିଲା । ପୁଣି ସେ ତାଙ୍କର ସେହି କୃତ୍ରିମ ଜଗତକୁ ଲେଉଟି ଗଲେ, ସେଠି ଅବାସ୍ତବ ବଡ଼ ପଣର କାଳ୍ପନିକ ପ୍ରେତ ରୂପମାନ ବସା ବାନ୍ଧିଥିଲେ । (ଗଡ଼ି ଯାଇଥିବା ଚକରେ ଯୋଗି ହୋଇଥିବା ଘୋଡ଼ା ଯେମିତି ଭାବୁଥିବ ଯେ ସେ ସ୍ୱଇଚ୍ଛାରେ ଧାଉଁଛି ସେମିତି ) ପୁଣି ସେ ଆପଣାକୁ ଆପଣାର ସେହି ବିଧି ନିର୍ଦ୍ଦିଷ୍ଟ କାର୍ଯ୍ୟରେ ଲଗାଇ ସେହି ବିଶାଦମୟ କ୍ଳାନ୍ତିକର ଅମାନୁଷିକ କାର୍ଯ୍ୟ କରିବାକୁ ଲାଗିଲେ ।

ସେଦିନ ଯାହା ଯାହା ଘଟିଲା ଯେଉଁମାନେ ତହିଁରେ ଭାଗ ନେଇ କାର୍ଯ୍ୟ କରୁଥାନ୍ତି ତାଙ୍କ ଉପରେ ସେ କାର୍ଯ୍ୟର ବୋଝ ଯେତିକି ଲଦା ହୋଇନଥାଏ ତାହାଠାରୁ ବେଶି ଲଦା ହୋଇଥାଏ ସେହି ମଣିଷଟା ଉପରେ । ସେହି ଲୋକଟାର ବିବେକ ଯେ କେବଳ ସେହି ଘଣ୍ଟାକ ପାଇଁ କି ସେହି ଦିନକ ପାଇଁ ସେ ଦିନର ସେସବୁ କାଣ୍ଡଯୋଗୁଁ କଳା ପଡ଼ିଗଲା ଖାଲି ସେତିକି ନୁହେଁ, ତାଙ୍କର ଜୀବନ ସରିଯିବା ଯାକେ ଆଉ କେବେହେଲେ ସେ ବୁଝିପାରି ନଥିଲେ ଯେ ଭଲ କ'ଣ, ସତ୍ୟ କଣ, କିମ୍ବା ତାଙ୍କ ଆପଣା କଲା କର୍ମମାନଙ୍କର ତାତ୍ପର୍ଯ୍ୟ କଣ । ତାଙ୍କ ନିଜର କର୍ମମାନ ସତ୍ୟ ଓ ମଙ୍ଗଳକର ।

ଏତେ ଦୂର ବିରୋଧୀ, ମଣିଷ ପଣିଆ କହିଲେ ଯାହା ବୁଝାଏ ତାଠୁଁ ଏତେ ଦୂର ଯେ ଆପଣା କଲା କର୍ମମାନଙ୍କ ତାତ୍ପର୍ଯ୍ୟ ତାଙ୍କ ପକ୍ଷରେ ବୁଝିବା ସମ୍ଭବ ହୋଇନଥିଲା । ତାଙ୍କ କାର୍ଯ୍ୟରେ ଏ ପୃଥିବୀରେ ଅଧିକାଂଶ ଲୋକେ ପ୍ରଶଂସା କରି ଚେଁକୁଥିଲେ ତେଣୁ ସେମାନଙ୍କୁ ତାଙ୍କ କାର୍ଯ୍ୟ ନୁହେଁ ବୋଲି ସେ କହିପାରୁନଥିଲେ । ତେଣୁ ବାଧ୍ୟ ହୋଇ ତାଙ୍କୁ ସତ୍ୟ, ଭଲପଣ ଓ ମଣିଷ ପଣିଆ କହିଲେ ଯାହା କିଛି ବୁଝାଏ ସେ ସବୁ ଅସ୍ୱୀକାର କରିବାକୁ ପଡ଼ିଲା ।

ସେ ଦିନ ଯୁଦ୍ଧ ଭୂମିରେ ଘୋଡ଼ାରେ ଚଢ଼ି ସେ ବୁଲି ବୁଲି ଦେଖୁଥାନ୍ତି । ମୁର୍ଦ୍ଦାର ଗୁଡ଼ାକୁ ଆଉ ଖଣ୍ଡିଆ ଦଣ୍ଡିଆ ମଣିଷ ଗୁଡ଼ାକ ଲଦା ଲଦି ହୋଇ ପଡ଼ିଥାନ୍ତି, (ସେ ଭାବୁଥାନ୍ତି ସେ ସବୁ ତାଙ୍କର ଇଚ୍ଛାଶକ୍ତିର କାର୍ଯ୍ୟର ଫଳ ।) ସେମାନଙ୍କ ଆଡ଼କୁ ଚାହିଁ ଚାହିଁ ସେ ହିସାବ କରୁଥାନ୍ତି ଯେ ଜଣେ ସେଠି ଯେଉଁମାନେ ପଡ଼ିରହିଥାନ୍ତି ସେଥିରେ ଫରାସୀ ଲୋକ ଜଣେ ହେଲେ ରୁଷ ଦେଶର ଲୋକ କେତେଜଣ । ସେ ହିସାବ ସେ ଖାଲି ସେହି ଗୋଟିଏ ଦିନ କଲେ ଏପରି ନୁହେଁ । ପ୍ରତି ଫରାସୀଲୋକ ଜଣକ ଅନୁପାତରେ ପାଞ୍ଚଜଣ ରୁଷ ଲୋକ ଯୁଦ୍ଧ ଭୂଇଁରେ ପଡ଼ିଛନ୍ତି ଏହିପରି ବିଶ୍ୱାସରେ ଆପେ ଖୁସି ହେବାକୁ ଉପାଦାନ ରହିଛି । ଏହି ପରି ଭାବି ସେ ଯେ ଖାଲି ସେହି ଦିନକ ଆପଣାକୁ ଆପେ ଠକିଲେ ଏପରି ନୁହେଁ ।

ଦାଭିଜଭ୍ ପରିବାର ଓ ରାଜାଙ୍କ ଗୁଡ଼ିଆମାନଙ୍କର କ୍ଷେତରେ ପଡ଼ିଆରେ ଯେଉଁଠି ଶହ ଶହ ବର୍ଷଯାକେ ବୋରୋଦିନୋ, ଗର୍କି ସେମ୍ବାର୍ଦ୍ଦିନୋ ଓ ସେମୋପୁନଭ୍‌ସ୍କୋଏ ଗାଁମାନଙ୍କର ଚାଷୀମାନେ ତାଂକର ଫସଲ ଉପୁଜାଇ ଅମଳ କରି ଆସୁଥିଲେ ଆଉ ଗୋରୁ ଚରାଉ ଥିଲେ ସେଠି ନାନା ଜାତିର ପୋଷାକ ପିନ୍ଧି ନାନା ଭଙ୍ଗୀରେ ଅଯୁତ ଅଯୁତ ଲୋକ ବଳାପରି ହଣାଖାଇ ପଡ଼ି ରହିଥାନ୍ତି । ଯୁଦ୍ଧ ଚିକିତ୍ସା କେନ୍ଦ୍ର-ମାନଙ୍କରେ ଦୁଇ ଏକର ପର୍ଯ୍ୟନ୍ତ ଜମିରେ ଘାସ ଆଉ ମାଟି ରକ୍ତରେ ଜୁଡ଼ୁବୁଡ଼ ଯାଇଥାଏ । ନାନା ଅସ୍ତ୍ରଶସ୍ତ୍ର ଧରି ଦଳ ଦଳ ହୋଇ ଆହତ ଲୋକ, ଆହତ ନ ହୋଇଥିବା ଲୋକ ଗୁଡ଼ିଆଁ ମୁହଁ କରି ଗୋଟାଏ ପଟେ ମୋଜହାଇସ୍କ ଆଡ଼କୁ ଆରପଟେ ଭାଲୁଏଭ୍ ଆଡ଼କୁ ଶାନ୍ତ ବିକଳ ହୋଇ ଆପଣାକୁ ଘୋସାରି ଘୋସାରି ଚାଲିଥାନ୍ତି । ଆହୁରି ଦଳ ଦଳ ଲୋକ କ୍ଳାନ୍ତ ହୋଇ ପଡ଼ିଥାନ୍ତି । ଭୋକରେ ପେଟ ଜଳୁଥାଏ । ସେମାନେ ତାଙ୍କ କର୍ମକର୍ତ୍ତାମାନଙ୍କ ଆଦେଶରେ ଯୁଦ୍ଧ କରିବାକୁ ଆଗେଇ ଯାଉଥାନ୍ତି । ଅନ୍ୟମାନେ ଜାଗାମାଡ଼ି ରହିଥାନ୍ତି, ଲାଗିରହି ଗୁଳି ଚଳାଉଥାନ୍ତି ।

ସେହି ସମତଳ ଗୋଟାକଯାକ ଉପରେ ଯେଉଁଠି ସକାଳ ଖରାରେ ବନ୍ଧୁକର ସଙ୍ଗୀନମାନ ଜକ ଜକ ଦିଶୁଥିଲା ଆଉ ପୁଳା ପୁଳା ଧୂଆଁ ଦିଶୁଥିଲା, ଯେଉଁଠି ଆଗ ସବୁ ଏତେ ଉଜ୍ଜଳ ଏତେ ସୁନ୍ଦର ଦିଶୁଥିଲା, ସେଠି ବର୍ତ୍ତମାନ ଝୁଲୁଥାଏ ଧୂଆଁ ଓ ସନ୍ତସନ୍ତିଆ କୁହୁଡ଼ି ମିଶାମିଶି ହୋଇ ଗୋଟାଏ କଳାମେଘ, ଆଉ ରକ୍ତ ଓ ବାରୁଦର ଗନ୍ଧ ମିଶିଯାଇ ଗୋଟାଏ ବିଚିତ୍ର ଆମ୍ବିଳା ଗନ୍ଧ । ମେଘ ଛୋଟ୍ଟାନ ଘୋଟିଆସୁଥାଏ । ମଲା ମୁର୍ଦ୍ଦାର, ଖଣ୍ଡିଆ ମଣିଷ, ଗ୍ଲାନିଆ ମୁହାଁ କ୍ଲାନ୍ତ ଦୋଦୋପାଙ୍କ ସୈନ୍ୟ ସମସ୍ତଙ୍କ ଉପରେ ଟିପି ଟିପି ମେଘ ବର୍ଷିବାକୁ ଆରମ୍ଭକଲା ସତେ ଯେପରି ସେ ବର୍ଷା କହୁଥାଏ —

"ବହୁତ ହେଲା, ବହୁତ ହେଲା ବନ୍ଦ କର···ଟିକଏ ଚେତ । ଏକଣ ତୁମେ କରୁଛ ?"

ଦୁଇ ପକ୍ଷର ଲୋକେ ଖାଦ୍ୟ ଓ ବିଶ୍ରାମ ଅଭାବରୁ ସମାନ ହାଲଆହୋଇ ପଡ଼ିଥାନ୍ତି । ଦୁଇ ପକ୍ଷର ଲୋକଙ୍କ ମନରେ ସନ୍ଦେହ ଉପୁଜିବାକୁ ଆରମ୍ଭ କଲାଯେ ସେମାନେ ଯେମିତି ପରସ୍ପରକୁ ହଣାହଣି କରିବା ଚଳାଇଛନ୍ତି ସେଇଆ ଚଳାଇଥିବେ କି ନାହିଁ । ପ୍ରତ୍ୟେକ ସୈନିକ ମୁହଁକୁ ଚାହିଁଲେ ଜଣାପଡ଼ୁଥିଲା ଯେ ସେ ଏ ବିଷୟରେ ଦ୍ୱିଧାରେ ପଡ଼ୁଛି । ପ୍ରତ୍ୟେକ ସୈନିକର ଅନ୍ତର ଭିତରେ ସେହି ଏକା ପ୍ରକାର ପ୍ରଶ୍ନ ଉଠୁଥାଏ ।

"କେଉଁ କଥାପାଇଁ କାହାପାଇଁ ମୁଁ ପରକୁ ହାଣି ପକାଇବି କି ନିଜେ ହାଣ ଖାଇବି ? ତୁମର ତୁମେ ଯାହାକୁ ହାଣିବ ହାଣ, ତୁମର ତୁମେ ଯାହାକରିବ କର, ମୋର ବହୁତ ହେଲାଣି ଆଉ ନାହିଁ ।"

ସଞ୍ଜବୁଡ଼ ଆଡ଼କୁ ସମସ୍ତଙ୍କ ହୃଦୟରେ ଏକାପ୍ରକାରେ ଏହି ଚିନ୍ତା ରୂପ ନେଲା । ଏପରି ହେଲାଯେ ଯେକୌଣସି ମୁହୂର୍ତ୍ତରେ ଆପଣା କାର୍ଯ୍ୟରେ ବିଶ୍ୱାସିକାକୁ ଭୟ ଘୃଣାରେ ଜର୍ଜରିତ ହୋଇ ପଡ଼ିଥାନ୍ତେ ଓ ସବୁ କାର୍ଯ୍ୟ ଫୋପାଡ଼ି ଦେଇ କୁଆଡ଼େ ନାହିଁ କୁଆଡ଼େ ଛୁଟିଡ଼ ପଳାଇ ଯାଆନ୍ତେ ।

ତଥାପି ଯୁଦ୍ଧ ସରିଆସିଲା ବେଳକୁ ସେ ଲୋକେ ଆପଣା କଲକର୍ମର ବଣ୍ଟାଷିକା ଭୁଲିପାରିଲେ ସୁଧା, ଯୁଦ୍ଧ ବନ୍ଦ୍ କରିଥିଲେ ସେମାନଙ୍କୁ ଯେବା ଆନନ୍ଦ ଲାଗିଥାନ୍ତା କ'ଣ ଗୋଟାଏ ଅଜଣା ଶକ୍ତି ସେତେବେଳେ ବି ସେମାନଙ୍କୁ ଆଗକୁ ବାଟ କଢ଼ାଇ ନେଇ ଚାଲିଥିଲା । ତୋପ ଚଳାଇବା ସୈନିକମାନଙ୍କ ଭିତରେ ତିନି ଭାଗରୁ ଭାଗେ ମୋଟେ ସେତେବେଳ ଯାଏ ହତାହତ ନହୋଇ ରହିଥିଲେ । ସେମାନେ ଝାଳରେ ଜୁଡ଼ୁବୁଡ଼ୁ ହେଉଥାନ୍ତି, ତାଙ୍କ ଦେହସାକ ବାରୁଦ ଆଉ ରକ୍ତ ବୋଳା ହୋଇଥାଏ । ସେମାନେ ହାଲିଆ ହୋଇଯାଇ ଧକେଇ-ହେଉଥାନ୍ତି । ତଥାପି ସେମାନେ ଗୁଳି ବାରୁଦ ବୋମ୍ବ ଆଣୁଥାନ୍ତି, ଆଉ ତୋପରେ ବାରୁଦ ଭର୍ତ୍ତି କରୁଥାନ୍ତି । ଲକ୍ଷ କରୁଥାନ୍ତି, ଢଆସିଲ କାଠି ଲଗାଉଥାନ୍ତି ଆଉ ଦୁଇ ପକ୍ଷରୁ ତୋପ ଗୁଳିମାନ ସମାନ ବେଗରେ ସମାନ ନିଷ୍ଠୁରତା ସହିତ ଉଡ଼ିଚାଲିଯାଇ ମଣିଷ ମାଂସକୁ ଗୁଣ୍ଡା କରୁଥାଏ, ଆଉ ସେହି ଭୟଙ୍କର କାର୍ଯ୍ୟଟାକୁ ଚାଲୁ ରଖିଥାଏ । ବୁଆଡ଼େ ସେହି ଯେଉଁ କାର୍ଯ୍ୟଟାକୁ ମଣିଷମାନେ ନିଜ ଇଚ୍ଛାରେ କରୁନଥାନ୍ତି ଯେ ପରମେଶ୍ୱର କରୁଥାନ୍ତି । ସେହି ଯେ ମଣିଷମାନଙ୍କୁ ଆଉ ଅସଂଖ୍ୟ ପୃଥିବୀକୁ ଓଲଟ ପାଲଟ କରନ୍ତି ବୁଆଡ଼େ ସେହି ସେ କାର୍ଯ୍ୟକୁ କରୁଥାନ୍ତି ।

ରୁଷ୍ ସେନାର ପଛଆଡ଼େ ଯେଉଁ ଅବ୍ୟବସ୍ଥା ଲାଗିରହିଥାଏ ତାକୁ ଯେ ଦେଖିଥାନ୍ତା ସେ କହିଥାନ୍ତା ଯେ ଫରାସୀ ପକ୍ଷ ଯଦି ଆଉ ସାମାନ୍ୟ ଉଦ୍ୟମ ଟିକିଏ କରିଥାନ୍ତେ ତେବେ ରୁଷ୍ ସେନା ମୂଳପୋଛ ହୋଇଯାଇ-ଥାନ୍ତେ । ସେହିପରି, ଫରାସୀ ସେନା ପଛ ଆଡ଼କୁ ଯେ ଦେଖିଥାନ୍ତା ସେ କହିଥାନ୍ତା ଯେ ରୁଷ୍ପକ୍ଷ ଆଉ ଟିକିଏ ପରିଶ୍ରମ କରିଥିଲେ ଫରାସୀମାନଙ୍କୁ ଓଲଟାଇ ପକାଇଥାନ୍ତେ । କିନ୍ତୁ ଫରାସୀମାନେ କି ରୁଷ୍ପକ୍ଷ କେହି ସେଭଳି ଉଦ୍ୟମ କଲେ ନାହିଁ ଓ ଯୁଦ୍ଧର ନିଆଁ ଆସ୍ତେ ଆସ୍ତେ ଜଳି ଜଳି ଲିଭିଯାଉଥିଲା ।

ରୁଷ୍ପକ୍ଷ ଏହି କାରଣରୁ ସେ ପରିଶ୍ରମ ଟିକକ କଲେ ନାହିଁ ଯେ ସେମାନେ ଫରାସୀମାନଙ୍କୁ ଆକ୍ରମଣ କରୁନଥିଲେ । ଯୁଦ୍ଧ ଯେତେବେଳେ ଆରମ୍ଭ ହେଲା ସେମାନେ ଖାଲି ମସ୍କୋ ଯିବା ସଡ଼କରେ ଖାଲି ଛିଡ଼ା

ହୋଇଥିଲେ, ଫରାସୀମାନେ ସେବାଟେ ଯେପରି ଗୁଳି ନ ଯିବେ ତାଙ୍କ ବାଟ ରୋଧି ଠିଆ ହୋଇଥିଲେ । ଆରମ୍ଭବେଳେ ଯେମିତ ଯୁଦ୍ଧ ଶେଷ ହେଲାବେଳେ ବି ସେମିତ ସେମାନେ ଠିଆହୋଇ ରହିଥିଲେ । କିନ୍ତୁ ରୁଷ୍ ପକ୍ଷର ଯଦି ଏଭଳି ଅବା ଲକ୍ଷ ଥାଆନ୍ତା ଯେ ସେମାନେ ଫରାସୀମାନଙ୍କୁ ଘଉଡ଼ାଇ ଦେବେ ତେବେ ଏ ଶେଷ ଉଦ୍ୟମ ବି ସେମାନେ କରି ପାରି ନଥାନ୍ତେ; କାରଣ ଯେତେ ରୁଷ୍ ସୈନ୍ୟଦଳ ଥିଲେ ଆଗରୁ ସମସ୍ତେ ତଡ଼ାଖାଇ ସାରିଥିଲେ । ରୁଷ୍ ସେନାବାହିନୀର ଏଭଳି କୌଣସି ଅଂଶ ବାକି ନଥିଲା ଯାହାଉପରେ ଏ ଯୁଦ୍ଧରେ ନଷ୍ଟ ଆସିନଥିଲା ଆଉ ରୁଷ୍ ଦେଶର ସୈନ୍ୟମାନଙ୍କୁ ସେମାନଙ୍କ ନିଜ ଜାଗାରୁ ହଟାଇ ଦିଆହୋଇ ନପାରିଲେ ବି ସେମାନଙ୍କ ସୈନ୍ୟ ବାହିନୀର ଅଧେ ଭାଗ ନାଶ ପାଇଯାଇଥିଲା ।

ଫରାସୀମାନଙ୍କ ପକ୍ଷରେ ଏହି ଶେଷ ଉଦ୍ୟମଟା କରିବା ସହଜ ହୋଇଥାନ୍ତା । ପନ୍ଦର ବର୍ଷ ପର୍ଯ୍ୟନ୍ତ ସେମାନେ ଖାଲି ଗୋଟାକୁ ଗୋଟା ଯୁଦ୍ଧ ଜୟ କରୁଥିଲେ ତାର ସ୍ମୃତି ସେମାନଙ୍କ ମନରେ ଥିଲା । ନେପୋଲିଅନଙ୍କ ବିଚକ୍ଷଣ ପ୍ରତିଭା ସବୁ ଜୟ କରି ପାରିବ—ଏ ବିଶ୍ୱାସ ସେମାନଙ୍କ ମନରେ ଥିଲା । ସେମାନଙ୍କ ପକ୍ଷରୁ ମୋଟେ ଚାରିଭାଗରୁ ଭାଗେ ସୈନ୍ୟ ଏ ଯୁଦ୍ଧରେ ନଷ୍ଟ ହୋଇଥିଲେ । ସେମାନଙ୍କର କୋଡ଼ିଏ ହଜାର ସୈନ୍ୟ ମିଶି ରକ୍ଷୀ ବାହିନୀ ସମ୍ପୂର୍ଣ୍ଣ ଅକ୍ଷତ ଅତୁଟ ଅବସ୍ଥାରେ ରହିଥିଲା । ଫରାସୀମାନେ ଏ ଉଦ୍ୟମଟା କରିବା ଉଚିତ୍ ଥିଲା । ସେମାନେ ରୁଷ୍ ପକ୍ଷର ସୈନ୍ୟମାନଙ୍କୁ ସେମାନଙ୍କ ଆସ୍ଥାନରୁ ତଡ଼ି ଦେବପାଇଁ ଏ ଆକ୍ରମଣ କରିଥିଲେ ।

ଫରାସୀ ପକ୍ଷ ଏହି ଶେଷ ଉଦ୍ୟମଟା ଏଇଥିପାଇଁ କରିବା ଉଚିତ୍ ହୋଇଥାନ୍ତା ଯେ ଯୁଦ୍ଧ ଆରମ୍ଭ ହେବା ପୂର୍ବରୁ ଯେପରି ରୁଷ୍ ପକ୍ଷ ମସ୍କୋ ଯିବା ରାସ୍ତାକୁ ଅବରୋଧ କରି ରଖିଥିଲେ ଯୁଦ୍ଧ ଶେଷରେ ବି ସେଇଆ କରି ରଖିଥିଲେ, ତେଣୁ ଫରାସୀମାନଙ୍କ ଉଦ୍ଦେଶ୍ୟ ସିଦ୍ଧ ହୋଇ ନଥିଲା ଓ ଯୁଦ୍ଧରେ ଯେତେ କ୍ଷତିହେଲା, ଯୁଦ୍ଧରେ ଯେତେ ଶ୍ରମ ଖର୍ଚ୍ଚ ହେଲା ସବୁ ବୃଥାରେ ଗଲା । ତଥାପି ଫରାସୀ ପକ୍ଷ ସେ ଉଦ୍ୟମଟା କଲେ ନାହିଁ ।

କେତେକ ଇତିହାସ ଲେଖକ ଦୃଢ଼ ଭାବରେ ମତ ଦେଇଛନ୍ତି ଯେ ଠିକ୍ ଏ ଖାଲି ଯଦି ନେପୋଲିଅନ ତାଙ୍କ ପୁରୁଣା ରକ୍ଷୀ ବାହିନୀଙ୍କୁ ଆଗକୁ ମାଡ଼ିଯିବାକୁ ହୁକୁମ୍ ଦେଇ ଥାନ୍ତେ ତେବେ ଯୁଦ୍ଧ ଜିତା ହୋଇଥାନ୍ତା । ନେପୋଲିଅନ ତାଙ୍କ ପୁରୁଣା ରକ୍ଷୀ ବାହିନୀଙ୍କୁ ଆଗକୁ ମାଡ଼ିଯିବାକୁ ହେଇଥିଲେ କଣ ହୋଇଥାନ୍ତା ଏକଥା କହିବା ଯାହା ଶୀତ ଦିନେ ବସନ୍ତ ଋତୁ ଆସିଲେ କଣ ହୁଅନ୍ତା କହିବା ସେଇଆ । ସେପରି ହୋଇପାରି ନଥାନ୍ତା । ନେପୋଲିଅନ ଯେ ସେପରି ନକଲେ ତାର କାରଣ ଏକଥା ନୁହେଁ ଯେ ସେପରି କରିବାକୁ ତାଙ୍କର ଇଚ୍ଛା ନଥିଲା । ସେଭଳି କରିବା ଅସମ୍ଭବ ହୋଇଥିଲା ବୋଲି ସେ ସେପରି କରି ପାରିଲେ ନାହିଁ । ଫରାସୀ ସୈନ୍ୟ ବାହିନୀର ଯେତେ ସେନାପତି କର୍ମଚାରୀ ଆଉ ସୈନିକ ଥିଲେ ସମସ୍ତେ ଜାଣିଥିଲେ ଯେ ଏ ଶେଷ ଉଦ୍ୟମ ଠିକ କରିବା ସମ୍ପୂର୍ଣ୍ଣ ଅସମ୍ଭବ କାରଣ ସୈନ୍ୟମାନଙ୍କ ମନରେ ତେଜ ଯେଉଁଭଳି ଭାବେ କମି ଆସିଥିଲା ସେପରି ଅବସ୍ଥାରେ ସେଭଳି କରିବା ସମ୍ଭବ ନ ଥିଲା ।

ଏତେ ପରାକ୍ରମୀ ବାହୁଟା ସତେକି ପକ୍ଷାଘାତରେ ଶକ୍ତିହୀନ ହୋଇ ପଡ଼ିଲା ଭଳି ଏକୁଟିଆ ନେପୋଲିଅନଙ୍କରହିଁ ଯେ ଦୁଃସ୍ୱପ୍ନର ଆତଙ୍କ ଉପୁଜିଥିଲା ତାହା ନୁହେଁ, ଫରାସୀ ସୈନ୍ୟ ବାହିନୀର ଯେତେ ସେନାପତି ଥିଲେ ସେମାନେ ଏ ଯୁଦ୍ଧରେ ଯୁଦ୍ଧ କରିଥାନ୍ତୁ କି ଯୁଦ୍ଧକୁ ଛୁଇଁ ନଥାନ୍ତୁ ସେମାନେ ସମସ୍ତେ ତାଙ୍କର ଯୁଦ୍ଧ ବିଷୟରେ ଏତେ ପୂର୍ବ ଅଭିଜ୍ଞତା ଭିତରୁ (ସେ ସବୁ ଯୁଦ୍ଧରେ ଏ ଯୁଦ୍ଧର ଦଶ ଭାଗରୁ ଭାଗେ ପରିଶ୍ରମ କରିଦେଲେ ସେମାନଙ୍କ ଶତ୍ରୁପକ୍ଷ ସବୁଥର ଦୌଡ଼ି ଦୌଡ଼ି ପଳାନ୍ତି ) ବର୍ତ୍ତମାନ ଏ ଶତ୍ରୁ ଆଗରେ ବିସ୍ମୟ ଓ ଆତଙ୍କର ମନୋଭାବ ଦେଖାଯାଇଥିଲା, କାରଣ ଏହି ସେହି ଶତ୍ରୁ ପକ୍ଷ ଯାହାର ସୈନ୍ୟ ବାହିନୀର ଅଧେ ଲୋକ କ୍ଷୟ ହୋଇ ସାରିଥିଲେ ସୁଦ୍ଧା ତଥାପି ନିର୍ଭୀକ ହୋଇ ଆପଣା ଆସ୍ଥାନ ମାଡ଼ି ଠିଆ ହୋଇ ରହିଥିଲେ । ଯୁଦ୍ଧ ଆରମ୍ଭ ହେଲାବେଳେ ଯେପରି ଠିଆ ହୋଇ ରହିଥିଲେ ଯୁଦ୍ଧ ଶେଷ ହେଲାବେଳକୁ ବି ସେହିପରି ଥିଲେ । ଆକ୍ରମଣ କାରୀ ଫରାସୀ ସୈନ୍ୟବାହିନୀର ନୈତିକ ଶକ୍ତି ଲୋପ ହୋଇ ଯାଇଥିଲା । ବୋରଡିନୋ ଯୁଦ୍ଧରେ ରୁଷ୍

ଦେଶର ଲୋକେ ଯେଉଁ ବିଜୟ ଲାଭ କଲେ ତାହା ସାଧାରଣ ବିଜୟ ନୁହେଁ ଯାହାର ସଙ୍କେତ ଥାଏ ବାଡି ଗୁଡ଼ାକର ଆଗରେ ଛୁଣ୍ଡା କନା ଗୁଡାଏ । ଯାହାକୁ ଧ୍ୱଜା କହନ୍ତି, ସେହି ଛୁଣ୍ଡାକନା ଗୁଡ଼ାକ ଦଖଲ କରିବା, ଅଥବା ଯେଉଁ ଜମି ଉପରେ ସୈନ୍ୟମାନେ ଠିଆ ହୋଇଥାନ୍ତି ସେ ଜମିକୁ ଦଖଲ କରିବା । ଋଷ୍ ଦେଶର ଲୋକେ ଯେଉଁ ବିଜୟ ପାଇଲେ ତାହା ଏକ ନୈତିକ ବିଜୟ – ସେହି ବିଜୟ ଯହିଁରେ ଶତ୍ରୁ ଆପଣା ଅପେକ୍ଷା ତାର ପ୍ରତିପକ୍ଷର ନୈତିକ ଉତ୍କର୍ଷକୁ ସ୍ୱୀକାର କରିବାକୁ ବାଧ୍ୟହୁଏ । ଆଉ ଆପଣାର କ୍ଲୀବତ୍ୱ ହୃଦୟଙ୍ଗମ କରିବାକୁ ସେହି ସେ ବିଜୟର ସଙ୍କେତ ।

ଗୋଟାଏ ଧର୍ଷି ଧରି ଖାଉଥିବା ହିଂସ୍ର ଜନ୍ତୁ କେବେ ଥରେ ଚଡ଼ାଉ କଲାବେଳେ ମରଣ ମାଡ଼ ପାଇଲେ ଯେପରି ତାହା ଅନୁଭବ କରେ, ଆକ୍ରମଣକାରୀ ଫରାସୀ ସେନା ସେହିପରି ଅନୁଭବ କରୁଥିଲା ଯେ ତାର ଅନ୍ତିମ କାଳ ପାଖହୋଇ ଆସିଥିଲା । ସେହି [illegible] ଅଟକ ଗଲାପରେ ଫରାସୀ ସେନା ତଥାପି ଟାଣି ଓଟାର ହୋଇ ମସ୍କୋ ନଗରକୁ ଯାଇ ପାରିଥିଲା । ସେଠି ଋଷ ସେନା କୌଣସି ପ୍ରକାର ନୂଆ ଚେଷ୍ଟା ନ କରିଥିଲେ ହେଁ ଫରାସୀ ସେନାର ଧ୍ୱଂସ ଆପେ ଆପେ ଅନିବାର୍ଯ୍ୟ ହୋଇଥିଲା; କାରଣ ବୋରୋଦିନରେ ସେ ଯେଉଁ ମରଣ ମାଡ଼ ପାଇଥିଲା ସେହି କ୍ଷତ ବାଟେ ତାର ରକ୍ତ ବୋହି ଯାଉଥିଲା । ବୋରୋଦିନ ଯୁଦ୍ଧରେ ଆଶୁ ପରିଣାମ ହେଲା ଯେ ନେପୋଲିଅନ ମସ୍କୋରୁ ଯେ ପଳାଇବାକୁ ଆରମ୍ଭ କଲେ ଆଉ ଅଟକିଲେ ନାହିଁ, ପରିଣାମ ହେଲା ଯେ ସେ ପୁରୁଣା ସ୍ମୋଲେନେସ୍କ ରାସ୍ତାରେ ଲେଉଟି ଗଲେ, ତାଙ୍କର ପାଞ୍ଚ ଲକ୍ଷ ସୈନ୍ୟ ବିଶିଷ୍ଟ ଆକ୍ରମଣକାରୀ ସୈନ୍ୟବାହିନୀ ଧ୍ୱଂସ ହେଲା, ଆଉ ନେପୋଲିଅନଙ୍କ ରାଜତ୍ୱର ପତନ ଘଟିଲା । ବୋରୋଦିନ ଯୁଦ୍ଧରେ ନେପୋଲିଅନଙ୍କ ରାଜତ୍ୱ ଉପରେ ତାଙ୍କଠୁଁ ଅଧିକ ଶକ୍ତିଶାଳୀ ଆତ୍ମିକ ବିଶିଷ୍ଟ ଶତ୍ରୁ ପ୍ରଥମ ଥରକ ହସ୍ତକ୍ଷେପ କଲା ।

———

ସୃଷ୍ଟିପ୍ରଭା ପ୍ରିଣ୍ଟର୍ସ, ତେଲେଙ୍ଗାବଜାର, କଟକ-୨

# ଯୁଦ୍ଧ ଓ ଶାନ୍ତି

| | |
|---|---|
| ପ୍ରଥମ ଖଣ୍ଡ— | ଟ ୩୫-୦୦ |
| ଦ୍ୱିତୀୟ ଖଣ୍ଡ— | ଟ ୪୦-୦୦ |
| ତୃତୀୟ ଖଣ୍ଡ— | ( ପ୍ରକାଶ ଅପେକ୍ଷାରେ ) |